# ଭାଷାବିଜ୍ଞାନର ରୂପରେଖ

ପ୍ରଫେସର୍, ଡକ୍ଟର ବାସୁଦେବ ସାହୁ

ଓଡ଼ିଆ ଭାଷା-ସାହିତ୍ୟ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ

ବାଣୀବିହାର, ଭୁବନେଶ୍ୱର-୪



ଭାଷାବିଜ୍ଞାନର ରୂପରେଖ—ଲେଖକ : ପ୍ରଫେସର୍, ଡକ୍ଟର ବାସୁଦେବ ସାହୁ, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପଞ୍ଚମ ପ୍ରକାଶ : ୧୯୯୪, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରାକର : ଦୁର୍ଗାମାଧବ ପ୍ରେସ୍, ଡଗରପଡ଼ା, କଟକ-୨



**BHASHA BIJYANARA RUPAREKHA** (Outline of Philology)—Writer : Professor Dr. Basudeva Sahu, P.-G. Department of Oriya, Utkal University, Bhubaneswar. Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), 5th Edition : 1994, Cover Design : Asit Mukherjee, Printer : Durgamadhaba Press, Dagarapara, Cuttack-2

PRICE : Rs. 50

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ପ୍ରଥମ ପରିଚ୍ଛେଦ—ଭାଷାର ସଂଜ୍ଞା ଓ ସ୍ୱରୂପ | ୧-୨୭ |
| ଦ୍ୱିତୀୟ ପରିଚ୍ଛେଦ—ଭାଷାର ଉତ୍ପତ୍ତି ସମ୍ପର୍କୀୟ ବିଭିନ୍ନ ସିଦ୍ଧାନ୍ତ | ୨୮-୩୮ |
| ତୃତୀୟ ପରିଚ୍ଛେଦ—ଭାଷାର ପରିବର୍ତ୍ତନ | ୩୯-୫୧ |
| ଚତୁର୍ଥ ପରିଚ୍ଛେଦ ଲିପି | ୫୨-୭୧ |
| ପଞ୍ଚମ ପରିଚ୍ଛେଦ—ଭାଷାବିଜ୍ଞାନର ସ୍ଥୂଳ ପରିଚୟ | ୭୨-୭୫ |
| ଭାଷାବିଜ୍ଞାନର ସଂଜ୍ଞା ଓ ସ୍ୱରୂପ (୭୨), ଭାଷାବିଜ୍ଞାନର ବିଭିନ୍ନ ଭେଦ (୭୩), ଭାଷାବିଜ୍ଞାନର ବିଭିନ୍ନ ବିଭାଗ (୬୮), ଭାଷାବିଜ୍ଞାନ ଅଧ୍ୟୟନର ପ୍ରୟୋଜନୀୟତା (୭୪) । | |
| ଷଷ୍ଠ ପରିଚ୍ଛେଦ—ଧ୍ୱନିବିଜ୍ଞାନ | ୭୬-୧୪୬ |
| ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶ ଓ ତାହାର କାର୍ଯ୍ୟ (୭୭), ସ୍ୱରଧ୍ୱନିର ବର୍ଗୀକରଣ (୮୫), ମାନସ୍ୱରଧ୍ୱନି ବା ମୌଳିକ ସ୍ୱରଧ୍ୱନି (୮୮), ବ୍ୟଞ୍ଜନ ଧ୍ୱନିର ବର୍ଗୀକରଣ (୯୨), ଧ୍ୱନି ପରିବର୍ତ୍ତନର ବିଭିନ୍ନ କାରଣ (୧୦୪), ଧ୍ୱନିପରିବର୍ତ୍ତନର ବିଭିନ୍ନ ଦିଗ (୧୧୦), ଧ୍ୱନି ନିୟମ (୧୩୬), ଧ୍ୱନି ସମ୍ବନ୍ଧୀୟ କେତୋଟି ଟିପ୍ପଣୀ (୧୪୧) । | |
| ସପ୍ତମ ପରିଚ୍ଛେଦ—ଶବ୍ଦବିଜ୍ଞାନ | ୧୪୭-୧୫୩ |
| ଅଷ୍ଟମ ପରିଚ୍ଛେଦ—ରୂପବିଜ୍ଞାନ | ୧୫୪-୧୬୨ |
| ନବମ ପରିଚ୍ଛେଦ—ଅର୍ଥବିଜ୍ଞାନ | ୧୬୩-୨୦୫ |
| ଅର୍ଥ ପରିବର୍ତ୍ତନର ବିଭିନ୍ନ କାରଣ (୧୬୪), ଅର୍ଥ ପରିବର୍ତ୍ତନର ବିଭିନ୍ନ ଭେଦ ବା ଦିଗ (୧୮୨), ବୌଦ୍ଧିକ ନିୟମ (୧୯୮) । | |
| ଦଶମ ପରିଚ୍ଛେଦ—ବାକ୍ୟବିଜ୍ଞାନ | ୨୦୬-୨୧୬ |
| ଏକାଦଶ ପରିଚ୍ଛେଦ—ଭାଷାବିଜ୍ଞାନ ଅଧ୍ୟୟନର ଇତିହାସ | ୨୧୭-୨୪୪ |


●

# ସମର୍ପଣ

ଏ ଗ୍ରନ୍ଥ-ସୃଷ୍ଟିରେ ଯାହାଙ୍କର ଶୁଭଦୃଷ୍ଟି
ହୋଇଅଛୁ ବୃଷ୍ଟି
ସେହି ଇଷ୍ଟଦେବ
ପରମ୍ପୂର ବଶ୍ୱଦେବ
ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର
ଏ ଅଧମ ଚରଣ କିଙ୍କର
ତା'ର ଏଇ କ୍ଷୁଦ୍ର ସୃଷ୍ଟି
ମହାର୍ଘ

ନ ହେଉ ପଛେ
ଗୋଟିଏ
ମହାର୍ଘ୍ୟ ।

ବାସୁ

# ସ୍ୱଭାଷ

ଭାଷାର ପ୍ରକୃତି, ପ୍ରବୃତ୍ତି, ଶବ୍ଦ ଓ ପ୍ରୟୋଗ ସମ୍ପର୍କରେ ଜ୍ଞାନ ଲାଭ ନ ହେଲେ ବଳିଷ୍ଠ ସାହିତ୍ୟ ସୃଷ୍ଟି କରିବା ସହଜ ହୁଏ ନାହିଁ । ନିର୍ଭୁଲ ଓ ସଫଳ ଆତ୍ମପ୍ରକାଶ ପାଇଁ ଭାଷାର ସ୍ୱରୂପ ସମ୍ପର୍କରେ ଜ୍ଞାନ-ଅର୍ଜନ ଅବଶ୍ୟ ଆବଶ୍ୟକ । ଭାଷା ସମ୍ପର୍କରେ ଏହି ଜ୍ଞାନ ହେଉଛି ଭାଷାବିଜ୍ଞାନ । ସାଂପ୍ରତିକ କାଳରେ ଉଚ୍ଚଶିକ୍ଷିତ ଓ ସଭ୍ୟଦେଶ-ମାନଙ୍କରେ ଭାଷାବିଜ୍ଞାନ କ୍ଷେତ୍ରରେ ଗବେଷଣା ପ୍ରତି ଅଧିକ ଧ୍ୟାନ ଦିଆଯାଉଅଛି । ଭାରତର କେତେକ ପ୍ରାଦେଶିକ ଭାଷାରେ ମଧ୍ୟ ଭାଷାବିଜ୍ଞାନ ଗବେଷଣାର ଅଗ୍ରଗତି ବେଶ୍ ଆଶାଜନକ । ଅନେକ ଓଡ଼ିଆ ବିଦ୍ୱାନ୍ ଭାଷାତତ୍ତ୍ୱବିତ୍ ଭାବରେ ସର୍ବଭାରତୀୟ, ଏପରିକି ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରଶଂସନୀୟ ପ୍ରସିଦ୍ଧି ଓ ସୁନାମ ଅର୍ଜନ କରିଥିବା ଓଡ଼ିଶା ପକ୍ଷରେ ଗୌରବ ଓ ଆନନ୍ଦର କଥା । କିନ୍ତୁ ଓଡ଼ିଆ ଭାଷାରେ ରଚିତ ଭାଷା-ବିଜ୍ଞାନ ଗ୍ରନ୍ଥ ଏପର୍ଯ୍ୟନ୍ତ ଦୁର୍ଲଭ କହିଲେ ଚଳେ । ଏହି ଅଭାବ ପୂରଣ ଲକ୍ଷ୍ୟରେ 'ଭାଷାବିଜ୍ଞାନର ରୂପରେଖ' ଗ୍ରନ୍ଥର ଯୋଜନା । ଏଥିରେ ଭାଷା ଓ ଭାଷାବିଜ୍ଞାନ ସମ୍ପର୍କରେ ଏକ ସ୍ଥୂଳ ପରିଚୟ ପ୍ରଦାନ କରାଯାଇଅଛି ।

ଭାଷାବିଜ୍ଞାନ ଅଧ୍ୟୟନ ଓ ଗବେଷଣା କ୍ଷେତ୍ରରେ ମୋର ପରମାରାଧ୍ୟ ଗୁରୁଦେବ ଅବସରପ୍ରାପ୍ତ ପ୍ରଫେସର୍ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଓ ପରମାରାଧ୍ୟ ଗୁରୁଦେବ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ମୁଖ୍ୟ ପ୍ରଫେସର୍ ଡକ୍ଟର ବଂଶୀଧର ମହାନ୍ତି ନିରବଚ୍ଛିନ୍ନ ପ୍ରେରଣା ଦେଇଥିବାରୁ ମୁଁ ସେମାନଙ୍କ ନିକଟରେ ଋଣସ୍ୱୀକାର କରି ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

ଭାଷାବିଜ୍ଞାନ ସମ୍ପର୍କରେ ଏ ଗ୍ରନ୍ଥ ଏକ ସ୍ଥୂଳ ଧାରଣା ଦେଇ ପାରିଲେ ଶ୍ରମ ସାର୍ଥକ ମଣିବ ।

ବାସୁଦେବ ସାହୁ

● ପ୍ରଥମ ପରିଚ୍ଛେଦ ●

# ଭାଷାର ସଂଜ୍ଞା ଓ ସ୍ୱରୂପ

## ଭାଷାର ସଂଜ୍ଞା

'ଭାଷ୍ ବ୍ୟକ୍ତାୟାଂ ବାଚି'—ଧାତୁପାଠ

ସଂସ୍କୃତ 'ଭାଷ' ଧାତୁରେ କର୍ମବାଚ୍ୟରେ 'ଅ' ପ୍ରତ୍ୟୟଯୁକ୍ତ ହେଲେ 'ଭାଷା' ଶବ୍ଦର ସୃଷ୍ଟି ହୁଏ, ଅର୍ଥାତ୍ ଯାହା କୁହାଯାଏ ତାହା ଭାଷା । ଏହାର ପ୍ରତିଶବ୍ଦ ହୋଇପାରେ ବଚନ ବା ବ୍ୟକ୍ତ ବାଣୀ । 'ଭାଷା' ଶବ୍ଦର ଏହି ବ୍ୟୁତ୍ପତ୍ତିଗତ ଅର୍ଥରୁ 'ଭାଷା' ସମ୍ପର୍କରେ ଏକ ସ୍ଥୂଳ ପରିଚୟ ମିଳୁଥିଲେ ମଧ୍ୟ ପୂର୍ଣ୍ଣାଙ୍ଗ ପରିଚୟ ମିଳୁନାହିଁ । 'ଭାଷା' ଭିତରେ ରହିଛି ମାନବଜାତିର ଚିନ୍ତାଶକ୍ତି, ଅଭିବ୍ୟକ୍ତି ଓ ଉପଲବ୍ଧିର ଏକ ବ୍ୟାପକ ଅନୁବନ୍ଧ । ଗ୍ରୀକ୍ ଭାଷାରେ 'ଭାଷା'କୁ କୁହାଯାଏ 'ଲୋଗସ୍' (Lo'gos) । ଲୋଗସ୍ ଶବ୍ଦର ଅର୍ଥ ହେଉଛି 'ଚିନ୍ତାଶକ୍ତି', କାରଣ ମନୁଷ୍ୟର ଚିନ୍ତାଧାରା, ଧ୍ୟାନ-ଧାରଣା ଏହାର ମାଧ୍ୟମରେ ହିଁ ପ୍ରକାଶିତ ହୁଏ । ତେଣୁ ଡକ୍ଟର ତାରାପୋରଓ୍ୱାଲା ଯଥାର୍ଥରେ କହିଛନ୍ତି, The world man is from man to think."

ଭାଷା ହେଉଛି ମାନବ ଜାତିର ଏକ ବିଶିଷ୍ଟ ଉଦ୍ଭାବନ ଯାହା ତାହାକୁ ଇତର ପ୍ରାଣୀମାନଙ୍କଠାରୁ ସ୍ୱତନ୍ତ୍ର ସ୍ଥାନ ଓ ସମ୍ମାନ ପ୍ରଦାନ କରିଛି । ଚିନ୍ତାଶକ୍ତି ବିନା ଭାଷାର ଅସ୍ତିତ୍ୱ ସମ୍ଭବ ନୁହେଁ । ଏହି ଚିନ୍ତାଶକ୍ତି ଓ ଭାଷା ମନୁଷ୍ୟର ଦୁଇଟି ମୌଳିକ ସମ୍ପଦ, ଯହିଁରୁ ଇତର ପ୍ରାଣୀମାନେ ବଞ୍ଚିତ । ଅବଶ୍ୟ ପରୀକ୍ଷା ଦ୍ୱାରା ଲକ୍ଷ୍ୟ କରାଯାଇଛି ଯେ କେତେକ ଇତର ପ୍ରାଣୀ କେତୋଟି ଶବ୍ଦ ସାହାଯ୍ୟରେ କ୍ଷୁଧା, ତୃଷା, କ୍ରୋଧ, କାରୁଣ୍ୟ, ହର୍ଷ, ବିସ୍ମୟ ଆଦି ମନୋଭାବ ପ୍ରକାଶ କରି ଚିନ୍ତାଶକ୍ତିର କିଞ୍ଚିତ୍ ପରିଚୟ ଦେଇଛନ୍ତି, କିନ୍ତୁ ସେହି ଶବ୍ଦ-ସମଷ୍ଟିକୁ 'ଭାଷା' କୁହାଯାଇ ପାରିବ ନାହିଁ । କାରଣ ଏହି ଶବ୍ଦ-ସମଷ୍ଟି ମୂଳରେ କୌଣସି ସୁନିର୍ଦ୍ଦିଷ୍ଟ ଚିନ୍ତନର ଦ୍ୟୋତନା ନାହିଁ ।

ସେହି ମନୋଭାବରେ ସୂଚିତ ଚିନ୍ତାଶକ୍ତି କହାଠ ପ୍ରାଥମିକ ସ୍ତରର ଓ ତଦ୍ଭିତରେ କୌଣସି ସୂତ୍ରର ସମ୍ପର୍କ ବା ଶୃଙ୍ଖଳା ନାହିଁ ।

ପ୍ରକୃତରେ ଚିନ୍ତାବୃତ୍ତିର ଅନୁଶୀଳନ ଏକ ପ୍ରକାର କଥୋପକଥନ, ଇଂରାଜୀରେ ଯାହାକୁ କହନ୍ତି ମନୋଲାପ (Monologue) ଚିନ୍ତାବୃତ୍ତିର ଅନୁଶୀଳନ ଦ୍ୱାରା କେତେ ଭାବ ବା ଧାରଣା (Concept) ମନ ମଧ୍ୟରେ ଜନ୍ମାନ୍ତି ବାଛେ । ଏହି ଧାରଣାଗୁଡ଼ିକର ପ୍ରତୀକ ଧ୍ୱନିଗୁଡ଼ିକୁ କେବଳ ଉଚ୍ଚାରଣ କରିଦେଲେ ଶ୍ରୋତା ନିକଟରେ ଏହାର ଅର୍ଥ ଉପଲବ୍ଧ ହୋଇପାରିବ ନାହିଁ, ଏହି ଭାବଗୁଡ଼ିକୁ ନିର୍ଦ୍ଦିଷ୍ଟ ନିୟମରେ ସଜାଇ ଏହାକୁ ଏକ ପରିଚିତ ଓ ନିଶ୍ଚିତ ରୂପ ପ୍ରଦାନ କରିବାକୁ ହେବ । ଏହି ପରିଚିତ ଓ ନିଶ୍ଚିତ ରୂପଟି ହେଉଛି ବାକ୍ୟ, ଯାହା ଭାଷାରେ ପ୍ରଧାନ ଉପାଦାନ । ତେଣୁ ମାନବୀୟ ଭାଷା ଓ ଇତର ପ୍ରାଣୀମାନଙ୍କର ରବ ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ହେଉଛି—ମନୁଷ୍ୟର ଭାଷାମୂଳରେ ରହିଛି ଚିନ୍ତନ ଓ ନିଶ୍ଚିତ ସ୍ୱରୂପ ଯାହାର ବିଶ୍ଳେଷଣ ଓ ଅଧ୍ୟୟନ ସମ୍ଭବ, ମାତ୍ର ଇତର ପ୍ରାଣୀମାନଙ୍କର ରବରେ ନାହିଁ ଚିନ୍ତନ ବା ସ୍ୱରୂପ ଏବଂ ଏହାର ବିଶ୍ଳେଷଣ ଅଥବା ଅଧ୍ୟୟନ ମଧ୍ୟ ସମ୍ଭବ ନୁହେଁ । ଇତର ପ୍ରାଣୀମାନଙ୍କର ଏହି ଧ୍ୱନିକୁ 'ଅବ୍ୟକ୍ତ ବାକ୍' ଓ ମନୁଷ୍ୟର ଭାଷାକୁ 'ବ୍ୟକ୍ତ ବାକ୍' ଆଖ୍ୟା ଦିଆଯାଇପାରେ । ଏହି 'ବ୍ୟକ୍ତ ବାକ୍' ହିଁ ଭାଷାବିଜ୍ଞାନରେ ଅଧିକତର ଭାଷା ।

ବାହାର ବାହାର ମତରେ ଯାହାଦ୍ୱାରା ମନର ଭାବ ସ୍ପଷ୍ଟ ରୂପେ ପ୍ରକାଶିତ ହୁଏ, ତାହା ହେଉଛି ଭାଷା । କିନ୍ତୁ ଏହା ଭାଷାର ସ୍ପଷ୍ଟ, ଅଭ୍ରାନ୍ତ ଓ ସ୍ୱୟଂସମ୍ପୂର୍ଣ୍ଣ ସଂଜ୍ଞା ନୁହେଁ; କାରଣ ଶ୍ରବଣ, ଦର୍ଶନ ଓ ସ୍ପର୍ଶ ଆଦି ଇନ୍ଦ୍ରିୟମାଧ୍ୟମରେ ଇଙ୍ଗିତ, ହାବଭାବ ଚିହ୍ନାଙ୍କନ ଆଦି ଦ୍ୱାରା ମଧ୍ୟ ମନର ଭାବ ପୂର୍ଣ୍ଣ ରୂପେ ପ୍ରକାଶ କରାଯାଇ-ପାରେ । ଏହିପରି ମାଧ୍ୟମକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇପାରେ ।

## (କ) ଶ୍ରବଣେନ୍ଦ୍ରିୟଗ୍ରାହ୍ୟ—

ପ୍ରତ୍ୟକ୍ଷ ଦୃଷ୍ଟିରେ ଥିଲେ ହସ୍ତାବସ୍ଥିତ ଦ୍ୱାରା ଦେଉ 'ତାର' ସୃଷ୍ଟି କରି, ପରୋକ୍ଷ ଦୃଷ୍ଟିରେ ଥିଲେ ତାଳି ବଜାଇ ମନର ଭାବ ଅନେକାଂଶରେ ପ୍ରକାଶ କରାଯାଇପାରେ । ତାରଯରେ ତାରରେ ଟିକ୍ ଟିକ୍ ଶବ୍ଦ ସୃଷ୍ଟି କରି, କାର୍ଯ୍ୟାଳୟ ଭିତରେ ଥାଇ ଆହ୍ୱାନ ଘଣ୍ଟି ବଜାଇ, ବିପଦ ସମୟରେ ସତର୍କ ଘଣ୍ଟି ବଜାଇ, ବଂଶୀ ଓ ସେଙ୍ଖାବାଦ୍ୟରେ ଭିନ୍ନ ଭିନ୍ନ ମୂର୍ଚ୍ଛନା ତୋଳି ମନର ଭାବ ଜଣାଇ ଦିଆଯାଇପାରେ । ମୁଣ୍ଡ ତଳକୁ ପୋତି ବସିଥିବା ଅଫିସରଙ୍କ ପାଖରେ ସାବଧାନ ଭଙ୍ଗୀରେ ଠିଆହୋଇ ଚପରାସୀ ସାଲ୍ୟୁଟ୍ ଦେଲାବେଳେ ଯେଉଁ ଅଭିନୟ କରେ ଓ

ପାଦରେ ଯେଉଁ ଶବ୍ଦ ସୃଷ୍ଟି କରେ, ତାହାଦ୍ୱାରା ସେ ତାର ମନର ଭାବ ପ୍ରକାଶ କରିଥାଏ ।

### (ଖ) ସ୍ପର୍ଶେନ୍ଦ୍ରିୟଗ୍ରାହ୍ୟ—

ଅନ୍ଧ ବାଳକ କାଷ୍ଠ ବା ଧାତୁ ପଦାର୍ଥରେ ଖୋଦିତ ଲିପିକୁ ସ୍ପର୍ଶ କରି ଅକ୍ଷର ଶିକ୍ଷା କରିପାରେ ଓ ଲିପି ମାଧ୍ୟମରେ ପୂର୍ଣ୍ଣ ବାକ୍ୟଗୁଡ଼ିକର ଭାବ ମଧ୍ୟ ଗ୍ରହଣ କରିପାରେ । ପ୍ରେମ-ଉନ୍ମତ୍ତମାନେ ଅନ୍ଧାର ରାତିରେ ହାତକୁ ଚିପି ନିଜ ନିଜର ଭାବ ପ୍ରକାଶ କରିଥାନ୍ତି ।

### (ଗ) ଦର୍ଶନେନ୍ଦ୍ରିୟଗ୍ରାହ୍ୟ—

ମୁଖାକୃତି, ଆଖିର ଭାବ, ହସ୍ତ-ସଞ୍ଚାଳନ, ପତାକା-ଚାଳନ ଓ ଚିଠିପତ୍ରାଦି ଦ୍ୱାରା ମଧ୍ୟ ଭାବ ପ୍ରକାଶ କରାଯାଇପାରେ । ମୂକ ବ୍ୟକ୍ତି ନିଜର ସଙ୍କେତ ଦ୍ୱାରା ହିଁ ନିଜର ପରିସ୍ଥିତିକୁ ଅଭିବ୍ୟକ୍ତ କରେ ।

ଏତଦ୍‌ବ୍ୟତୀତ ମନସ୍ତତ୍ତ୍ୱ ଦ୍ୱାରା ମଧ୍ୟ ଜଣେ ବ୍ୟକ୍ତିର ମନୋଭାବ ଅନୁଭବ କରିହୁଏ । ମନସ୍ତତ୍ତ୍ୱବିତ୍ ଜଣେ ବ୍ୟକ୍ତିର ମୁଖ, ଚକ୍ଷୁ, ଅଧରର ସ୍ମିତ ଇତ୍ୟାଦି ଦ୍ୱାରା ସେହି ବ୍ୟକ୍ତିର ତତ୍‌କାଳୀନ ମନୋଭାବ ସମ୍ପର୍କରେ କେତେକ ଅବଧାରଣା କରିପାରନ୍ତି ।

କିନ୍ତୁ ଏ ସବୁ ଭାଷା-ପଦବାଚ୍ୟ ହୋଇପାରିବ ନାହିଁ । କାରଣ ଏଗୁଡ଼ିକ ବାଗ୍‌ଯନ୍ତ୍ର ଦ୍ୱାରା ଉଚ୍ଚାରିତ ଧ୍ୱନି ନୁହନ୍ତି । ଗାଈର ହମ୍ବାରଡ଼ି, ଶୁକର ରାମ, କୃଷ୍ଣ ଆଦି ଶବ୍ଦ, ବାଗ୍‌ଯନ୍ତ୍ରରୁ ଉଚ୍ଚାରିତ ହେଲେ ହେଁ ଏହା ଅତୀବ ସୀମିତ ଅଥବା ଅନୁପ୍ରେରିତ ଏବଂ ଏଗୁଡ଼ିକ ମନୁଷ୍ୟର ଉଚ୍ଚାରଣ-ଅବୟବରୁ ଉଦ୍‌ଗତ ନୁହେଁ । ତେଣୁ ଭାଷାର ମୌଳିକ ପରିଚୟ ହେଲା, ଏହା ମାନବର ଉଚ୍ଚାରଣ-କ୍ଷମ ଅବୟବରୁ ଉଦ୍‌ଗତ ଧ୍ୱନିସମଷ୍ଟି ।

### ଭାଷାର ସଂଜ୍ଞା ସମ୍ପର୍କରେ ବିଭିନ୍ନ ଭାଷାବିତ୍‌ଙ୍କର ମତ :

(କ) W. P. Whitneyଙ୍କ ଭାଷାରେ—In a wider and freer sense—every thing that dodies forth thought and makes it apprehensible in whatever way is called Language············Language may be briefly and comprehensively defined as the means of expression of human thought.

(ଖ) J. Vendryesଙ୍କ ମତରେ—The most general definition of language that can be given, is that is a system of signs······by signs we understand all those symbols capable of serving as a means of communication between men.

(ଗ) A. C. Woolnerଙ୍କ ଅନୁସାରେ—By language in general we mean human speech—that is an activity or function whereby men express their thoughts and feelings by means of articulate sounds, uttered with their vocal origin.

(ଘ) H. Sweet କହନ୍ତି—Language may be defined as the expression of thought by means of speech sounds. In other words every sentence or word by which we express our ideas has a certain definite form or its own virtue of the sounds of which it is made up and has more or less definite meaning.

(ଙ) Encyclopaedia Britanicaରେ ଲେଖାଅଛି—Language may be defined as an arbitrary system of vocal symbols by means of which human beings, as members of a social group and participants in culture interact and communicate.

(ଚ) ବ୍ଲାକ୍ ଓ ଟ୍ରେଗର କହନ୍ତି—A Language is a system of aibitrary vocal symbols by means of which a society group co-operates.

(ଛ) ଷ୍ଟୁର୍ଟେଭାଣ୍ଟଙ୍କ ମତରେ—A Language is a system of arbitrary vocal symbols by means of which members of a social group co-operate and interact.

(ଜ) ହୋକେଟଙ୍କ ଦୃଷ୍ଟିରେ—Language can be thought of as organised noise used in situations actual social

situation, or in other words contextualised systemic sound.

(୪) ସୋଟେ କହନ୍ତି—Language is articulated limited sound organised for the purpose of expression.

(୫) A. R. Wilsonଙ୍କ ଭାଷାରେ – Articulate language is a composite thing and in every word there are three distinguishable elements : (i) The natural sound of which the word is made, this is the raw material of language. (ii) The definite shape given to this natural sound in its beginning, its ruddle and its end to separate from other similarly shaped sound, and (iii) this clearly limited conventional meaning.

(୬) L. H. Gray ଙ୍କ ମତରେ—Language is such expression and communication to or from human beings by means of speech and hearing, the sounds uttered or heard being so combined in systems evolped, conventionalised and recognised by common usage at any given period in the history of human race within a given community or within given communities that they are mutually intelligible to all approximate by normal members thereof.

**ଭାଷାର କେତୋଟି ମୌଳିକ ତତ୍ତ୍ୱ :**

ଭାଷାର ଉପର୍ଯ୍ୟୁକ୍ତ ସଂଜ୍ଞାମାନଙ୍କରୁ ଭାଷାର କେତେକ ମୌଳିକ ତତ୍ତ୍ୱ ସମ୍ପର୍କରେ ସନ୍ଧାନ ମିଳେ । ସେଗୁଡ଼ିକ ହେଲା—

(୧) ଏହା ମନୁଷ୍ୟର ଚନ୍ତ୍ରାନ୍ତେ-ପ୍ରସୂତ ।

(୨) ଭାଷା ନିଶ୍ଚିତ ପ୍ରଯତ୍ନର ଫଳସ୍ୱରୂପ ମନୁଷ୍ୟର ଉଚ୍ଚାରଣ ଅବୟବମାନଙ୍କରୁ ନିଃସୃତ ଧ୍ୱନିସମଷ୍ଟି ।

(୩) ଏହା ନିର୍ଦ୍ଦିଷ୍ଟ ନିୟମରେ ସଜ୍ଜିତ । ଏହା ଅବ୍ୟବସ୍ଥିତ ନୁହେଁ । ଭାଷା ଧ୍ୱନି-ପ୍ରତୀକମାନଙ୍କର ଏକ ବ୍ୟବସ୍ଥା (system) ।

(୪) ଭାଷାରେ ପ୍ରଯୁକ୍ତ ଧ୍ୱନିସମଷ୍ଟି ବା ଶବ୍ଦ ଅର୍ଥଯୁକ୍ତ ହେଲେ ହେଁ ଭାବ ବା ବସ୍ତୁର ସହିତ ସେଗୁଡ଼ିକର କୌଣସି ସହଜାତ ସମ୍ବନ୍ଧ ନାହିଁ । ଏହି ସମ୍ବନ୍ଧ ସ୍ୱୀକୃତ ବା ଯାଦୃଚ୍ଛିକ (arbitrary) ପରମ୍ପରା କ୍ରମେ ଶବ୍ଦର ଅର୍ଥ ସ୍ୱୀକୃତ ହୋଇଥାଏ, ସେଥିପାଇଁ କୌଣସି ନିୟମ, କାରଣ ବା ଯୁକ୍ତି ନାହିଁ । ଯଦି ଏହି ସମ୍ବନ୍ଧ ସହଜାତ, ସକାରଣ ବା ନିୟମିତ ହୋଇଥାନ୍ତା ତେବେ ସବୁ ଭାଷାରେ ନିର୍ଦ୍ଦିଷ୍ଟ ଭାବ ପାଇଁ ସମାନ ସମାନ ଶବ୍ଦର ସୃଷ୍ଟି ହୋଇଥାନ୍ତା । କିନ୍ତୁ ଭାଷା ଯାଦୃଚ୍ଛିକ ଧ୍ୱନିପ୍ରତୀକ (arbitrary vocal symbols) ହୋଇଥିବାରୁ ଗୋଟିଏ ବସ୍ତୁ, ଭାବ ବା ବସ୍ତୁର ପାଇଁ ବିଭିନ୍ନ ଶବ୍ଦର ସୃଷ୍ଟି ହୋଇଛି ।

(୫) ଭାଷାର ପ୍ରୟୋଗ ଏକ ବିଶେଷ ବର୍ଗ ବା ସମାଜରେ ହୋଇଥାଏ । ଉଦାହରଣ ସ୍ୱରୂପ ଓଡ଼ିଆ ଭାଷା ବୁଝି ପାରୁଥିବା ବ୍ୟକ୍ତି ବା ସମାଜରେ ହିଁ ଓଡ଼ିଆ ଭାଷାର ପ୍ରୟୋଗ ହୋଇଥାଏ ।

(୬) ଭାଷା ବକ୍ତାର ଚିନ୍ତାଧାରାକୁ ଶ୍ରୋତା ନିକଟରେ ପହଞ୍ଚାଇ ଦିଏ ଅର୍ଥାତ୍ ଏହା ଚିନ୍ତାଧାରା-ବିନିମୟର ଏକ ମାଧ୍ୟମ ବା ସାଧନ ।

ଏହି ମୌଳିକ ତତ୍ତ୍ୱଗୁଡ଼ିକୁ ଆଖି ଆଗରେ ରଖି ଭାଷାର ଏକ ସ୍ଥୂଳ ସଂଜ୍ଞା ପ୍ରଦାନ କରାଯାଇପାରେ—

ଭାଷା ମାନବର ଉଚ୍ଚାରଣକ୍ଷମ ଅବୟବମାନଙ୍କରୁ ଉଚ୍ଚାରିତ ଏବଂ ଚିନ୍ତା-ପ୍ରସୂତ ସୁନିର୍ଦ୍ଦିଷ୍ଟ ଅର୍ଥଯୁକ୍ତ ଅଥଚ ଯାଦୃଚ୍ଛିକ ଧ୍ୱନି-ପ୍ରତୀକ ସମୂହର ଏକ ବ୍ୟବସ୍ଥା, ଯାହାଦ୍ୱାରା କୌଣସି ଭାଷା-ସମାଜର ବ୍ୟକ୍ତିମାନେ ପରସ୍ପର ମଧ୍ୟରେ ନିଜ ନିଜର ଚିନ୍ତାଧାରାର ବିନିମୟ କରିପାରନ୍ତି ।

## ଭାଷା-ସଂଚରଣ ପ୍ରକ୍ରିୟା

ଅଭିବ୍ୟଞ୍ଜନାର ଓ ଉପଲବ୍ଧିର ସଫଳତା ଉପରେ ହିଁ ଭାଷାର ସାର୍ଥକତା ନିର୍ଭର କରେ । ଅଭିବ୍ୟଞ୍ଜନା ପ୍ରଦାନର ସାଧକ ଓ ଉପଲବ୍ଧି ଆଦାନର ସାଧକ, ଏକ ପକ୍ଷରେ ବକ୍ତା, ଅନ୍ୟ ପକ୍ଷରେ ଶ୍ରୋତା । ବକ୍ତାର ଅଭିବ୍ୟଞ୍ଜନା ନିର୍ଭର କରେ ଚିନ୍ତାଶକ୍ତି ବା ଚେତନା, ଭାଷାଚୟନ, ଶବ୍ଦଚୟନ, ରୂପରଚନା, ବାକ୍ୟରଚନା, ମାଧ୍ୟମଚୟନ ଓ ଧ୍ୱନି ଉଚ୍ଚାରଣ ଉପରେ ଏବଂ ଶ୍ରୋତାର ଉପଲବ୍ଧି ନିର୍ଭର କରେ ଧ୍ୱନି, ଶ୍ରବଣ, ବାକ୍ୟ ଗ୍ରହଣ, ବାକ୍ୟ ତଥା ରୂପ ବିଶ୍ଳେଷଣ, ଅର୍ଥ ଗ୍ରହଣ ଓ ଚିନ୍ତାଶକ୍ତି ବା ଚେତନା ଉପରେ । ଉକ୍ତ ପ୍ରକ୍ରିୟାକୁ ନିମ୍ନୋକ୍ତ ପ୍ରକାରେ ବୁଝାଇ ଦିଆଯାଇ ପାରେ—

ବକ୍ତା —ଚେତନା —ଭାଷାଚୟନ—ଶବ୍ଦଚୟନ—ରୂପରଚନା—ବାକ୍ୟ-ରଚନା— ମାଧ୍ୟମଚୟନ— ଧ୍ୱନିଉଚ୍ଚାରଣ—ଧ୍ୱନିସଂଚରଣ— ଧ୍ୱନିଶ୍ରବଣ— ଚେତନା —ଶ୍ରୋତା

ଏହି ପ୍ରକ୍ରିୟାକୁ ଏହିପରି ଭାବରେ ବିଶ୍ଳେଷଣ କରାଯାଇପାରେ :—

(୧) **ଚେତନା** – ଭାଷା ପ୍ରୟୋଗ କରିବା ପୂର୍ବରୁ ବକ୍ତାର ମନରେ ଏକ ଚେତନା (concept) ଜାଗ୍ରତ ହୁଏ । ଏହାର ଜାଗରଣ ବିନା ଭାଷାର ସୃଷ୍ଟି ଅସମ୍ଭବ । ଏହି ଚେତନାକୁ ବ୍ୟକ୍ତ କରିବା ପାଇଁ ବା ଶ୍ରୋତା ନିକଟରେ ପହଞ୍ଚାଇ ଦେବାପାଇଁ ବକ୍ତାର ବ୍ୟାକୁଳତା ପ୍ରକାଶ ପାଇଥାଏ ।

(୨) **ଭାଷାଚୟନ**—ପରିପ୍ରେକ୍ଷୀ, ଶ୍ରୋତା, ବିଷୟ ଆଦିକୁ ବିଚାର କରି ବକ୍ତା ଅନୁକୂଳ ଭାଷା ଚୟନ କରେ । ସେ ବହୁ ଭାଷା ଜାଣିଥିଲେ ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀ, ଶ୍ରୋତା ଓ ବିଷୟକୁ ଆଖି ଆଗରେ ରଖି ନିର୍ଦ୍ଦିଷ୍ଟ ଏକ ଭାଷା ବା ଏକାଧିକ ଭାଷା ପ୍ରୟୋଗ କରେ ।

(୩) **ଶବ୍ଦଚୟନ**—ବକ୍ତା ଅଭୀଷ୍ଟ ଭାଷାରୁ ଅଭିଳଷିତ ଚିନ୍ତାର ଅଭିବ୍ୟକ୍ତି ପାଇଁ ଅର୍ଥ ଆଦିକୁ ଲକ୍ଷ୍ୟ ରଖି ଉପଯୋଗୀ ଶବ୍ଦ ସଂକଳନ କରେ । ଉଦାହରଣ ସ୍ୱରୂପ ଶ୍ରୋତାକୁ ସେ 'ତୁ', 'ତୁମେ', 'ଆପଣ', 'ହଜୁର୍' ମଧ୍ୟରୁ କଅଣ କହିବ ନିର୍ବାଚନ କରିଥାଏ, ଅଥବା ଶ୍ରୋତୃମଣ୍ଡଳୀ ଶିକ୍ଷିତ ହୋଇଥିଲେ ସାଧୁଶବ୍ଦ ଓ ଜନସାଧାରଣ ହୋଇଥିଲେ ସୁବୋଧ ସରଳ ଶବ୍ଦ ପ୍ରୟୋଗ କରେ ।

(୪) **ରୂପ ରଚନା**—ଅଭୀଷ୍ଟ ଶବ୍ଦ ସଂକଳନ ପରେ ବାକ୍ୟରେ ବ୍ୟବହାର-ଉପଯୋଗୀ କରିବା ପାଇଁ ସେ ପୂର୍ବ-ପ୍ରତ୍ୟୟ, ପର-ପ୍ରତ୍ୟୟ ଆଦି ସଂଯୋଗ କରି ବା ଏହିପରି କୌଣସି ପଦ୍ଧତିର ସାହାଯ୍ୟ ନେଇ ଶବ୍ଦଗୁଡ଼ିକର ରୂପ ପରିବର୍ତ୍ତନ କରେ, ଅର୍ଥାତ୍ 'ପଦ' ରଚନା କରେ ।

(୫) **ବାକ୍ୟ ରଚନା**—ପଦ ରଚନା ପରେ ତାହାକୁ ବ୍ୟାକରଣ ନିୟମ ଅନୁଯାୟୀ ସଜାଇ ବକ୍ତା ବାକ୍ୟ ରଚନା କରେ । ପରିସ୍ଥିତି ଅନୁଯାୟୀ ପୂର୍ଣ୍ଣ ବାକ୍ୟ ବା ଆଂଶିକ ବାକ୍ୟଦ୍ୱାରା ଭାବ ପ୍ରକାଶ କରିବାକୁ ସ୍ଥିର କରେ । ଉଦାହରଣ ସ୍ୱରୂପ —

ଶାଶ୍ୱତୀ—ଶୁଭଶ୍ରୀ ! ତୁ କାଲି ସନ୍ଧ୍ୟାରେ କୁଆଡ଼େ ଯାଇଥିଲୁ ?

ଶୁଭଶ୍ରୀ – ମନ୍ଦିରକୁ ।

ଏଠାରେ ଶୁଭଶ୍ରୀ କହି ପାରିଥାନ୍ତା, 'ମୁଁ କାଲି ସନ୍ଧ୍ୟାରେ ମନ୍ଦିରକୁ ଯାଇଥିଲି ।' କିନ୍ତୁ ସେ 'ମନ୍ଦିରକୁ' ଏହି ଶବ୍ଦଟି ପ୍ରୟୋଗ କରି ଉପଯୁକ୍ତ ବାକ୍ୟର ଭାବଧାରା ବ୍ୟକ୍ତ କରି ପାରିଲା । ତେଣୁ ଏଠାରେ 'ମନ୍ଦିରକୁ' ଗୋଟିଏ ଶବ୍ଦ ବା ପଦ ନୁହେଁ, ଗୋଟିଏ ବାକ୍ୟ ।

## ଭାଷାର ପ୍ରକୃତି ଓ ପ୍ରବୃତ୍ତି

(୧) ଭାଷା ପୈତୃକ ସମ୍ପତ୍ତି ନୁହେଁ—ପୁତ୍ର ପିତାର ଅନ୍ୟାନ୍ୟ ପାର୍ଥିବ ସମ୍ପତ୍ତି ପରି ପିତାର ଭାଷାକୁ ଅନାୟାସରେ ପ୍ରାପ୍ତ ହୁଏ ନାହିଁ । ଏକ ଓଡ଼ିଆ ବାଳକକୁ ଯଦି ଶୈଶବ ଅବସ୍ଥାରେ ଇଂଲଣ୍ଡକୁ ପଠାଇ ଦିଆଯାଏ ଓ ସେହି ଶିଶୁଟି ଯଦି ତା'ର ସମଗ୍ର ଜୀବନ ସେଠାରେ ସାମାଜିକ ପରିପ୍ରେକ୍ଷୀରେ କଟାଏ, ତେବେ ସେ ଓଡ଼ିଆ ନ କହି ଇଂରାଜୀ ଭାଷା ହିଁ କହିବ ।

(୨) ଭାଷା ଏକ ଅର୍ଜିତ ସଂପତ୍ତି—ଭାଷା ବାତାବରଣରୁ ଅର୍ଜନ କରାଯାଏ । ଏହି ବାତାବରଣ ଯୋଗୁ ଭାରତବର୍ଷରେ ଜନ୍ମଗ୍ରହଣ କରିଥିବା ଏକ ଶିଶୁ ଭାରତୀୟ ଭାଷା ନ କହି ଅନ୍ୟ ଭାଷା କହିପାରେ । ଉଦାହରଣ ସ୍ୱରୂପ ଯଦି କୌଣସି ଶିଶୁ ଭାରତବର୍ଷ ମଧ୍ୟରେ ଅବସ୍ଥିତ କୌଣସି ଏକ ଫରାସୀ-ଭାଷୀ ବସତିରେ ବାସକରେ ଏବଂ ତାର ଜୀବନ-ଯାପନ, ଜୀବିକା-ନିର୍ବାହ ସେହି ବସତି ଉପରେ ହିଁ ନିର୍ଭର କରେ, ତେବେ ସେ ଭାରତୀୟ ଭାଷା ନ କହି ଫରାସୀ ଭାଷା କହିବ ।

(୩) ଭାଷା ଅତ୍ୟନ୍ତ ଏକ ସାମାଜିକ ବସ୍ତୁ—ମଣିଷ ସମାଜରେ ବଢ଼େ ଓ ସମାଜରୁ ଭାଷା ଅର୍ଜନ କରେ । ଭାଷାର ସୃଷ୍ଟି, ବିକାଶ ଓ ପ୍ରୟୋଗ ମଧ୍ୟ ସମାଜରେ ସମ୍ପାଦିତ ହୋଇଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ଭାଷା ସମାଜରେ ଯଦି ଅନ୍ୟ-ଭାଷୀ ବ୍ୟକ୍ତିର ଭାଷା ବୋଧଗମ୍ୟ ନୁହେଁ, ତେବେ ଅନ୍ୟ-ଭାଷୀ ସେହି ନିର୍ଦ୍ଦିଷ୍ଟ ସମାଜର ନିର୍ଦ୍ଦିଷ୍ଟ ଭାଷା କହିବାକୁ ବାଧ୍ୟ ହୁଏ ଓ ଫଳରେ ସେ ସେହି ଭାଷା-ଭାଷୀମାନଙ୍କର ଅନ୍ତର୍ଭୁକ୍ତ ହୁଏ ।

(୪) ଭାଷା ପରଂପରାଗତ ; ଏହାର ସ୍ରଷ୍ଟା ବ୍ୟକ୍ତି ନୁହେଁ, ସମାଜ—ଭାଷା ପରଂପରାକ୍ରମେ ପ୍ରଚଳିତ ହୋଇଥାଏ । ବ୍ୟକ୍ତି ପରମ୍ପରା ଓ ସମାଜରୁ ଏହା ଅର୍ଜନ କରେ । ବ୍ୟକ୍ତି ଏଥିରେ କେତେକ ପରିବର୍ତ୍ତନ ଆଣିପାରେ; କିନ୍ତୁ ଏକକ ଭାବରେ ଏହାର ଜନକ ହୋଇପାରେନା । ସମାଜ ଓ ପରମ୍ପରା ହିଁ ଏହାର ଜନକ ହୋଇପାରେ ।

(୫) ଅନୁକରଣ ଦ୍ୱାରା ଅର୍ଜନ—ଭାଷାର ଅର୍ଜନ ସମ୍ଭବ ହୁଏ ମୁଖ୍ୟତଃ ଅନୁକରଣ ଦ୍ୱାରା । ଭାଷା ଏତେ ବ୍ୟାପକ ଯେ ତାହାକୁ ଶିଖାଇବା ବା ଶିଖିବା ମଣିଷ ପକ୍ଷରେ ଏକ ସୀମିତ ପରିସର ମଧ୍ୟରେ ସମ୍ଭବ ନୁହେଁ । ଏକ ଶିଶୁକୁ ତାର ପରିବାରର ବ୍ୟକ୍ତିମାନେ ଭାଷାକୁ ଯେତିକି ନ ଶିଖାନ୍ତି ଶିଶୁ ତାଠାରୁ ଅଧିକ ଅନୁକରଣ କରିଥାଏ । ଶିଶୁ ସମକ୍ଷରେ ମା 'ଭାତ' ଶବ୍ଦ ଉଚ୍ଚାରଣ କରେ, ଶିଶୁ ଧୀରେ ଧୀରେ

ତାହାକୁ ଅନୁକରଣ କରି କହିବାର ପ୍ରୟାସ କରେ ଓ ଶେଷରେ କହିବାକୁ ସମର୍ଥ ହୁଏ । ପ୍ରସିଦ୍ଧ ୟୁନାନୀ ଦାର୍ଶନିକ ଆରିଷ୍ଟଟଲଙ୍କ ମତରେ, ଅନୁକରଣ ମଣିଷର ସବୁଠାରୁ ବଡ଼ ବିଶେଷତ୍ୱ । ଭାଷା ଶିଖିବାରେ ସେ ଏହି ଗୁଣର ଉପଯୋଗ କରେ । ଅତଏବ ଭାଷାର ସାବଲୀଳ ସ୍ୱଚ୍ଛନ୍ଦ ବିକାଶ ଏକ କ୍ରମାନୁଗତ ପ୍ରାବୃତ୍ତିକ ଅନୁକରଣ ଦ୍ୱାରା ସମ୍ଭବ ହୁଏ ।

(୬) ଭାଷା ଚିରପରିବର୍ତ୍ତନଶୀଳ—ଯେପରି ନଦୀ ଅଜସ୍ର ସ୍ରୋତସ୍ୱିନୀ ହେଲେ ହେଁ ଗତି ପରିବର୍ତ୍ତନ ତା' ଜୀବନର ଏକ ଅପରିହାର୍ଯ୍ୟ ସ୍ୱାଭାବିକତା, ଭାଷା ସେହିପରି ଏକ ନିରବଚ୍ଛିନ୍ନ ବ୍ୟାପାର ହେଲେହେଁ ତହିଁରେ ନୂତନ ନୂତନ ପରିବର୍ତ୍ତନ ଅବଶ୍ୟ ଲକ୍ଷଣୀୟ । ଭାଷା ଅନୁକରଣ ଉପରେ ଆଧାରିତ ହୋଇଥିବାରୁ ଓ ଅନୁକରଣ କ୍ଷମତା ବ୍ୟକ୍ତି ଭେଦରେ ବିଭିନ୍ନ ହୋଇଥିବାରୁ ଭାଷାର ରୂପରେ ଭେଦ ଦେଖାଦେବା ସ୍ୱାଭାବିକ ।

(୭) ଭାଷାର ଅନ୍ତିମ ପରିଣତି ନାହିଁ—ଭାଷାର ଏକ ନିର୍ଦ୍ଦିଷ୍ଟ ସୈଦ୍ଧାନ୍ତିକ ଓ ଚୂଡ଼ାନ୍ତ ସ୍ୱରୂପ ରହି ନ ପାରେ । ଭାଷା ସର୍ବଦା ପରିବର୍ତ୍ତନଶୀଳ ଓ ଅଧିକାଂଶ କ୍ଷେତ୍ରରେ ବିକାଶଶୀଳ । ଏହା କୌଣସି ଅବସ୍ଥାରେ ପରିପୂର୍ଣ୍ଣ ନୁହେଁ । ଏହି ପରିବର୍ତ୍ତନ ଓ ବିକାଶରୁ ଭାଷାର ରୂପ-ରୂପାନ୍ତର ପରିଲକ୍ଷିତ ହୁଏ, ଯେପରି ସଂସ୍କୃତ ଭାଷାରୁ ପାଲି, ପ୍ରାକୃତ, ଅପଭ୍ରଂଶ ଓ ଆଧୁନିକ ଭାରତୀୟ ଭାଷାମାନଙ୍କର ରୂପରୂପାନ୍ତର ସମ୍ଭବ ହୋଇଛି । ଭାଷାର ପରିଣତି ଯେଉଁଠି ଚୂଡ଼ାନ୍ତ ହୋଇଯାଏ, ସେଇଠି ଭାଷାର ମୃତ୍ୟୁ ଘଟେ । ଜୀବନ୍ତ ଭାଷାରେ ସର୍ବଦା କିଛି ନା କିଛି ନୂଆ ରୂପ ଦେଖାଦିଏ । ପରିବର୍ତ୍ତନ ଓ ଅସ୍ଥିରତା ଭାଷାର ଜୀବନ-ଦ୍ୟୋତକ ।

(୮) ଭୌଗୋଳିକ ସୀମା—ପ୍ରତ୍ୟେକ ଭାଷାର ଏକ ସ୍ୱକୀୟ ଭୌଗୋଳିକ ସୀମା ରହିଛି । ଏହି ସୀମା ଭିତର କ୍ଷେତ୍ର ହିଁ ଏହି ଭାଷାର ବାସ୍ତବ କ୍ଷେତ୍ର । ଏହି ସୀମାର ବାହାରେ ଏହି ଭାଷାର ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ଅଥଚ ପୂର୍ଣ୍ଣତଃ ଏକ ନୂତନ ଭାଷାର ସୀମା ଆରମ୍ଭ ହୋଇଯାଏ ।

(୯) ଐତିହାସିକ ସୀମା—କୌଣସି ନିର୍ଦ୍ଦିଷ୍ଟ କାଳରୁ ପ୍ରାରମ୍ଭ ହୋଇ ଇତିହାସର କୌଣସି ନିର୍ଦ୍ଦିଷ୍ଟ କାଳପର୍ଯ୍ୟନ୍ତ ବ୍ୟବହୃତ ହୋଇଥିବା ଭାଷା ତାର ପୂର୍ବବର୍ତ୍ତୀ ଅଥବା ପରବର୍ତ୍ତୀ ଭାଷାଠାରୁ ଭିନ୍ନ ହୋଇଥାଏ । ଉଦାହରଣ ସ୍ୱରୂପ ମୋଟାମୋଟି ଭାଷାରେ ପ୍ରାକୃତ ଭାଷାର ଐତିହାସିକ ସୀମା ହେଉଛି ୧ମ ଶତାବ୍ଦୀ-ଠାରୁ ୫ମ ଶତାବ୍ଦୀ । ଏହାର ପୂର୍ବବର୍ତ୍ତୀ ଭାଷା ପାଲି ଓ ପରବର୍ତ୍ତୀ ଭାଷା ଅପଭ୍ରଂଶ । ପ୍ରାକୃତ ଏହି ଦୁଇ ଭାଷାଠାରୁ ଭିନ୍ନ ।

(୧୦) ଗଠନ ପ୍ରଣାଳୀର ସ୍ୱାତନ୍ତ୍ର୍ୟ – ଦୁଇଟି ଭାଷାର ଧ୍ୱନି, ଶବ୍ଦ ରୂପ, ବାକ୍ୟ, ଅର୍ଥ ଆଦିରେ କୌଣସି ନା କୌଣସି ପାର୍ଥକ୍ୟ ରହିବ । ଏହି ପାର୍ଥକ୍ୟ ହିଁ ସ୍ୱତନ୍ତ୍ର ଭାଷାର ସତ୍ତା ସମ୍ପର୍କରେ ପରିଚାୟକ ହୁଏ ।

(୧୧) କଠିନତାରୁ ସରଳତା ଆଡ଼କୁ ଗତି—ଅଳ୍ପ ପ୍ରୟାସରେ ଅନେକ ଲାଭ ଉଠାଇବା ପ୍ରତ୍ୟେକ ମନୁଷ୍ୟର ଏକ ସ୍ୱାଭାବିକ ପ୍ରବୃତ୍ତି । ଏହି ପ୍ରୟାସରୁ ଭାଷା କଠିନତାରୁ ସରଳତା ଆଡ଼କୁ ଗତି କରେ । ଏହି ପଦ୍ଧତିରେ ଉପାଧ୍ୟାୟ 'ଓଝାରେ', ପୂର୍ଣ୍ଣଚନ୍ଦ୍ର 'ପୁନିଆଁ'ରେ, ଖଗେନ୍ଦ୍ର 'ଖଗେନ୍'ରେ ପରିଣତ ହୁଏ ।

(୧୨) ସ୍ଥୂଳତାରୁ ସୂକ୍ଷ୍ମତା ଆଡ଼କୁ ଗତି—ଭାଷା ବ୍ୟବହାରରେ ଯେତିକି ଯେତିକି ପ୍ରୌଢ଼ ହୁଏ, ବସ୍ତୁବିଧାନକୁ ଗଭୀର ଭାବରେ ବ୍ୟକ୍ତ କରିବାଲାଗି ସେତିକି ସ୍ଥୂଳରୁ ସୂକ୍ଷ୍ମ ହୁଏ । ଶତାବ୍ଦୀପୂର୍ବର ଭାଷା ତୁଳନାରେ ଆଜିର ଓଡ଼ିଆ ଭାଷାକୁ ସୂକ୍ଷ୍ମ କୁହାଯାଇପାରେ ; କିନ୍ତୁ ସଂସ୍କୃତ ତୁଳନାରେ ଏହାକୁ ସୂକ୍ଷ୍ମ କୁହାଯାଇ ନ ପାରେ, କାରଣ ହଜାର ହଜାର ବର୍ଷ ଧରି ବ୍ୟବହାର ଫଳରେ ସଂସ୍କୃତ ଭାଷା ହଜାର ବର୍ଷ ତଳେ ଯାହା ଥିଲା, ପ୍ରାୟ ହଜାର ବର୍ଷ ତଳୁ ବ୍ୟବହୃତ ହୋଇ ଆସୁଥିବା ଓଡ଼ିଆ ଭାଷା ଏବେ ବି ସେହିପରି ହେବା ସମ୍ଭବ ହୋଇ ନାହିଁ ।

(୧୩) ସଂଯୋଗାବସ୍ଥାରୁ ବିଯୋଗାବସ୍ଥା ଆଡ଼କୁ ଗତି—ପ୍ରଥମେ ଭାଷାବିତ୍ମାନେ ମନେ କରୁଥିଲେ ଭାଷା ବିଯୋଗାବସ୍ଥା (ବିଶ୍ଳେଷିତ ରୂପ)ରୁ ସଂଯୋଗାବସ୍ଥା (ସଂଶ୍ଳେଷିତ ରୂପ)କୁ ଗତି କରୁଛି । କାହାର କାହାର ମତରେ ଭାଷାରେ ଦ୍ୱିବିଧ ଅବସ୍ଥା ପ୍ରଚଳିତ ଥାଏ । କିନ୍ତୁ ଆଧୁନିକ ଭାଷାବିତ୍ମାନେ ଏହାକୁ ଭ୍ରମାତ୍ମକ ବୋଲି ପ୍ରମାଣ କରୁଛନ୍ତି, ଭାଷା ସଂଯୋଗାବସ୍ଥାକୁ ଗତି କରୁଛି । ଉଦାହରଣ ସ୍ୱରୂପ ସଂସ୍କୃତରେ 'ରାମ ଗଚ୍ଛତି' ହୁଏ । 'ଗଚ୍ଛତି' ସଂଯୁକ୍ତ ରୂପ । କିନ୍ତୁ ତାର ସମପରିଚ୍ଛେଦ ହିନ୍ଦୀ ଭାଷାରେ ହୁଏ, 'ରାମ ଜାତା ହୈ' । 'ଜାତା ହୈ' ବିଯୁକ୍ତ ରୂପ ।

(୧୪) ପ୍ରାମାଣିକ ରୂପ – ପ୍ରତ୍ୟେକ ଭାଷାର ସ୍ପଷ୍ଟ ହେଉ ଅସ୍ପଷ୍ଟ ହେଉ ଏକ ପ୍ରାମାଣିକ (standard) ରୂପ ଥାଏ । ଓଡ଼ିଶାର, ଗଞ୍ଜାମ, କୋରାପୁଟ, ବାଲେଶ୍ୱର, ମୟୂରଭଞ୍ଜ, ସମ୍ବଲପୁର, ବଲାଙ୍ଗୀର, ଢେଙ୍କାନାଳ, କଟକ, ପୁରୀ ଅଞ୍ଚଳରେ କଥିତ ଓଡ଼ିଆ ଭାଷାରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ତେବେ କଟକ, ପୁରୀ ଅଞ୍ଚଳର କଥିତ ଓଡ଼ିଆ ଭାଷାକୁ ସ୍ଥୂଳତଃ ପ୍ରାମାଣିକ ଓଡ଼ିଆ ଭାଷାରୂପେ ଗ୍ରହଣ କରାଯାଇ ଅନ୍ୟ ଅଞ୍ଚଳର କଥିତ ଭାଷାକୁ ଉପଭାଷା ସ୍ୱୀକୃତି ଦିଆଯାଏ ।

(୧୫) **ଭାଷା କେବଳ ଚିନ୍ତାର ଅଭିବ୍ୟକ୍ତିର ନୁହେଁ, ଚିନ୍ତାର କରିବାର ମଧ୍ୟ ସାଧନ**—ଯଦି ବୈଜ୍ଞାନିକ ଦୃଷ୍ଟିରୁ ଦେଖାଯାଏ, ତେବେ ଭାଷା ମନୁଷ୍ୟର ଚିନ୍ତାର ବିନିମୟର ସାଧନ କେବଳ ନୁହେଁ, ଚିନ୍ତନର ମଧ୍ୟ ସାଧନ ହୋଇପାରେ । ଉଦାହରଣସ୍ୱରୂପ ମନୁଷ୍ୟ ଅନେକ ସମୟରେ ଭାବାବେଶରେ ତାର ଚିନ୍ତାଧାରାକୁ ସ୍ୱଗତଃ ଶବ୍ଦ ସାହାଯ୍ୟରେ ବ୍ୟକ୍ତ କରେ । ଅନ୍ୟ କେହି ଗ୍ରହଣ କରୁ କି ନ କରୁ ସେ ନିଜେ ହିଁ ତାର ନେପଥ୍ୟ ଶ୍ରୋତା ବା ଗ୍ରହୀତା । ଏ କ୍ଷେତ୍ରରେ ଭାଷା ଭାଷାର ସଂଜ୍ଞାକୁ ଗ୍ରହଣ କରୁ ନ ଥିଲେ ମଧ୍ୟ ଭାଷାର ଅନ୍ତର୍ଭୁକ୍ତ ହୋଇପାରିବ ।

## ଭାଷାର ବିଭିନ୍ନ ରୂପ

ସାଧାରଣ ଭାବରେ ଭାଷାର ସଂଜ୍ଞା ଓ ଲକ୍ଷଣ ଆଲୋଚିତ ହେଲା । ତେବେ ଭାଷାର ଏକ ବା ଅନ୍ୟାନ୍ୟ ରୂପ ପରିବର୍ତ୍ତି କାଳକ୍ରମେ ଦେଖାଦେଇଛି ଅନେକ ରୂପ । ରୂପର ଏ ବିବିଧତା ମୁଖ୍ୟତଃ ଚାରୋଟି ଆଧାର ଉପରେ ଆଧାରିତ, ଯଥା—ଇତିହାସ, ଭୂଗୋଳ, ପ୍ରୟୋଗ ଓ ନିର୍ମିତି । ଭାରତରେ ଏକଦା ସଂସ୍କୃତ ଥିଲା କଥିତ ଭାଷା, ପରବର୍ତ୍ତୀ କାଳରେ କଥିତ ଭାଷା ହେଲା ପାଲି, ପରେ ପ୍ରାକୃତ ଓ ଅହୁଗ ପରେ ଅପଭ୍ରଂଶ, ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାସମୂହ । ଏସବୁ ହେଲା ଐତିହାସିକ ରୂପ । 'ଆଧୁନିକ ଭାରତୀୟ ଆର୍ଯ୍ୟଭାଷା'—ଏହି ଐତିହାସିକ ରୂପରେ କ୍ରମେ ସୃଷ୍ଟି ଲାଭ କରିଛି । ଏହାର ବିଭିନ୍ନ ଭୌଗୋଳିକ ରୂପ—ପଞ୍ଜାବୀ, ହିନ୍ଦୀ, ଗୁଜୁରାଟୀ, ମରାଠୀ, ବଙ୍ଗାଳୀ, ଓଡ଼ିଆ, ଆସାମୀ ଇତ୍ୟାଦି । ତୃତୀୟ ଆଧାର ହେଉଛି ପ୍ରୟୋଗ । କିଏ ପ୍ରୟୋଗ କରେ, କେଉଁ ବିଷୟକୁ ନେଇ ପ୍ରୟୋଗ କରାଯାଏ, ପ୍ରୟୋଗ ସାଧୁ ନା ଅସାଧୁ ଇତ୍ୟାଦିକୁ କେନ୍ଦ୍ରକରି ଗଢ଼ି ଉଠିଥାଏ ଜାତୀୟ ଭାଷା, ବ୍ୟବସାୟିକ ଭାଷା, ରାଜଭାଷା, ରାଷ୍ଟ୍ରଭାଷା, ସାହିତ୍ୟିକ ଭାଷା, ଗୁପ୍ତଭାଷା, ପ୍ରାମାଣିକ ଭାଷା, ଅପଭାଷା, ସାଧୁଭାଷା, ଅସାଧୁଭାଷା, ବିକୃତ ଭାଷା, ମୃତଭାଷା, ଜୀବିତ ଭାଷା, ପ୍ରଚଳିତ ଭାଷା, ଅପ୍ରଚଳିତ ଭାଷା, ଅଳ୍ପପ୍ରଚଳିତ ଭାଷା ଇତ୍ୟାଦି । ଚତୁର୍ଥ ଆଧାର ହେଉଛି ନିର୍ମିତି । ଯଦି ସମାଜ ହେଉଛି ଭାଷାର ନିର୍ମିତା ତେବେ ଏହା ପରମ୍ପରାଗତ ରୂପରେ ପ୍ରଚଳିତ ହୋଇଥାଏ ଓ ଜଣେ-ଦି'ଜଣ ବ୍ୟକ୍ତି ଏହାର ନିର୍ମିତା ହେଲେ ଏହା କୃତ୍ରିମ ରୂପ ଗ୍ରହଣ କରି 'କୃତ୍ରିମ ଭାଷା' ଭାବରେ ଅବହିତ ହୁଏ । ପୁଣି ନିର୍ମିତାର ଶିକ୍ଷାଦୀକ୍ଷା, ରୁଚି-ପ୍ରୀତି ଅନୁଯାୟୀ ଭାଷାର ରୂପ ବିବିଧ ହୋଇଥାଏ । ଦୃଷ୍ଟାନ୍ତସ୍ୱରୂପ ଓଡ଼ିଆ ଭାଷାର ଶବ୍ଦକୁ ନେଇ ସାହିତ୍ୟ ରଚନା କରିଥିଲେହେଁ ଏକ ସମୟର ସାହିତ୍ୟିକ ରାଧାନାଥ, ଗଙ୍ଗାଧର, ମଧୁସୂଦନ, ଫକୀରମୋହନ ଓ ନନ୍ଦକିଶୋରଙ୍କ ଭାଷା ମଧ୍ୟରେ ଭିନ୍ନ ଭିନ୍ନ ରୂପ ଅନୁଭବେଦ୍ୟ ।

ଶ୍ଳୀଳତା, ମିଶ୍ରଣ, ବୋଧଗମ୍ୟତା, ଗ୍ରହଣ, ସଂସ୍କୃତ ଆଦି ଦୃଷ୍ଟିରୁ ଭାଷାର ଶହ ଶହ ରୂପ ଦେଖାଇ ଦିଆଯାଇପାରେ; କିନ୍ତୁ ଏଠାରେ କେତୋଟି ମୁଖ୍ୟ ରୂପ ସମ୍ପର୍କରେ ଆଲୋଚନା କରାଯାଉଛି ।

(୧) ମୂଳ ଭାଷା—ଯେଉଁ ବୃହତ୍ ଭାଷାରୁ ବହୁ ଶାଖା ଭାଷାର ସୃଷ୍ଟି ହୋଇଥାଏ ତାହାକୁ ମୂଳ ଭାଷା କୁହାଯାଏ । ଏହି ରୂପ ଇତିହାସ ଆଧାରିତ । ଉଦାହରଣ ସ୍ୱରୂପ ଇଉରୋପୀୟ (Indo-European) ଭାଷାକୁ ଗ୍ରହଣ କରାଯାଇ ପାରେ । ଭାଷାର ପାରିବାରିକ ବର୍ଗୀକରଣବେଳେ ଏପରି ଭାଷାକୁ ଏକ 'ଭାଷା ପରିବାର'ର ମୂଳ ଭାଷା ରୂପେ ବିଚାର କରାଯାଏ । ମୂଳ ସ୍ଥାନରେ କିଛି କାଳ ରହିବା ପରେ ଜନସଂଖ୍ୟା ବୃଦ୍ଧି ହେତୁ ଏହି ଭାଷା-ଭାଷୀମାନଙ୍କ ମଧ୍ୟରୁ କେତେଜଣ ମୂଳ ସ୍ଥାନରେ ରହିଯାନ୍ତି ଓ ଅନ୍ୟମାନେ ବିଭିନ୍ନ ଦିଗକୁ ଖାଦ୍ୟ-ବାସସ୍ଥାନ ସନ୍ଧାନ ଲକ୍ଷ୍ୟରେ ବିକ୍ଷିପ୍ତ ହୋଇଯାନ୍ତି । ନୂତନ ଜିଦେଶର ନୂତନ ଭୌଗୋଳିକ ବାତାବରଣ ଜୀବନଯାପନରେ ବହୁ ପରିବର୍ତ୍ତନ ଆଣେ ଓ ଶରୀର ଉପରେ ମଧ୍ୟ ପ୍ରଭାବ ବିସ୍ତାର କରେ, ଫଳରେ ମୂଳ ଭାଷାରେ ବହୁ ପରିବର୍ତ୍ତନ ଦେଖାଦିଏ ଓ ଏହି ପରିବର୍ତ୍ତିତ ଭାଷା ପୁଣି ଭାଷାଭାଷୀଙ୍କର ସ୍ଥାନାନ୍ତର ଯୋଗୁ ବହୁ ଶାଖାପ୍ରଶାଖାରେ ବିଭକ୍ତ ହୋଇ ପରିବର୍ତ୍ତିତ ରୂପ ଧାରଣ କରେ । ଏହିଭଳି ଭାବରେ ଇଉରୋପୀୟ ମୂଳ ଭାଷା ଅନେକୋଟି ମୁଖ୍ୟ ଶାଖା (ଗ୍ରୀକ୍, ଭାରତ-ଇରାନ, ଲାଟିନ)ରେ ଭାରତ-ଇରାନୀ ଶାଖା 'ଭାରତୀୟ ଆର୍ଯ୍ୟଭାଷା' ପ୍ରଶାଖା ଓ ଏହି ପ୍ରଶାଖା ପାଲି, ପ୍ରାକୃତ, ଅପଭ୍ରଂଶ ଆଦି କ୍ଷୁଦ୍ର ପ୍ରଶାଖାରେ ପରିଣତ ହୋଇଅଛି ।

(୨) ଉପଭାଷା ବା ବିଭାଷା (Dialect)—କୌଣସି ଭାଷାସମ୍ପ୍ରଦାୟର ଅନ୍ତର୍ଗତ ଗ୍ରେଷ୍ଠ ଗ୍ରେଷ୍ଠ ଦଳ ବା ଅଞ୍ଚଳ ବିଶେଷରେ ପ୍ରଚଳିତ ଭାଷା ରୂପର ନାମ ଉପଭାଷା ବା ବିଭାଷା । ଇଂରେଜ ଡାଇଲେକ୍ଟ (Dialect)ର ପ୍ରତିଶବ୍ଦ ରୂପେ ଡକ୍ଟର ସୁକୁମାର ସେନ 'ଉପଭାଷା', ଡକ୍ଟର ଶ୍ୟାମସୁନ୍ଦର ଦାସ 'ବିଭାଷା' ଓ ଡକ୍ଟର ଭୋଳାନାଥ ତିଓ୍ୱାରି 'ବୋଲି' ଶବ୍ଦକୁ ଗ୍ରହଣ କରିଛନ୍ତି । ଡକ୍ଟର ଭୋଳାନାଥ ତିଓ୍ୱାରି 'ବୋଲି'ର ସ୍ୱରୂପ ନିରୂପଣ କରିବାକୁ ଯାଇ ଲେଖିଛନ୍ତି—"ବୋଲି କୌଣସି ଭାଷାର ଏକ ସୀମିତ କ୍ଷେତ୍ରୀୟ ରୂପ ଯାହା ରୂପ ବାକ୍ୟଗଠନ, ଅର୍ଥ, ଶବ୍ଦସମୂହ ତଥା ଅପ୍ରବାକ୍ୟ ଦୃଷ୍ଟିରୁ ସେହି ଭାଷାର ପ୍ରାମାଣିକ ତଥା ଅନ୍ୟ କ୍ଷେତ୍ରୀୟ ରୂପମାନଙ୍କଠାରୁ କେତେକ ପରିମାଣରେ ଭିନ୍ନ । କିନ୍ତୁ ଏତେ ପରିମାଣରେ ଭିନ୍ନ ନୁହେଁ ଯାହା ଫଳରେ ପ୍ରାମାଣିକ ଭାଷା-ଭାଷୀ ବା ଅନ୍ୟ କ୍ଷେତ୍ରୀୟ ଭାଷାଭାଷୀ ବ୍ୟକ୍ତିମାନଙ୍କ ନିକଟରେ ଏହା ଅବୋଧ ହୋଇଉଠିବ ।" କିନ୍ତୁ ଏ କ୍ଷେତ୍ରରେ 'ବୋଲି' ଅପେକ୍ଷା 'ଉପଭାଷା ବା ବିଭାଷା' ଶବ୍ଦ ଅଧିକ ଗ୍ରହଣୀୟ । ଉପଭାଷା ବା ବିଭାଷା ମୁଖ୍ୟ

ଭାଷା ବା ପ୍ରାମାଣିକ ଭାଷାର ଭୌଗୋଳିକ-କାରଣ-ଅଧୀନସ୍ଥ ରୂପ । ଉଦାହରଣ ସ୍ୱରୂପ ପ୍ରାମାଣିକ ହିନ୍ଦୀ ଭାଷାର କେତୋଟି ଉପଭାଷାରୁ ଗୋଟିଏ କ୍ରିୟାର ବିଭିନ୍ନ ରୂପକୁ ବିଚାର କରାଯାଇପାରେ—

ଖଡ଼ୀ ବୋଲି—ଜାତା ହୁଁ
ବ୍ରଜଭାଷା – ଜାତ ହୌଁ
ଭୋଜପୁରୀ—ଜାତ ହଇଁ
ମଗହୀ—ଜା ହୀ

ସ୍ଥାନ ଭେଦରେ ଗୋଟିଏ କ୍ରିୟା ବିଭିନ୍ନ ରୂପ ଧାରଣ କରି ନେଇଛି । କିନ୍ତୁ ଏ ରୂପ ଏତେ ଭିନ୍ନ ନୁହେଁ ଯାହା ଫଳରେ ପରସ୍ପର ବୁଝିପାରିବେ ନାହିଁ । ବୋଧଗମ୍ୟତା ରଖୁଥିବା ଭାଷାର ଏହି ସ୍ଥାନଗତ ଭେଦ ହେଉଛି ଉପଭାଷା । ଭେଦ ଯେତେବେଳେ ଏତେ ଅଧିକ ହୋଇଯିବ ଯେ ବୁଝିହେବ ନାହିଁ ଅଥବା ଏ ଭାଷା ସହିତ କୌଣସି ସମ୍ପର୍କ ରହିବ ନାହିଁ, ସେତେବେଳେ ଏହା ଅନ୍ୟ ଭାଷାର ରୂପ ବୋଲି ଜାଣିବାକୁ ହେବ, ଯେପରି 'ଜାତା ହୁ' ବଦଳରେ ଯଦି (I) go ବା (ମୁଁ) ଯାଏ କୁହାଯାଏ, ସେତେବେଳେ ଏହା ହିନ୍ଦୀ ଭାଷାର ଏକ ଭେଦ ନ ହୋଇ ଅନ୍ୟ ଭାଷାର ଏକ ରୂପ ବୋଲି ଜଣାଯାଏ । ତେଣୁ ଭାଷା ବିଭାଷା ମଧ୍ୟରେ ସମ୍ପର୍କର ଆଧାର ହେଲା ବୋଧଗମ୍ୟତା ।

ଉପଭାଷାକୁ 'ଆଞ୍ଚଳିକ ଭାଷା' ଭାବରେ ମଧ୍ୟ ଅଭିହିତ କରାଯାଇପାରେ, କାରଣ ଭୌଗୋଳିକ ବାତାବରଣ ଭିନ୍ନତା ବା ଅଞ୍ଚଳର ଭିନ୍ନତା ହେଉଛି ଉପଭାଷା ସୃଷ୍ଟିର ଅନ୍ୟତମ କାରଣ । ଡକ୍ଟର ଶ୍ୟାମସୁନ୍ଦର ଦାସଙ୍କ ଭାଷାରେ—"ଏକ ପ୍ରାନ୍ତ ବା ଉପପ୍ରାନ୍ତର କଥିତ ତଥା ସାହିତ୍ୟିକ ରଚନାର ଭାଷାକୁ ବିଭାଷା କୁହାଯାଏ ।" ଏହା ଏକ ସୀମିତ କ୍ଷେତ୍ରର ଭାଷା । ଏହି ସୀମିତ କ୍ଷେତ୍ର ପ୍ରାନ୍ତ ହୋଇପାରେ ବା ଉପପ୍ରାନ୍ତ (ଅଞ୍ଚଳ) ହୋଇପାରେ । ଏହି ଦୃଷ୍ଟିରୁ ସମ୍ବଲପୁରୀ, ଗଞ୍ଜାମ ବା ବାଲେଶ୍ୱରୀ ଆଦି ଆଞ୍ଚଳିକ ଭାଷାକୁ ପ୍ରାମାଣିକ ଓଡ଼ିଆ ଭାଷାର ଉପଭାଷା କୁହାଯାଇପାରେ ।

ଉପଭାଷାର ଅନ୍ୟତମ ବିଶେଷତ୍ୱ ହେଲା, ଏହି ଭାଷା ବ୍ୟବହାର କରୁଥିବା ବ୍ୟକ୍ତିମାନଙ୍କର ଉଚ୍ଚାରଣ ପଦ୍ଧତି ପ୍ରାୟ ସମାନ । ଏଥିରେ ରୂପ-ରଚନା ବାକ୍ୟ-ରଚନା, ଶବ୍ଦମାଳା ତଥା ଅର୍ଥ ସମ୍ବନ୍ଧୀୟ କୌଣସି ପ୍ରକାରର ସ୍ପଷ୍ଟ ଉଲ୍ଲେଖଯୋଗ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ ।

### ଉପଭାଷା ସୃଷ୍ଟିର କାରଣ :

(କ) ଉପଭାଷା ସୃଷ୍ଟିର ମୁଖ୍ୟ କାରଣ ହେଉଛି ଭୌଗୋଳିକ । ଗୋଟିଏ ସ୍ଥାନରୁ ଗୋଟିଏ ମୂଳ ଦଳ ବହୁ ଭାଗରେ ବିଚ୍ଛୁରିତ ହୋଇ ବିଭିନ୍ନ ସ୍ଥାନରେ ବାସ କରନ୍ତି ଓ ମୂଳ ଭାଷା ସହିତ ସମ୍ପର୍କ ରଖି କେତେକ ପରିବର୍ତ୍ତନ ଆଣନ୍ତି ।

(ଖ) ଭୂମିକମ୍ପ, ଜଳପ୍ଲାବନ ପରି ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟ ଉପଭାଷା ସୃଷ୍ଟିର କାରଣ ହୋଇପାରେ ।

(ଗ) ରାଜନୈତିକ ବା ଅର୍ଥନୈତିକ କାରଣରୁ ଅନେକ ବ୍ୟକ୍ତି ନିଜ ଭାଷା ଛାଡ଼ି ଅନ୍ୟ ସ୍ଥାନରେ ଅନ୍ୟ ଭାଷା କହନ୍ତି, କିନ୍ତୁ ନୂତନ ଭାଷାରେ ନିଜ ଭାଷାର ପ୍ରଭୂତ ପ୍ରଭାବ ପକାଇ ଏହାକୁ ନୂଆ ରୂପରେ ବିକଶିତ କରିପାରନ୍ତି । ଏହି ନୂତନ ବିକଶିତ ଭାଷା ସ୍ଥାନାନ୍ତରିତ ବ୍ୟକ୍ତିର ମୂଳ ଭାଷାର ଏକ ଉପଭାଷା ରୂପେ ଅଭିହିତ ହୋଇପାରେ ।

### ଭାଷା ଓ ଉପଭାଷା ମଧ୍ୟରେ ପାର୍ଥକ୍ୟ :

ଭାଷା ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ ଅନେକ ସମୟରେ ଭାଷା ଓ ଉପଭାଷା ମଧ୍ୟରେ ପାର୍ଥକ୍ୟର ସ୍ପଷ୍ଟ ସୀମାରେଖା ଟାଣିବା ବାସ୍ତବରେ କଠିନ ବ୍ୟାପାର । କାରଣ ଉପଭାଷା ମହତ୍ତ୍ୱପୂର୍ଣ୍ଣ ହୋଇ ଉଠିଲେ ଭାଷା ଭାବରେ ଅଭିହିତ ହୁଏ ବା ଉପଭାଷା କହୁଥିବା ବ୍ୟକ୍ତିମାନଙ୍କ ପରିପ୍ରେକ୍ଷୀରେ ଦେଖିଲେ ଏହା ସେମାନଙ୍କର ଭାଷା । ଅନେକ ଭାଷାବିତ୍ ଏହି ସତ୍ୟକୁ ସ୍ୱୀକାର କରିଛନ୍ତି । ଗ୍ରିୟର୍ସନ୍‌ଙ୍କ ମତରେ—"In the course of the survey, it has sometimes been difficult to decide whether a given form of speech is to be looked upon as an independent language or as a dialect of some other definite form of speech···The two words 'language' and 'dialect' are in this respect like 'mountain' and 'hill'—between these two the dividing line cannot be accurately drawn." ସପୀରଙ୍କ ଭାଷାରେ, "To the linguist there is no real difference between dialect and language." ପେଇ କହନ୍ତି—'There is an intrinsic difference between language and dialect." ତେଣୁ ଭାଷା ଓ ଉପଭାଷା ମଧ୍ୟରେ ସାଧାରଣ ଭାବରେ କେତୋଟି ପାର୍ଥକ୍ୟ ନିର୍ଦ୍ଦେଶ କରାଯାଇପାରେ—

(କ) ଭାଷାର କ୍ଷେତ୍ର ଅପେକ୍ଷାକୃତ ବଡ଼ ଓ ଉପଭାଷାର କ୍ଷେତ୍ର ଅପେକ୍ଷାକୃତ ଛୋଟ ।

(ଖ) ଗୋଟିଏ ଭାଷା ମଧ୍ୟରେ ଅନେକ ଉପଭାଷା ଅନ୍ତର୍ଭୁକ୍ତ ହୋଇପାରନ୍ତି, କିନ୍ତୁ ଉପଭାଷା ମଧ୍ୟରେ ଭାଷା ଅନ୍ତର୍ଭୁକ୍ତ ହୋଇପାରିବ ନାହିଁ ।

(ଗ) ଉପଭାଷା ଭାଷାଠାରୁ ଉତ୍ପନ୍ନ । ତେଣୁ ଭାଷା ଜନନୀ ହେଲେ ଉପଭାଷା କନ୍ୟା ।

(ଘ) ପ୍ରାମାଣିକ ଭାଷାର ସାହାଯ୍ୟରେ ଏହାର ଭିନ୍ନ ଭିନ୍ନ ଉପଭାଷାମାନଙ୍କ ମଧ୍ୟରେ ସମ୍ପର୍କ ନିର୍ଣ୍ଣୟ କରିହୁଏ ଅର୍ଥାତ୍ ସେମାନଙ୍କୁ ବୁଝିହୁଏ । କିନ୍ତୁ ଭିନ୍ନ ଭିନ୍ନ ଭାଷା ମଧ୍ୟରେ ଏପରି ସମ୍ପର୍କ ନିର୍ଣ୍ଣୟ ଏତେ ସହଜ ବ୍ୟାପାର ନୁହେଁ ।

(ଙ) ଭାଷା ପ୍ରାୟତଃ ସାହିତ୍ୟ-ରଚନା, ଶିକ୍ଷାଦାନ ବା ଶିକ୍ଷାଲାଭ ଓ ଶାସନ ଆଦି କାର୍ଯ୍ୟରେ ବ୍ୟବହୃତ ହୁଏ; କିନ୍ତୁ ଉପଭାଷା ଲୋକସାହିତ୍ୟ ରଚନା ଓ କଥୋପକଥନରେ କେବଳ ବ୍ୟବହୃତ ହୁଏ ।

ଏହି ଉପଭାଷା ସେ ପର୍ଯ୍ୟନ୍ତ ଉପଭାଷା ଭାବରେ ଅଭିହିତ ହୋଇପାରେ ଯେ ପର୍ଯ୍ୟନ୍ତ—(କ) ଏହା ସାହିତ୍ୟ, ଧର୍ମ, ରାଜନୀତି, ବାଣିଜ୍ୟ ବ୍ୟବସାୟ ଇତ୍ୟାଦି ଦୃଷ୍ଟିରୁ ବିଶେଷ ମହତ୍ତ୍ୱ ଲାଭ କରି ନାହିଁ । (ଖ) ପ୍ରାମାଣିକ ଭାଷା ସମ୍ପର୍କିତ ପଡ଼ୋଶୀ ଉପଭାଷା ସହିତ ଏହାର ଅବବୋଧ-ସମ୍ପର୍କ ଛିନ୍ନ କରିଦେବା ଭଳି ବିଶେଷତ୍ୱ ବା ଲକ୍ଷଣ ଏହା ମଧ୍ୟରେ ବିକଶିତ ନ ହୋଇଛି ।

ଉପର୍ଯ୍ୟୁକ୍ତ ଦୁଇଟି ମହତ୍ତ୍ୱ ଲାଭ କଲେ ଏକ ଉପଭାଷା ଭାଷାରେ ପରିଣତ ହୋଇଯିବ । ଇଂରାଜୀ, ହିନ୍ଦୀ, ସଂସ୍କୃତ, ଗ୍ରୀକ୍, ଆରବିକ ଆଦି ବିଶ୍ୱର ପ୍ରସିଦ୍ଧ ଭାଷା-ଗୁଡ଼ିକ ପ୍ରାରମ୍ଭିକ କାଳରେ ଉପଭାଷା ଭାବରେ ଅଭ୍ୟୁଦିତ ହୋଇଥିଲେ ଓ କାଳକ୍ରମେ ଏହି ଦୁଇଟି ମହତ୍ତ୍ୱ ଲାଭ କରି ଭାଷାରେ ପରିଣତ ହୋଇଯାଇଥିଲେ ।

**ଉପଭାଷା ମହତ୍ତ୍ୱ ଲାଭ କରିବାରେ କେତୋଟି କାରଣ :**

(କ) ଯଦି କୌଣସି ଉପଭାଷା ନିଜର ଭଗ୍ନୀ-ଭାଷାମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ ହୋଇଯାଏ ବା ଭଗ୍ନୀଭାଷାମାନଙ୍କର ବିଲୋପ ପରେ ନିଜେ କୌଣସି କାରଣରୁ ବଞ୍ଚିରହେ, ତେବେ ଏହା ମହତ୍ତ୍ୱପୂର୍ଣ୍ଣ ବୋଲି ବିବେଚିତ ହୁଏ ଓ କ୍ରମେ 'ଭାଷା' ସଂଜ୍ଞାରେ ବିଭୂଷିତ ହୋଇଯାଏ । ପ୍ରଥମ କାରଣରୁ 'ପ୍ରାକୃତ' ଉପଭାଷା ଭାଷା ଭାବରେ ଅଭିହିତ ହୋଇଅଛି ।

(ଖ) ଶାସକ ଦ୍ୱାରା ବ୍ୟବହୃତ ଉପଭାଷା ଶାସିତର ଉପଭାଷା ଉପରେ ପ୍ରଭାବ ବିସ୍ତାର କରେ ।

(ଗ) ରାଜନୀତିର କେନ୍ଦ୍ର ସ୍ଥଳରେ ବ୍ୟବହୃତ ହେବାର ସୁଯୋଗ ପାଇଲେ ଉପଭାଷା ଗୁରୁତ୍ୱ ଲାଭ କରେ । ଏହି କାରଣରୁ ଦିଲ୍ଲୀ ଅଞ୍ଚଳରେ ବ୍ୟବହୃତ ଖଡ଼ୀ-ବୋଲି ଆଜି ହିନ୍ଦୀ ଭାଷାଭାଷୀ ପ୍ରଦେଶଗୁଡ଼ିକର ମୁଖ୍ୟ ଭାଷା ହୋଇଛି ଓ ଏହା ରାଷ୍ଟ୍ରଭାଷାର ସ୍ଥାନ ଲାଭ କରିଛି । ସେହିପରି ପ୍ୟାରିସ୍‌ର ଫରାସୀ ଉପଭାଷା ଓ ଲଣ୍ଡନର ଇଂରାଜୀ ଉପଭାଷା ରାଷ୍ଟ୍ରଭାଷାରେ ପରିଣତ ହୋଇଥିଲା । ଅବଶ୍ୟ ଏହି କାରଣରୁ ଭାଷା ସ୍ତରକୁ ଉନ୍ନୀତ କେତେକ ଉପଭାଷା ପୁନଶ୍ଚ ନିଜ ସ୍ତରକୁ ଖସିଆସିଛି, ଯଥା ବ୍ରଜଭାଷା ଓ ଅବଧୀ ।

(ଘ) ସାହିତ୍ୟରେ ସ୍ଥାନ ପାଇଲେ ଉପଭାଷାର ମହତ୍ତ୍ୱ ବୃଦ୍ଧି ପାଏ, ଯଥା— ବ୍ରଜଭାଷା ଓ ଅବଧୀ ।

(ଙ) ଉପଭାଷା ବ୍ୟବହାର କରୁଥିବା ଗୋଷ୍ଠୀ ଗୌରବପୂର୍ଣ୍ଣ ସ୍ଥାନ ଅଧିକାର କଲେ ଉପଭାଷା ଗୌରବପୂର୍ଣ୍ଣ ସ୍ଥାନ ଲାଭ କରେ । ଏକା ଉପଭାଷା ଥିବା ଇଂରାଜୀ ଏହି କାରଣରୁ ଆନ୍ତର୍ଜାତିକ ଭାଷାର ସମ୍ମାନ ଲାଭ କରିଛି ।

(ଚ) ଧାର୍ମିକ ପ୍ରସିଦ୍ଧି ମଧ୍ୟ ଉପଭାଷାର ମହତ୍ତ୍ୱ ବୃଦ୍ଧି କରିଥାଏ । ଏହି କାରଣରୁ ରାମତୀର୍ଥ ଅଯୋଧ୍ୟାର ଭାଷା ଅବଧୀ ଓ କୃଷ୍ଣତୀର୍ଥ ମଥୁରାର ଭାଷା ବ୍ରଜ କେତେକ ଶତାବ୍ଦୀ ଧରି ସାହିତ୍ୟିକ ଭାଷାରେ ପରିଣତ ହୋଇଥିଲା । 'ବ୍ରଜ' ର ନାମ ତ 'ବ୍ରଜଭାଷା' ହୋଇଯାଇଥିଲା । ଖଡ଼ୀବୋଲି ଉପଭାଷାର ମହତ୍ତ୍ୱ ବୃଦ୍ଧି ମୂଳରେ ଆର୍ଯ୍ୟ ସମାଜର ଅବଦାନ ମଧ୍ୟ ସ୍ମରଣୀୟ ।

(ଛ) ଉପଭାଷା ବ୍ୟବହାର କରୁଥିବା ବ୍ୟକ୍ତିମାନଙ୍କର ଜାତି ଯୋଗୁଁ କେବଳ ସେହି ଉପଭାଷାର ପ୍ରବଳ ପ୍ରଚଳନ ହେଲେ ଓ ପ୍ରମାଣିକ ଭାଷା ସହିତ ସମ୍ପର୍କର ବିଚ୍ୟୁତି ଘଟିଲେ ଉପଭାଷା ଭାଷା ସ୍ଥାନଗ୍ରହଣ କରିନାଏ ।

ଭାଷା—ସମ୍ପ୍ରଦାୟର ଲୋକସଂଖ୍ୟା ଅତି ଅଳ୍ପ ହେଲେ ଭାଷାରେ କୌଣସି ଉପଭାଷା ସୃଷ୍ଟି ହୋଇପାରେ ନାହିଁ, କାରଣ ସମସ୍ତେ ସମସ୍ତଙ୍କ ସଙ୍ଗରେ ନିଜ ଭାଷା ବ୍ୟବହାର କରିବାର ସୁବିଧା ସୁଯୋଗ ପାଆନ୍ତି । କୌଣସି ବ୍ୟକ୍ତିବିଶେଷର ଉଚ୍ଚାରଣ ଦୋଷ ବା ଭ୍ରମାତ୍ମକ ପଦ ପ୍ରୟୋଗ ସ୍ଥାୟୀ ହୋଇପାରେ ନାହିଁ । କିନ୍ତୁ କୌଣସି ଭାଷା-ସମ୍ପ୍ରଦାୟର ଲୋକସଂଖ୍ୟା ବେଶି ହେଲେ ଉପଭାଷାର ସୃଷ୍ଟି ଅନିବାର୍ଯ୍ୟ । କାରଣ ଲୋକମାନେ ଛୋଟ ଛୋଟ ଦଳରେ ବିଭକ୍ତ ଓ ସୀମାବଦ୍ଧ ହୋଇ

ସାଥୀମାନଙ୍କ ସହିତ ମିଶିବା ତଥା ଭାଷାଳାପ କରିବାର ସୁଯୋଗ ହରାଇ ବସନ୍ତି, ତେଣୁ ଭିନ୍ନ ଭିନ୍ନ ଅଞ୍ଚଳରେ ଉଚ୍ଚାରଣ ତଥା ପଦବ୍ୟବହାରରେ କେତେକ ପାର୍ଥକ୍ୟ ପରିଲକ୍ଷିତ ହୁଏ, ଫଳରେ ଭାଷାରୁ ଉପଭାଷାର ଉତ୍ପତ୍ତି ହୁଏ।

ଉପଭାଷାର ଆଉ ଦୁଇଟି ସୀମିତ ରୂପ ମଧ୍ୟ ଲକ୍ଷ୍ୟ କରାଯାଇ ପାରେ, ଯଥା:—

(କ) ସ୍ଥାନୀୟ ଉପଭାଷା ବା ବୋଲି (Local Dialect or Sub-Dialect or Patois)—

ଭାଷାର ଏହି ରୂପ ମଧ୍ୟ ଭୌଗୋଳିକ ସୀମା ଉପରେ ଆଧାରିତ। କିନ୍ତୁ ଏ ସୀମା ଉପଭାଷାର ସୀମାଠାରୁ ଯଥେଷ୍ଟ ସଙ୍କୀର୍ଣ୍ଣ। କୌଣସି କୌଣସି କ୍ଷେତ୍ର ବା ନିର୍ଦ୍ଦିଷ୍ଟ ସ୍ଥାନରେ ବ୍ୟବହୃତ ଟିପିକାଲ୍ ଭାଷାର ନାମ ବୋଲି। ଏହା ବ୍ୟକ୍ତି-ବୋଲି (Idiolect)ର ସାମୂହିକ ରୂପ। ଇଂରାଜୀରେ ସ୍ଥାନୀୟ ଉପଭାଷା ବା ବୋଲିର ନିକଟ ଅର୍ଥରେ ଏକ ଫରାସୀ ଶବ୍ଦ ପେଟ୍ୱା (Patois)ର ବ୍ୟବହାର ଅଛି। ୟୁରୋପୀୟ ଏବଂ ଆମେରିକାନ୍ ଭାଷାବିତ୍ମାନେ ଏହାର ଚାରୋଟି ମୁଖ୍ୟ ଲକ୍ଷଣ ଲକ୍ଷ୍ୟ କରିଛନ୍ତି, ଯଥା—(୧) ଏହା ଉପଭାଷା (dialect) ଠାରୁ ଅପେକ୍ଷାକୃତ କ୍ଷୁଦ୍ର ଓ ଅପେକ୍ଷାକୃତ ସଙ୍କୀର୍ଣ୍ଣ ସ୍ଥାନରେ ପ୍ରଚଳିତ, (୨) ଏହା ଅସାହିତ୍ୟିକ, (୩) ଏହାର ରୂପ ଅସାଧୁ, (୪) ଏହା ଅପେକ୍ଷାକୃତ ନିମ୍ନ ସାମାଜିକ ସ୍ତରର ଅଥବା ଅଶିକ୍ଷିତ ବ୍ୟକ୍ତିମାନଙ୍କଦ୍ୱାରା ବ୍ୟବହୃତ।

(ଖ) ବ୍ୟକ୍ତି-ବୋଲି (Idiolect) —

କୌଣସି ବ୍ୟକ୍ତିବିଶେଷ ବା ପରିବାର ବିଶେଷରେ ବ୍ୟବହୃତ ଭାଷାକୁ ବ୍ୟକ୍ତି-ବୋଲି କୁହାଯାଏ। ଧ୍ୱନି ଉଚ୍ଚାରଣ ଓ ପଦପ୍ରୟୋଗରେ ଏହା ଭାଷା ଓ ଉପଭାଷା ଠାରୁ କିଛି କିଛି ଅଂଶରେ ସ୍ୱତନ୍ତ୍ର। ଏପରି ବ୍ୟକ୍ତିନିଷ୍ଠ ବୋଲିକୁ ଡକ୍ଟର ସୁକୁମାର ସେନ୍ ନିଭାଷା (ନିଜଭାଷା) ଭାବରେ ଅଭିହିତ କରିଛନ୍ତି। ଏହା ଭାଷାର ସଙ୍କୀର୍ଣ୍ଣତମ ଓ ଲଘୁତମ ରୂପ।

**(ଗ) ପ୍ରାମାଣିକ ଭାଷା** (Standard Language) ଯେଉଁ ବିଭାଷା ବା ଉପଭାଷା ଅନ୍ୟ ସହଯୋଗୀ ବିଭାଷାମାନଙ୍କ ଉପରେ ନିଜର ସାହିତ୍ୟିକ ତଥା ସାଂସ୍କୃତିକ ଶ୍ରେଷ୍ଠତ୍ୱ ଆରୋପଣ କରି ଅନ୍ୟ ବିଭାଷା ଭାଷୀମାନଙ୍କ ଦ୍ୱାରା ସେମାନଙ୍କର ଆଦର୍ଶ ପ୍ରତିନିଧି ସ୍ଥାନୀୟ ସର୍ବାଧିକ ସର୍ବସାଧାରଣ ଭାଷା ରୂପେ ବିବେଚିତ ହୁଏ ତାହାକୁ ପ୍ରାମାଣିକ ଭାଷା କୁହାଯାଏ। ଭାରତବର୍ଷରେ ଗୋଟିଏ ଭାଷା (ଯହିଁରେ ଅନେକ ଉପଭାଷା ରହିଛି)ର କୌଣସି ଏକ ଉପଭାଷା ପ୍ରାଧାନ୍ୟ ବିସ୍ତାର

ଭଳି ଅନ୍ୟ ଉପଭାଷାମାନଙ୍କର ଆଦର୍ଶ ରୂପେ ପରିଗଣିତ ହୋଇ ପାରସ୍ପରିକ ବିଚାର ବିନିମୟର ସାଧାରଣ ମାଧ୍ୟମ ରୂପେ ସାହିତ୍ୟ ରଚନା, ଶିକ୍ଷା, ଶାସନ, ପତ୍ରାଳାପ ଓ ସମ୍ବାଦ-ସରବରାହ ଇତ୍ୟାଦି କାର୍ଯ୍ୟରେ ପ୍ରଯୁକ୍ତ ହୋଇଥାଏ । ଏହାକୁ ଇଂରାଜୀରେ Standard Language ବା Koine କୁହାଯାଏ । Koine ହେଉଛି ୟୁନାନୀ ଭାଷାର ଶବ୍ଦ । Koine ୟୁନାନୀ ଭାଷାର ବିଶେଷ ରୂପ, ଯାହା କ୍ଷେତ୍ର ବିଶେଷରେ ଟକସାଲି ଭାଷା ଥିଲା । ପ୍ରାମାଣିକ ଭାଷାକୁ ଟକସାଲି, ଆଦର୍ଶ, ପରିନିଷ୍ଠିତ, ଶିଷ୍ଟ, ପରିମାର୍ଜିତ ଆଦି ନାମରେ ମଧ୍ୟ ନାମିତ କରାଯାଇଛି ।

ଗୋଟିଏ ଉପଭାଷା ଯେତେବେଳେ ପ୍ରାମାଣିକ ଭାଷାରେ ପରିଣତ ହୋଇଯାଏ, ତାହା ଆଖପାଖର ଉପଭାଷାମାନଙ୍କ ଉପରେ ପର୍ଯ୍ୟାପ୍ତ ପ୍ରଭାବ ବିସ୍ତାର କରେ । ଆଜିର ଖଡ଼ୀବୋଲି, ବ୍ରଜ, ଅବଧୀ, ଭୋଜପୁରୀ ପ୍ରଭୃତି ଉପଭାଷାକୁ ପ୍ରଭାବିତ କରିଛି । ବେଳେ ବେଳେ ପ୍ରାମାଣିକ ଭାଷା ଏହି ଉପଭାଷାମାନଙ୍କୁ ସମୂଳେ ଲୋପ ମଧ୍ୟ କରିଦିଏ । ରୋମ୍‌ର ଲାଟିନ୍ ଭାଷା ଇଟାଲୀର ପ୍ରାମାଣିକ ଭାଷା ହେବା ଫଳରେ ବହୁ ଉପଭାଷାର ଲୋପ ସାଧିତ ହୋଇଥିଲା । କିନ୍ତୁ ଏପରି ଦୃଷ୍ଟାନ୍ତ ସ୍ୱଳ୍ପ ।

ଏହା ବ୍ୟାକରଣ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ଓ ଏହାର ଉଚ୍ଚାରଣ ନିର୍ଦ୍ଦିଷ୍ଟ କରାଯାଇଥାଏ । ଫଳରେ ଏହା ସ୍ଥିର ହୋଇଯାଏ ଓ କିଛି କାଳ ପରେ ଏହାର ରୂପ ପ୍ରାଚୀନ ହୋଇଯାଏ । ଅବଶ୍ୟ ପ୍ରାମାଣିକ ଭାଷାର ରୂପ ସର୍ବଦା ଓ ସର୍ବତ୍ର ସୁସ୍ପଷ୍ଟ ଓ ସୁନିର୍ଦ୍ଦିଷ୍ଟ ହୋଇପାରେ ନାହିଁ । ଆଞ୍ଚଳିକ ବିଭାଷାଗୁଡ଼ିକର ଏହା ଉପରେ ଅଳ୍ପ ପରିମାଣରେ ହେଉ ପଛେ ପ୍ରଭାବ ରହିଛି । ସ୍ଥାନ ଓ ସମୟ ଅନୁସାରେ ପ୍ରାମାଣିକ ଭାଷାର ବ୍ୟାକରଣ ନିୟମ ମଧ୍ୟ ପରିବର୍ତ୍ତିତ ହୋଇଥାଏ ।

ପ୍ରାମାଣିକ ଭାଷାର ଦୁଇଟି ରୂପ ରହିଛି, ଲିଖିତ ଓ ମୌଖିକ । ମୌଖିକ ରୂପ ଅପେକ୍ଷା ଲିଖିତ ରୂପରେ ଆଞ୍ଚଳିକତାର ମୁଦ୍ରାଙ୍କନ କମ୍ ଥାଏ, କାରଣ ଲିଖନ ବେଳେ ଜ୍ଞାତସାରରେ ଅଶୁଦ୍ଧ ଓ ବିଭାଷା-ପ୍ରଭାବିତ ବ୍ୟତିକ୍ରମକୁ ସଂଶୋଧିତ କରି-ଦିଆଯାଇଥାଏ ।

(୪) ରାଷ୍ଟ୍ରଭାଷା (Lingua Franca or National Language)—ଯେଉଁଭାଷା ଅନ୍ୟ ଉପଭାଷାମାନଙ୍କ କ୍ଷେତ୍ରରେ ପରିବ୍ୟାପ୍ତ ହୋଇ ସମସ୍ତଙ୍କର ପ୍ରତିନିଧି ସ୍ଥାନୀୟ ହେଲେ ପ୍ରାମାଣିକ ଭାଷା ପଦବାଚ୍ୟ ହୁଏ । ସେହିପରି ପ୍ରାମାଣିକ ଭାଷା ଅନ୍ୟ ପ୍ରାମାଣିକ ଭାଷାମାନଙ୍କ କ୍ଷେତ୍ରରେ ପରିବ୍ୟାପ୍ତ ହୋଇ ବିଭିନ୍ନ ଭାଷା-ଭାଷୀମାନଙ୍କର ପାରସ୍ପରିକ ବିଚାର ବିନିମୟ ଏବଂ ସମ୍ପର୍କ ସ୍ଥାପନର ସାର୍ବଜନୀନ ମାଧ୍ୟମ ରୂପେ ବିବେଚିତ ହୁଏ ଓ ସମଗ୍ର ରାଷ୍ଟ୍ର ସ୍ତରରେ ଏହି ସ୍ୱୀକୃତି ଲାଭ କରେ, ସେତେବେଳେ ଏହା 'ରାଷ୍ଟ୍ରଭାଷା' ପଦ ଲାଭ କରେ । ହିନ୍ଦୀ ଧୀରେ ଧୀରେ ଭାରତ

ବର୍ଷରେ ଏହି ସ୍ଥାନ ଲାଭ କରିଛି । ଏହା ଆପଣା ଭାଷା ପରିବାରର ଅହିନ୍ଦୀ ପ୍ରଦେଶ (ରାଜସ୍ଥାନ, ଗୁଜୁରାଟ, ମହାରାଷ୍ଟ୍ର, ବଙ୍ଗଳା, ଓଡ଼ିଶା, ଆସାମ) ଓ ତତ୍ସଙ୍ଗେ ସଙ୍ଗେ ଅନ୍ୟ ଭାଷା-ପରିବାରର ପ୍ରଦେଶ (ତାମିଲନାଡୁ, ଅନ୍ଧ୍ର, କର୍ଣ୍ଣାଟକ) ମାନଙ୍କରେ ମଧ୍ୟ ଧୀରେ ଧୀରେ ବହୁ ଲୋକଙ୍କର ବିଚାର ବିନିମୟର ମାଧ୍ୟମ ରୂପେ ବ୍ୟବହୃତ ହେଉଅଛି । ଆଜି ଭାରତବର୍ଷର ବଡ଼ ବଡ଼ ସହରରେ ବିଭିନ୍ନ ଭାରତୀୟ ଭାଷା-ଭାଷୀମାନେ ଯେତେବେଳେ ଏକତ୍ର ମିଳିତ ହୋଇଥାନ୍ତି, ସେତେବେଳେ ଇଂରାଜୀ ଛଡ଼ା ହିନ୍ଦୀ ଭାଷାରେ ମଧ୍ୟ-ବିନିମୟ କରିଥାନ୍ତି । ତୀର୍ଥ ସ୍ଥାନମାନଙ୍କରେ ବହୁ ପୂର୍ବରୁ ହିନ୍ଦୀ ମାଧ୍ୟମରେ ହିଁ ପାରସ୍ପରିକ ସମ୍ପର୍କ ସ୍ଥାପନ ସମ୍ଭବ ହୋଇ ଆସିଛି । ସମଗ୍ର ୟୁରୋପରେ କିଛି କାଳ ପର୍ଯ୍ୟନ୍ତ ଫରାସୀ ଭାଷା ଏହି ସ୍ଥାନ ଅଧିକାର କରିଥିଲା । ବାଣିଜ୍ୟ ବ୍ୟବସାୟ ଓ ଅନ୍ୟାନ୍ୟ ସମ୍ପର୍କ ସ୍ଥାପନ କ୍ଷେତ୍ରରେ ଆଜି ଇଂରାଜୀ ଭାଷା ବିଶ୍ୱର ଅନ୍ତର୍ରାଷ୍ଟ୍ରୀୟ ଭାଷା ପଦକୁ ଉନ୍ନୀତ ହୋଇଅଛି । କୌଣସି ଉପଭାଷାର ଚରମ ପଦୋନ୍ନତ ରୂପ ହେଉଛି 'ବିଶ୍ୱଭାଷା' ।

କୌଣସି ରାଷ୍ଟ୍ରର ଜୀବନରେ 'ରାଷ୍ଟ୍ରଭାଷା'ର ସ୍ଥାନ ଅତୀବ ମହତ୍ତ୍ୱପୂର୍ଣ୍ଣ । ପ୍ରତ୍ୟେକ ଉନ୍ନତିକାମୀ ରାଷ୍ଟ୍ରର ରାଷ୍ଟ୍ରଭାଷା ହେଉଛି ଏକ ଅପରିହାର୍ଯ୍ୟ ଆବଶ୍ୟକତା ।

(୫) ରାଜଭାଷା (Official Language)--ଅନେକ ରାଷ୍ଟ୍ରଭାଷା ଓ ରାଜଭାଷା (ସରକାରୀ ଭାଷା)କୁ ଅଭିନ୍ନ ବୋଲି ଭାବିଥାନ୍ତି, କିନ୍ତୁ ଏ ଉଭୟ ମଧ୍ୟରେ ଅନେକ ସମୟରେ ଅଭିନ୍ନତା ଥିଲେ ହେଁ ଅନେକ ସମୟରେ ପାର୍ଥକ୍ୟ ଥାଏ । କୌଣସି ରାଷ୍ଟ୍ରର ରାଷ୍ଟ୍ରଭାଷା ଯଦି ସରକାରଙ୍କର ଶାସନ, ଶିକ୍ଷାଦି କାର୍ଯ୍ୟ ପରିଚାଳନାର ଭାଷା ହୋଇଥାଏ ତେବେ ତାହା ସ୍ୱତଃ ରାଜଭାଷା ବା ସରକାରୀ ଭାଷା ପଦବାଚ୍ୟ ହୁଏ, କିନ୍ତୁ ପରାଧୀନ ଦେଶରେ ଏହା ସର୍ବଦା ସମ୍ଭବ ହୋଇ ନ ଥାଏ । ଉଦାହରଣ ସ୍ୱରୂପ ଇଂରେଜ ଶାସନ କାଳରେ ହିନ୍ଦୀ ଭାରତବର୍ଷର ରାଷ୍ଟ୍ରଭାଷା ଥିଲା କାରଣ ଏହା ରାଷ୍ଟ୍ରର ଜନତା ଦ୍ୱାରା ସ୍ୱେଚ୍ଛିକ ଭାବରେ ପାରସ୍ପରିକ ବିଚାର ବିନିମୟର ମାଧ୍ୟମ ରୂପେ ଗୃହୀତ ହୋଇଥିଲା; କିନ୍ତୁ ଏହା ରାଜଭାଷା ନଥିଲା । ଇଂରାଜୀ ରାଜଭାଷା ରୂପେ ପ୍ରଚଳିତ ଥିଲା । ଇଂରେଜ ଶାସନର ଅବସାନ ପରେ ମଧ୍ୟ ମାନସିକ ପରାଧୀନତାବଶତଃ ଆମେ ଇଂରାଜୀକୁ ରାଜଭାଷା ରୂପେ ଗ୍ରହଣ କରିଛୁ । ମୋଗଲ ରାଜତ୍ୱ କାଳରେ ପାରସିକ (ଫାର୍ସୀ) ଭାଷା ଥିଲା ଭାରତର ରାଜଭାଷା ।

(୬) ବଶିଷ୍ଟ ବା ବୈଷୟିକ ଭାଷା—(Technical or Typical Language)—ମନୁଷ୍ୟ ସାମାଜିକ ପ୍ରାଣୀ । ସମାଜରେ ସେହାର କିଛି-ନା-କିଛି ସ୍ଥିତି ରହିଛି ବା ସେ କିଛି-ନା-କିଛି କାମ କରେ । ତାର ଏହି ସ୍ଥିତି, କାର୍ଯ୍ୟ ବା

ବ୍ୟବସାୟୀର ଭାଷାରେ କେତେକ ସ୍ୱାତନ୍ତ୍ର୍ୟ ବା ବୈଚିତ୍ର୍ୟ ସମ୍ପାଦନ କରେ । ଫଳରେ ଏକ ନିର୍ଦ୍ଦିଷ୍ଟ ସମାଜରେ ଏକ ନିର୍ଦ୍ଦିଷ୍ଟ ଭାଷାରେ କେତେକ ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ବ୍ୟବସାୟ ବା ବୃତ୍ତିଗତ ଦୃଷ୍ଟିରୁ ସମାଜରେ କୃଷକ, କମାର, କୁମ୍ଭାର, ବଢ଼େଇ, ତନ୍ତୀ, ସୁନାରି, ଦର୍ଜି, ସିପାହି, ଡାକ୍ତର, ଅଧ୍ୟାପକ, ଓକିଲ, ଦୋକାନୀ, ପୁରୋହିତ, ପୂଜାରୀ ଇତ୍ୟାଦି ଶିକ୍ଷା-ଦୀକ୍ଷା ଓ ଜ୍ଞାନ-ବିଜ୍ଞାନ ଦୃଷ୍ଟିରୁ ଗୁରୁ, ଦାର୍ଶନିକ, ଅର୍ଥ-ଶାସ୍ତ୍ରବିତ୍, ମନସ୍ତତ୍ତ୍ୱବିତ୍, ପଦାର୍ଥ-ବିଜ୍ଞାନୀ, ରସାୟନବିଜ୍ଞାନୀ ଇତ୍ୟାଦି ଶ୍ରେଣୀର ସୃଷ୍ଟି ହୋଇଛି । ସେମାନଙ୍କର ଭାଷା ଶୁଣି ଅନୁମାନ କରିହେବ କିଏ କେଉଁ ଶ୍ରେଣୀର । କବୀର ତନ୍ତୀ ଥିବାରୁ ତାଙ୍କ ରଚନାରେ ତାନା, ଭରନି, ତାର ଚଦର ଆଦି ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ଇଂରାଜୀ ପଢ଼ୁଆ ବ୍ୟକ୍ତିମାନେ କଥାବାର୍ତ୍ତା କଲାବେଳେ ବହୁପରିମାଣରେ ଜ୍ଞାତସାରରେ ଓ ଅଜ୍ଞାତସାରରେ ବହୁ ଇଂରାଜୀ ଶବ୍ଦର ବ୍ୟବହାର କରିଥାନ୍ତି । କଚେରିରେ କାମ କରୁଥିବା ବ୍ୟକ୍ତିମାନଙ୍କ ଭାଷାରେ ସେହିପରି ବହୁ ଇଂରାଜୀ, ଫାର୍ସୀ, ଆରବୀ ଶବ୍ଦର ବ୍ୟବହାର ଦେଖିବାକୁ ମିଳେ । ଧାର୍ମିକ-ସଂଘ, ରାଜନୈତିକ ସଂସ୍ଥା, ସାହିତ୍ୟିକ ଗୋଷ୍ଠୀ, ଗୁପ୍ତ ସମାଜ ପ୍ରଭୃତିଙ୍କର ଭାଷାରେ ସେହିପରି କେତେକ ସ୍ୱାତନ୍ତ୍ର୍ୟ ଦୃଷ୍ଟ । କାହାର ଭାଷାରେ ଇଂରାଜୀ ପ୍ରଭାବ ତ କାହାରି ଭାଷାରେ ସଂସ୍କୃତ ପ୍ରଭାବ ଓ କାହାରି ଭାଷାରେ ଗ୍ରାମ୍ୟତାର ପ୍ରଭାବ ପରିଲକ୍ଷଣୀୟ ।

(୭) ଅପଭାଷା (Slang)—ଅପଭାଷାକୁ ଦୁଇଟି ଅର୍ଥରେ ଗ୍ରହଣ କରାଯାଇପାରେ—ବିକୃତ ଭାଷା ଓ ଅଶିଷ୍ଟ (ଅଶ୍ଲୀଳ ଭାଷା) । ଏକ ଭାଷାଗୋଷ୍ଠୀର (ଅଥବା ଭାଷାସମ୍ପ୍ରଦାୟର) ବ୍ୟକ୍ତି ଯଦି ଅପର ଭାଷା ଭଲକରି ନ ଶିଖି ଉଚ୍ଚାରଣ କରେ ବା ପଦପ୍ରୟୋଗ କରେ, ତେବେ ତହିଁରେ ବିକୃତି ଓ ଭ୍ରମପ୍ରମାଦ ଅବଶ୍ୟମ୍ଭାବୀ । ଏକ ଭାଷା ଗୋଷ୍ଠୀର ବ୍ୟକ୍ତି ନିଜ ଭାଷାରେ ମଧ୍ୟ ଜାଣି ଜାଣି ବିକୃତ ବା ଭ୍ରମପ୍ରମାଦପୂର୍ଣ୍ଣ ପଦ ପ୍ରୟୋଗ କରିଥାଏ । ଏହାକୁ ଅପଭାଷା କୁହାଯାଏ । ପ୍ରାଚୀନ କାଳରେ ଭାରତବର୍ଷକୁ ଆଗତ ବିଦେଶୀମାନେ ସଂସ୍କୃତ ଭାଷାର ଶବ୍ଦ ଉଚ୍ଚାରଣ ଓ ପ୍ରୟୋଗରେ ପଟୁ ନ ଥିବାରୁ ସେମାନଙ୍କୁ କୁହାଯାଉଥିଲା ମ୍ଲେଚ୍ଛ ଅର୍ଥାତ୍ ଅପଭାଷୀ । 'ମହାଭାଷ୍ୟ'ରେ 'ଅପଭାଷ୍ୟ' ଅଶିଷ୍ଟ ଭାଷା ବା ଅଶ୍ଲୀଳ ଭାଷା ଅର୍ଥରେ ପ୍ରଯୁକ୍ତ—"ବ୍ରାହ୍ମଣେନ ନ ମ୍ଲେଚ୍ଛିତ ବୈ ନାପଭାଷିତ ବୈ ।" ଅର୍ଥାତ୍ ବ୍ରାହ୍ମଣ ବିକୃତ ଭାଷା ବା ଅଶ୍ଲୀଳ ଭାଷା ପ୍ରୟୋଗ କରିବା ଉଚିତ ନୁହେଁ । ଉଭୟ ଦୃଷ୍ଟିରୁ ଅପଭାଷାର କେତୋଟି ଲକ୍ଷଣ ଲକ୍ଷ୍ୟ କରାଯାଇପାରେ—

(କ) ଏଥିରେ ଶାସ୍ତ୍ରୀୟ ଆଦର୍ଶ (ଶୁଦ୍ଧତା, ଶ୍ଲୀଳତା ଆଦି)ର ଉପେକ୍ଷା କରାଯାଇଥାଏ ।

(ଖ) ଶବ୍ଦ-ନିର୍ମାଣ ନିୟମର ଉପେକ୍ଷା ଫଳରେ ବହୁ ନୂତନ ବିକୃତ ବିଚିତ୍ର

ଶବ୍ଦର ସୃଷ୍ଟି ହୁଏ, ଯଥା —ହିନ୍ଦୀ ଭାଷାରେ ଟଣ୍ଡୈଲ୍ଲା, ଅଗଡ଼ଧତ୍ତ, ଓଡ଼ିଆରେ, ଅଣ୍ଟସ୍ଥ ଝପୁରଣ୍ଡ, ଅଡ଼ଷ୍ଟ, ଘୁମନ୍ତ, ଚୁରମାର, ମିଣୁକ, ଯୋଜା ଇତ୍ୟାଦି ।

(ଗ) ଏଥିରେ ଶବ୍ଦ ଅର୍ଥାପକର୍ଷ ଘଟେ ଅର୍ଥାତ୍ ଶବ୍ଦ ଉତ୍ତମ ଅର୍ଥ ତ୍ୟାଗକରି ହୀନ ଅର୍ଥ ଗ୍ରହଣ କରେ, ଯଥା—ତେଲେଇବା ବା ତେଲ ମାଲିସ୍ କରିବା, ମେଣ୍ଢେଇବା ଇତ୍ୟାଦି ।

(ଘ) ଅପଭାଷା କୌଣସି ଏକ ବିଶେଷ ଶ୍ରେଣୀ, ସାମାଜିକ ବର୍ଗ ବା ସମବୟସ୍କମାନଙ୍କଠାରେ ପ୍ରଚଳିତ ହୋଇଥାଏ । ଏହା ସୀମା ଭିତରେ ଲୋକପ୍ରିୟତା ଲାଭ କରିଥାଏ, ଯଥା—ଶଳା, ହ୍ୟାପ୍ପ, ବେଇମାନ ଇତ୍ୟାଦି ।

ଅପଭାଷାର ଏହି ଲକ୍ଷଣରୁ ଲକ୍ଷ୍ୟ କରାଯାଇଛି ଯେ ଏହାର ନିର୍ମାଣ ବା ପ୍ରୟୋଗ ବେଳେ ଶୈକ୍ଷିକ, ସାଂସ୍କୃତିକ ଓ ନୈତିକ ଦିଗ ପ୍ରତି ଧ୍ୟାନ ଦିଆଯାଏ ନାହିଁ । ନବୀନତା, ବିନୋଦ, ବିଳାସ, ଉଚ୍ଛୃଙ୍ଖଳତା, ସଂସ୍କାରହୀନତା ଏହାର ପ୍ରେରକ ।

(୮) ସଙ୍କର ଭାଷା ବା ମିଶ୍ରିତ ଭାଷା (Jargon or Mixed Language)—ପ୍ରୟୋଜନବଶତଃ ଦୁଇ ବା ତତୋଽଧିକ ସମ୍ପୂର୍ଣ୍ଣଭାବେ ଅସମ୍ପୃକ୍ତ ଭାଷା କୌଣସି କାର୍ଯ୍ୟ ତୁଲାଇବା ଲକ୍ଷ୍ୟରେ ବା ସ୍ଥାୟୀ ଭାବରେ ମିଳିତ ହୋଇ ଏକ ସରଳ ବୋଧଗମ୍ୟ ଭାଷା ସୃଷ୍ଟି କଲେ ସୃଷ୍ଟ ଭାଷାକୁ ମିଶ୍ରିତ ଭାଷା ବା ସଙ୍କର ଭାଷା କୁହାଯାଇପାରେ । ବସ୍ତୁ ବିନିମୟର ସୁବିଧା ଉଦ୍ଦେଶ୍ୟରେ ଏହିପରି ନିମ୍ନ କେତୋଟି ଭାଷାର ସୃଷ୍ଟି ହୋଇଅଛି —

(କ) ପିଜିନ୍ ଇଂରାଜୀ (Pidgin English)—ଇଂରାଜୀ 'business' ଶବ୍ଦର ଚୀନା ଉଚ୍ଚାରଣ 'ପିଜିନ୍' । ଏହି ଭାଷାରେ ଇଂରାଜୀ ଶବ୍ଦର ପରିମାଣ ବେଶି, ଚୀନା ଶବ୍ଦର ପରିମାଣ ଅଳ୍ପ । ଇଂରାଜୀ ଶବ୍ଦରେ ଚୀନା ଭାଷାର ଧ୍ୱନି ପ୍ରକ୍ରିୟା ଏବଂ ବ୍ୟାକରଣ ପ୍ରଭାବ ପଡ଼ିବା ଫଳରେ ଏହି ଭାଷାର ସୃଷ୍ଟି ହୋଇଛି । ଅଷ୍ଟାଦଶ ଶତାବ୍ଦୀରେ ସୃଷ୍ଟ ଏହି ଭାଷା ଚୀନ, ଜାପାନ ଓ କାଲିଫର୍ଣ୍ଣିଆରେ ପ୍ରଚଳିତ ।

(ଖ) ବୀଚ୍-ଲ-ମାର (Beach-La-Mar)—ଏହି ଭାଷାର ଶବ୍ଦ ଭଣ୍ଡାର ଅତି ସୀମିତ । ଅଧିକାଂଶ ଶବ୍ଦ ହେଉଛି ଇଂରାଜୀ । ଏଥିରେ ଅଳ୍ପ କେତେକ ସ୍ପେନୀସ୍ ଓ ପର୍ତ୍ତୁଗୀଜ ଶବ୍ଦ ରହିଛି । ଏହି ଭାଷାରେ ଶବ୍ଦର ରୂପଭେଦ ନାହିଁ । କର୍ତ୍ତା, କର୍ମ, ଏକବଚନ, ବହୁବଚନ, ସ୍ତ୍ରୀଲିଙ୍ଗ, ପୁଂଲିଙ୍ଗ —ସବୁ ପ୍ରାୟ ସମାନ, ଯଥା—ମୁଁ—me ଆମ୍ଭେମାନେ—me two fella, me three fella, plenty me

ଇତ୍ୟାଦି କ୍ରିୟାର କାଳ-ରୂପ ମଧ୍ୟ ନାହିଁ, ବିଶେଷ ବିଶେଷ ଶବ୍ଦ ଯୋଗରେ ଅତୀତ ଓ ଭବିଷ୍ୟତ କାଳ ନିର୍ଣ୍ଣିତ ହୁଏ । ଏହା ପଶ୍ଚିମ ପ୍ରଶାନ୍ତ ମହାସାଗରସ୍ଥ ଦ୍ୱୀପପୁଞ୍ଜ-ମାନଙ୍କରେ ବ୍ୟବହୃତ ହୁଏ ।

(ଗ) ମରିସସ୍ କ୍ରେଓଲ୍ (Mauritiui Creole)—ମରିସସ୍ ଦ୍ୱୀପ ୧୭୧୫ ଖ୍ରୀ:ରେ ଫରାସୀମାନଙ୍କ ଦ୍ୱାରା ଅଧିକୃତ ଓ ଅଧ୍ୟୁଷିତ ହେବାପରେ କୃଷି କାର୍ଯ୍ୟ ଓ ଗୃହକାର୍ଯ୍ୟରେ ସାହାଯ୍ୟ କରିବା ଲାଗି ନିଗ୍ରୋମାନେ ମାଡ଼ାଗାସ୍କରରୁ ଆନୀତ ହୋଇଥିଲେ । ଉଭୟଙ୍କର କଥୋପକଥନର ସୁବିଧା ଦୃଷ୍ଟିରୁ 'କ୍ରେଓଲ୍' ମିଶ୍ରିତ-ଭାଷାର ସୃଷ୍ଟି । ୧୮୧୦ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଏହି ଦ୍ୱୀପକୁ ଅଧିକାର କରି ଇଂରାଜୀ ଭାଷାର ପ୍ରଚଳନ ଘଟାଇଲେ ମଧ୍ୟ ଏହି ମିଶ୍ରିତ ଭାଷା ଏପର୍ଯ୍ୟନ୍ତ ଲୋପ ପାଇନାହିଁ । ଏହି ଭାଷାରେ ଅଧିକାଂଶ ଶବ୍ଦ ଫରାସୀ, ଅଳ୍ପ ଶବ୍ଦ ନିଗ୍ରୋ । ଏଥିରେ ଫରାସୀ ଭାଷାରେ ପ୍ରଚଳିତ ବନାନ୍ ରକ୍ଷିତ ହୋଇନାହିଁ । ବ୍ୟାକରଣ ଯେତେଦୂର ସମ୍ଭବ ସରଳ; ଏକବଚନ, ବହୁବଚନ ଭେଦ ନାହିଁ, କାରକ ବିଭକ୍ତି ନାହିଁ, କ୍ରିୟା ରୂପ ଅଭିନ୍ନ; ବିଶେଷ ବିଶେଷ ଶବ୍ଦ ଯୋଗରେ କ୍ରିୟାର ଅତୀତ ଓ ଭବିଷ୍ୟତ କାଳ ଗଠିତ ହୋଇଥାଏ ।

(ଘ) ଚିନୁକ ମିଶ୍ରଭାଷା (Chinook Jargon)—ଉତ୍ତର ଆମେରିକାର ଓରେଗନ୍ ଅଞ୍ଚଳରେ ଏହି ଭାଷା ଉତ୍ପନ୍ନ ଓ ବ୍ୟବହୃତ । ଆଦିମ ଆମେରିକାନ୍ ଭାଷା ଚିନୁକ, ନୁଟକା ପ୍ରଭୃତି ସହିତ ଇଂରାଜୀ ଓ ଫରାସୀ ଭାଷାର ଶବ୍ଦ-ସମ୍ମିଶ୍ରଣରେ ଏହି ଭାଷାର ସୃଷ୍ଟି । ଏଥିରେ ଇଂରାଜୀ ଶବ୍ଦର କଠିନ ଧ୍ୱନି ଆମେରିକାନ୍ ଭାଷାର ସରଳ ଉଚ୍ଚାର୍ଯ୍ୟ ରୂପ ଓ ଆମେରିକାନ୍ ଭାଷାର ଧ୍ୱନି ୟୁରୋପୀୟ ଭାଷାର ସରଳ ଉଚ୍ଚାର୍ଯ୍ୟ ରୂପ ଗ୍ରହଣ କରିଛି ।

(ଙ) ସବୀର—ଭୂମଧ୍ୟସାଗରର ବନ୍ଦର ଅଞ୍ଚଳରେ ଏହି ଭାଷାର ପ୍ରୟୋଗ ହୋଇଥାଏ । ଏଥିରେ ଫରାସୀ, ସ୍ପେନୀୟ, ଇଟାଲୀ, ଗ୍ରୀକ୍, ଆରବୀ ପ୍ରଭୃତି ଭାଷାର ମିଶ୍ରଣ ହୋଇଛି ।

(୯) କୃତ୍ରିମ ଭାଷା—ଏହା ସ୍ୱାଭାବିକ ଭାବରେ ସମାଜ ଦ୍ୱାରା ବିକଶିତ ନହୋଇ ବ୍ୟକ୍ତି ବା ସୀମିତ ବ୍ୟକ୍ତିବର୍ଗଙ୍କ ଦ୍ୱାରା କୃତ୍ରିମ ଭାବରେ ଗଠିତ । ଏହାକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ (କ) ଗୁପ୍ତଭାଷା ବା ଗୂଢ଼ଭାଷା, (ଖ) ସମାନ ଭାଷା ବା ବ୍ୟାପକ ଭାଷା ।

(କ) ଗୁପ୍ତଭାଷା—ନିଜର ଭାବକୁ କେବଳ ଉପସ୍ଥିତ ବ୍ୟକ୍ତି ପାଖରେ ବ୍ୟକ୍ତ କରିବା ଓ ଅନୁପସ୍ଥିତ ବ୍ୟକ୍ତି ନିକଟରେ ଗୁପ୍ତ ରଖିବା ଲକ୍ଷ୍ୟରେ ଏହି ଭାଷାର ସୃଷ୍ଟି ।

ଯେମା, ଗୁପ୍ତଚର ବିଭାଗ, ଚୋର-ଡକାୟତ, ବାଳକ ପ୍ରଭୃତିଙ୍କ ଦ୍ୱାରା ଏପରି ଭାଷାର ସୃଷ୍ଟି ହୋଇଥାଏ । ଏହାକୁ ଠାର ଭାଷା ମଧ୍ୟ କୁହାଯାଇପାରେ । ବାଳକମାନେ କଉତୁକରେ ବ୍ୟବହାର କରୁଥିବା 'କ' ଠାର ଓ 'ପ' ଠାର ଭାଷାର ଗୋଟିଏ ଗୋଟିଏ ଉଦାହରଣ ଦେଖାଯାଉ—

ମୁଁ କୁଁ ଭାକା ତକ ଖାକା ଉକୁ ଛିକି—ମୁଁ ଭାତ ଖାଉଛି ।

ମୁଁ ପୁଁ ଭାପା ତପ ଖାପା ଉପୁ ଛିପି—ମୁଁ ଭାତ ଖାଉଛି ।

ଉତ୍ତର ପ୍ରଦେଶର ଜରିଆନ ପେଶାଓ୍ୱାଲମାନଙ୍କର ଏକ ଗୁପ୍ତଭାଷାରୁ କେତୋଟି ଉଦାହରଣ ଦିଆଯାଇପାରେ—

ଦାମୋଦର—ଉଦର ବା ପେଟରେ ଦାମ ବା ଧନ ଅଛି ।

ନାରସୁଣ—ନାଳରେ ନେଇ ଅସ ବା ନାଳରେ ଅଛି ।

ପରଦପାଦ ଦୋ—ବିଷ ଦିଅ ।

ଅମର କିଁଗେ—ମାର ଦିଅ ।

ଓଡ଼ିଶାର ବରିଷ୍ଠ ସାହିତ୍ୟିକ ଫକୀରମୋହନ ଡେଙ୍କାନାଳର ରାଜାଙ୍କର ଦେଓ୍ୱାନ ଥିବାବେଳେ ପ୍ରଜାମେଳର ସର୍ଦ୍ଦାର ଧରଣୀଧରଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ନିଜକୁ ମୁକ୍ତ କରିବା ପାଇଁ ଓ ରାଜନଗରକୁ ରକ୍ଷା କରିବା ପାଇଁ ସେ ଘରୁ କିଛି ପାନ ମଗାଇବା ଛଳରେ ଯେଉଁ ଚିଠି ଦେଇଥିଲେ ସେଥିରେ ଗୁପ୍ତ ଭାଷାର ବ୍ୟବହାର —"ଭୋଳାନାଥ ଖମାରୀଙ୍କୁ ଜଣାଇବୁ । ମହାରାଣୀଙ୍କ ପୁତ୍ର ଧରଣୀଧରଙ୍କ ସକାଶେ ନିତାନ୍ତ ଦରକାର । ଅତି ଶୀଘ୍ର ଶହେ ପାନ, ଦୁଇଶହ ଗୁଆ ପଠାଇବୁ । ଉତ୍ତର ପଟରୁ ମାହାରା କରି ଅଖୁବାଡ଼ିକୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଅଖୁବାଡ଼ି ବିନାଶ ଯିବ ।" ଏ ଚିଠିକୁ କେହି ବୁଝି ପାରିନଥିଲେ, ବୁଝିଥିଲେ ବାରିଷ୍ଟର ମଧୁବାବୁ ଓ ଅର୍ଥ କରିଥିଲେ—"ଦେଓ୍ୱାନ (ଫକୀରମୋହନ) ଉତ୍ତର ପଟରୁ ସୈନ୍ୟବାହିନୀ ପଠାଇବାକୁ ଇଙ୍ଗିତ ଦେଇଛନ୍ତି । ପାନ ଅର୍ଥ ସିପାହୀ, ଗୁଆ ଅର୍ଥ ଗୁଳି । ଉତ୍ତରଦିଗରୁ ସିପାହୀମାନେ ଯଦି ଶୀଘ୍ର ନ ଯିବେ ତେବେ ଅଖୁବାଡ଼ି ଅର୍ଥାତ୍ ରାଜନଗର ନଷ୍ଟ ହୋଇଯିବ । ଧରଣୀଧର ହେଉଛନ୍ତି ମେଳିଆଙ୍କ ସର୍ଦ୍ଦାର । ସେ ନିଜକୁ ଦାମ୍ଭାଙ୍କୀ ଭିକାରୀଙ୍କ ପୁତ୍ର ବୋଲି ପ୍ରଚାର କରୁଛନ୍ତି ।" ଚର୍ଯ୍ୟାଗୀତିକା-ଗୁଡ଼ିକରେ ଓ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ଯେଉଁ ପ୍ରତୀକାତ୍ମକ ଶବ୍ଦର ବ୍ୟବହାର ରହିଛି, ସେଗୁଡ଼ିକ ଗୁପ୍ତ ଶବ୍ଦ ଭାବରେ ମଧ୍ୟ ଅଭିହିତ ହୋଇପାରେ ।

(ଖ) ସାମାନ୍ୟ ଭାଷା—ସାମାନ୍ୟ କୃତ୍ରିମ ଭାଷାକୁ ଲୋକମାନେ ଯଥାଶୀଘ୍ର ବୁଝି ତାର ପ୍ରୟୋଗ କରିପାରନ୍ତି । ପ୍ରଫେସର ଡକ୍ଟର ଏଲ୍. ଏଲ୍. ଜାମେନହଫ (Zomenhof)ଙ୍କ ଦ୍ୱାରା ଅନ୍ୱେଷିତ 'ଏସ୍ପେରେଣ୍ଟୋ', ଏହିପରି ଭାଷାମାନଙ୍କ ମଧ୍ୟରେ ସର୍ବପ୍ରସିଦ୍ଧ । ଏହାକୁ ଏକ ଅନ୍ତର୍ରାଷ୍ଟ୍ରୀୟ ବା ଆନ୍ତର୍ଜାତିକ ଭାଷା ରୂପେ ପ୍ରଚଳିତ କରିବା ଲକ୍ଷ୍ୟରେ ଗଢ଼ାଯାଇଥିଲା । ଏହା ବ୍ୟତୀତ ଇଡ଼ୋ, ନୋଭିଆଲ, ଇଣ୍ଟରଲିଙ୍ଗୁଆ, ଅକସିଡେଣ୍ଟାଲ, ଇଣ୍ଟରଗ୍ଲୋସା, ଇଡ଼ିଅମ ନିଉଟ୍ରାଲ୍, ଡ୍ୟୁଟେନସ୍ ପ୍ରଭୃତି କେତେକ ସାମାନ୍ୟ କୃତ୍ରିମ ଭାଷାର ସୃଷ୍ଟି ହୋଇଛି ।

(i) ଏସ୍ପାରେଣ୍ଟୋ (Esperanto)—ପୋଲାଣ୍ଡବାସୀ ଚକ୍ଷୁ-ଚିକିତ୍ସକ ଡକ୍ଟର ଏଲ୍. ଏଲ୍, ଜାମେନହଫ୍ ଜଣେ ବିଖ୍ୟାତ ଭାଷାବିତ୍ ଥିଲେ ଓ ୟୁରୋପର ପ୍ରାୟ ସମସ୍ତ ଭାଷା ଲେଖି, ପଢ଼ି ଓ କହି ଜାଣିଥିଲେ । ଏହି କୃତ୍ରିମ ବିଶ୍ୱଭାଷାର ସୃଷ୍ଟି ପାଇଁ ତାଙ୍କର ସମସ୍ତ ଜୀବନକାଳ ଉତ୍ସର୍ଗ କରିଦେଇଥିଲେ ଓ ସର୍ବପ୍ରଥମେ ୧୮୮୭ ଖ୍ରୀଷ୍ଟାବ୍ଦରେ ବିଶ୍ୱ ସମକ୍ଷରେ ଏହି ଭାଷାକୁ ଉପସ୍ଥାପିତ କରିଥିଲେ । ଏହାର ଉପଯୋଗିତା ଓ ବୈଶିଷ୍ଟ୍ୟ ଉପଲବ୍ଧି କରି କାଳକ୍ରମେ ୟୁରୋପର ବହୁ ବିଦ୍ୱାନ୍ ଏଥିପ୍ରତି ଆକୃଷ୍ଟ ହେଲେ ଓ ଏହାର ପ୍ରଚାର ଲାଗି ଏ ସଂସ୍ଥା ଗଠିତ ହେଲା । ଲିଗ୍ ଅଫ୍ ନେସନ୍ସ ଅନୁରୋଧରେ ପୃଥିବୀର ବହୁ ରାଷ୍ଟ୍ରର କେତେକ ଶିକ୍ଷାନୁଷ୍ଠାନରେ ଏହାର ଶିକ୍ଷା ଦିଆଯାଇଥିଲା । ୧୯୨୫ ଖ୍ରୀଷ୍ଟାବ୍ଦରେ ଆନ୍ତର୍ଜାତିକ ତାରବାର୍ତ୍ତା ସଂଘ ଏହାର ଉଚ୍ଚ ପ୍ରଶଂସା କରିଥିଲେ ଓ ୧୯୨୭ ଖ୍ରୀଷ୍ଟାବ୍ଦରେ ପୃଥିବୀରେ ୪୫ଟି ପ୍ରଧାନ ଆକାଶବାଣୀରେ ଏ ସମ୍ପର୍କରେ ପ୍ରଚାର ହୋଇଥିଲା । ଭାରତବର୍ଷରେ ଦିଲ୍ଲୀରେ ଏହି ଭାଷା ଅଧ୍ୟୟନର ବ୍ୟବସ୍ଥା ଅଛି । ଏହି ଭାଷାରେ କେତୋଟି ମୌଳିକ ଗ୍ରନ୍ଥ ରଚିତ ହୋଇଛି; କିନ୍ତୁ ଅନୂଦିତ ଗ୍ରନ୍ଥ ସଂଖ୍ୟା ଯଥେଷ୍ଟ ବେଶୀ । ମୋଟରେ ପ୍ରାୟ ୨ ହଜାର ଗ୍ରନ୍ଥ ଓ ପ୍ରାୟ ଏକଶହ ପତ୍ରିକା ଏହି ଭାଷାରେ ଲିଖିତ ହୋଇଛି । ଅନୁବାଦିତ ଗ୍ରନ୍ଥ ମଧ୍ୟରେ ବାଇବେଲ୍‌ର ରୂପାନ୍ତର ମହତ୍ତ୍ୱପୂର୍ଣ୍ଣ ।

ଏସ୍ପାରେଣ୍ଟୋ ଏକ ଲାଟିନ୍ ଶବ୍ଦ ଓ ଏହାର ଅର୍ଥ 'ଯେ ଆଶାକରେ' (the one who hopes) ବାସ୍ତବରେ ଏସ୍ପାରେଣ୍ଟୋ ବିଭିନ୍ନ ଭାଷାଭାଷୀ ବିଶ୍ୱବାସୀଙ୍କର ଭାବପ୍ରକାଶର ସାଧାରଣ ବାହନ ହେବା ପାଇଁ 'ଆଶାକରି' ସୃଷ୍ଟି ଲାଭ କରିଥିଲା । ୧୮୮୭ ମସିହାରେ ସୃଷ୍ଟ ଏହି ଭାଷା ୧୯୩୯ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରାୟ ଏକଲକ୍ଷ ଲୋକଙ୍କର ସାଧାରଣ ଭାଷା ହୋଇପାରିଥିଲା ଓ ୧୯୧୮ ମସିହା ପୂର୍ବରୁ ଅନେକବାର ଆନ୍ତର୍ଜାତିକ ସଭା ସମିତିରେ ବ୍ୟବହୃତ ହୋଇପାରିଥିଲା । ଜାମେନହଫ୍ ଯେଉଁ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ତାହା ବିଭିନ୍ନ ଭାଷାଭାଷୀ (ରୁଷୀୟ, ଜର୍ମାନ୍, ପୋଲାଣ୍ଡ୍ ଓ ଜିଭ୍) ଜାତିମାନଙ୍କ ଦ୍ୱାରା ଅଧିକୃତ ଓ ଅଧ୍ୟୁଷିତ ହୋଇଥିବାରୁ ଭାବର ଆଦାନ

ପ୍ରଦାନରେ ଅସୁବିଧା ଦେଖା ଦେଇଥିଲା । ଏହି ଅସୁବିଧା ଦୂର କରିବା 'ଆଶା'ରେ ସେ ଏହି କୃତ୍ରିମ ଭାଷାର ସୃଷ୍ଟି କରିଥିଲେ ।

ଅତି ଅଳ୍ପସଂଖ୍ୟକ ଶବ୍ଦରେ ଭାଷାଟି ଗଠିତ ଓ ଏହାର ଶବ୍ଦ ଅଧିକାଂଶ ୟୁରୋପୀୟ ଭାଷା ସଙ୍ଗରେ ମେଳ ଖାଏ । ଡଃ ଜାମେନ୍‌ହଫ୍ ଏହାକୁ ସୃଷ୍ଟି କରିବା ପାଇଁ ବହୁ ଭାଷାର ବ୍ୟାକରଣର ବିଶ୍ଳେଷଣ କରିଛନ୍ତି ଓ ତାହାର ଭିତରେ ଏହି ଭାଷା ସମ୍ପର୍କରେ ୧୬ଟି ନିୟମ ପ୍ରଣୟନ କରିଛନ୍ତି, ଯାହାକୁ ଘଣ୍ଟାଏ ଅଧଘଣ୍ଟେ ଭିତରେ ବୁଝିହେବ । ଏହି ବ୍ୟାକରଣରେ ସାଦୃଶ୍ୟ (snalogy)ର ଯଥେଷ୍ଟ ପ୍ରଭାବ ରହିଛି । ବାକ୍ୟରଚନା ଦୃଷ୍ଟିରୁ ଏହା ଅଶ୍ଳିଷ୍ଟ ଯୋଗାତ୍ମକ । ତୁର୍କୀ ପରି ଏଥିରେ ସମ୍ବନ୍ଧ ତତ୍ତ୍ୱ ବେଶ୍ ସ୍ପଷ୍ଟ । ଉଦାହରଣ ସ୍ୱରୂପ—

କ୍ୟାଟ୍ (Kat)=ବିଲେଇ, ଇନ୍ (in)=ସ୍ତ୍ରୀ ଲିଙ୍ଗର ଚିହ୍ନ, ଇଡ୍ (id)= ଶିଶୁମାନଙ୍କର ଚିହ୍ନ ।

ଏଟ୍ (et)=ଛୋଟ ପାଇଁ ଚିହ୍ନ ଓ (o) ବଚନର ଚିହ୍ନ
ଗୋଟିଏ ମାଈ ବିଲେଇ=Kat-in-o
ଗୋଟିଏ ବିଲେଇର ଛୁଆ=Kat-id-o
ଗୋଟିଏ ମାଈ ବିଲେଇର ଛୁଆ=Kat-in-id-o
ଗୋଟିଏ ଛୋଟ ମାଈ ବିଲେଇର ଛୁଆ=Kat-in-et-id-o

ଏହିପରି ଭାବରେ ଶବ୍ଦକୁ ପଦରେ ପରିଣତ କରିବା ପାଇଁ କେବଳ ପ୍ରତ୍ୟୟ ହିଁ ସଂଯୋଗ କରିବାକୁ ପଡ଼େ ।

ବଚନର ପରିବର୍ତ୍ତନ ହେଲେ ବିଶେଷ୍ୟ ଗୋଟିଏ ବର୍ଗରୁ ଅନ୍ୟ ବର୍ଗକୁ ବଦଳିଯାଏ, ଅର୍ଥାତ୍ ଏକ ବଚନରେ ବିଶେଷ୍ୟ ପୁଂଲିଙ୍ଗ, ଦ୍ରବ୍ୟ ସବଳ (ବଡ଼), ଜନ୍ତୁ ଆଦି ଥିଲେ ବହୁବଚନରେ ଯଥାକ୍ରମେ ସ୍ତ୍ରୀଲିଙ୍ଗ, ବସ୍ତୁ, ଦୁର୍ବଳ (ଛୋଟ) ଏବଂ ଅଜନ୍ତୁ ଆଦିରେ ପରିଣତ ହୋଇଯାଏ ।

ଏହାର ଲିପି ହେଉଛି ରୋମାନ୍; କିନ୍ତୁ ଇଂରାଜୀ ପରି ବନାନ୍ ବିଭ୍ରାଟ ନାହିଁ । ନିର୍ଦ୍ଦିଷ୍ଟ ନିୟମ ଅନୁଯାୟୀ ଯାହା କୁହାଯାଏ ତାହା ଲେଖାଯାଏ ଏବଂ ଯାହା ଯାହା ଲେଖାଯାଏ ତାହା ପଢ଼ାଯାଏ । ଶବ୍ଦ ଭଣ୍ଡାର ବିଶେଷତଃ ୟୁରୋପୀୟ ଶବ୍ଦ ଧାତୁ ଉପରେ ଆଧାରିତ । ଏହି ଧାତୁଗୁଡ଼ିକ ଭିତରେ ଅର୍ଦ୍ଧାଧିକ ଅଂଶ ଲାଟିନ ଭାଷାରୁ ଆନୀତ, ପ୍ରାୟ ଏକ-ଚତୁର୍ଥାଂଶ ଟ୍ୟୁଟନିକ ଭାଷାରୁ ଓ ଅବଶିଷ୍ଟାଂଶ ଅନ୍ୟ ଅନ୍ୟ ଭାଷାରୁ ସଂଗୃହୀତ ।

ଏ ସବୁ ମହତ୍ତ୍ୱ ସତ୍ତ୍ୱେ ଏସ୍ପାରେଣ୍ଟୋ ଜୀବନ୍ତ ଭାଷା ନୁହେଁ ଓ ଏହାର ସ୍ୱାଭାବିକ ବିକାଶ ହୋଇନାହିଁ । କୌଣସି ରାଷ୍ଟ୍ର ବା ବିଶିଷ୍ଟ ଅଞ୍ଚଳର ଏହା ମାତୃଭାଷା ହୋଇପାରି ନାହିଁ । ବିଶ୍ୱଭାଷା ହେବା ତ ଦୂରର କଥା କୌଣସି ଦେଶର ସ୍ୱୀକୃତ ଭାଷା ହୋଇପାରିନଥିବାରୁ ଏସ୍ପାରେଣ୍ଟୋର ସଫଳତା ତଥାପି ଅପୂର୍ଣ୍ଣ ରହିଛି ।

(ii) ଇଡ଼ୋ (Ido)—ବିଂଶ ଶତାବ୍ଦୀର ପ୍ରାରମ୍ଭରେ (୧୯୦୭)ରେ କେତେକ ଭାଷାବିତ୍ (ଯେଉଁମାନଙ୍କ ମଧ୍ୟରେ Conturat ହେଉଛନ୍ତି ପ୍ରଧାନ ) ଏସ୍ପାରେଣ୍ଟୋ ଭାଷାରେ କେତେକ ପରିବର୍ତ୍ତନ ଆବଶ୍ୟକ ବୋଲି ଅନୁଭବ କଲେ ଓ ଅଧିକ ଉପଯୋଗୀ ଏକ ନବୀନ ଭାଷାର ଜନ୍ମ ଦେଲେ । ଇଡ଼ୋ ଶବ୍ଦ ହେଉଛି ଏସ୍ପାରେଣ୍ଟୋ ଭାଷାର ଏକ ଶବ୍ଦ ଓ ଏହାର ଅର୍ଥ 'ଶିଶୁ' ବା 'ନବଜାତକ' । ଏସ୍ପାରେଣ୍ଟୋରେ ଯାହା କିଛି ଜଟିଳତା ଥିଲା ତାହା ଇଡ଼ୋରେ ଦୂରୀଭୂତ ହୋଇଛି ଓ ଏସ୍ପାରେଣ୍ଟୋ ଅପେକ୍ଷା ଅଧିକ ବୈଜ୍ଞାନିକ, ସରଳ ତଥା ସ୍ୱାଭାବିକ ହୋଇପାରିଛି । ତଥାପି ଏହା ବିଶ୍ୱଭାଷା ବା କୌଣସି ଦେଶର ଭାଷା ସ୍ଥାନ ଅଧିକାର କରିବାର ଗୌରବ ଅର୍ଜନ କରିପାରି ନାହିଁ ।

ଏହାଛଡ଼ା ଭାଷାର ଅନ୍ୟାନ୍ୟ କେତୋଟି ରୂପ ମଧ୍ୟ କଳ୍ପନା କରାଯାଇ-ପାରେ, ଯଥା—ସାହିତ୍ୟିକ ଭାଷା (କଥିତ ଭାଷା ତୁଳନାରେ ଅଧିକ ବିକଶିତ, ଅଳଂକୃତ, କଠିନ, ପାରମ୍ପରିକ ) ଜୀବନ୍ତ ଭାଷା (ଯାହା ଏବେବି ପ୍ରଚଳିତ, ଯଥା—ଓଡ଼ିଆ, ହିନ୍ଦୀ, ବଙ୍ଗଳା ), ମୃତଭାଷା (ଯାହା ଅପ୍ରଚଳିତ ହୋଇଗଲାଣି, ଯଥା—ହିଟ୍ଟାଇଟ୍), ସ୍ତ୍ରୀ ଭାଷା (ଯାହା କେବଳ ସ୍ତ୍ରୀମାନେ ବ୍ୟବହାର କରନ୍ତି, ଯଥା—ଉର୍ଦ୍ଦୁର 'ରେଖତୀ', ଆଦିବାସୀ ଭାଷା ଅନେକ), ପୁରୁଷ ଭାଷା କେବଳ ପୁରୁଷମାନେ ବ୍ୟବହାର କରନ୍ତି, ଯଥା—ଆଦିବାସୀ ଭାଷା କିଛିକ), ଗ୍ରାମ୍ୟଭାଷା, ଶିଷ୍ଟ ଭାଷା, ସାଧୁ ଭାଷା, ଅସାଧୁ ଭାଷା ଇତ୍ୟାଦି ।

ଉପଯୁକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଯେ ଭାଷାର ଉଦ୍ଦେଶ୍ୟ କେବଳ ଅଭିବ୍ୟଞ୍ଜନା ନୁହେଁ ଗୋପନ ମଧ୍ୟ । ଏହାର ବହୁ ରୂପରୂପାନ୍ତର ରହିଛି । ବିଭିନ୍ନ ରୂପ ଭିତରେ ଅବଶ୍ୟ ଅନେକ ସମୟରେ ସ୍ପଷ୍ଟ ବିଭେଦ ରେଖା ଟାଣି ହେବ ନାହିଁ ।

ଭାଷାମାନଙ୍କ ସମ୍ପର୍କରେ ଏକ ମୌଳିକ ତଥ୍ୟ ହେଉଛି—ଏହାର ସରଳତା-କଠିନତା, ଉତ୍କର୍ଷ-ଅପକର୍ଷ, ଆଦୃତ-ଅନାଦୃତ ଏକ ଏକ ଆପେକ୍ଷିକ ଲକ୍ଷଣ । ଏ ସବୁ ଲକ୍ଷଣ, ଅଭ୍ୟାସ, ସଂସ୍କାର, ରୁଚି ଓ ପରିପ୍ରେକ୍ଷୀ ଉପରେ ନିର୍ଭର କରେ । ଜଣକୁ ଯେଉଁ ଭାଷା କଠିନ ମନେହେଉଛି ଅନ୍ୟ ଜଣକୁ ତାହା ସହଜ ମନେ-ହୋଇପାରେ । ଜଣକର ମାତୃଭାଷା ତାହା ପକ୍ଷରେ ସରଳ; କାରଣ ସେ ତାହାର ଶିକ୍ଷା ବା ଅର୍ଜନ ପାଇଁ ଶୈଶବରୁ ଅଭ୍ୟାସ କରୁଛି । ଅନେକଙ୍କୁ ମାତୃଭାଷା ଅପେକ୍ଷା

ଅନ୍ୟ ଭାଷା ବି ଭଲଲାଗିପାରେ, ଯଦି ସେହି ଭାଷାର ସାହିତ୍ୟ, ଭାଷାର ମାଧୁର୍ଯ୍ୟ ତାକୁ ଅଧିକ ଆନନ୍ଦ ଦେଇଛି । ଇଂରାଜୀ ଭାଷା ବିଶ୍ୱର ପ୍ରସିଦ୍ଧତମ ଓ ଶ୍ରେଷ୍ଠଭାଷା ହେଲେ ମଧ୍ୟ ଅନେକ ଭାରତୀୟ ଗ୍ରାମ୍ୟଙ୍କ ନିକଟରେ ତାହା ଏକ ମୁଣ୍ଡବ୍ୟଥା । ବର୍ଷ ବର୍ଷ ଧରି କଠିନ ପରିଶ୍ରମ କଲେ ବି ଇଂରାଜୀ ଭାଷା ଶୁଦ୍ଧ ଭାବରେ ଲେଖିବା, ପଢ଼ିବା ଓ କହିବାକୁ ବହୁ ଭାରତୀୟଙ୍କ ପକ୍ଷରେ କଷ୍ଟସାଧ୍ୟ, ତେଣୁ ଇଂରାଜୀ ଭାଷା ସେମାନଙ୍କ ଦୃଷ୍ଟିରେ ବିଷ ।

ଭାଷା ସର୍ବଦା ବିକାଶଶୀଳ । ବହୁ ବିଦ୍ୱାନ୍‌ଙ୍କର ଦୃଷ୍ଟିରେ ଯାହା ଭାଷାରେ 'ଅପଭ୍ରଂଶ', ଭାଷା ବିଦ୍ୱାନ୍‌ମାନଙ୍କ ଦୃଷ୍ଟିରେ ତାହା ଭାଷାର 'ବିକାଶ' । ବ୍ୟାକରଣର ମାନଦଣ୍ଡ ଦୃଷ୍ଟିରୁ ହୁଏତ ଗୋଟିଏ ଭାଷା 'ଅପଭ୍ରଷ୍ଟ' ହୋଇଗଲା ବୋଲି ବିଚାର୍ଯ୍ୟ ହୋଇପାରେ; କିନ୍ତୁ ଭାଷାବିଜ୍ଞାନ ଦୃଷ୍ଟିରୁ ତାହା ଏକ ସମୃଦ୍ଧ ଭାଷା ବା ଜୀବନ୍ତ ଭାଷାର 'ବିକଶିତ' ରୂପ ଓ ଏକ ନୂତନ ଭାଷାର ସୂର୍ଯ୍ୟୋଦୟ । ଏ ପରିବର୍ତ୍ତନ ଅନିବାର୍ଯ୍ୟ, ଅବଶ୍ୟମ୍ଭାବୀ । ବାର୍ଦ୍ଧକ୍ୟ ଅବସ୍ଥାକୁ ଯେପରି ମଣିଷଜୀବନର ଅଧଃପତିତ ଅବସ୍ଥା କୁହାଯାଇ ପାରିବ ନାହିଁ, ସେହିପରି ଭାଷାର ପରିବର୍ତ୍ତନକୁ ଅଧଃପତନ ବୋଲି କୁହାଯାଇ ପାରିବ ନାହିଁ । ତୁଷାର-ନିଃସୃତ ଚିରସ୍ରୋତା ସ୍ରୋତସ୍ୱିନୀର ସ୍ରୋତ ପରି ଭାଷାର ପ୍ରବାହ ନିରବଚ୍ଛିନ୍ନ, ଅଗ୍ରଗାମୀ ଓ ପ୍ରବର୍ଦ୍ଧମାନ ।



● ଦ୍ୱିତୀୟ ପରିଚ୍ଛେଦ ●

# ଭାଷାର ଉତ୍ପତ୍ତି ସମ୍ପର୍କୀୟ ବିଭିନ୍ନ ସିଦ୍ଧାନ୍ତ

ଭାଷା ବିଜ୍ଞାନର ଆରମ୍ଭରୁ ଭାଷାର ଉତ୍ପତ୍ତି ସମ୍ପର୍କୀୟ ପ୍ରଶ୍ନ ଭାଷା ବିଜ୍ଞାନୀମାନଙ୍କର ଦୃଷ୍ଟି ଆକର୍ଷଣ କରିଆସିଛି । ଏହା ଭାଷା ବିଜ୍ଞାନର ସବୁଠାରୁ ବଡ଼ ଜଟିଳ ଓ ବିବାଦ ପ୍ରଶ୍ନ । ଏ ସମ୍ପର୍କରେ ବହୁ ବିଦ୍ୱାନ୍ ତନ୍ନତନ୍ନ ଅଧ୍ୟୟନ କରି ବହୁ ଭିନ୍ନ ଭିନ୍ନ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଏହି ସିଦ୍ଧାନ୍ତଗୁଡ଼ିକ ମଧ୍ୟରୁ ଅନେକେ ପରସ୍ପରଠାରୁ ଏତେ ଭିନ୍ନ ଯେ ଭାଷାର ଉତ୍ପତ୍ତି ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ନିର୍ଦ୍ଧାରଣ କରିପାରନ୍ତି ନାହିଁ । ଏ ଜଟିଳତା ଅନେକ ଭାଷା ବିଦ୍ୱାନ୍‌ଙ୍କୁ ଏତେ ବ୍ୟସ୍ତ କରି ପକାଇଛି ଯେ ସେମାନେ ଏହାକୁ ଏକ ପ୍ରଶ୍ନ ବୋଲି ସ୍ୱୀକାର କରନ୍ତି ନାହିଁ । ଭାଷାବିତ୍ ଏଲ୍. ଏଚ୍. ଗ୍ରେଙ୍କ ମତରେ—"ବର୍ତ୍ତମାନ ସ୍ଥିତିରେ ଭାଷା ଉତ୍ପତ୍ତି ସମ୍ପର୍କୀୟ ପ୍ରଶ୍ନଟି ପ୍ରମାଣ ଅଭାବରୁ ଭାଷାବିଜ୍ଞାନ ଅଧ୍ୟୟନ ପରିସରରୁ ସମ୍ପୂର୍ଣ୍ଣ ବହିର୍ଭୂତ ହେବା ଉଚିତ ।" "ଏହା ସତ୍ୟ ଯେ, ଭାଷାବିଜ୍ଞାନ ସହିତ ଭାଷାର ଉତ୍ପତ୍ତି ସମ୍ପର୍କୀୟ ସମସ୍ୟାର କୌଣସି ସମ୍ପର୍କ ନାହିଁ ।" ଭାଷାବିତ୍‌ମାନଙ୍କର ଏ ପ୍ରଶ୍ନ ଉପରେ ସାତନ୍ତ୍ର୍ୟ ଦ୍ୱାର ଦୁଇଟି କାରଣ ଅନୁମାନ କରାଯାଇପାରେ—(କ) ଭାଷାର ଦୈବୀ ଉତ୍ପତ୍ତି ସିଦ୍ଧାନ୍ତର ସାର୍ବଦେଶୀକ ପରମ୍ପରାଗତ ବିଶ୍ୱାସ, (ଖ) ଅଧ୍ୟୟନ ସାମଗ୍ରୀର ଅଭାବ ।

ଯେ ଯାହାହେଉ, ଭାଷାର ଉତ୍ପତ୍ତି ସମ୍ପର୍କରେ ଯେଉଁ ବିଭିନ୍ନ ସିଦ୍ଧାନ୍ତ ନିର୍ଣ୍ଣିତ ହୋଇଅଛି, ତାହା ବେଶ୍ କୌତୂହଳ-ଜନକ ।

## (୧) ଦୈବୀ ଉତ୍ପତ୍ତି ସିଦ୍ଧାନ୍ତ (Divine Theory)—

ଏହା ହେଉଛି ଭାଷାର ଉତ୍ପତ୍ତି ସମ୍ପର୍କରେ ପ୍ରାଚୀନତମ ସିଦ୍ଧାନ୍ତ । ବହୁ ଦେଶରେ ସେହି ଦେଶର ଧାର୍ମିକ ଧାରଣା ଅନୁଯାୟୀ ଏକ ଏକ ଦୈବୀ ସିଦ୍ଧାନ୍ତ

ଅବିଷ୍କୃତ ହୋଇଅଛି । ତେବେ ସ୍ଥୂଳତଃ ଦୈବୀ ସିଦ୍ଧାନ୍ତ କହିଲେ ଏହା ବୁଝାଏ ଯେ ପୃଥିବୀର ସବୁ ପଦାର୍ଥ ପରି ଭାଷା ମଧ୍ୟ ଭଗବାନଙ୍କ ଦ୍ୱାରା ସୃଷ୍ଟି । ଭଗବାନ ମାନବକୁ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ତା'ର ଭାଷାକୁ ମଧ୍ୟ ସୃଷ୍ଟି କରିଛନ୍ତି । ଜନ୍ମଗ୍ରହଣ କରିବା ମାତ୍ରେ ମାନବ ଯେପରି ଶ୍ୱାସପ୍ରଶ୍ୱାସ ଓ ରକ୍ତସଞ୍ଚାଳନ ପ୍ରଭୃତି ଶକ୍ତିର ଅଧିକାରୀ ହୁଏ ସେହିପରି ଭାଷା-ଶକ୍ତିର ଅଧିକାରୀ ହୁଏ ।

ଭାରତୀୟ ପରମ୍ପରାରେ ବେଦର ଭାଷା ସଂସ୍କୃତ ଅପୌରୁଷେୟ ବା ଦେବଭାଷା । ଔପମନ୍ୟବ, ଔଦୁମ୍ବରାୟଣ, ଯାସ୍କ (ଖ୍ରୀ. ପୂ. ୩୯୦୦), କୃଷ୍ଣଦ୍ୱୈପାୟନ, ବ୍ୟାସ ପ୍ରଭୃତି ବିଦ୍ୱାନ୍ ଏପରି ସିଦ୍ଧାନ୍ତ ସ୍ୱୀକାର କରିଛନ୍ତି । ଋକ୍ ବେଦର 'ଦେବୀଂ ବାଚମଜନୟନ୍ତ ଦେବାଃ'' ଉକ୍ତିରେ ଏହି ସିଦ୍ଧାନ୍ତର ସମର୍ଥନ ଅଛି ।

ମିଶରୀୟମାନେ ସେମାନଙ୍କ ପବିତ୍ର ଗ୍ରନ୍ଥକୁ କହନ୍ତି 'ଦ୍ର-ନ୍ତ୍ର' ଅର୍ଥାତ୍ ଦେବଭାଷା । ହୋମର୍ ବିଶ୍ୱାସ କରୁଥିଲେ ଯେ ଦେବତାମାନଙ୍କର ଭାଷା ହିଁ ମନୁଷ୍ୟର ଭାଷା । କ୍ୟାଥୋଲିକ୍‌ମାନଙ୍କ ମତରେ ହିବ୍ରୁ ଭାଷା ଭଗବାନଙ୍କ ଦ୍ୱାରା ସୃଷ୍ଟି । ବୌଦ୍ଧ-ମାନେ ପାଲି ଭାଷାକୁ ବିଶ୍ୱର ମୂଳ ଭାଷା ଓ ଭଗବାନ ବୁଦ୍ଧଦେବଙ୍କ ଦ୍ୱାରା ସୃଷ୍ଟି ଭାଷା ବୋଲି କହିଥାନ୍ତି । ହେରାକ୍ଲିଟସଙ୍କର ଧାରଣା ଥିଲା ଯେ ଶବ୍ଦ ଆକାଶରୁ ସ୍ୱାଭାବିକ ଭାବରେ ସୃଷ୍ଟି, ମନୁଷ୍ୟ ଦ୍ୱାରା ସୃଷ୍ଟି ନୁହେଁ । ପ୍ଲେଟୋଙ୍କ ମତରେ ସମସ୍ତ ପଦାର୍ଥ ପରି ଭାଷା ପ୍ରକୃତିପ୍ରଦତ୍ତ ବା ଦୈବୀ ପ୍ରଦତ୍ତ ।

ଜି. ଏଚ୍. ହର୍ଡର ଏହି ସିଦ୍ଧାନ୍ତକୁ ଆକ୍ଷେପ କରି କହିଛନ୍ତି—ଯଦି ଭାଷା ହୋଇଛି ଦୈବୀକୃତ, ତେବେ ପୃଥିବୀର ସବୁ ମଣିଷ ଏକ ଭାଷା କହୁଥାନ୍ତେ । ଗ୍ରେଗରୀ ବିଶପଙ୍କ ମତ ହେଉଛି, ଈଶ୍ୱର ଯଦ୍ୟପି ମଣିଷକୁ ସୃଷ୍ଟି କରିଛନ୍ତି, ପୃଥିବୀର ସବୁ ପଦାର୍ଥକୁ ସେ ସୃଷ୍ଟି କରିଛନ୍ତି, ତାହା ଭାବିବା ଭୁଲ୍ । ମଣିଷ ମଧ୍ୟ କେତେକ ପଦାର୍ଥ ସୃଷ୍ଟି କରିଛନ୍ତି । ଆର. ଏ. ଉଇଲ୍‌ସନ୍‌ଙ୍କ ମତରେ—ଭଗବାନ ହୁଏତ ମନୁଷ୍ୟକୁ ଉପହାର ସ୍ୱରୂପ ଭାଷା ସୃଷ୍ଟି କରିବାର ଶକ୍ତି ଦେଇଛନ୍ତି; କିନ୍ତୁ ମଣିଷ ହିଁ ଭାଷା ସୃଷ୍ଟି କରିଛି । ଦୈବୀ ସିଦ୍ଧାନ୍ତର ଖଣ୍ଡନ ପାଇଁ ଏକ ଐତିହାସିକ ଘଟଣାର ଦୃଷ୍ଟାନ୍ତ ନିଆଯାଇପାରେ ।

ମିଶରର ରାଜା ସେମିଟିକସ୍ (Psammitichos) ଦୁଇଟି ଶିଶୁକୁ ଜନ୍ମ ଦେବା ସଙ୍ଗେ ସଙ୍ଗେ ଅଲଗା ରଖିନେଲେ । ସେମାନଙ୍କ ପାଖକୁ ଯାଉଥିବା ଲୋକ ସେମାନଙ୍କ ଆଗରେ କୌଣସି ଶବ୍ଦ ଉଚ୍ଚାରଣ କରିବା ନିଷେଧ ଥିଲା । ବଡ଼ ହୋଇଗଲା ପରେ ସେମାନଙ୍କ ମୁହଁରୁ କେବଳ 'ବେକୋସ୍' (bekos) ଶବ୍ଦଟି ଶୁଣାଗଲା । ସେମାନଙ୍କୁ ରୁଟି ଦେଉଥିବା ଭୃତ୍ୟ ଅଜ୍ଞାତସାରରେ ସେମାନଙ୍କ ଆଗରେ

ଏହି ଗୋଟିଏ ଶବ୍ଦ ଉଚ୍ଚାରଣ କରି ପକାଇଥିଲା । ଭୃତ୍ୟଟି ଫ୍ରିଜିଆନ ଭାଷା-ଭାଷୀ ଓ ଏହି ଭାଷାରେ ବେକୋସ୍‌ର ଅର୍ଥ ହେଉଛି ରୁଟି । ଫ୍ରେଡ଼ରିକ୍-ଦ୍ୱିତୀୟ (୧୧୯୪-୧୨୫୦, ସ୍କଟଲଣ୍ଡର ଜେମସ୍-ଚତୁର୍ଥ (୧୪୮୮-୧୫୧୩) ଏବଂ ଅକବର ବାଦ୍‌ଶାହ (୧୫୫୬-୧୬୦୫) ଏହିପରି କେତେକ ପରୀକ୍ଷା କରିଥିଲେ । ଅକବରଙ୍କ ପ୍ରୟୋଗର ଫଳ ଏହା ହେଲା ଯେ ଶିଶୁଗୁଡ଼ିକ ମୂକ ହୋଇ ବାହାରିଲେ । ଏଥିରୁ ପ୍ରମାଣିତ ହେଉଛି ଯେ ଶିଶୁ ମା' ପେଟରୁ ଭାଷା ଶିଖି ଆସିନଥାଏ ବା ଭାଷା ଦୈବସୃଷ୍ଟି ନୁହେଁ ।

## (୨) ଧାତୁ ସିଦ୍ଧାନ୍ତ ବା ଅନୁରଣନ ସିଦ୍ଧାନ୍ତ (Root Theory or Ding-dong Theory)—

ପ୍ଲେଟୋ ଏହି ସିଦ୍ଧାନ୍ତ ସମ୍ପର୍କରେ କେତେକ ସୂଚନା ଦେଇଥିଲେ ; କିନ୍ତୁ ଜର୍ମାନ ପ୍ରଫେସର ହେସ୍ (Heyse) ଏହାର ସ୍ପଷ୍ଟ ରୂପ ପ୍ରଦାନ କରିଥିଲେ । ମାକ୍ସମୂଲର ପ୍ରଥମେ ଧାତୁ ସିଦ୍ଧାନ୍ତର ସମର୍ଥନ କରିଥିଲେ; କିନ୍ତୁ ପରେ ନିରର୍ଥକ କହି ତ୍ୟାଗ କରିଦେଇଥିଲେ ।

ଏହି ସିଦ୍ଧାନ୍ତ ଅନୁଯାୟୀ ଭିନ୍ନ ଭିନ୍ନ ଭାଷା ପରିବାର ମଧ୍ୟରେ ଅସଂଖ୍ୟ ଧାତୁ (କ୍ରିୟାମୂଳ) ରହିଥିଲା । ଏହି ଧାତୁ ହିଁ ହେଉଛି କ୍ରିୟା ସୃଷ୍ଟି ଓ ଶବ୍ଦ ସୃଷ୍ଟିର ମୂଳବୀଜ । ଏହି ଶବ୍ଦ ପଦର ଓ ପଦ ବାକ୍ୟର ଆଧାର । ବାକ୍ୟ ଭାଷାର ଆଧାର । ଏହିପରି ଧାତୁ ଭାଷାର ମୂଳବୀଜ । କାଳକ୍ରମେ ଏହି ଧାତୁଗୁଡ଼ିକ ଲୋପପାଇ ପ୍ରାୟ ଦୁଇଶହ-ପାଞ୍ଚଶହ ପର୍ଯ୍ୟନ୍ତ ସଙ୍କୁଚିତ ହୋଇଆସିଛି । ମାକ୍ସମୂଲର ଧାତୁକୁ ଧାତୁ (metal)ର ଅନୁରଣନରୁ ସୃଷ୍ଟି ବୋଲି ଭାବିଥିଲେ । ତାଙ୍କ ମତରେ ପୃଥିବୀରେ ତମ୍ବା, ପିତ୍ତଳ, ଲୁହା, ସୁନା ପ୍ରଭୃତି ଭିନ୍ନ ଭିନ୍ନ ଧାତୁ ଭିନ୍ନ ଭିନ୍ନ ଧ୍ୱନି ସୃଷ୍ଟି କରିଥାନ୍ତି । ମନୁଷ୍ୟ ପ୍ରଥମେ ଏହି ଧ୍ୱନିକୁ ଅନୁକରଣ କରି ଅବିକଳ ଉଚ୍ଚାରଣ କରିବାକୁ ଚେଷ୍ଟା କଲା । କ୍ରମେ ଏହି ଅନୁରଣନର ଅନୁକରଣରୁ ଭିନ୍ନ ଭିନ୍ନ କ୍ରିୟାମୂଳ ବା ଧାତୁ (root)ର ସୃଷ୍ଟି ହେଲା ।

ଡିଙ୍ଗ୍-ଡଙ୍ଗ୍‌ର ଅର୍ଥ ହେଉଛି ଅନୁରଣନ । ଏହି ସିଦ୍ଧାନ୍ତର ମୂଳ ଚେତନା ମାକ୍ସମୂଲରଙ୍କ ମୂଳ ଚେତନା ସହିତ ଶବ୍ଦର ପ୍ରାୟ ସମାନ । ଏହି ସିଦ୍ଧାନ୍ତ ଅନୁଯାୟୀ ଧାତୁର ଧ୍ୱନି ସହିତ ଶବ୍ଦର ଏକ ରହସ୍ୟାତ୍ମକ ସଙ୍ଗତି ବା ତାନ (mystic harmony) ରହିଛି ।

ଏହି ସିଦ୍ଧାନ୍ତ ଯୁକ୍ତିଯୁକ୍ତ ମନେହୁଏ ନାହିଁ । ଆଦିମ ମଣିଷ ଧାତୁର ବ୍ୟବହାର ଶିଖିଥିଲା କି ନାହିଁ ସନ୍ଦେହ । ଯଦ୍ୟପି କାଳକ୍ରମେ ଧାତୁର ବ୍ୟବହାର ଶିଖିଥିଲା

ତଥାପି ଧାତୁର ସଂଖ୍ୟା ଥିଲା ସୀମିତ । ଏହି ସୀମିତ ସଂଖ୍ୟକ ଧାତୁ (metal)ରୁ ବିପୁଳସଂଖ୍ୟକ ଧାତୁ (କ୍ରିୟାମୂଳ)ର ସମ୍ଭାବନା ଅବାସ୍ତବ ମନେହୁଏ । ଏପରି ଅନେକ ଭାଷା ରହିଛି ଯହିଁରେ ଧାତୁର ପ୍ରାଧାନ୍ୟ ନାହିଁ । ଏପରିକି ଅନେକ ଭାଷାରେ ଧାତୁର କୌଣସି ଆବଶ୍ୟକତା ମଧ୍ୟ ନାହିଁ ।

ଭାଷାର ସୃଷ୍ଟି ପାଇଁ କେବଳ ଧାତୁ ଯଥେଷ୍ଟ ନୁହେଁ । ପ୍ରତ୍ୟୟ, ଉପସର୍ଗ ଆଦି ଅନ୍ୟ ରୂପମାନଙ୍କର ମଧ୍ୟ ଆବଶ୍ୟକତା ରହିଛି । ଆଧୁନିକ ଭାଷାତତ୍ତ୍ୱମାନେ ମନେ-କରନ୍ତି ଯେ ଯେଉଁ ଭାଷାରେ ଧାତୁର ସଂଖ୍ୟା ଯେତେ ଅଧିକ ତହିଁରେ ଜଟିଳତା ସେତେ ଅଧିକ । ଧାତୁ ଉପରେ ଭାଷା ଆଧାରିତ ନୁହେଁ । ଧାତୁର ଶବ୍ଦ ସୃଷ୍ଟି କରିବା ପଦ୍ଧତି ବହୁ ପରବର୍ତ୍ତୀ ।

## (୩) ସଂକେତ ସିଦ୍ଧାନ୍ତ ବା କର୍ତ୍ତୃତ୍ୱ ସିଦ୍ଧାନ୍ତ ବା ପ୍ରତୀକ ସିଦ୍ଧାନ୍ତ ବା ସ୍ୱୀକାର ସିଦ୍ଧାନ୍ତ(Symbolical Theory)—

ଫ୍ରାନ୍‌ସର ପ୍ରସିଦ୍ଧ ବିଦ୍ୱାନ୍ ରୁଷୋ (Rousseau) ସମାଜ ସମ୍ବନ୍ଧରେ ଗବେଷଣା କଲାବେଳେ ହିଁ ଗବେଷଣା ଆଧାର ଉପରେ ଭାଷାର ଉତ୍ପତ୍ତି ସମ୍ପର୍କୀୟ ଏହି ସିଦ୍ଧାନ୍ତ ପ୍ରତିପାଦନ କରିଥିଲେ । ତାଙ୍କ ମତରେ ମନୁଷ୍ୟମାନେ ଆରମ୍ଭରେ ହସ୍ତର ସଙ୍କେତ ଦ୍ୱାରା ଭାବର ଆଦାନପ୍ରଦାନ ଚେଷ୍ଟା କରୁଥିଲେ । କିନ୍ତୁ ଯେତେବେଳେ ଦେଖିଲେ ଯେ କେବଳ ହସ୍ତର ସଙ୍କେତ ଦ୍ୱାରା ସମସ୍ତ କାମ ଚଳିପାରୁ ନାହିଁ, ସେତେବେଳେ ସେମାନେ ଏକତ୍ର ହୋଇ କେତେକ ଧ୍ୱନିକୁ ସଙ୍କେତ ରୂପେ ସ୍ୱୀକାର କରିଥିଲେ । ସେହି ଧ୍ୱନି ସଙ୍କେତ ଶବ୍ଦ ରୂପରେ ପରିଣତ ହେଲା ।

କିନ୍ତୁ ଟିକିଏ ଧ୍ୟାନଶୀଳ ହେଲେ ଜାଣିହେବ, ଏ ସିଦ୍ଧାନ୍ତ ଅସାର । ଯଦି ଆରମ୍ଭରେ କୌଣସି ଭାଷା ନଥିଲା, ତେବେ ଲୋକମାନେ ଏକତ୍ର ହେଲେ କିପରି ? ଯଦି ଏକତ୍ର ହେଲେ ଶବ୍ଦ ଗଢ଼ାଗଲା କିପରି ? ବସ୍ତୁତଃ ବିନା ବକ୍ତୃତା-ବିନିମୟରେ ଏକତ୍ର ହେବା ସମ୍ଭବ ନୁହେଁ ବା ପ୍ରତୀକର ନିର୍ଣ୍ଣୟ କରିବା ମଧ୍ୟ ସମ୍ଭବ ନୁହେଁ ।

## (୪) ଇଙ୍ଗିତବାଦ (Gestural Theory) ବା ଜେଶ୍ଚର୍ ଥିଓରୀ ।

ପାଲିନେଶିଆନ୍ ଭାଷାବିଦ୍ୱାନ୍ ଡଃ ରେଏ ପ୍ରଥମେ ଏହି ମତବାଦର ଉଦ୍ଭାବନ କରିଥିଲେ । ଡାରଓ୍ୱିନ୍ ଛଅଟି ଅସମ୍ବନ୍ଧ ଭାଷାର ତୁଳନାତ୍ମକ ଅଧ୍ୟୟନର ଆଧାର ଉପରେ ଏହାକୁ ପ୍ରମାଣିତ କରିଥିଲେ । ୧୯୩୦ ଖ୍ରୀ.ରେ ରିଚାର୍ଡ ଏ ସିଦ୍ଧାନ୍ତର ପୁନର୍ବିଚାର କରିଥିଲେ ଓ Human Speech ନାମକ ନିଜ ଗ୍ରନ୍ଥରେ ଏହାକୁ

ମୌଖିକ ଇଙ୍ଗିତ ସିଦ୍ଧାନ୍ତ (Oral Gestural Theory) ନାମ ଦେଇଥିଲେ । ଅଇସ୍‌ଲଣ୍ଡ୍‌ର ଭାଷାବିତ୍ ଅଲେକ୍‌ଜାଣ୍ଡାର ଜୋହାନସନ୍ ଇଉରୋପୀୟ ଭାଷାମାନଙ୍କର ତୁଳନାତ୍ମକ ଅଧ୍ୟୟନ ବେଳେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଓ ନିଜର ଅନେକଟି ଗ୍ରନ୍ଥରେ ଏହାର ବିସ୍ତୃତ ଆଲୋଚନା କରିଥିଲେ । ଇଉରୋପୀୟ ଭାଷା ବ୍ୟତୀତ ଚୀନା, ତୁର୍କୀ ପ୍ରଭୃତି ଭାଷା ଉପରେ ମଧ୍ୟ ଏହି ଆଲୋଚନା ଆଧାରିତ । ଏହି ସିଦ୍ଧାନ୍ତ ପାଇଁ ସେ ଚାରୋଟି ସୋପାନ ଗ୍ରହଣ କରିଛନ୍ତି—

(କ) ଭାବ ପ୍ରକାଶ ମୂଳକ ସୋପାନ—ଏହି ସୋପାନରେ ମଣିଷ ତା'ର ଆଶା, ହତାଶ, କ୍ରୋଧ, କାରୁଣ୍ୟ, ଭୟ, ବିସ୍ମୟ ଆଦି ସଙ୍କେତରେ ପ୍ରକାଶ କରିଥିଲା ।

(ଖ) ଅନୁକରଣମୂଳକ ସୋପାନ—ଏହି ସୋପାନରେ ମନୁଷ୍ୟ ବିଭିନ୍ନ ଜୀବ ଜନ୍ତୁ ଓ ନିର୍ଜୀବ ପଦାର୍ଥମାନଙ୍କର ଧ୍ୱନିକୁ ଅନୁକରଣ କରି ଧ୍ୱନି ସଙ୍କେତ ବା ଶବ୍ଦ ଗଠନ କରିଥିଲା ।

(ଗ) ଅଙ୍ଗ-ଇଙ୍ଗିତ ମୂଳକ ସୋପାନ - ଏହାର ମଧ୍ୟ ଆଧାର ହେଉଛି ଅନୁକରଣ । କିନ୍ତୁ ଏ ଅନୁକରଣ ଜିହ୍ୱାଦି ଦ୍ୱାରା ନ ହୋଇ ଅଙ୍ଗ (ମୁଖ୍ୟତଃ ହାତ) ଦ୍ୱାରା ଅନୁକରଣ । କୌଣସି କାରଣ ନ ଥାଇ ମନୁଷ୍ୟ ଚିନ୍ତିତ ଅବସ୍ଥାରେ ଥିଲାବେଳେ ଅଜାଣତରେ ଏପରି ଇଙ୍ଗିତ ସୃଷ୍ଟି କରିଥିଲା । ଏହାକୁ ଜୋହାନ୍‌ସନ୍ ଅଜ୍ଞାତସାର ଅନୁକରଣ (Unconscious imitation) ବୋଲି କହିଛନ୍ତି ।

(ଘ) ସୂକ୍ଷ୍ମଭାବପ୍ରକାଶମୂଳକ ସୋପାନ—ମନୁଷ୍ୟର ମାନସିକ ବିକାଶ ଫଳରେ ଧୀରେ ଧୀରେ ସେ ସୂକ୍ଷ୍ମଭାବ ପ୍ରକାଶ ଲାଗି ଶବ୍ଦ ସୃଷ୍ଟି କରିଥିଲା ।

(୫) ଧ୍ୱନ୍ୟାତ୍ମକ ଅନୁକରଣ ସିଦ୍ଧାନ୍ତ (Bow-wow Theory, Onomatopoeic Theory)—

ଏହି ସିଦ୍ଧାନ୍ତ ଅନୁଯାୟୀ ମନୁଷ୍ୟ ନିଜର ପରିପାର୍ଶ୍ୱରେ ଥିବା ପଶୁ-ପକ୍ଷୀମାନଙ୍କର ଧ୍ୱନିକୁ ଅନୁକରଣ କରି କେତେକ ଶବ୍ଦ ନିର୍ମାଣ କରିଥିଲା; ଏହି ଶବ୍ଦ ଭାଷା ସୃଷ୍ଟିର କାରଣ ହେଲା । ବିଲେଇର ମ୍ୟାଉଁ ମ୍ୟାଉଁ ରବ ଅନୁଯାୟୀ ଚୀନା ଭାଷାର ମିଅଉ, ହିନ୍ଦୀର ମ୍ୟାଉଁ ହିନ୍ଦୀର ମେ-ମେଁ, ବେ-ବେ ଇଂରାଜୀ କୁକୁ (Cuckoo) କ'କ୍ (Cock) buzzing, ସଂସ୍କୃତ କାକ, କୁକ୍‌କୁଟ, ଫରାସୀ କ'କୁ (Cocu), କ'କେ (Coquer), କ'କେଟରୀ (Coquetterie), କୋକାର (Cocurt), କୋକାର୍ଦ (Cocarde), କ'କେଲିକୋ (Coquelicot), ହିନ୍ଦୀ, କୌଆ, ପେଁ ପୋ (ମୋଟର), ଘୁଘୁ (ଉଲ୍ଲୁକ) ମିମିଆନ, ରେଙ୍କନା, ଭୋଙ୍କନା, ଭିନଭିନାନା ଓ ଭନ୍‌ଭନାନା (ଭ୍ରମର), ଓଡ଼ିଆ କୁଅ, କା', ମ୍ୟାଉଁ ପ୍ରଭୃତି ଶବ୍ଦ ପଶୁପକ୍ଷୀମାନଙ୍କର ରବରବର ଅନୁକରଣରେ ସୃଷ୍ଟି ।

ଏହି ସିଦ୍ଧାନ୍ତ ମଧ୍ୟ ସନ୍ଦେହମୁକ୍ତ ହୋଇପାରି ନାହିଁ । ଏହି ସିଦ୍ଧାନ୍ତକୁ ସ୍ୱୀକାର କଲେ ବିଶ୍ୱର ସବୁ ଭାଷାରେ ପଶୁ-ପକ୍ଷୀମାନଙ୍କର ଧ୍ୱନିକୁ ଗୋଟିଏ ମାତ୍ର ଭେଦରେ ପ୍ରକାଶ କରାଯିବା ଉଚିତ ଏବଂ ଏହି ଧ୍ୱନି ଅନୁକରଣରେ ଜାତ ଶବ୍ଦ ମଧ୍ୟ ତହିଁ ଆଧିକେ ସମାନ ହେବା ଉଚିତ । କିନ୍ତୁ ଏପରି ଦେଖାଯାଉ ନଥିବାରୁ ଏହି ସିଦ୍ଧାନ୍ତ ଭ୍ରମାତ୍ମକ । ଏହି ମତର ଖଣ୍ଡନକାରୀମାନେ କହନ୍ତି ବିଶ୍ୱର ଶ୍ରେଷ୍ଠ ବିକଶିତ ପ୍ରାଣୀ ହୋଇ ମନୁଷ୍ୟ ସ୍ୱୟଂ କୌଣସି ଧ୍ୱନି ଉତ୍ପନ୍ନ କରିପାରିଲା ନାହିଁ ଯେ ଅନ୍ୟ ପ୍ରାଣୀର ଧ୍ୱନିକୁ ଅନୁକରଣ କରିବାକୁ ପଡ଼ିଲା ? ମାକ୍ସମୁଲର ଏହି ସିଦ୍ଧାନ୍ତକୁ ଉପରେ ଉଡ଼ାଇ ଦେଇଥିଲେ ଓ ପରିହାସରେ ଏହାକୁ 'Bow-wow-Theory' ବୋଲି କହିଥିଲେ । ଇଂରାଜୀରେ କୁକୁରର ଭୁକାକୁ 'bow-wow' କୁହାଯାଏ ଓ ଇଂରେଜ ଛୁଆମାନେ କୁକୁରକୁ ମଧ୍ୟ 'Bow-wow' କହିଥାନ୍ତି ପାଶ୍ଚାତ୍ୟର ପୂର୍ବୋତ୍ତର ପାର୍ଶ୍ୱରେ କୁକୁରଛୁଆକୁ ମଧ୍ୟ bow-wow କୁହାଯାଏ । ତେଣୁ ମାକ୍ସମୁଲର ଏହି ସିଦ୍ଧାନ୍ତକୁ କୁକୁର ବା କୁକୁର ଗର୍ଜନ ପରି ତୁଚ୍ଛ ଜ୍ଞାନ କରିଛନ୍ତି ।

(୬) ଅନୁରଣନ ବା ନାଦ ଅନୁକରଣ ମୂଳକ ସିଦ୍ଧାନ୍ତ (Imitative Theory)—

ଅନୁରଣନର ଅନୁକରଣ ଦ୍ୱାରା ଭାଷାର ସୃଷ୍ଟି ସମ୍ଭାବନା ଆଶାଜନକ ନ ହେଲେ ହେଁ ପୃଥିବୀର ବହୁଭାଷାରେ ପ୍ରଚୁର ଶବ୍ଦ ଏହି ଭିତ୍ତିରେ ସୃଷ୍ଟି ହୋଇଅଛି ଯଥା— ଇଂରାଜୀରେ murmur, gazz, thunder, jazz, ସଂସ୍କୃତରେ ପତ୍ ପତ୍ ଧ୍ୱନିକାରୀ ପକ୍ଷୀ ପଡ଼େ ବୋଲି ତାର ନାମ ପକ୍ଷୀ, ସେହିପରି କଙ୍କଣ, ମର୍ମର, ନଦ, ନଦୀ, ବୁଦ୍‌ବୁଦ୍, ଝର, ଓଡ଼ିଆ, କିଙ୍କିଣୀ, ଖଟ, ଝର୍ଝର ପ୍ରଭୃତି । କିନ୍ତୁ ଏଗୁଡ଼ିକର ସଂଖ୍ୟା ଭାଷାରେ ଏତେ ସୀମିତ ଯେ ଅନୁରଣନର ଅନୁକରଣରେ ଭାଷା ସୃଷ୍ଟି ସମ୍ଭବ ନୁହେଁ ।

(୭) ମନୋଭାବାଭିବ୍ୟକ୍ତି ସିଦ୍ଧାନ୍ତ ବା ଆବେଗ ସିଦ୍ଧାନ୍ତ—

(Interjection Theory or Pooh-Phoo Theory—

କଣ୍ଡିଲାକ୍ ହେଉଛନ୍ତି ଏହି ଉତ୍ପତ୍ତି ସିଦ୍ଧାନ୍ତର ପ୍ରଥମ ସନ୍ଧାନକାରୀ । ଏହି ସିଦ୍ଧାନ୍ତ ଅନୁଯାୟୀ ମନୁଷ୍ୟ ପ୍ରଥମେ ବସ୍ତୁପ୍ରଧାନ ଅପେକ୍ଷା ଅଧିକ ଥିଲା ଭାବପ୍ରଧାନ । ଭାବାବେଶବଶତଃ ତା' ମୁଖରୁ ଆହ୍ଲାଦ, ବିଷାଦ, ବିସ୍ମୟ ଜୁଗୁପ୍ସା, ଲଜ୍ଜା, ନିନ୍ଦା, ପ୍ରଶଂସା ସୂଚକ ଥିବା ଧ୍ୱନିସବୁ ବାହାରିଆସେ । ସ୍ନାୟବିକ ପ୍ରବୃତ୍ତି (କାଶିବା, ଛିଙ୍କିବା) ପରି ଏହା ହେଉଛି ତା'ର ସ୍ୱାଭାବିକ ମାନସିକ ପ୍ରବୃତ୍ତି । ଏହିପରି ଧ୍ୱନି ହେଉଛି ଓଃ, ଆଃ ହାୟ, ଧିକ୍, ଛିଃ, ଧେତ୍, ପୁଃ (Pooh), ପିଶ୍ (Pish), ଫାଇ (fie), ତୁ୍ୟ

(Whew), ଟଟ୍ (tat) ଇତ୍ୟାଦ । ଏହି ଧ୍ୱନିମାନଙ୍କରୁ ପରେ କେତେକ ଶବ୍ଦର ସୃଷ୍ଟି ହୋଇଅଛି, ଯଥା 'ଫାଇ'ରୁ ଫିଏଣ୍ଡ୍ (find), ଧିକ୍‌ରୁ ଧିକ୍‌କାର ଇତ୍ୟାଦ ଧୀରେ ଧୀରେ ଏହି ଶବ୍ଦମାନଙ୍କରୁ ଭାଷାର ସୃଷ୍ଟି ହେଲା ।

କିନ୍ତୁ ବସ୍ତୁତଃ ଭାବ ପ୍ରକାଶକ ଶବ୍ଦ ଭାଷାର ଅବିଚ୍ଛେଦ୍ୟ ଅଙ୍ଗ ନୁହେଁ । ମନୋଭାବ ଅଭିବ୍ୟକ୍ତ ପାଇଁ ଏହିପରି ଯେଉଁ କେତୋଟି ଶବ୍ଦର ସୃଷ୍ଟି ହୋଇଅଛି, ତାହା ସଂଖ୍ୟାରେ ଏକାବେଳକେ ନଗଣ୍ୟ । ଏହାକୁ ଭାଷାରୁ ଏକା-ବେଳକେ ବାଦ୍‌ଦେଲେ ମଧ୍ୟ ଚଳିବ । ଭିନ୍ନ ଭିନ୍ନ ଭାଷାରେ ଏହି ଶବ୍ଦଗୁଡ଼ିକ ସମାନ ନୁହେଁ । ତେଣୁ ଏହାକୁ ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି କହିବା ଠିକ୍ ନୁହେଁ । ଏହି ଶବ୍ଦଗୁଡ଼ିକ ଅଧିକାଂଶ ସମୟରେ ବାହାରେ ରହନ୍ତି ।

(୮) ଶ୍ରମପରିହରଣ-ମୂଳକ ସିଦ୍ଧାନ୍ତ (Yo-he-ho-theory)—

ଏହି ମତବାଦର ଜନ୍ମଦାତା ହେଉଛନ୍ତି ବଶିଷ୍ଟ ଭାଷାବିତ୍ ନଏର୍ (Noire) । ତାଙ୍କ ମତରେ ଯେତେବେଳେ କୌଣସି କଠିନ ପରିଶ୍ରମ କରାଯାଏ, ଯେତେବେଳେ ଫୁସ୍‌ଫୁସ୍‌ରୁ ଶ୍ୱାସ ଜୋର୍‌ରେ ନିର୍ଗତ ହୁଏ ଯାହାଦ୍ୱାରା ଶରୀରକୁ କିଛି ଆରାମ ମିଳେ । ଚଞ୍ଚଳ ଚଞ୍ଚଳ ନିର୍ଗତ ଏହି ଶ୍ୱାସନିଶ୍ୱାସ ପ୍ରତିକ୍ରିୟା ଯୋଗୁ ସ୍ୱରତନ୍ତ୍ରୀମାନଙ୍କରେ କମ୍ପନ ଜାତ ହୁଏ ଏବଂ ଏହି କମ୍ପନ ଫଳରେ ସ୍ୱତଃ କେତେକ ଧ୍ୱନି ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ ଧୋବା ଲୁଗା କାଚିଲାବେଳେ 'ହୁୟୋ-ହୁୟୋ', 'ଛୁୟେ-ଛୁୟୋ' ଇତ୍ୟାଦ କହିଥାଏ । ସ୍ୱତଃସୃଷ୍ଟ ଏହି ଧ୍ୱନିଗୁଡ଼ିକ ଆଦିମ ଅବସ୍ଥାରେ ସେହି ସେହି କାର୍ଯ୍ୟର ଦ୍ୟୋତକ ହୋଇଗଲେ । ଏହିପରି କୌଣସି ଧ୍ୱନିରୁ ଇଂରାଜୀ ହିଭ୍ (heave) ଏବଂ ହାଲ (haul) ଶବ୍ଦର ସୃଷ୍ଟି । ଶ୍ରମ-ଅପନୋଦନ ପାଇଁ ଇଂରାଜୀରେ 'ୟୋ-ହେ-ହୋ' (yo-he-ho) ଧ୍ୱନିର ସୃଷ୍ଟି ଏବଂ ଏହାରି ଭିତ୍ତିରେ ଶ୍ରମପରିହରମୂଳକ ସିଦ୍ଧାନ୍ତର ନାମକରଣ ହୋଇଅଛି ।

ଏହି ସିଦ୍ଧାନ୍ତର କୌଣସି ତର୍କସଙ୍ଗତ ମହତ୍ତ୍ୱ ନାହିଁ । କାରଣ ଏହି ଭିତ୍ତିରେ ସୃଷ୍ଟ ଶବ୍ଦମାନଙ୍କର ସଂଖ୍ୟା ଅତି ନଗଣ୍ୟ ଓ ଭାଷାରେ ଏଗୁଡ଼ିକର କୌଣସି ବଶିଷ୍ଟ ସ୍ଥାନ ନାହିଁ ।

(୯) ଟା-ଟା ସିଦ୍ଧାନ୍ତ (Ta-Ta-Theory)—

ଏହି ସିଦ୍ଧାନ୍ତ ଅନୁସାରେ ଅତି ପ୍ରାଚୀନ କାଳରେ ଆଦିମ ମଣିଷ କାମ କରିବା ସମୟରେ ଉଚ୍ଚାରଣକ୍ଷମ ଅବୟବମାନେ କାର୍ଯ୍ୟକ୍ଷମ ଅବୟବମାନଙ୍କର ଗତିକୁ ଅନୁକରଣ କରୁଥିଲେ ଏବଂ ଅହି ଅନୁକରଣରେ କିଛି ଧ୍ୱନି ସଂଯୁକ୍ତ ହେବାରୁ ଶବ୍ଦର ସୃଷ୍ଟି ହୋଇଥିଲା । ଏହି ଧ୍ୱନି ଏବଂ ଶବ୍ଦରୁ ଭାଷାର ସୃଷ୍ଟି ହେଲା ।

କିନ୍ତୁ ଭାଷା ଉତ୍ପତ୍ତି ପ୍ରଶ୍ନର ସମାଧାନ ଏଥିରେ ସମ୍ଭବ ନୁହେଁ । ଏହିଭଳି ଅନୁକରଣ ଧର୍ମୀ ମଣିଷ ଛଡ଼ା ଅଧ୍ୟାବଧି ପୃଥିବୀର ଅନ୍ୟ ଅଞ୍ଚଳରେ ଥିବା ଅସଭ୍ୟତମ ମଣିଷ ନିକଟରେ ଦେଖାଯାଏ ନାହିଁ । ଆମର ପୂର୍ବପୁରୁଷ ରୂପେ ପରିକଳ୍ପିତ ବାନରମାନଙ୍କଠାରେ ମଧ୍ୟ ଏହି ପ୍ରବୃତ୍ତି ପରିଲକ୍ଷିତ ହୋଇନଥାଏ ।

## (୧୦) ସଙ୍ଗୀତ ସିଦ୍ଧାନ୍ତ (Sing song Theory)—

ଏହି ସିଦ୍ଧାନ୍ତ ଅନୁସାରେ ଭାଷାର ଉତ୍ପତ୍ତି ଆଦିମ ମଣିଷର ସଙ୍ଗୀତରୁ ହୋଇଅଛି । ଡାରଉଇନ୍ ଏବଂ ସ୍ପେନସର ଏହି ମତକୁ କେତେକ ଅଂଶରେ ସ୍ୱୀକାର କରନ୍ତି । ଜେସ୍‌ପର୍ସନ ଏହାକୁ ପ୍ରତିପାଦିତ କରିବା ପାଇଁ କ୍ରୀଡ଼ାବାଦ (Sports Theory)ର ସାହାଯ୍ୟ ନେଇଛନ୍ତି । ତାଙ୍କ ମତରେ ଭାଷାର ଉତ୍ପତ୍ତି ଉତ୍ସ ହେଉଛି କ୍ରୀଡ଼ା । ଉଚ୍ଚାରଣକ୍ଷମ ଅବୟବମାନେ ଅବକାଶ ସମୟରେ କ୍ରୀଡ଼ା କରିବାରୁ ତାହା ସଙ୍ଗୀତରେ ପରିଣତ ହେଲା । ପ୍ରେମ ଦୁଃଖ ଆଦି ଅବସରରେ ମଣିଷର ସ୍ୱରତନ୍ତ୍ରୀ ସ୍ପନ୍ଦିତ ହୁଏ । ପ୍ରଥମେ ଏଥିରୁ ସୃଷ୍ଟି ହୁଏ ଅର୍ଥହୀନ ଅକ୍ଷର (meaningless Syllable) । ପରେ ବିଶେଷ ପରିସ୍ଥିତିରେ ଏହା ଅର୍ଥାନ୍ୱିତ ହୁଏ । ଏହି କ୍ରମରେ ଭାଷାର ସୃଷ୍ଟି ।

ସଙ୍ଗୀତ ସିଦ୍ଧାନ୍ତ ମଧ୍ୟ କେତେକ ଦୃଷ୍ଟିରୁ ଭ୍ରମାତ୍ମକ । ହୁଏତ ଆଦିମ ମଣିଷ ଥିଲା ଅତି ମାତ୍ରାରେ ଭାବୁକ । ସମ୍ଭବତଃ ଗୁଣୁଗୁଣୁ ହେବାରେ ସେ ଆନନ୍ଦ ପାଉଥିଲା, କାହିଁ କାହିଁ ସକ ସକ ହୋଇ କାନ୍ଦୁଥିଲା । ହୁଁ ହାଁ କରି ତା'ର କ୍ରୋଧ ପ୍ରକାଶ କରୁଥିଲା । କିନ୍ତୁ ଏଥିରୁ ଭାଷାର ସୃଷ୍ଟି ହେବ କିପରି ? ପୁଣି ଏହା ଏକ କ୍ରୀଡ଼ା ହେବ କିପରି ?

## (୧୧) ପ୍ରେମ ସିଦ୍ଧାନ୍ତ (Woo-woo-Theory)—

ଏହି ମତବାଦର ଉଦ୍‌ଭାବକ ହେଉଛନ୍ତି ପ୍ରଫେସର ହଡ଼୍‌ସନ୍ । ପ୍ରେମାବେଗ ସହିତ ଭାଷାର ସମ୍ପର୍କ ସିଦ୍ଧାନ୍ତ କରି ତାଙ୍କର ଶିଷ୍ୟମାନେ ଏପରି ନାମକରଣ କରିଥିଲେ । ଏହି ମତବାଦ ସହିତ ସଙ୍ଗୀତ ମତବାଦର କେତେକ ସାମଞ୍ଜସ୍ୟ ରହିଛି । ମଣିଷର ସରଳ ଭାବାବେଗ ମଧ୍ୟରେ ପ୍ରେମ ହେଉଛି ଶ୍ରେଷ୍ଠ ଯାହା ସଙ୍ଗୀତ ସୃଷ୍ଟି କରିବା ପାଇଁ ମଣିଷକୁ ଅଧିକ ପ୍ରେରଣା ଦିଏ । ପ୍ରେମିକ ପ୍ରେମିକା ପାଖରେ ଓ ପ୍ରେମିକା ପ୍ରେମିକ ପାଖରେ ନିଜ ହୃଦୟର ଆବେଗ ପ୍ରକାଶ କରିବା ପାଇଁ ବ୍ୟାକୁଳ ହୋଇଉଠେ । ଫଳରେ ତା'ର ଅନ୍ତର୍ନିହିତ କେତେକ ଭାବ ସ୍ୱତଃ ଧ୍ୱନିରେ ପ୍ରକାଶିତ ହୋଇଥାଏ । ଏକଦା ଏହି ପ୍ରଣାଳୀରେ ଶବ୍ଦର ସୃଷ୍ଟି ହୋଇଥିଲା ଓ ସେଥିରୁ ଭାଷାର ସୃଷ୍ଟି ହେଲା ।

ଏହି ସିଦ୍ଧାନ୍ତ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ, କାରଣ ପ୍ରେମ ମଣିଷର ଶ୍ରେଷ୍ଠ ଭାବାବେଗ ହେଲେ ହେଁ ସର୍ବକାଳୀନ ନୁହେଁ ଏବଂ ଏହି ଭାବାବେଗରେ ସୃଷ୍ଟି ଧ୍ୱନି ଏତେ ବ୍ୟାପକ ନୁହେଁ ଯାହା ଭାଷା ସୃଷ୍ଟି କରିବାରେ ସମର୍ଥ ହେବ ।

## (୧୨) ସମ୍ପର୍କ ସିଦ୍ଧାନ୍ତ (Contact Theory) –

ଏହି ସିଦ୍ଧାନ୍ତର ପ୍ରତିପାଦକ ହେଉଛନ୍ତି ରେଭେଜ୍ (Revesz), ଯେ ଥିଲେ ମନୋବିଜ୍ଞାନରେ ଜଣେ ବିଦ୍ୱାନ୍ । ତାଙ୍କ ସିଦ୍ଧାନ୍ତ ଅନୁଯାୟୀ ସାମାଜିକ ଜୀବ ମଣିଷର ପାରସ୍ପରିକ ସମ୍ବନ୍ଧ ରଖିବା ଏକ ସହଜାତ ପ୍ରବୃତ୍ତି । ଏହି ପ୍ରବୃତ୍ତି ହେଉଛି ସମ୍ପର୍କ । ଏହି ପ୍ରବୃତ୍ତିରୁ ସମାଜ ବା ଗୋଷ୍ଠୀର ସୃଷ୍ଟି । ଆଦିମ ମନୁଷ୍ୟ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ବିଭକ୍ତ ହୋଇଥିଲେ । ପ୍ରତି ଗୋଷ୍ଠୀରେ ଥିବା ବ୍ୟକ୍ତିମାନେ ନିଜ ନିଜର ମୌଳିକ ସହଜାତ ପ୍ରବୃତ୍ତି ଓ ଭାବନାଗୁଡ଼ିକୁ ଅଭିବ୍ୟକ୍ତ କରିବା ପାଇଁ ଭିନ୍ନ ଭିନ୍ନ ସ୍ଥଳରେ ଭିନ୍ନ ଭିନ୍ନ ପ୍ରକାରର ସମ୍ପର୍କ ସ୍ଥାପନ କରିଥିଲେ । ଏହି ସମ୍ପର୍କ ପାଇଁ ସ୍ପର୍ଶ ଥିଲା ଅନିବାର୍ଯ୍ୟ । ଏହି ସ୍ପର୍ଶରୁ ମୁଖରେ ଏକ ଧ୍ୱନି ଉଚ୍ଚାରିତ ହୋଇଯାଉଥିଲା । ଯେତିକି ଯେତିକି ସମ୍ପର୍କ ବଢ଼ିଲା ସେତିକି ସେତିକି ସ୍ପର୍ଶ ବଢ଼ିଲା ଓ ସେତିକି ସେତିକି ଧ୍ୱନିର ସୃଷ୍ଟି ହେଲା । ପ୍ରଥମେ ଧ୍ୱନି ଥିଲା ପ୍ରାକୃତିକ ଓ ପରେ ହେଲା କୃତ୍ରିମ । ଧ୍ୱନି କୃତ୍ରିମ ହେବାରୁ ଆହୁରି ଅଧିକ ହେଲା । ଏହି ଭଳିରେ ଭାଷାର ଉନ୍ମେଷ ହେଲା । ସମ୍ପର୍କ ଆରମ୍ଭରେ ଭାବସ୍ତରରେ (Emotional Contact) ଥିଲା, ପରେ ବୌଦ୍ଧିକ ସ୍ତର (Intellectual Contact)କୁ ଉନ୍ନୀତ ହେଲା । ସମ୍ପର୍କ ବୌଦ୍ଧିକ ସ୍ତରକୁ ଆସିବାରୁ ଭାଷା ଅଧିକ ସମୃଦ୍ଧ ହେଲା ।

ଏହି ସିଦ୍ଧାନ୍ତରେ ସମ୍ପର୍କ କିପରି କୃତ୍ରିମ ଓ ବୌଦ୍ଧିକ ହେବାରୁ ଭାଷାର ବିକାଶ ହେଲା ସେ ସମ୍ପର୍କରେ ସ୍ପଷ୍ଟତା ନାହିଁ । କିନ୍ତୁ ପ୍ରଫେସର ରେଭେଜ୍ ମନୁଷ୍ୟ, ଶିଶୁ, ପଶୁ, ପକ୍ଷୀ ପ୍ରଭୃତିଙ୍କର ମନସ୍ତତ୍ତ୍ୱ ଅନୁଧ୍ୟାନ କରି ଯେଉଁ ସିଦ୍ଧାନ୍ତ ଉପସ୍ଥାପିତ କଲେ ତାହା ବସ୍ତୁପକ୍ଷମାନଙ୍କରେ ତର୍କସଙ୍ଗତ ମନେହେଲା । ତେବେ ଭିନ୍ନ ଭିନ୍ନ ସ୍ତରରେ ଭାଷା କିପରି ବିକାଶଲାଭ କଲା ତାହାର ସନ୍ଧାନ ନ ଥିବାରୁ ପରବର୍ତ୍ତୀ କାଳରେ ଜାସିର୍ପା ଆଦି ବିଦ୍ୱାନ୍‌ମାନେ ଏହାକୁ ଅଗ୍ରହଣୀୟ ସିଦ୍ଧାନ୍ତ ବୋଲି କହିଛନ୍ତି ।

## (୧୩) ସମନ୍ୱିତ ସିଦ୍ଧାନ୍ତ ବା ଏକୀଭୂତ ସମ୍ଭାବନା –

ଏହି ମତବାଦର ଜନ୍ମଦାତା ହେଉଛନ୍ତି ପ୍ରସିଦ୍ଧ ଭାଷା ବିଜ୍ଞାନବିତ୍ ସ୍ୱୀଟ୍ । ତାଙ୍କ ମତରେ ଭାଷା ପ୍ରାରମ୍ଭିକ ରୂପରେ 'ଭାବସଙ୍କେତ' ବା 'ଇଙ୍ଗିତ' (gesture) ଏବଂ 'ଧ୍ୱନି ସମବାୟ' (sound group), ଏହି ଦୁଇଟି ଉପରେ ଆଧାରିତ

ଥିଲା । ଧ୍ୱନି ସମବାୟର ଆଧାର ଉପରେ ଶବ୍ଦମାନଙ୍କର ବିକାଶ ସାଧିତ ହେଲା । ଏହି ପଦ୍ଧତିରେ ସୃଷ୍ଟି ଶବ୍ଦକୁ ସ୍ୱୀଟ୍ ତିନି ଭାଗରେ ବିଭକ୍ତ କରିଛନ୍ତି :—(କ) ଅନୁକରଣାତ୍ମକ (imitative) ଯଥା—ମ୍ୟାଉଁ, କାକ, cuckoo ଇତ୍ୟାଦି, (ଖ) ଭାବାବେଶ ବ୍ୟଞ୍ଜକ (interjectional), ଯଥା—ଓଃ, ଆଃ, ଧିକ୍, ହୁଶ୍, ହାୟ, ବାଃ ଇତ୍ୟାଦି, (ଗ) ପ୍ରତୀକାତ୍ମକ (symbolic), ଯଥା—ଇଂରାଜୀ mamma, papa, abba, mother, father, brother, dady ସଂସ୍କୃତ ମାତା ପିତା ଇତ୍ୟାଦି ।

## (୧୪) ପ୍ରତିବମ୍ବ ସିଦ୍ଧାନ୍ତ—

ଏହି ସିଦ୍ଧାନ୍ତର ପ୍ରବର୍ତ୍ତକ ହେଉଛନ୍ତି ସ୍ଲେଗେଲ୍ (Schlegel) । ତାଙ୍କ ମତରେ ଏପରି କୌଣସି କଳାତ୍ମକ କାର୍ଯ୍ୟ ନାହିଁ, ଯାହା କେବଳ ରେଖା, ଲେଖା ବା ରଙ୍ଗ ଦ୍ୱାରା ସମ୍ଭବ ହୋଇପାରିବ । ଯେପର୍ଯ୍ୟନ୍ତ କଳାକାରର ମସ୍ତିଷ୍କ ଭିତରେ ଗୋଟିଏ ବସ୍ତୁର ପୂର୍ଣ୍ଣ ପ୍ରତିବମ୍ବ ଜନ୍ମ ନ ନେଇଛି, ସେ ପର୍ଯ୍ୟନ୍ତ କୌଣସି କଳାତ୍ମକ କାର୍ଯ୍ୟ ସୃଷ୍ଟି ଲାଭ କରିପାରିବ ନାହିଁ । ସେହିପରି କେତେଟା ଭଗ୍ନ, ଅସଂଲଗ୍ନ ଅସ୍ପଷ୍ଟ ଧ୍ୱନିକୁ ସଂଯୋଗ କରିଦେଲେ ଭାଷାର ସୃଷ୍ଟି ହୋଇପାରିବ ନାହିଁ ଯେପର୍ଯ୍ୟନ୍ତ ଭାବର ମୂଳ ସ୍ୱରୂପର ପୂର୍ଣ୍ଣ ପ୍ରତିବମ୍ବ ମନୁଷ୍ୟର ମସ୍ତିଷ୍କରେ ରଚିତ ନ ହୋଇଛି । କଳାକାର ତା'ର ମସ୍ତିଷ୍କ ଭିତରେ ଉଦ୍‌ଭୂତ ପ୍ରତିବମ୍ବକୁ ରେଖରେ, ଲେଖାରେ ବା ରଙ୍ଗରେ ଯେପରି ରୂପ ଦେବାପାଇଁ ବ୍ୟାକୁଳ ହୁଏ, ସେହିପରି ଅବସ୍ଥା ମଣିଷ ମନ ଭିତରେ ଉଦ୍‌ଭୂତ ଭାବ-ପ୍ରତିବମ୍ବକୁ ଧ୍ୱନିରେ ପ୍ରକାଶ କରିବା ପାଇଁ ସେହିପରି ବ୍ୟାକୁଳ ହୁଏ । ଏହି ବ୍ୟାକୁଳତାରୁ ଧ୍ୱନିର ସୃଷ୍ଟି ଓ ଧ୍ୱନିରୁ ଭାଷାର ସୃଷ୍ଟି ହୋଇଅଛି ।

ଏହି ସିଦ୍ଧାନ୍ତ ଧ୍ୱନି ଓ ଶବ୍ଦର ସୃଷ୍ଟି ପାଇଁ ସତ୍ୟ ହୋଇପାରେ; କିନ୍ତୁ ସବୁ ମଣିଷର ବ୍ୟାକୁଳତାରୁ ସମାନ ପ୍ରକାର ଧ୍ୱନି ଓ ଶବ୍ଦର ସୃଷ୍ଟି ହେବ, ଏହାର କୌଣସି ସତ୍ୟତା ନାହିଁ ।

## (୧୫) ବିବର୍ତ୍ତନ ସିଦ୍ଧାନ୍ତ ( Theory of Evolution ) ସାମାଜିକ ଅନୁବନ୍ଧ ସିଦ୍ଧାନ୍ତ—

ଅଷ୍ଟାଦଶ ଶତାବ୍ଦୀ ବେଳକୁ ଭାଷାବିତ୍‌ମାନଙ୍କର ଦୃଢ଼ଧାରଣା ହେଲାଣି ଯେ ଭାଷାର ସୃଷ୍ଟି ଓ ବିକାଶ ଦୈବୀକୃତ ନୁହେଁ, ମାନବକୃତ । ତାରଉଇନ୍ ଦର୍ଶାଇଲେ ଯେ ଭାଷା ମାନବ ସୃଷ୍ଟିର ସ୍ରୋତ ସହିତ ଓତପ୍ରୋତ ଭାବରେ ଜଡ଼ିତ । ଭାଷା ପ୍ରଥମେ ମଣିଷର ଅବୟବ ଦ୍ୱାରା ସୃଷ୍ଟ ଏକ ମୂଳ ଅଭିନୟ ଥିଲା । ପ୍ରଥମେ ବାଗ୍‌ଯନ୍ତ୍ର ମୂକ ଅଭିନୟକୁ ଅନୁକରଣ କରୁ ନଥିଲା । କିନ୍ତୁ ଯେତେବେଳେ ମଣିଷ ଅଧିକ ସାମାଜିକ ହୋଇ ପରସ୍ପର ସହିତ ଅଧିକ ଅଧିକ ସମ୍ପର୍କ ସ୍ଥାପନ କଲା, ସେତେବେଳେ

ଆତ୍ମପ୍ରକାଶ ଲାଗି ବ୍ୟାକୁଳ ହୋଇ ଉଠିଲା । ତା'ର ମନର ଗୋପନ କଥାକୁ ସମ୍ପୂର୍ଣ୍ଣ ପ୍ରକାଶ କରିବାକୁ ଅଭିନୟ ଯଥେଷ୍ଟ ଅନୁକୂଳ ମନେହେଲା ନାହିଁ । ନିର୍ଦ୍ଦିଷ୍ଟ ମନୋଭାବ ପାଇଁ ନିର୍ଦ୍ଦିଷ୍ଟ ସଙ୍କେତ ଅବୟବ ଦ୍ୱାରା ଅଭିନୀତ ହେବା ଅସମ୍ଭବ ମନେହେଲା । ଡାରଉଇନ୍ କହନ୍ତି, ଏପରି ଏକ ବ୍ୟାକୁଳ ମୁହୂର୍ତ୍ତରେ ସେମାନେ ଏକ ବୃହତ୍ ସଭାର ଆୟୋଜନ କରିଥିଲେ । ସେହି ସଭାରେ ପରସ୍ପର ମନୋଭାବ ବୁଝିବା ପାଇଁ କେତେକ ନିର୍ଦ୍ଦିଷ୍ଟ ଧ୍ୱନି ସଙ୍କେତ ସେମାନେ ନିର୍ବାଚନ କରିଥିବେ । ସେହି ସାମାଜିକ ପରିବେଶରେ ସେହି ସମାଜ ଦ୍ୱାରା ସେହି ଧ୍ୱନି ସଙ୍କେତ ଭାବପ୍ରକାଶ ଓ ବିନିମୟର ସର୍ବସାଧାରଣ ଧ୍ୱନି ସଙ୍କେତ ରୂପେ ସ୍ୱୀକୃତି ଲାଭ କରିଥିବ । ଏହି ଧ୍ୱନି ସଙ୍କେତ ଯେତିକି ଯେତିକି ବଢ଼ିଥିବ, ସେତିକି ସେତିକି ଅଧିକ ଶବ୍ଦର ସୃଷ୍ଟି ହୋଇଥିବ । ପ୍ରଥମେ ଏହି ଧ୍ୱନି ଏବଂ ଶବ୍ଦ ବିଶୃଙ୍ଖଳ ହୋଇ ରହିଥିବ । କାଳକ୍ରମେ ସେହି ବିଶୃଙ୍ଖଳ ଧ୍ୱନିଗୁଡ଼ିକୁ ଭାବବିନିମୟରେ ଅନୁକୂଳ କରି ଏକ କ୍ରମରେ ସଜାଇବା ପାଇଁ ସେମାନେ ପୁଣି ଏକତ୍ର ହୋଇଥିବେ । ସାଧାରଣ ବୁଝାମଣା (Common understanding) ପାଇଁ ସେମାନେ ଏକ ନିୟମ କ୍ରମରେ ସଜାଇବା ଧ୍ୱନି ଓ ଶବ୍ଦ ବାକ୍ୟରେ ପରିଣତ ହୋଇଥିବ । ବାକ୍ୟ ସୃଷ୍ଟି ହେଲା ପରେ ସେମାନେ ପୁଣି ଏକତ୍ର ହୋଇଥିବେ । ବିଚାରଧାରାର ଅନୁକ୍ରମ, ଶୃଙ୍ଖଳା ଓ ସଂଯମ ପାଇଁ ସେହି ବାକ୍ୟଗୁଡ଼ିକୁ ନିର୍ଦ୍ଦିଷ୍ଟ ଶୃଙ୍ଖଳାରେ ସଜାଇ ଥିବେ । ଏହି କ୍ରମରେ ସଜ୍ଜିତ ବାକ୍ୟସମୂହ ଦ୍ୱାରା ମନର ଭାବ ସ୍ପଷ୍ଟ ଭାବରେ ଅଭିବ୍ୟକ୍ତ ହୋଇଥିବ । ଏହିପରି ଭାବରେ ଭାଷାର ବିବର୍ତ୍ତନ ହୋଇଅଛି ।

ରୁଷୋ ହେଉଛନ୍ତି ଏହି ସିଦ୍ଧାନ୍ତର ପ୍ରତିପାଦକ । କିନ୍ତୁ ଆର. ଏ. ୱିଲସନ ଏ ମତର ବିରୋଧ କରନ୍ତି । ତାଙ୍କ ମତରେ ସେହି ଆଦିମ ମଣିଷମାନେ ସେହି ସର୍ବସାଧାରଣ ନିର୍ଦ୍ଦିଷ୍ଟ ଧ୍ୱନି ସଙ୍କେତ କାହା ସାହାଯ୍ୟରେ ନିର୍ବାଚନ କଲେ ? ତାଙ୍କ ପ୍ରଶ୍ନର ମୂଳତତ୍ତ୍ୱ ହେଲା ଆଗେ ଧ୍ୱନି ସଙ୍କେତର ସୃଷ୍ଟି ନା ଆଗେ ଭାଷାର ସୃଷ୍ଟି ? ପ୍ରଥମେ ମଞ୍ଜିର ସୃଷ୍ଟି କି ଗଛର ସୃଷ୍ଟି, ଏ ପ୍ରଶ୍ନ ଯେପରି ସୃଷ୍ଟିର ଏକ ଅସମାହିତ ରହସ୍ୟ ସେହିପରି ଆଗେ ଧ୍ୱନି ସଙ୍କେତର ସୃଷ୍ଟି କି ଭାଷାର ସୃଷ୍ଟି, ତାହା ଏକ ଚିର ଅନୁତ୍ତରିତ ସମସ୍ୟା । ତଥାପି ବିବର୍ତ୍ତନ ସିଦ୍ଧାନ୍ତ ଭାଷାର ସୃଷ୍ଟି ସମ୍ପର୍କରେ ଆବିଷ୍କୃତ ସିଦ୍ଧାନ୍ତମାନଙ୍କ ମଧ୍ୟରେ ଅଧିକ ସୁଚିନ୍ତିତ ସିଦ୍ଧାନ୍ତ ।



● ତୃତୀୟ ପରିଚ୍ଛେଦ ●

# ଭାଷାର ପରିବର୍ତ୍ତନ

ଭାଷା ସ୍ଥିତିଶୀଳ ନୁହେଁ, ଗତିଶୀଳ । ତରଙ୍ଗାୟିତ ଧାରାପରି ଗତି ତା'ର ଅଖଣ୍ଡ । ଗତିପଥ ତା'ର ବିଭିନ୍ନ । ନଦୀ ଯେପରି ବିଭିନ୍ନ ସ୍ଥାନରେ ତା'ର ଗତିପଥ ପରିବର୍ତ୍ତନ କରେ, ଭାଷା ସେହିପରି ବିଭିନ୍ନ ସ୍ଥାନରେ ଓ କାଳରେ ନିଜର ରୂପ ପରିବର୍ତ୍ତନ କରେ । ବିଶ୍ୱର ପ୍ରତ୍ୟେକ ବସ୍ତୁ ପରିବର୍ତ୍ତନଶୀଳ । ପରିବର୍ତ୍ତନ ସୃଷ୍ଟିର ଏକ ନିୟମ । ଭାଷା ଏହି ନିୟମରୁ ବହିର୍ଭୂତ ନୁହେଁ । ଅବଶ୍ୟ ଭାଷାର ପରିବର୍ତ୍ତନ ମନ୍ଥର । ଭାଷାରେ ପରିବର୍ତ୍ତନ ହେଉଛି ବୋଲି ଅନେକ ସମୟରେ ତତ୍କାଳର ମଣିଷ ଅନୁଭବ କରିପାରେ ନାହିଁ । ଭାଷାର ଅଜ୍ଞାତରେ ଭାଷାର ପରିବର୍ତ୍ତନ ହୋଇଯାଏ । ଅନେକ ସମୟରେ ତା'ର ଜ୍ଞାତସାରରେ ମଧ୍ୟ ଭାଷାର ପରିବର୍ତ୍ତନ ହୁଏ । ଭାଷାର ପରିବର୍ତ୍ତନକୁ କେହି କେହି ଭାଷାର ବିକାଶ-ଲକ୍ଷଣ ରୂପରେ ତ କେହି କେହି ବିନାଶ-ଲକ୍ଷଣ ରୂପରେ ବିବେଚନା କରିଥାନ୍ତି । ପରିବର୍ତ୍ତନ କାରଣରୁ ଭାଷା କେତେବେଳେ ସମ୍ବର୍ଦ୍ଧିଷ୍ଣୁ ଓ ସମୃଦ୍ଧ ହୁଏ ତ କେତେବେଳେ କ୍ଷୟିଷ୍ଣୁ ହୁଏ । ସେ ଯାହାହେଉ, ଭାଷାରେ ପରିବର୍ତ୍ତନ ଅନିବାର୍ଯ୍ୟ ।

ଭାଷାର ପରିବର୍ତ୍ତନକୁ ତିନୋଟି ବର୍ଗରେ ବିଭକ୍ତ କରାଯାଇପାରେ, (କ) ଧ୍ୱନି ପରିବର୍ତ୍ତନ, (ଖ) ରୂପ ପରିବର୍ତ୍ତନ, (ଗ) ଅର୍ଥ ପରିବର୍ତ୍ତନ । ଭାଷାର କଥିତ ରୂପ ହେଉଛି ଧ୍ୱନି । ଏହି ଧ୍ୱନିର ବର୍ଣ୍ଣ-ବିନ୍ୟାସ ଓ ବାକ୍ୟବିନ୍ୟାସର ପଦ୍ଧତି ହେଉଛି ରୂପ । ଶବ୍ଦର ଭାବ ହେଉଛି ଅର୍ଥ । ଧ୍ୱନି ପରିବର୍ତ୍ତନ ଯୋଗୁ ଭାଷାର ଉଚ୍ଚାରିତ ରୂପ ବଦଳିଯାଏ । ରୂପ ପରିବର୍ତ୍ତନ ଯୋଗୁ ଭାଷାର ଆଙ୍ଗିକ ରୂପ ବଦଳିଯାଏ ଓ ଅର୍ଥ-ପରିବର୍ତ୍ତନ ଯୋଗୁ ଭାଷାର ତାତ୍ପର୍ଯ୍ୟ ବଦଳିଯାଏ ।

## ପରିବର୍ତ୍ତନର କାରଣ

ଭାଷା ପରିବର୍ତ୍ତନର କାରଣଗୁଡ଼ିକ ମୂଳତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ—(୧) ବାହ୍ୟ, (୨) ଅଭ୍ୟନ୍ତରୀଣ । ଯେଉଁ ପରିବେଶ ଓ ପରିସ୍ଥିତି ବକ୍ତା ଉପରେ ସର୍ବଦା ପ୍ରଭାବ ବିସ୍ତାର କରେ, ସେଗୁଡ଼ିକୁ ବାହ୍ୟ କାରଣ ମଧ୍ୟରେ ଓ ସ୍ୱୟଂ ବକ୍ତା ଭିତରେ ଥିବା ପ୍ରବୃତ୍ତି, ରୁଚି, ସ୍ମୃତି, ଶାରୀରିକ ବିକୃତି ଇତ୍ୟାଦିକୁ ଅଭ୍ୟନ୍ତରୀଣ କାରଣ ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇପାରେ ।

(କ) **ବାହ୍ୟ କାରଣ** – ବାହ୍ୟ କାରଣ ମଧ୍ୟରେ ନିମ୍ନଲିଖିତ କାରଣଗୁଡ଼ିକ ଉଲ୍ଲେଖନୀୟ –

(୧) **ଭୌତିକ ବା ଭୌଗୋଳିକ ବାତାବରଣ**—ଭୌଗୋଳିକ ପରିସ୍ଥିତି ଭାଷାରେ ଅନେକ ପରିବର୍ତ୍ତନ ଆଣିଥାଏ । ପାହାଡ଼ିଆ ବା ଉଚ୍ଚ ପ୍ରଦେଶରେ ରହୁଥିବା ଲୋକମାନେ ଅତ୍ୟଧିକ ଶୀତ ହେତୁ ଅଧିକ ସମୟ ମୁଖ ଖୋଲନ୍ତି ନାହିଁ ଓ ଯଦି ଖୋଲନ୍ତି ଖୁବ୍ କମ୍ ପରିମାଣରେ ଖୋଲନ୍ତି । ତେଣୁ ବିବୃତ ଧ୍ୱନିଗୁଡ଼ିକୁ ସେମାନେ ସଂବୃତ ଧ୍ୱନିପରି ଉଚ୍ଚାରଣ କରନ୍ତି । ଗ୍ରୀଷ୍ମପ୍ରଧାନ ଅଞ୍ଚଳର ଅଧିବାସୀମାନେ ମୁଖକୁ ବେଶି ଖୋଲିଥାନ୍ତି । ତେଣୁ ସେମାନେ ଅନେକ ସମୟରେ ସଂବୃତ ଧ୍ୱନିଗୁଡ଼ିକୁ ବିବୃତ ପରି ଉଚ୍ଚାରଣ କରିଥାନ୍ତି ।

ଅନେକ ଏହାକୁ ଭାଷାପରିବର୍ତ୍ତନର କାରଣ ରୂପେ ଗ୍ରହଣ କରନ୍ତି ନାହିଁ, କିନ୍ତୁ ବିଖ୍ୟାତ ଭାଷାବିଜ୍ଞାନୀ ତାରପୋରୱାଲା ଲେଖିଛନ୍ତି ଯେ, କୌଣସି ଦେଶ, ପର୍ବତ, ନଦୀ, ସମୁଦ୍ର ତଟଭୂମି ପ୍ରଭୃତି ତାହାର ସଂସ୍କୃତି ଏବଂ ଜାତୀୟ ବିକାଶ ଉପରେ ପ୍ରଭାବପାତ କରେ । ଜଳବାୟୁର ବୈଷମ୍ୟ ଫଳରେ ଶାରୀରିକ ଗଠନ ଓ ସ୍ୱାସ୍ଥ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ । ଭୌଗୋଳିକ ଓ ଭୌତିକ ବାତାବରଣର ପ୍ରଭାବ ମନୁଷ୍ୟର ମାନସିକ ଦୃଷ୍ଟିକୋଣ ଓ ଚରିତ୍ର ଉପରେ ମଧ୍ୟ ପଡ଼ିଥାଏ । କୌଣସି ଦେଶରେ ପର୍ବତ ନଦୀ ଅତି ବହୁଳପରିମାଣରେ ଥିଲେ ଅଧିବାସୀମାନଙ୍କ ମଧ୍ୟରେ ବିଚ୍ଛିନ୍ନତା ଦେଖାଦିଏ ଓ ଫଳରେ ଅନେକ ଉପଭାଷାର ସୃଷ୍ଟି ହୁଏ ।

(୨) **ଜାତୀୟ ସମ୍ମିଳନ**—ବିଭିନ୍ନ ଜାତି ଜାତି ମଧ୍ୟରେ ସମ୍ମିଳନ ଘଟିଲେ ଭାଷାର ଆଦାନପ୍ରଦାନ ଘଟେ । ଭାରତବର୍ଷରେ ଆର୍ଯ୍ୟଜାତି ସହିତ ଅଷ୍ଟ୍ରିକ୍, ଦ୍ରାବିଡ଼, ଗ୍ରୀକ୍, ତୁର୍କ-ମୁସଲମାନ ଏବଂ ୟୁରୋପୀୟ ଜାତିର ସମ୍ମିଳନ ଘଟିବା ଫଳରେ ଭାରତୀୟ ଭାଷାରେ ଏହିସବୁ ଜାତିର ଭାଷାର ବହୁ ଶବ୍ଦ ବ୍ୟବହୃତ ହେଉଅଛି । ଉଦାହରଣ ସ୍ୱରୂପ ଗଙ୍ଗା (ଅଷ୍ଟ୍ରିକ୍), ନୀର, ଅଳି, ମୀନ (ଦ୍ରାବିଡ଼), ଦାମ୍ ସୁରଙ୍ଗ, ସିମେଇ (ଗ୍ରୀକ୍), ପାଇଜାମା, ବଜାର, ଦୋକାନ, କାଗଜ, କଲମ,

କିତାବ, ରେକେଇ (ତୁର୍କ-ମୁସଲମାନ), କଲେଜ, କୋର୍ଟ, କୋଟ୍, ପ୍ୟାଣ୍ଟ, ସାର୍ଟ୍ (ଇଂରାଜୀ), ସପେଟ୍ଟା, ଅଲମାରି (ପର୍ତ୍ତୁଗୀଜ) ଇତ୍ୟାଦି ଶବ୍ଦାବଳୀ । ଶବ୍ଦ ଛଡ଼ା ଧ୍ୱନି ମଧ୍ୟ ଆସିଅଛି ଯଥା - ଦ୍ରାବିଡ଼ ଭାଷାରୁ ଟ, ଠ, ଡ, ଢ, ଣ । ଏକ ଭାଷାର ବାକ୍ୟ ବିନ୍ୟାସ, ଶୈଳୀ ପ୍ରଭୃତି ଉପରେ ମଧ୍ୟ ଅନ୍ୟ ଜାତିର ଭାଷା ପ୍ରଭାବ ବିସ୍ତାର କରିପାରେ ।

(ଗ) ସାଂସ୍କୃତିକ ପ୍ରଭାବ—କୌଣସି ଜାତି ଉପରେ ଧର୍ମ ଓ ସାହିତ୍ୟର ଗଭୀର ପ୍ରଭାବ ରହିଛି । ସାଂସ୍କୃତିକ ପ୍ରଭାବ ନିମ୍ନୋକ୍ତ ଭାବରେ ଘଟିପାରେ—

(i) ସାଂସ୍କୃତିକ ସତ୍ତା ଓ ଧାର୍ମିକ ପୁନର୍ଜାଗରଣ ପ୍ରାଚୀନ ଶବ୍ଦର ପୁନରୁଦ୍ଧାର କରିଥାଏ । ଉଦାହରଣ ସ୍ୱରୂପ ୧୯ଶ ଶତାବ୍ଦୀରେ ଆର୍ଯ୍ୟ ସମାଜର ପ୍ରଭାବ ଦ୍ୱାରା ଓଡ଼ିଆ, ହିନ୍ଦୀ, ବଙ୍ଗଳା ଆଦି ଭାଷାରେ ଅନେକ ସଂସ୍କୃତ-ତତ୍ସମ ଶବ୍ଦ ବ୍ୟବହୃତ ହେବାକୁ ଲାଗିଲା । ଖ୍ରୀଷ୍ଟିୟାନ ଧର୍ମ ସେହିପରି ୟୁରୋପର ବିଭିନ୍ନ ଭାଷାକୁ କେତୋଟି ଶବ୍ଦ ଦେଇଅଛି । ଓଡ଼ିଶାରେ ମୁସଲମାନ ଧର୍ମର ପ୍ରଭାବ ଫଳରେ ମସ୍‌ଜିଦ୍, ଇଦ୍, ଅଲ୍ଲା, ଫକୀର, ପୀର, ରସୁଲ, କବର ପ୍ରଭୃତି ଶବ୍ଦ ଓଡ଼ିଆ ଭାଷାରେ ପ୍ରଚଳିତ ହେଉଅଛି । ସାଂସ୍କୃତିକ ପୁନରଭ୍ୟୁଦୟ ଫଳରେ ଇଂରାଜୀ ଭାଷାରୁ ଅରବୀ ଶବ୍ଦର ବହିଷ୍କାର ଓ ପ୍ରାଚୀନ ଆର୍ଯ୍ୟ ଶବ୍ଦର ପ୍ରଚଳନ ପାଇଁ ଆଗ୍ରହ ଦେଖାଦେଇ-ଥିଲା ।

(ii) ସାଂସ୍କୃତିକ ପୁନରୁତ୍ଥାନ ଫଳରେ ଶବ୍ଦର ଅର୍ଥରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଅଶୋକ ନିଜ ପାଇଁ ଦରବାରରେ ଚଳାଇଥିବା 'ଦେବାନାଂ ପ୍ରିୟ' (ଦେବତାମାନଙ୍କର ପ୍ରିୟ) ଶବ୍ଦ ବୌଦ୍ଧ ଧର୍ମର ପତନ ପରେ 'ମୂର୍ଖ' ଅର୍ଥ ବହନ କରିଥିଲା । ସେହିପରି 'ପାଷାଣ୍ଡ' (ସିଦ୍ଧବୌଦ୍ଧ ସନ୍ନ୍ୟାସୀ) 'ଦୁରାଚାର' ଅର୍ଥ ଗ୍ରହଣ କରିଥିଲା । 'ହିନ୍ଦୁ' ଶବ୍ଦର ମୂଳ ଅର୍ଥ ସିନ୍ଧୁ ଦେଶବାସୀ । ଧାର୍ମିକ ପ୍ରଭାବରୁ ଏହାର ଅର୍ଥ ବଦଳି ଯାଇଥିଲା ଓ ହିନ୍ଦୁଧର୍ମର ପତନ ପରେ ମୁସଲମାନମାନେ ଏହାକୁ ଗର୍ହିତ ଅର୍ଥରେ ବ୍ୟବହାର କରିଥିଲେ ।

(iii) ଜଣେ ଜଣେ ଧାର୍ମିକ ମହାପୁରୁଷ ମଧ୍ୟ ଭାଷାରେ ପରିବର୍ତ୍ତନ ଆଣି ଦେଇ ପାରନ୍ତି । ଗୋସ୍ୱାମୀ ତୁଳସୀ ଦାସ ଉତ୍ତର ଭାରତର କେବଳ ଧର୍ମ ଓ ସମାଜରେ ନୁହେଁ, ଭାଷାରେ ମଧ୍ୟ ଆଣିଥିଲେ ଉଲ୍ଲେଖନୀୟ ପରିବର୍ତ୍ତନ । ସେହିପରି ଜଗନ୍ନାଥ ଦାସ ଓଡ଼ିଆ ଭାଷାରେ ସ୍ମରଣୀୟ ପରିବର୍ତ୍ତନ ଆଣି ପାରିଥିଲେ । ବ୍ୟକ୍ତି-ବିଶେଷର ସମାଜରେ ପ୍ରତିପତ୍ତି ଥିଲେ ନୂଆ ନୂଆ ବିଚିତ୍ର ଶବ୍ଦର ସୃଷ୍ଟି ହୁଏ । ଯଥା—

ରାଜପରିବାରରେ ଝାଡ଼ା ଫିରିବାକୁ କୁହାଯାଉଥିଲା ପୁରୁଲେଇ ବଜେ, ଶରୀର ତରିବାକୁ ପଦ୍ମଶ୍ରୀ ବଜେ ଓ ଖାଇବାକୁ ମନୋହି ବଜେ ।

**(୪) ଜାତିର ମାନସିକ ସ୍ତର**—କେତେକ ବିଦ୍ୱାନଙ୍କ ମତରେ କୌଣସି ଜାତି ବା ରାଷ୍ଟ୍ରର ମାନସିକ ଅବସ୍ଥା ଅନ୍ୟ ଜାତି ବା ରାଷ୍ଟ୍ରର ମାନସିକ ଅବସ୍ଥାଠାରୁ ଭିନ୍ନ ହେଲେ ଉଭୟଙ୍କ ପ୍ରଚଳିତ ଭାଷାରେ ପ୍ରଭେଦ ପରିଲକ୍ଷିତ ହୁଏ । ସେହି ଏକ ଲାଟିନ୍ ଭାଷା ଜର୍ମାନୀର ରାଷ୍ଟ୍ରୀୟ ମାନସିକ ଅବସ୍ଥା ନେଇ ହେଲା ସୌଷ୍ଠବାନ୍ୱିତ ଓ ଚଞ୍ଚଳ । ଫ୍ରାନ୍ସରେ ହେଲା ଲଳିତ, ଇଂଲଣ୍ଡରେ ଗମ୍ଭୀର । ଓଡ଼ିଆ ଭାଷା ଓ ବଙ୍ଗଳା ଭାଷାର ମୂଳ ସୂତ୍ର ଏକ ହେଲେ ହେଁ ବଙ୍ଗଳା ଭାଷା ଲଳିତ ଓ କୋମଳ, ଓଡ଼ିଆ ଭାଷା ଗୁରୁଗମ୍ଭୀର, କାରଣ ବଙ୍ଗାଳୀ ଜାତି ବିଳାସପ୍ରିୟ ଓ ଓଡ଼ିଆ ଜାତି ଶୌର୍ଯ୍ୟାନ୍ୱିତ ।

**(୫) ସମାଜ-ବ୍ୟବସ୍ଥା**—ସମାଜରେ ଶାନ୍ତି ଅଶାନ୍ତିର ବାତାବରଣ ଯେଉଁ ଜୀବନ ହୁଏ ପ୍ରବର୍ତ୍ତିତ ଓ ଭାଷାରେ ଦେଖାଦିଏ ତାହାର ଉଲ୍ଲେଖଯୋଗ୍ୟ ପ୍ରଭାବ । ଯୁଦ୍ଧକାଳର ସମାଜରେ ଭାଷାର ଶୁଦ୍ଧି ଅଶୁଦ୍ଧି ପ୍ରତି ଧ୍ୟାନ ଦିଆଯାଏ ନାହିଁ ଏବଂ ଏହା ଉପରେ ନିୟନ୍ତ୍ରଣର ଅଭାବରୁ ଏହା ଦ୍ରୁତଗତିରେ ଅଗେଇ ଚାଲେ । ସେହିପରି ଯଦି କୌଣସି ସାମାଜିକ, ରାଜନୈତିକ ଆଦି କାରଣରୁ ଯୁବକ ସମାଜରେ ସ୍ୱଚ୍ଛନ୍ଦତା ଓ ସ୍ୱେଚ୍ଛାଚାରିତା ପ୍ରବୃତ୍ତି ବଢ଼ିଯାଏ, ଅଥବା ପିତାମାତାଙ୍କର ଶାସନ-ପରିସରରୁ ସେମାନେ ବାହାରି ଆସନ୍ତି ତେବେ ଭାଷାରେ ଅବାଧରେ ନବୀନ ନବୀନ ପ୍ରୟୋଗ ବଢ଼ିଚାଲେ ଓ ଫଳରେ ଭାଷାର ସମୂଳ ପରିବର୍ତ୍ତନ ଘଟେ । ଅନ୍ୟ ପକ୍ଷରେ ଯୁଦ୍ଧର ଅଶାନ୍ତ ବାତାବରଣରେ ଭାଷା ହୁଏ ଖଣ୍ଡିତ ଓ ସଂକ୍ଷିପ୍ତ ।

**(୬) ବିଜ୍ଞାନ**—ବୈଜ୍ଞାନିକ ନୂଆ ନୂଆ କେତେ ଉଦ୍ଭାବନ କରିଚାଲିଛନ୍ତି; ଧୀରେ ଅଥବା ଚଞ୍ଚଳ ହେଉ, ଭାଷାରେ ତାର ପ୍ରଭାବ ପରିଲକ୍ଷିତ ହୁଏ ।

**(୭) ବାଣିଜ୍ୟ**—ବାଣିଜ୍ୟଗତ ସମ୍ପର୍କ ହେତୁ ଭାଷାରେ ଶବ୍ଦ ଅନୁପ୍ରବେଶ-ଜନିତ ସମୃଦ୍ଧି ଘଟେ । ପର୍ତ୍ତୁଗୀଜମାନେ ଏ ଦେଶରେ ବାଣିଜ୍ୟ କରିବା ଫଳରେ ପାଉଁରୁଟି, ସାବୁନ, ଆଲପିନ୍ ଇତ୍ୟାଦି ଶବ୍ଦ, ଇଂରେଜମାନେ ବାଣିଜ୍ୟ କରିବା ଦ୍ୱାରା ଗ୍ଲାସ, ବୁକ୍, ସ୍ଲିପର୍ ଇତ୍ୟାଦି ଶବ୍ଦ ଓଡ଼ିଆ ଭାଷାରେ ପ୍ରବେଶ ଲାଭ କରିଅଛି । ସେହିପରି ଦ୍ରାବିଡ଼ମାନେ ବିଦେଶମାନଙ୍କରେ ନୌବାଣିଜ୍ୟ କରିବା ଫଳରେ ଦ୍ରାବିଡ଼ (ତାମିଲ) ଶବ୍ଦ ଅରିସି (ଚାଉଳ) ରୂପ-ରୂପାନ୍ତର ପରିଗ୍ରହ କରି ବିଭିନ୍ନ ବିଦେଶୀ ଭାଷାରେ ସ୍ଥାନ ଅଧିକାର କରିଛି, ଯଥା—ଇଂରାଜୀ ରାଇସ (rice), ଜର୍ମାନ ରେଇସ (reis), ଫରାସୀ ରିଜ୍ (riz), ଇଟାଲୀ ରିସୋ (riso), ଦିନାମାର ରିସ୍ (ris), ସୁଇଡୀୟ ରିସ୍ (ris), ଗ୍ରୀକ୍ ଓରିଜା (oryza), ଲାଟିନ ଓରିଜା (oryza) ।

(୮) **ଆର୍ଥିକ ଅବସ୍ଥା**--ଯେଉଁମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ, ସେମାନଙ୍କ ଭାଷାରେ ମିଳେ ଆଡ଼ମ୍ବର, ଗାମ୍ଭୀର୍ଯ୍ୟ ଓ ସୂକ୍ଷ୍ମତା; ଯେଉଁମାନଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ସେମାନଙ୍କର ଭାଷା ହୁଏ ନୀରସ । ଯେଉଁ ସ୍ଥାନର ଭୂମି ଉର୍ବର, ସେଠାର ଅଧିବାସୀମାନେ ଅଳ୍ପ ପରିଶ୍ରମ କରନ୍ତି । ସେମାନେ ଅଳସ ଓ ବିଳାସୀ, ସେମାନଙ୍କ ପାଖରେ ଯଥେଷ୍ଟ ଅବସର ଥାଏ, ତେଣୁ ସେମାନଙ୍କ ଭାଷାରେ ଆଭିଜାତ୍ୟ ପରିଲକ୍ଷିତ ହୁଏ । କିନ୍ତୁ ଯେଉଁମାନେ କଠିନ ପରିଶ୍ରମ କରି ଖାଦ୍ୟସଂସ୍ଥାନ କରନ୍ତି; ସେମାନଙ୍କ ବିବୃତ ଭାବ ସେମାନଙ୍କ ଭାଷାକୁ କରିଥାଏ ରୁକ୍ଷ ଓ କର୍କଶ ।

(୯) **ସଂସର୍ଗ**—ଜଣେ ପଲ୍ଲୀବାସୀ ସହରକୁ ଯାଇ ପୁଣି ପଲ୍ଲୀକୁ ଫେରି ଆସିଲେ, ତାର ଭାଷାରେ ଘଟିଥିବା ପରିବର୍ତ୍ତନ ପଲ୍ଲୀବାସୀମାନେ ବେଶ୍ ଲକ୍ଷ୍ୟ କରିପାରନ୍ତି । ଗୋଟିଏ ପଲ୍ଲୀରେ ଯଦି ସହର-ଫେରନ୍ତାଙ୍କ ସଂଖ୍ୟା ବଢ଼ିଯାଏ, ତେବେ ସେ ପଲ୍ଲୀର ଭାଷାରେ ନିଶ୍ଚୟ କିଛି ପରିବର୍ତ୍ତନ ଘଟିବ । ସେହିପରି ଗୋଟିଏ ପରିବାରକୁ ଭିନ୍ନ ଭିନ୍ନ ଗାଁର ବୋହୂ ଆସନ୍ତି ଓ ନିଜ ନିଜ ଭାଷାକୁ ଧରି ରଖନ୍ତି ଏବଂ ସେହିପରି ଭାବରେ ଯଦି ସେହି ଗାଁରେ ବୋହୂମାନଙ୍କ ସଂଖ୍ୟା ବଢ଼ିଯାଏ, ତେବେ ସେହି ଗାଁର ଭାଷାରେ ପରିବର୍ତ୍ତନ ଲକ୍ଷ୍ୟ କରାଯିବ ।

(୧୦) **ଲିପି ଦୋଷ**—ଲିପିରେ ଥିବା ତ୍ରୁଟିକୁ ପରିହାର ନ କରି ବ୍ୟବହାର କରି ବସିଲେ ଭାଷାରେ ତାହା ପ୍ରଚଳିତ ହୋଇଯାଏ । ଅନେକ ଶିଳା-ଲେଖରେ ଅନେକ ଶବ୍ଦ ବିକୃତ ଭାବରେ ଲିପିବଦ୍ଧ ହୋଇଥାଏ । ଉଦାହରଣ ସ୍ୱରୂପ 'ଶରତ' ଶବ୍ଦ ଓଡ଼ିଆ ଶିଳାଲେଖରେ ଭ୍ରାନ୍ତଭାବରେ 'ସାହ୍ତ' ରୂପରେ ଲିପିବଦ୍ଧ । ପରବର୍ତ୍ତୀ କାଳରେ ଏହି ଶବ୍ଦକୁ ନିର୍ଭୁଲ ଭାବି ଅନ୍ୟମାନେ ପ୍ରଚଳନ କରିଦେବା ଫଳରେ ଓଡ଼ିଆ ଭାଷାରେ ଏହାର ସ୍ଥିତି ଦୃଢ଼ ହୋଇଯାଇଛି । ଲେଖନ ଦୋଷ ଫଳରେ ଶବ୍ଦରେ ଦେଖା ଦେଉଥିବା ବିକୃତି ଚିରସ୍ଥାୟୀ ହୋଇଯାଏ ଓ ଅନେକ ସମୟରେ ଅର୍ଥ ଲୁପ୍ତ ହୋଇଯାଏ । ଇଂରାଜୀରେ 'ଦେହଲୀ'କୁ Delhi, 'ତିରୁବନନ୍ତପୁରମ୍'କୁ Trivandrum, 'ପୁଦୁଚେରି'କୁ Pondicherry, 'ବ୍ରହ୍ମପୁର'କୁ Berhampur ଲେଖାଯିବା ଫଳରେ ଏହି ଶବ୍ଦଗୁଡ଼ିକର ଅର୍ଥ ଲୁପ୍ତ ହୋଇଯାଇଛି ।

(ଖ) **ଆଭ୍ୟନ୍ତରୀଣ କାରଣ**--ଆଭ୍ୟନ୍ତରୀଣ କାରଣ ମଧ୍ୟରେ ନିମ୍ନଲିଖିତ କାରଣଗୁଡ଼ିକ ଉଲ୍ଲେଖଯୋଗ୍ୟ—

(୧) **ଉଚ୍ଚାରଣରେ ଅଶକ୍ତି**—କୌଣସି କୌଣସି ବ୍ୟକ୍ତିବିଶେଷଙ୍କର ସ୍ୱରଯନ୍ତ୍ରରେ ସ୍ୱାଭାବିକ ଅକ୍ଷମତା ଥାଏ, ଯାହା ପ୍ରଚେଷ୍ଟା ଦ୍ୱାରା ମଧ୍ୟ ପୂର୍ଣ୍ଣ ହୋଇ-ପାରିବ ନାହିଁ । ତେଣୁ ସେ କୌଣସି କୌଣସି ବର୍ଣ୍ଣର ଠିକ୍ ଉଚ୍ଚାରଣ କରି ପାରନ୍ତି ନାହିଁ ।

(୨) ସ୍ୱରଯନ୍ତ୍ରରେ ବିକାର—ଦେଶ, କାଳ, ଅନୁଚିତ, ଉପଯୋଗ, ରାଜସ ଓ ତାମସ ଖାଦ୍ୟ ଆଦି ମନୁଷ୍ୟର କୋମଳ ସ୍ୱରଯନ୍ତ୍ରମାନଙ୍କ ଉପରେ ପ୍ରଭାବ-ପାତ କରେ । ଏହି କାରଣରୁ ଯଦି ସ୍ୱରଯନ୍ତ୍ରଗୁଡ଼ିକରେ ସଙ୍କୋଚନ ବା ବୃଦ୍ଧି ଆଦି ବିକାର ଦେଖାଦିଏ, ତେବେ ଶୁଦ୍ଧ ଉଚ୍ଚାରଣ ସମ୍ଭବ ହୁଏ ନାହିଁ । ଭାରତୀୟ ଭାଷା-ବିତ୍‌ମାନଙ୍କ ମତରେ ବହୁତ ଖୋଲା ଚହଡ଼ା ମୁହଁ, ଦାନ୍ତୁରା, ଲମ୍ବା ଓଠିଆ ଓ ଛୋଟ ଜିଭମାନେ ବର୍ଣ୍ଣର ସଠିକ୍ ଉଚ୍ଚାରଣ କରିପାରନ୍ତି ନାହିଁ ।

(୩) ଅସ୍ପଷ୍ଟ ଉଚ୍ଚାରଣ—ଅନେକ ସମୟରେ ଶବ୍ଦ କାହାରି ଦ୍ୱାରା ଅସ୍ପଷ୍ଟ ଭାବରେ ଉଚ୍ଚାରିତ ହେଲେ, ତାର ସଠିକ୍ ରୂପ ଜାଣିହୁଏ ନାହିଁ । ଅନୁମାନ ଉପରେ ତାହାର ଏକ ରୂପ ଗ୍ରହଣ କରି ନିଆଯାଏ । ଅନୁମାନ ଉପରେ ଶବ୍ଦ ଗଠିତ ହେବା ଫଳରେ ଏକ ନୂଆ ଶବ୍ଦର ସୃଷ୍ଟି ହୁଏ ।

(୪) ଭ୍ରାନ୍ତ ଉଚ୍ଚାରଣ—ଭ୍ରାନ୍ତ ଉଚ୍ଚାରଣ ଫଳରେ ଶବ୍ଦର ରୂପରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟେ । ଭ୍ରାନ୍ତ ଉଚ୍ଚାରଣ ଯୋଗୁ ବର୍ଣ୍ଣର ଲୋପ, ଆଗମ, ବିପର୍ଯ୍ୟୟ, ସମୀକରଣ, ବିଷମୀକରଣ, ସ୍ୱରଭକ୍ତି ଆଦି ଘଟିଥାଏ । ଯଥା—

ଲୋପ—ଉଧାର > ଧାର, ଅଲାବୁ > ଲାଉ, ଶ୍ମଶାନ > ମଶାଣି,
ଜ୍ୱାଳା > ଜାଳା, ସୁବର୍ଣ୍ଣ > ସ୍ୱର୍ଣ୍ଣ
ଆଗମ—ସ୍କୁଲ > ଇସ୍କୁଲ, ଜେଲ > ଜଅଲ > ଜହଲ, ମହତ୍ > ମହତ,
ଜଗତ୍ > ଜଗତ, ଉଲ୍ଲାସ > ଉଲ୍ଲସ
ବିପର୍ଯ୍ୟୟ—ରିକ୍ସା > ରିସ୍କା, ମତଲବ > ମତବଲ
ସମୀକରଣ—ଅଗ୍ନି > ଅନ୍ନି > ଅନି > ନିଆଁ, ଅଗ୍ନି > ଅଗନି > ଅଗି
ବିଷମୀକରଣ—ମୁକୁଟ > ମଉଡ଼, ଲଙ୍ଗଳ > ନଙ୍ଗଳ
ସ୍ୱରଭକ୍ତି—ଭକ୍ତ > ଭକତ, ସ୍ୱପ୍ନ > ସ୍ୱପନ, ସ୍ନେହ > ସେନେହ

(୫) ମାତ୍ରା, ସୁର ଓ ବଳାଘାତର ପ୍ରଭାବ—ବଳାଘାତଯୁକ୍ତ ଧ୍ୱନିର ସ୍ଥିତି ସୁଦୃଢ଼ ହୋଇଯାଏ, କିନ୍ତୁ ସମୀପବର୍ତ୍ତୀ ଧ୍ୱନି ଦୁର୍ବଳ ହୋଇଯାଇ, କାଳକ୍ରମେ ଲୁପ୍ତ ବା ପରିବର୍ତ୍ତିତ ହୋଇଯାଏ । ଉଦାହରଣ ସ୍ୱରୂପ ସଂସ୍କୃତ 'ଅଭ୍ୟନ୍ତର' ଶବ୍ଦରେ 'ଭ୍ୟ' ଉପରେ ବଳାଘାତ ପଡ଼ିବା ଫଳରେ 'ଭ୍ୟ'ର ସ୍ଥିତି ସୁଦୃଢ଼ ହୋଇଯାଏ, କିନ୍ତୁ 'ଅ' ଦୁର୍ବଳ ହୋଇ କ୍ରମେ ଲୋପପାଏ ଓ ନୂତନ ଶବ୍ଦଟି ହୁଏ 'ଭିତର' ।

ସୁର ସ୍ୱରର ପ୍ରକୃତିରେ ପରିବର୍ତ୍ତନ ଆଣି ଦେଇପାରେ । ସବୃତ ସ୍ୱର ବିବୃତ ଓ ବିବୃତ ସ୍ୱର ସବୃତ ଉଚ୍ଚାରିତ ହେବା ମୂଳରେ ରହିଛି ସୁର । ଯଥା—ବାଲ୍ୟ >

ବେଲ (ପଶ୍ଚାତ ଇ>ସମ୍ମୁଖ ଏ), ହସ୍ତ>ହାତ (ପଶ୍ଚାତ>ଉ>ସମ୍ମୁଖ ଓ) ଗୋଶାଲା >ଗୁହାଳ (ସମ୍ମୁଖ ଓ>ପଶ୍ଚାତ ଉ)

ମାତ୍ରା ଯୋଗୁ ମଧ୍ୟ ଧ୍ୱନି ବଦଳିଯାଏ । ଉଦାହରଣ ସ୍ୱରୂପ, ଯଦି ଦୁଇଟି ଦୀର୍ଘ ଧ୍ୱନି ପାଖାପାଖି ଆସିଯାଆନ୍ତି, ତେବେ ତନ୍ମଧ୍ୟରୁ ଗୋଟିଏ ହ୍ରସ୍ୱ ହୋଇଯାଏ । ଯଥା—ଅଷାଢ଼>ଅଷାଢ଼ ।

(୬) ଉଚ୍ଚାରଣ ପ୍ରାଧାନ୍ୟ—ଯଦି କୌଣସି ଶବ୍ଦର ଗୋଟିଏ ସ୍ଥାନରେ ବିନା କାରଣରେ ଉଚ୍ଚାରଣ ପ୍ରାଧାନ୍ୟ ଦିଆଯାଏ ତେବେ ଧ୍ୱନିର ପରିବର୍ତ୍ତନ ହୁଏ । ଯଥା—ପୀଡ଼ା>ପୀଡ଼୍ଡ଼ା (ଗଞ୍ଜାମୀ ଓଡ଼ିଆ), କପ>କପ୍ପ (ଗଞ୍ଜାମୀ ଓଡ଼ିଆ), ବୁଢ଼ା>ବୁଢ଼୍ଢ଼ା, ଚାଳ>ଚାଲ୍ଲା, ମାଛ>ମାଚ୍ଛି ।

(୭) ପ୍ରଯତ୍ନ ଲାଘବ—ବସ୍ତୁତଃ ଭାଷାର ପରିବର୍ତ୍ତନ ଘଟିଥାଏ ପ୍ରଯତ୍ନ ଲାଘବ ଯୋଗୁ । ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି ହେଲା ଅଳ୍ପ ପରିଶ୍ରମରେ ଅଧିକ ଲାଭ ଉଠାଇବା । ଜେସ୍‌ପର୍‌ସନ ଏହି ସିଦ୍ଧାନ୍ତ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ପ୍ରଯତ୍ନ ଲାଘବ ଯୋଗୁ ନିମ୍ନଲିଖିତ ଶବ୍ଦମାନଙ୍କର ପରିବର୍ତ୍ତନ ଘଟିଅଛି—

ଜୟ ଜୟ>ଜେ ଜେ, ଜ୍ୟୋଷ୍ଠ ତାତତା>ଜେଠେଇ, ସୀରେନ୍ଦ୍ର>ବିରେନ୍, ରେଳଗାଡ଼ି>ରେଳ, ମୋଟର ବସ୍>ମୋଟର, University>versity, ହସ୍ତି ନ୍ ଗୃହ>ହସ୍ତି ନ୍ (ହସ୍ତୀ) ।

(୮) ଅସାବଧାନତା—ଅସାବଧାନତାବଶତଃ ଜଣେ ଜଣେ ବ୍ୟକ୍ତି ଗୋଟିଏ ଧ୍ୱନି ଉଚ୍ଚାରଣ କରିବା ସ୍ଥାନରେ ଅନ୍ୟ ଗୋଟିଏ ଧ୍ୱନି ଉଚ୍ଚାରଣ କରି ପକାନ୍ତି, ଯଥା—ହାତ>ହାଥ । ଅସାବଧାନତା ହେତୁ ଅନେକ ସମୟରେ ଗୋଟିଏ ଶବ୍ଦ ସ୍ଥାନରେ ଆଉ ଗୋଟିଏ ଶବ୍ଦ ଉଚ୍ଚାରିତ ହୋଇଯାଏ ।

(୯) ଯଥେଚ୍ଛ ଉଚ୍ଚାରଣ—ବେଳେ ବେଳେ କୌଣସି ବ୍ୟକ୍ତି ସାଧୁ ଅସାଧୁ ଶବ୍ଦ ମଧ୍ୟରେ ଭେଦ ଜାଣି ମଧ୍ୟ ନିଜ ଇଚ୍ଛା ଅନୁସାରେ ଶବ୍ଦକୁ ଭ୍ରଷ୍ଟ କରି ଉଚ୍ଚାରଣ କରିଥାଆନ୍ତି । ଶିଶୁସନ୍ତାନ ସଙ୍ଗରେ ପିତା-ମାତା କୌତୁକରେ ଆଳାପ କଲାବେଳେ ଏହିପରି ଅନେକ ଶବ୍ଦ ବ୍ୟବହାର କରନ୍ତି । ଯଥା—ଘୋଡ଼ା>ଘୋଲା, ରାମ>ଲାମ ଇତ୍ୟାଦି ।

(୧୦) ମୂର୍ଖ ଶିକ୍ଷକଙ୍କଠାରୁ ଅଧ୍ୟୟନ—ଅଶିକ୍ଷିତ ଗୁରୁଙ୍କଠାରୁ ଶିକ୍ଷା ଲାଭ କଲେ ଅନେକ ସମୟରେ ଶବ୍ଦର ଉଚ୍ଚାରଣ ଅଶୁଦ୍ଧ ହୋଇଯାଏ ।

(୧୧) **ଅନୁକରଣରେ ଅପୂର୍ଣ୍ଣତା**—ଅନେକ ସମୟରେ ଅନୁକରଣ କରୁଥିବା ବ୍ୟକ୍ତି ଅନ୍ୟ ଭାଷାର ଶବ୍ଦ ଉଚ୍ଚାରଣ ବିଧି ଜାଣିନଥାଏ, ଅଶିକ୍ଷା ହେତୁ କିଛି ବୁଝିପାରେ ନାହିଁ, ଅଥଚ ସବୁ ଜାଣିବାର ଅହମିକା ଦେଖାଏ । ଫଳରେ ଭାଷାରେ ପରିବର୍ତ୍ତନ ଘଟେ । ଏହି ଭ୍ରାନ୍ତ ଅନୁକରଣ ବହୁଳ ଭାବରେ ପ୍ରଚଳିତ ହୋଇଗଲେ ଭାଷାରେ ଦୃଢ଼ ଆସନ ପାଇବସେ । ଯଥା—କଣ୍ଟ୍ରାକ୍ଟର>କାନଟରାଟି । ଓଭରସିଅର>ଉବରସର, ଉବରସେନ ।

ଡକ୍ଟର>ଡାକତର, ଡାଗଡ଼ର (ହିନ୍ଦୀ) । ଇଞ୍ଜିନ୍>ଇଞ୍ଜନ । ମାଇଲେଷ୍ଟୋନ୍>ମାଇଲଖୁଣ୍ଟ । ରିପୋର୍ଟ>ରପଟ । ଗାର୍ଡ଼>ଗାରଦ । ଡ୍ରିଲ>ଦରେଲ (ହିନ୍ଦୀ) । ଇନସ୍‌ପେକ୍ଟର>ଇସ୍‌ପେକ୍ଟର (ହିନ୍ଦୀ) । ହୁ କମ୍‌ସ୍ ଦେୟାର>ହୁକୁମ ଦଦର । ଲର୍ଡ଼>ଲାଟ । ସିଗ୍ନାଲ>ସିଂଗଲ । ଦରଖାସ୍ତ>ଦର୍ଖାସ, ଦରକାସ । ମାଷ୍ଟର>ମାହାଟ୍ରର । କାନୁନ୍‌ଗୋ>କାନଗୋଇ । ପ୍ଲାଟୁନ>ପଲଟଣ । କାଇନ୍ ହାଉସ୍>କାଞ୍ଜି ଅଡ୍ଡା, କାଞ୍ଜି ଅ ଘଷା ।

(୧୨) **ସ୍ୱେଚ୍ଛାକୃତ ପରିବର୍ତ୍ତନ**—କେତେକ ଲେଖକ ବା ବିଦ୍ୱାନ୍ ଜାଣି ଜାଣି ଗୋଟିଏ ଭାଷାର କେତେକ ଶବ୍ଦକୁ ପରିବର୍ତ୍ତିତ କରିଥାନ୍ତି । ତାହା କ୍ରମେ ବ୍ୟାପକ ହୋଇଯାଏ । ଯଥା —

ଆଲେକ୍‌ଜାଣ୍ଡାର—ସିକନ୍ଦର, ସୁନ୍ଦର, ଅଲକ୍ଷେନ୍ଦ୍ର

ମାକ୍‌ସମୁଲର—ମୋକ୍ଷମୂଲର

ସେକ୍‌ସପିଅର—ସେକ୍ଷପ୍ରିଅର, ସେକ୍ଷପିଅର ।

(୧୩) **ଶ୍ରବଣେନ୍ଦ୍ରିୟର ତ୍ରୁଟି**—କେହି ଭାଷାକୁ ମାଆ ପେଟରୁ ଶିଖି ଆସିନଥାଏ । ଚୈତନ୍ୟ ଉଦୟ ପରେ କାନରେ ଶୁଣି ଶୁଣି ମନୁଷ୍ୟ ଶିଶୁ ଧୀରେ ଧୀରେ ଭାଷାକୁ ଶିକ୍ଷା କରେ । ବାଗ୍‌ଯନ୍ତ୍ର ପରି ଶ୍ରବଣେନ୍ଦ୍ରିୟରେ ବ୍ୟତିକ୍ରମ ମଧ୍ୟ ଧ୍ୱନି ପରିବର୍ତ୍ତନର କାରଣ ହୁଏ । ପ୍ରଥମେ ହୁଏତ ଏହି କାରଣ ହାସ୍ୟାସ୍ପଦ ମନେ ହୋଇପାରେ; କିନ୍ତୁ ଏହା ସତ୍ୟ । କଣେ ଯଦି ଗୋଟିଏ ଶବ୍ଦକୁ ଶ୍ରବଣେନ୍ଦ୍ରିୟର ଭ୍ରମ ଯୋଗୁ ଭ୍ରାନ୍ତ ରୂପରେ ଶୁଣେ, ତେବେ ସେ କହିଲାବେଳେ ଭ୍ରାନ୍ତ ଉଚ୍ଚାରିତ ଶବ୍ଦଟି ହିଁ କହେ । ଉଦାହରଣ ସ୍ୱରୂପ ଯଦି କେହି 'ଘୃଣ୍ଣଳ'କୁ 'ଘୃଣ୍ଣର' ରୂପରେ ଶୁଣେ, ତେବେ ସେ ତାହାକୁ 'ଘୃଣ୍ଣର' ଭାବରେ ଉଚ୍ଚାରଣ କରିବ । ଏହିଭଳି ଭାବରେ 'କଟକ' 'କୁଟାକ୍' (Cuttack)ରେ ପରିଣତ ହୋଇଅଛି । କୌଣସି ଇଂରେଜ ବ୍ୟକ୍ତି 'କଟକ' ଶବ୍ଦକୁ ଭୁଲ ଭାବରେ 'କୁଟାକ୍' ରୂପରେ ଶୁଣି ସେହିପରି ଉଚ୍ଚାରଣ କରିଛନ୍ତି ଓ ଲିପିବଦ୍ଧ ରୂପ ପ୍ରଦାନ କରିଛନ୍ତି ।

(୧୪) ପ୍ରୟୋଗାଧିକ୍ୟ—ଅଧିକ ପ୍ରୟୋଗ ଫଳରେ ଅନ୍ୟ ପଦାର୍ଥ ପରି ଭାଷାରେ ମଧ୍ୟ କ୍ଷୟମୁଖୀ ପରିବର୍ତ୍ତନ ଘଟେ । ସଂସ୍କୃତର କାରକୀୟ ବିଭକ୍ତିଗୁଡ଼ିକ ଏହିପରି ଧୀରେ ଧୀରେ କ୍ଷୟପ୍ରାପ୍ତ ହୋଇ ପ୍ରାୟ ଲୋପ ପାଇଛନ୍ତି ।

(୧୫) ଦ୍ରୁତ କଥନ—ଉଚ୍ଚାରଣ ଦ୍ରୁତ ହେଲେ ଧ୍ୱନି ପରିବର୍ତ୍ତନ ଦେଖାଯାଏ । ଯଥା—

ଭୋଗ ମଣ୍ଡପ>ଭଣ୍ଡ
Thank you>ଥାଙ୍କ୍ୟୁ
ମାଷ୍ଟର ସାହେବ>ମାଧ୍‌ସାବ
ମେଜ>ମେଜ୍‌ଢ

ପାନ ବିଡ଼ି ସିଗାରେଟ୍>ପାଣ୍ଡୁ ମିଶ୍ରେ କଏ (ପଣ୍ଡିତ ଗୋଦାବରୀଶ ମିଶ୍ର ଏକ ଗଳ୍ପରେ ଦର୍ଶାଇଛନ୍ତି ଷ୍ଟେସନରେ ପାଣ୍ଡୁ ମିଶ୍ରନ୍ ନାମକ ଜଣେ ବ୍ୟକ୍ତି 'ପାନ ବିଡ଼ି ସିଗାରେଟ୍' ଡାକ ଶୁଣି ତାଙ୍କୁ କେହି ଜଣେ 'ପାଣ୍ଡୁ ମିଶ୍ରେ କଏ' ଡାକୁଛନ୍ତି ବୋଲି ଭ୍ରମ କରିଥିଲେ ।)

(୧୬) ବ୍ୟାକରଣ ନିୟମ ଲଂଘନ—ବ୍ୟାକରଣ ନିୟମ ଲଂଘନ କରି କୌଣସି ଅଶୁଦ୍ଧ ଶବ୍ଦକୁ ବହୁଳ ଭାବରେ ପ୍ରୟୋଗ କଲେ ଭାଷାରେ ତାହା ଗ୍ରହଣୀୟ ହୋଇଥାଏ । ଏହିପରି ବହୁ ଅଶୁଦ୍ଧ ଶବ୍ଦ ବହୁ-ପ୍ରଚଳନ ଫଳରେ ଓଡ଼ିଆ ଭାଷାରେ ପ୍ରତିଷ୍ଠିତ ସ୍ଥାନ ଅଧିକାର କରି ବସିଛି । ଯଥା—

| ଶୁଦ୍ଧ ଶବ୍ଦ | ପ୍ରଚଳିତ ଅଶୁଦ୍ଧ ଶବ୍ଦ | ଶୁଦ୍ଧ ଶବ୍ଦ | ପ୍ରଚଳିତ ଅଶୁଦ୍ଧ ଶବ୍ଦ |
|---|---|---|---|
| ଅସ୍ତ୍ର | ଅସ୍ତ୍ରୀ | ଅନଟନ | ଅନାଟନ |
| ନିର୍ଦ୍ଦୋଷ | ନିର୍ଦ୍ଦୋଷୀ | ଅପୂରତ | ଅପୂରିତ |
| ସର୍ଜନ | ସୃଜନ | ଐଶ୍ୱର୍ଯ୍ୟ | ଐଶ୍ୱରିୟ |
| ଅଧୀନ | ଅଧୀନସ୍ଥ | ଜନ୍ମରୁ | ଅଜନ୍ମରୁ |
| ଧୀରେ | ସଧୀରେ | ଉଜ୍ଜ୍ୱଳ | ଉଜ୍ଜ୍ୱଳମୟ |
| ଗୁଣିଗଣ | ଗୁଣୀଗଣ | ଏକତ୍ର | ଏକତ୍ରିତ |
| ନିରୋଗ | ନିରୋଗୀ | ଐକତାନ | ଐକ୍ୟତାନ |
| ଅହର୍ନିଶ | ଅହର୍ନିଶି | ଚଳଚ୍ଚିତ୍ର | ଚଳଚିତ୍ର |
| ଶଶିଭୂଷଣ | ଶଶୀଭୂଷଣ | ଜଗଦ୍‌ବନ୍ଧୁ | ଜଗତ୍‌ବନ୍ଧୁ |
| ପୂଜାସ୍ପଦ | ପୂଜ୍ୟାସ୍ପଦ | ସଦର | ସଦଉ |

| | | | |
|---|---|---|---|
| ଅବଶ୍ୟକ | ଅବଶ୍ୟମ୍ଭବ | ଦୃଢ଼ତା, ଦାର୍ଢ଼୍ୟ | ଦାର୍ଢ଼୍ୟତା |
| ନେତୃଗଣ | ନେତାଗଣ | ଧୂମ | ଧୂମ୍ର |
| ଅନାଥା | ଅନାଥିନୀ | ନରକ | ନର୍କ |
| ସୁକେଶୀ | ସୁକେଶିନୀ | ନିଃସ୍ୱାର୍ଥ | ନିଃସ୍ୱାର୍ଥପର |
| ଅର୍ଦ୍ଧାଙ୍ଗୀ | ଅର୍ଦ୍ଧାଙ୍ଗିନୀ | ନିରୁତ୍ସାହ | ନିରୁତ୍ସାହିତ |
| ପାଷଣ୍ଡ | ପାଷାଣ୍ଡ | ପ୍ରତ୍ୟେକ | ପ୍ରତ୍ୟେକଟି |
| ପାଟବ | ପାଟବତା | ବହିଃପ୍ରସ୍ଥ | ବହିସ୍ଥ |
| ବିବିଧ | ବିବିଧ ପ୍ରକାର | ବୃଥା | ବୃଥାରେ |
| ଭଲ | ଭଲରେ | ବ୍ୟବହାରିକ | ବ୍ୟାବହାରିକ |
| ମନୋଯୋଗ | ମନଯୋଗ | ମରକତ | ମର୍କତ |
| ମାମୁ | ମାମୁଁ | ସାତାସ୍ୱତ | ସାତାସ୍ୱାତ |
| ରେଫ | ରେଫ୍ | କ୍ଷମ | ସକ୍ଷମ |

(୧୭) ସାଦୃଶ୍ୟ—କେହି କେହି ମିଥ୍ୟା ସାଦୃଶ୍ୟ (false analogy) ମଧ୍ୟ କହନ୍ତି । ଗୋଟିଏ ଶବ୍ଦର ଛାଞ୍ଚରେ ନୂଆ ଶବ୍ଦକୁ ଢାଳିବାର ନାମ ସାଦୃଶ୍ୟ, ଉଦାହରଣ ସ୍ୱରୂପ—ଇଂରାଜୀ 'shall' ଏବଂ 'will' କ୍ରିୟାରେ 'I' ଥିବାରୁ ଏଗୁଡ଼ିକର ଅତୀତ ରୂପର କ୍ରିୟା 'should' ଏବଂ 'would'ରେ 'I' ରହିବା ସମୀଚୀନ । କିନ୍ତୁ 'can' କ୍ରିୟାରେ 'I' ନ ଥିବାରୁ ଅତୀତ ରୂପର କ୍ରିୟାରେ 'I' ନ ରହିବାର କଥା, କିନ୍ତୁ 'should' ଓ 'would'ର ସାଦୃଶ୍ୟରେ 'can'ର ଅତୀତ ରୂପ 'could' ହୋଇଅଛି, ଅର୍ଥାତ୍ ଏଥିରେ 'I' ଅଛି । ପ୍ରାଚୀନ ଇଂରାଜୀରେ cow ଶବ୍ଦର ବହୁବଚନ ରୂପ ହେଉଛି kine । କିନ୍ତୁ ଏକବଚନ ବହୁବଚନ କରିବା ପାଇଁ 's'ର ବହୁଳ ପ୍ରୟୋଗ ଅନୁସାରେ 'cow'ର ବହୁବଚନ 'cows' ହୋଇଯାଇଛି ଓ ତାହାର ଅବାଧ ପ୍ରଚଳନ ହୋଇଯାଉଛି । ଏହିପରି ନିରେଷ୍ଟକ ସାଦୃଶ୍ୟରେ ସରେଷ୍ଟକ (ସୌଷ୍ଟବ ହେବାର କଥା), ଦ୍ୱାଦଶ ସାଦୃଶ୍ୟରେ ଏଗାଦଶ (ଏକାଦଶ ହେବାର କଥା) ପ୍ରଚଳିତ ହୋଇଅଛି । ସେହିପରି tax ସାଦୃଶ୍ୟରେ ticket>ଟିକସ, ପ୍ରଶ୍ରୟ (ନମ୍ରତା)>ଅଶ୍ରୟ, ବନ୍ଧୁତା ସାଦୃଶ୍ୟରେ ମମତା, ଜରସ୍ପ (ନରସ୍ୟ) ସାଦୃଶ୍ୟରେ ମୂଷିସ୍ପ, ସାହୁସ୍ପ (ପାଲ), ଛନ୍ଦସୀ, ମାନସୀ, ପ୍ରେୟସୀ ସାଦୃଶ୍ୟରେ କନ୍ଦସୀ (ମୂଳ ଅର୍ଥ ଚକ୍ରାରକାଷ୍ଠ ସେନାଦ୍ୱୟ) ରୋଦସୀ (ମୂଳ ଅର୍ଥ ଅନ୍ତରୀକ୍ଷ) ଶବ୍ଦ ଦୁଇଟି (ବଙ୍ଗଳା) ବ୍ୟବହୃତ ହେଉଅଛି ।

(୧୮) ଭ୍ରମକ ବା ଲୌକିକ ବ୍ୟୁତ୍ପତ୍ତି—ଗୋଟିଏ ବାହାର ବା ବିଦେଶୀ ଶବ୍ଦକୁ ଶୁଣି ଅଥବା ଦେଖି ଅନେକ ବ୍ୟକ୍ତି ତାକୁ ନିଜ ଭାଷାର ଶବ୍ଦ ବା ଶବ୍ଦାଂଶ ସହିତ ସଦୃଶ କରି ଗଢ଼ିବାକୁ ଚେଷ୍ଟା କରିଥାନ୍ତି । ଏହିପରି ପ୍ରୟାସରୁ—

ପର୍ତ୍ତୁଗୀଜ ଅନାନସ୍>ଓଡ଼ିଆ ଅନାରସ (ଏଥିରେ ନିଜ ଭାଷାର 'ରସ' ସହିତ 'ନସ'କୁ ସଦୃଶ କରି ଗଢ଼ାଯାଇଛି)

Hospital>ହାସ୍‌ପାତାଳ
Arm chair>ଅରାମ ଚେୟାର୍
ଓର୍ଣ୍ଣବାଭ>ଓର୍ଣ୍ଣନାଭ
Violin>ବାହୁଲୀନ
ମାର୍କେଟ ବଜାର>ମର୍କଟ ବଜାର
ହାରକୁଦ>ହରକୁଣ୍ଡ
ବାନାର୍ଜି^ବାନାରଜୀ

(୧୯) ମନରୁ ଗଢ଼ି କହିବା—ମନରୁ ଗଢ଼ି ଏକ ନିର୍ଦ୍ଦିଷ୍ଟ ଧ୍ୱନି ସ୍ଥାନରେ ଅନ୍ୟ ଏକ ଧ୍ୱନି ବ୍ୟବହାର କଲେ ତାହା କ୍ରମେ ସ୍ଥାୟିତ୍ୱ ଲାଭ କରେ, ଯଥା— ଶୁଭେଚ୍ଛୁ, ଶୁଭେଷୁ (ହିନ୍ଦୀ), ଗ୍ରୀଷ୍ମ—ଖୀଷ (ହିନ୍ଦୀ), ଅନ୍ନ—ଅର୍ଣ୍ଣ (ଓଡ଼ିଆ),ବେଶ— ଭେଶ, ଭେଷ (ଓଡ଼ିଆ) ।

(୨୦) ଭାବାତିଶଯ୍ୟ—ଭାବପ୍ରବଣତା ଧ୍ୱନି ପରିବର୍ତ୍ତନର ଅନ୍ୟ ଏକ କାରଣ । ବିଶେଷତଃ ଲୋକପ୍ରଚଳିତ ବ୍ୟକ୍ତିବାଚକ ବିଶେଷ୍ୟ ଏହି କାରଣର ସମ୍ମୁଖୀନ ହୋଇଥାଏ । ଯଥା—ଚନ୍ଦ୍ରିକା—ଚନ୍ଦି, କଲ୍ୟାଣୀ—କଲି, ସ୍ନିଗ୍ଧା—ସିନ୍ଧି ଇତ୍ୟାଦି । ଭାବାତିଶଯ୍ୟ ବା ସ୍ନେହାତିଶଯ୍ୟ ଫଳରେ ଶବ୍ଦର ଅର୍ଥ ମଧ୍ୟ ବଦଳିଯାଏ, ଯଥା ପାଗଳାଟାଏ, ବାଯ୍ୟାଣୀଟା, ଗଧ, ଶଳା (ବନ୍ଧୁଙ୍କୁ ସମ୍ବୋଧନ) ପାଜିଟାଏ, ଛଳିଟାଏ, 'ରାମ ରାମ' (ଛି, ଛି) ।

(୨୧) ଅଳଙ୍କାର ପ୍ରୟୋଗ—ଅଳଙ୍କାର ପ୍ରୟୋଗ କରି ଶବ୍ଦର ବ୍ୟବହାର କଲେ ତାହାର ଅର୍ଥ ବଦଳିଯାଏ । ଯଥା—ନାଗଦାପ (=ଭୟଙ୍କର), ଗଧ (=ମୂର୍ଖ, ଅଳସୁଆ), କୁସୁମକାଠ (=କୃପଣ), ପଥର (=ନିଷ୍ଠୁର), କୁକୁର (=ଘୃଣ୍ୟ), ଷଣ୍ଢ (=ଗେହ୍ଲା), ରାହୁ (=ଯୋଗ୍ୟ), ବିରାଡ଼ିବୈଷ୍ଣବ (ଠକ), ଛେଳି (ଡରକୁଳା), ସିଂହ (ସାହସୀ, ବଳୁଆ), ବାଘ (ସାହସୀ), ମେଣ୍ଢା (ଅନୁସରଣକାରୀ), ପଙ୍କ (ପାପ, ବିପଦ) ।

(୨୨) ପ୍ରୟୋଗରେ ଅସାବଧାନତା—ପ୍ରୟୋଗରେ ଅସାବଧାନତା ଫଳରେ ଶବ୍ଦର ଅର୍ଥ ବଦଳିଯାଏ । ଯଥା—ସଂସୃଷ୍ଟି—ସଂସୃଷ୍ଟିର ପ୍ରକୃତ ଅର୍ଥ ହେଉଛି ସମ୍ୟକ୍ ମିଶ୍ରଣ । କିନ୍ତୁ ଅସାବଧାନତା ଫଳରେ ଏହା ସମ୍ୟକ୍ ସୃଷ୍ଟି ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଥାଏ ।

ଧୃଷ୍ଟ ପ୍‌—ଏହାର ଅର୍ଥ ହେଲା ପ୍ରଗଲ୍‌ଭ । କିନ୍ତୁ କେତେକ ଓଡ଼ିଆ ଔପନ୍ୟାସିକ ଏହାକୁ 'ପୂର୍ବପରି ନୀରବ' ଅର୍ଥରେ ବ୍ୟବହାର କରିଛନ୍ତି ।

(୨୩) ଅନ୍ଧବିଶ୍ୱାସ—ଅନ୍ଧବିଶ୍ୱାସ ଯୋଗୁ ଅନେକ ସମୟରେ ଶବ୍ଦ (ବା ସମ ଉଚ୍ଚାରିତ ଶବ୍ଦ)ର ରୂପରେ ପରିବର୍ତ୍ତନ ଦେଖାଦିଏ । ସ୍ତ୍ରୀମାନେ ସ୍ୱାମୀ, ଶ୍ୱଶୁର, ଦେଢ଼ଶୁର ପ୍ରଭୃତିଙ୍କ ନାମ ନ ଧରିବା ପାଇଁ 'ଚୈତନ୍ୟ'ଙ୍କୁ 'ନଇତନ' 'କୃଷ୍ଣ'ଙ୍କୁ 'ନୁଷ୍ଟ' ଇତ୍ୟାଦି ଭାବରେ ଉଚ୍ଚାରଣ କରିଥାନ୍ତି । ଏପରିକି 'ଅମୃ' ଶବ୍ଦ ସହିତ 'ରାମ' ଶବ୍ଦର ଓ 'ଯୋଡୁଅ' ଶବ୍ଦ ସହିତ 'ଯଶୋଦା' ଶବ୍ଦର କଣ୍ଠସ୍ଥ ଧ୍ୱନି ସାମ୍ୟ ଥିବାରୁ କେତେ ବଧୂ ଯଥାକ୍ରମେ 'ଆବ' ଓ 'ସୁଧଅ' ଉଚ୍ଚାରଣ କରିଥାନ୍ତି । ଅନ୍ଧବିଶ୍ୱାସ ଯୋଗୁ ଶବ୍ଦର ଅର୍ଥରେ ମଧ୍ୟ ପରିବର୍ତ୍ତନ ଦେଖାଦିଏ । ବଧୂମାନେ ସ୍ୱାମୀ ଗୃହର ଗୁରୁଜନଙ୍କ ନାମ ଓ ନାମ ସହିତ ସମ୍ପୃକ୍ତ ଶବ୍ଦ ଉଚ୍ଚାରଣ ନ କରି ସେହି ନାମ ଓ ପଦାର୍ଥର ସାଙ୍କେତିକ ଶବ୍ଦ ବ୍ୟବହାର କରିଥାନ୍ତି । ଫଳରେ ସେହି ସାଙ୍କେତିକ ଶବ୍ଦର ଅର୍ଥ ବଦଳିଯାଏ । ଯଥା—

କାଳିଆ—କୌଣସି ସ୍ତ୍ରୀର ସ୍ୱାମୀ ନାମ କାଳିଆ । ତାର ଗୋଟିଏ କଳା ଶାଢ଼ୀ ଦରକାର । ସେ ତା ପୁଅକୁ କହେ, "ମୋ ପାଇଁ ତୋ ବାପା ନାମ ଶାଢ଼ୀ ଆଣିବୁ ।" ଏଠାରେ 'ତୋ ବାପା ନାମ'ର ଅର୍ଥ the name of your father ନ ହୋଇ 'କଳା' ହୋଇଗଲା । ସେହିପରି 'ଆମର ସେ'=ସ୍ୱାମୀ, 'ଶୁଣୁଛ କି' ହେ=ହେ 'ସ୍ୱାମୀ' ଇତ୍ୟାଦି ।

(୨୪) ପୁନରୁକ୍ତି ଦୋଷ—ପୁନରୁକ୍ତି ଫଳରେ ପୁନଶ୍ଚ ଏକ ଶବ୍ଦର ଅର୍ଥ ଗ୍ରହଣ କରେ । ଯଥା—ବିନ୍ଧ୍ୟାଚଳ ପର୍ବତ (ବିନ୍ଧ୍ୟାଚଳ=ବିନ୍ଧ୍ୟ), ହାଇୱେଡ଼୍‌ ରାସ୍ତା (ହାଇୱେଡ଼୍‌=ହାଇ), ସେପଟ ସାଇଡ଼୍‌ (ସେପଟ=ସେ), ହିମାଚଳ ପର୍ବତ (ହିମାଚଳ=ହିମ), ସଜ୍ଜନ ବ୍ୟକ୍ତି (ସଜ୍ଜନ=ସତ୍‌), ଅହରହ ଫେର୍‌ ପୁଣି (=ପୁଣି) ।

(୨୫) ରୂଢ଼ି ପ୍ରୟୋଗ—ରୂଢ଼ି ପ୍ରୟୋଗ ଦ୍ୱାରା ବ୍ୟବହୃତ ଶବ୍ଦମାଳା ମଧ୍ୟରୁ କୌଣସି ଗୋଟିଏ ଶବ୍ଦର ଅର୍ଥ ପ୍ରତିପାଦିତ ନ ହୋଇ ସମଗ୍ର ଶବ୍ଦମାଳାର ଏକ ସ୍ୱତନ୍ତ୍ର ଅର୍ଥ ପ୍ରକାଶିତ ହୁଏ । ଯଥା—ଆଖିରେ ଧୂଳିଦେବା (ଠକିଦେବା), ଜିଭରୁ ଶିରା କାଢ଼ିବା (ପ୍ରତି କଥାକୁ ଖାଣ୍ଡିନୁଣ୍ଡି ଦେଖିବା), ହାତ ବାରିସି (ସହାୟକ, ଡାହାଣହାତ, ପ୍ରଧାନ ସହାୟକ), ହାତଧରିବା (ବିବାହ କରିବା), ପାଣିଗ୍ରହଣ (ବିବାହ), ପଟିମାରିବା (ଠକିଦେବା), ଗୋବରଗଣେଶ (ମୂର୍ଖ), ଚୂଲିକି ଯିବା (ବ୍ୟର୍ଥ ହେବା), ଚିଡ଼ା କାଟିବା (ଠକି ଦେବା), ଆଖି ପକେଇବା (ଲୋଭେଇବା), ଆଖି ଦେଖାଇବା (ଡରେଇବା), ପିଠିରେ ପଡ଼ିବା (ବିପଦ ବେଳେ

ସାହାଯ୍ୟ କରିବା), ଅତିରିକ୍ତ ଦୁଧ ପିଇବା (ଅନ୍ୟମାନେ ଜାଣୁନାହାନ୍ତି ଭାବି ଠକିବା) ।

ଏହିପରି ଭାବରେ ବହୁବିଧ କାରଣ ଭାଷା ରାଜ୍ୟରେ ବିରାଟ ପରିବର୍ତ୍ତନ ଆଣିଥାଏ । ଏହି ପରିବର୍ତ୍ତନ ଦୀର୍ଘସ୍ଥାୟୀ ଓ ଜଟିଳ ହୋଇଗଲେ, କୌଣସି ଭାଷାରେ ଏହାର ମୂଳ ସୂତ୍ର ସନ୍ଧାନ କରିବା ଅନେକ ସମୟରେ କଷ୍ଟକର ହୋଇପଡ଼େ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ମନ୍ଥର ହେଉ ବା ଚପଳ ହେଉ, ଭାଷାରେ ଅହରହ ପରିବର୍ତ୍ତନ ଚାଲିଛି । ଆମର ଜୀବନକାଳ ମଧ୍ୟରେ ଏ ପରିବର୍ତ୍ତନ ଚାଲିଥିଲେ ମଧ୍ୟ, ଭାଷା ଯେ ପରିବର୍ତ୍ତିତ ହେଉଛି, ତାହା ଜାଣିବା ଆମ ପକ୍ଷରେ କଷ୍ଟକର ହୋଇପଡ଼େ । ଅସଂଖ୍ୟ କାରଣରୁ କେତେକ ମୁଷ୍ଟିମେୟ କାରଣ ଏଠାରେ ଦିଆଯାଇଛି ମାତ୍ର । ରୂପ, ଧ୍ୱନି ଓ ଅର୍ଥର ପରିବର୍ତ୍ତନ ଲାଗି କାରଣମାନ ସ୍ୱତନ୍ତ୍ର ଆଲୋଚିତ ହେଲେ ଭାଷା ପରିବର୍ତ୍ତନର ବିପୁଳ କାରଣ ଆଲୋକକୁ ଆସିପାରିବ ।

ପରିବର୍ତ୍ତନ ଗୋଟିଏ ଭାଷା ପକ୍ଷରେ ଶୁଭଲକ୍ଷଣ କି ନୁହେଁ, ତାହା ବିବାଦାସ୍ପଦ । କିନ୍ତୁ ଭାଷାରେ ଏହି ଦୈନିକ ପରିବର୍ତ୍ତନ ଯେ ନୂଆ ଭାଷା ସୃଷ୍ଟିର କାରଣ ହୁଏ, ଏଥିରେ ସନ୍ଦେହ ନାହିଁ ।



## ● ଚତୁର୍ଥ ପରିଚ୍ଛେଦ ●

# ଲିପି

ଭାଷା ମୂଳ ରୂପରେ ଧ୍ୱନି ଉପରେ ଆଧାରିତ । ଧ୍ୱନି ଉଚ୍ଚାରିତ ହେଲେ ଜଣେ ଶୁଣିପାରିବ । ତେଣୁ ଭାଷା କାଳ ଓ ସ୍ଥାନ ଦ୍ୱାରା ସୀମିତ । ଧ୍ୱନି ଯେଉଁ ସମୟରେ ଉଚ୍ଚାରିତ ହେବ, କେବଳ ସେହି ସମୟରେ ଶୁଣି ହେବ । ଭାଷାର ଅଞ୍ଚଳ ଯେଉଁ ପର୍ଯ୍ୟନ୍ତ ବ୍ୟାପ୍ତ ହୋଇପାରିବ, କେବଳ ସେହି ସ୍ଥାନ ପର୍ଯ୍ୟନ୍ତ ଧ୍ୱନିକୁ ଶୁଣିହେବ । ଏହି ସୀମାର ବନ୍ଧନରୁ ମୁକ୍ତିଲାଭ ଲକ୍ଷ୍ୟରେ ଲିପିର ଉଦ୍‌ଭବ ।

'ଲିପ୍ୟତେ ଇତି ଲିପି' । ଯାହା ଲେପିଦିଏ ବା ଲେଖିଦିଏ ତାହା ଲିପି । ଲିପି କଥିତ ଧ୍ୱନିର ଲିଖିତ ରୂପ । ଭାଷାର ଉତ୍ପତ୍ତି ପରି ଲିପିର ଉତ୍ପତ୍ତି ସମ୍ପର୍କରେ ପୁରାତନ କାଳରେ ଲୋକମାନଙ୍କର ବିଶ୍ୱାସ ଥିଲା ଯେ ଏହା ଦେବତା ସୃଷ୍ଟି । ଭାରତୀୟମାନଙ୍କର ବିଶ୍ୱାସ ହେଉଛି ଲିପିର ସ୍ରଷ୍ଟା ହେଉଛନ୍ତି ବ୍ରହ୍ମା । ଏଥିପାଇଁ ସେମାନେ 'ବ୍ରାହ୍ମୀ' ଲିପି ନାମକରଣରେ ନଜିର ଦିଅନ୍ତି । ସେହିପରି ମିଶରୀୟମାନେ Thothଙ୍କୁ ବା Isisଙ୍କୁ ବେବିଲୋନଅବାସୀ Neboଙ୍କୁ ଇହୁଦୀମାନେ Mosesଙ୍କୁ ୟୁନାନୀମାନେ Hermesଙ୍କୁ ଲିପିର ସ୍ରଷ୍ଟା ଭାବରେ ଗ୍ରହଣ କରିଥାନ୍ତି । କିନ୍ତୁ ଏସବୁ ଅନ୍ଧବିଶ୍ୱାସ । ଭାଷାପରି ମନୁଷ୍ୟ ହିଁ ଲିପିକୁ ସୃଷ୍ଟି କରିଛି । ଯେତେବେଳେ ମନୁଷ୍ୟ ଭାଷାର ସୃଷ୍ଟି କରିପାରିଲା, ତାହାକୁ ନୟନଗ୍ରାହ୍ୟ କରିବା ପାଇଁ ପ୍ରଯତ୍ନ କଲା । କିଏ ଚିତ୍ର, କିଏ ସୂତ୍ର, କିଏ ପ୍ରତୀକ ଇତ୍ୟାଦିର ସାହାଯ୍ୟ ନେଲେ । ଆଧୁନିକ କାଳରେ ଲିପିର ଯେଉଁ ଭୂୟୋବିକଶିତ ରୂପ ଦେଖିବାକୁ ମିଳେ, ତାହା ଏହି ଚିତ୍ରଲିପି, ସୂତ୍ରଲିପି, ପ୍ରତୀକାତ୍ମକ ଲିପି, ଭାବମୂଳକ ଲିପି, ଭାବଧ୍ୱନିମୂଳକ ଲିପି, ଧ୍ୱନିମୂଳକ ଲିପିର ଯୁଗ ଯୁଗ ସାଧନା-ସାଧ୍ୟ କ୍ରମବିକଶିତ ରୂପ ।

**ଚିତ୍ରଲିପି**—ଆଦିମ ମଣିଷ ନିଜର ବ୍ୟବହାର୍ଯ୍ୟ ପଦାର୍ଥ, ନିଜର ପରିଚିତ ପ୍ରତ୍ୟେକ ବସ୍ତୁ ପ୍ରଭୃତିକୁ ଅନ୍ୟ ଆଗରେ ପରିଚିତ କରାଇବା ପାଇଁ ଚିତ୍ରର ସାହାଯ୍ୟ ନେଇଥିଲା । ଦକ୍ଷିଣ ଫ୍ରାନ୍ସ, ସ୍ପେନ୍, ମେସୋପଟାମିଆ, ଇଟାଲୀ, ସୁଦାନ, ପର୍ତ୍ତୁଗାଲ, ସାଇବେରିଆ, ଉଜ୍‌ବେକିସ୍ଥାନ, ସିରିଆ, ମିଶର, ଗ୍ରେଟ୍‌ବ୍ରିଟେନ୍, କାଲିଫର୍ଣ୍ଣିଆ, ବ୍ରାଜିଲ ତଥା ଅଷ୍ଟ୍ରେଲିଆ ଆଦି ଦେଶରେ ଏହିପରି ଚିତ୍ରଲିପିର ପର୍ଯ୍ୟାପ୍ତ ସନ୍ଧାନ ମିଳିଅଛି । ପ୍ରସ୍ତର, କାଷ୍ଠ, ଅସ୍ଥି, ଶୃଙ୍ଗ, ହସ୍ତୀଦନ୍ତ, ବୃକ୍ଷର ବଲ୍‌କଳ, ପଶୁର ଚର୍ମ ଓ ମୃଣ୍ମୟ

ପାଖରେ ସେ କାଳର ମଣିଷ ତାର ଭାବର ଦ୍ୟୋତନା ପାଇଁ ଚିତ୍ରର ଆଶ୍ରୟ ନେଇଛି । ଚିତ୍ରଲିପିରେ କୌଣସି ବସ୍ତୁର ଚିତ୍ର ସ୍ପଷ୍ଟ ଓ ପୁଙ୍ଖାନୁପୁଙ୍ଖ ହୋଇଥିଲେ ତାହାକୁ ବୁଝିବା ପାଇଁ କୌଣସି କଷ୍ଟ ହୁଏ ନାହିଁ । ସୂର୍ଯ୍ୟର ଚିତ୍ରକୁ ଦେଖି ପ୍ରତ୍ୟେକ ବ୍ୟକ୍ତି ସେହି ସୂର୍ଯ୍ୟକୁ ହିଁ ବୁଝିବେ, ଅନ୍ୟଥା ନୁହେଁ । କିନ୍ତୁ ଚିତ୍ରଲିପିରେ କେତେକ ଦୋଷ ଦୁର୍ବଳତା ରହିଥିଲା—(୧) ଆଦିମ ମଣିଷ ଚିତ୍ରଲିପିରେ ବ୍ୟକ୍ତିକୁ ଏଥିରେ ଚିତ୍ର କରିପାରୁଥିଲା, କିନ୍ତୁ ବ୍ୟକ୍ତିବିଶେଷକୁ ନିର୍ଦ୍ଦିଷ୍ଟ କରିପାରୁ ନ ଥିଲା । (୨) ସ୍ଥୂଳ ବସ୍ତୁଗୁଡ଼ିକୁ ପ୍ରଦର୍ଶନ କରିବା ସମ୍ଭବ ହେଉଥିଲା, କିନ୍ତୁ ସୂକ୍ଷ୍ମ ଭାବନାକୁ ଅଙ୍କନ କରିବା ସମ୍ଭବ ନଥିଲା । (୩) ଆବଶ୍ୟକତା ଅନୁସାରେ ଚିତ୍ରକୁ ଶୀଘ୍ର ଅଙ୍କନ କରାଯାଇ ପାରୁ ନଥିଲା । (୪) ସମସ୍ତ ବ୍ୟକ୍ତିଙ୍କ ପକ୍ଷରେ ଚିତ୍ରାଙ୍କନ ସମ୍ଭବ ନଥିଲା । (୫) ସମସ୍ୟା, ପ୍ରେମ ଆଦି ଭାବ-ଚେତନାଗୁଡ଼ିକୁ ଚିତ୍ର ସାହାଯ୍ୟରେ ବ୍ୟକ୍ତ କରାଯାଇ ପାରୁନଥିଲା ।

**ସୂତ୍ରଲିପି**—ସୂତାରେ ଗଣ୍ଠି ପକାଇ ଭାବକୁ ବ୍ୟକ୍ତ କରିବାର ପ୍ରଣାଳୀକୁ କୁହାଯାଏ ସୂତ୍ରଲିପି । ଏହା ନିମ୍ନୋକ୍ତ ପ୍ରକାରରେ କରାଯାଉଥିଲା—(୧) ଦଉଡ଼ିରେ ନାନା ରଙ୍ଗର ସୂତା ବାନ୍ଧି, (୨) ଦଉଡ଼ିକୁ ନାନା ପ୍ରକାର ରଙ୍ଗରେ ରଞ୍ଜିତ କରି, (୩) ବିଭିନ୍ନ ରଙ୍ଗର ରଜ୍ଜୁ ବ୍ୟବହାର କରି, (୪) ବିଭିନ୍ନ ପ୍ରକାରର ରଜ୍ଜୁ ବ୍ୟବହାର କରି, (୫) ବିଭିନ୍ନ ଦୈର୍ଘ୍ୟର ରଜ୍ଜୁ ବ୍ୟବହାର କରି, (୬) ବିଭିନ୍ନ ମୋଟେଇର ରଜ୍ଜୁ ବ୍ୟବହାର କରି. (୭) ଦଉଡ଼ିରେ ବିଭିନ୍ନ ପ୍ରକାରର ଗଣ୍ଠି ପକାଇ, (୮) ଦଉଡ଼ିରେ ବିଭିନ୍ନ ଦୂରତାରେ ଗଣ୍ଠି ପକାଇ, (୯) ଠେଙ୍ଗାର ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ରଙ୍ଗ ଓ ମୋଟେଇର ଦଉଡ଼ି ବାନ୍ଧି ।

ପଞ୍ଚମ ଶତାବ୍ଦୀର ଲେଖକ ହେରୋଡୋଟସ୍ (୪୯୮ ଖ୍ରୀ:) ଏ ପ୍ରକାର ଲିପିର ଉଲ୍ଲେଖ କରିଥିଲେ । ଏହି ଲିପିର ଶ୍ରେଷ୍ଠ ନମୁନା ହେଉଛି ପେରୁର 'କ୍ୱିପୁ' ଲିପି ।

**ପ୍ରତୀକାତ୍ମକ ଲିପି**—ପ୍ରତୀକ ଲିପିକୁ ବାସ୍ତବରେ ଲିପି କୁହାଯାଇ ପାରିବ ନାହିଁ, ବରଂ ଦୂରସ୍ଥ ବ୍ୟକ୍ତିମାନଙ୍କ ପାଇଁ ଏହା ଥିଲା ଭାବ ଅଭିବ୍ୟକ୍ତିର ଏକ ଲିପି-ବିଜ୍ଞାନ ସାଧନା । ତିବ୍ବତ ଓ ଚୀନର ସୀମାନ୍ତ ଅଞ୍ଚଳରେ ହରିଣୀର କଲିଜା ଓ ଚର୍ବିକୁ ଖଣ୍ଡ ଖଣ୍ଡ କରି ନାଲି କାଗଜରେ ଲେଖେଇଦେଇ ଯଦି କୌଣସି ବ୍ୟକ୍ତି ପାଖକୁ ପଠାଇ ଦିଆଯାଏ, ତେବେ ସେହି ବ୍ୟକ୍ତି ବୁଝେ, ଏହା ହେଉଛି ଯୁଦ୍ଧପାଇଁ ଆହ୍ୱାନ । ଭାରତବର୍ଷରେ ବିବାହ ପ୍ରସ୍ତାବ ଦୃଢ଼ କରିବା ପାଇଁ ଗୁଡ଼, ହଳଦୀ, ଦହି-ମାଛ ଇତ୍ୟାଦି ପଠାଯାଏ । ଏଗୁଡ଼ିକ ପ୍ରତୀକ ଲିପି ।

**ଭାବମୂଳକ ଲିପି**—ଭାବମୂଳକ ଲିପି ହେଉଛି ଏକ ପ୍ରକାର ଚିତ୍ରଲିପି । ଚିତ୍ରଲିପିରେ ବ୍ୟକ୍ତିର କେବଳ ସ୍ଥୂଳରୂପ ଅଙ୍କିତ ହେଉଥିଲା । କିନ୍ତୁ ଭାବମୂଳକ ଲିପିରେ ଭାବନାର ସୂକ୍ଷ୍ମ ଅଭିବ୍ୟକ୍ତି ହେଉଥିଲା । ଉଦାହରଣ ସ୍ୱରୂପ ଆଖିର ଚିତ୍ରକରି

ଅଟିଡୋରୁ ଆରମ୍ଭ କରି ବିନ୍ଦୁ ବିନ୍ଦୁ ଚିତ୍ର ଅଙ୍କନ କଲେ ଅଣ୍ଡୁଲ ଜୀବନର ରଚନା ପରିସ୍ଫୁଟ ହୋଇଥିଲା । ଏହି ଲିପି ଆମେରିକା, ଚୀନ୍ ଓ ପଶ୍ଚିମ ଆଫ୍ରିକାରେ ପ୍ରଚଳିତ ଥିଲା ।

**ଭାବଧ୍ୱନିମୂଳକ ଲିପି**—ଚିତ୍ରଲିପିର ବିକଶିତ ରୂପ ହେଉଛି ଧ୍ୱନିମୂଳକ ଲିପି । ଯେଉଁ ଧ୍ୱନିମୂଳକ, ଲିପି କେତେକ ବିଷୟରେ ଭାବମୂଳକ ଓ କେତେକ ବିଷୟରେ ଧ୍ୱନିମୂଳକ, ତାହାକୁ ଭାବଧ୍ୱନିମୂଳକ ଲିପି କୁହାଯାଏ । ମେସୋପଟାମିଆନ୍ ମିଶରୀୟ ତଥା ହିଟାଇଟ୍ ଲିପିକୁ ଅନେକ ଭାବମୂଳକ କହିଥାନ୍ତି, କିନ୍ତୁ ଏହା ଭାବଧ୍ୱନିମୂଳକ । ସେହିପରି ଚୀନା ଲିପି ଭାବଧ୍ୱନିମୂଳକ । କାରଣ ଏହାର ଲିପିମାନଙ୍କ ମଧ୍ୟରୁ କେତେକର ଚିହ୍ନ ଚିତ୍ରାତ୍ମକ ତଥା ଭାବମୂଳକ ଓ କେତେକର ଚିହ୍ନ ଧ୍ୱନିମୂଳକ । କେତେକ ବିଦ୍ୱାନ୍‌ଙ୍କ ମତରେ ସିନ୍ଧୁଘାଟୀର ଲିପି ଏହି ଶ୍ରେଣୀର ।

**ଧ୍ୱନିମୂଳକ ଲିପି**—ଧ୍ୱନିମୂଳକ ଲିପିରେ ଚିହ୍ନଗୁଡ଼ିକ କୌଣସି ବସ୍ତୁ ବା ଭାବକୁ ପ୍ରକଟ କରନ୍ତି ନାହିଁ, ଧ୍ୱନିକୁ ପ୍ରକଟ କରନ୍ତି ଏବଂ ସେଗୁଡ଼ିକର ଆଧାର ଉପରେ କୌଣସି ବସ୍ତୁ ବା ଭାବର ନାମ ଲେଖାଯାଇପାରେ । ଧ୍ୱନିମୂଳକ ଲିପି ଦ୍ୱିବିଧ, (କ) ଅକ୍ଷରାତ୍ମକ (syllabic), (ଖ) ବର୍ଣ୍ଣାତ୍ମକ (Alphabetic) । ଇଂରାଜୀ, ଆରବୀ, ନାଗରୀ ଆଦି ଭାଷାରେ ଲିପି ହେଉଛି ଧ୍ୱନିମୂଳକ ।

**ପୃଥିବୀର ମୁଖ୍ୟ ଲିପି**—ପୃଥିବୀର ଲିପିମାନଙ୍କୁ ମୁଖ୍ୟତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା—ଅକ୍ଷରହୀନ ବା ବର୍ଣ୍ଣହୀନ ଲିପି ଓ ଅକ୍ଷରବିଶିଷ୍ଟ ବା ବର୍ଣ୍ଣବିଶିଷ୍ଟ ଲିପି । କ୍ୟୁନିଫର୍ମ (ତ୍ରିକୋଣୀ) ଓ ଚୀନାଲିପି ପ୍ରଥମ ଶ୍ରେଣୀର ଏବଂ ରୋମାନ୍, ନାଗରୀ ଆଦି ଦ୍ୱିତୀୟ ଶ୍ରେଣୀର ଲିପି ।

ପ୍ରଥମ ଶ୍ରେଣୀର ଲିପି ମଧ୍ୟରେ (୧) କ୍ୟୁନିଫର୍ମ (୨) ହିରୋଗ୍ଲାଇଫିକ୍ (୩) କ୍ରିଟ୍‌ର ଲିପି (୪) ସିନ୍ଧୁଘାଟୀ (୫) ହିଟ୍‌ଟାଇଟ (୬) ଚୀନା (୭) ମେକ୍ସିକୋର ଲିପି ପ୍ରଧାନ ।

ଦ୍ୱିତୀୟ ଶ୍ରେଣୀର ଲିପି ହେଉଛି (୧) ଦକ୍ଷିଣୀ ସେମିଟିକ୍ (୨) ହିବ୍ରୁ (୩) ଫୋନେଶିଆନ (୪) ଖରୋଷ୍ଠୀ (୫) ଆର୍ମେଇକ୍ (୬) ଆରବୀ (୭) ଭାରତୀୟ (୮) ଗ୍ରୀକ୍ (୯) ଲାଟିନ ଲିପି ଉଲ୍ଲେଖଯୋଗ୍ୟ । ଏ ଉଭୟ ଶ୍ରେଣୀରୁ କେତୋଟି ପ୍ରଧାନ ଲିପି ଉପରେ ଏଠାରେ ଆଲୋକପାତ କରାଯାଇପାରେ—

**କ୍ୟୁନିଫର୍ମ (ତ୍ରିକୋଣୀ, ଶଙ୍କୁ ବା ବାଣମୁଖୀ) ଲିପି**—ଏହି ଲିପି ବିଶ୍ୱର ପ୍ରାଚୀନତମ ଲିପି । ଏହାର ପ୍ରାଚୀନତମ ପ୍ରୟୋଗ ପ୍ରାୟ ୪୦୦୦ ଖ୍ରୀ: ପୂ: ସମୟରୁ ମିଳୁଅଛି । ଏହା ଦେଖିବାକୁ ତ୍ରିକୋଣ ତୁଲ୍ୟ । ଏହି ଲିପି ଚୀନା ଓ ସିନ୍ଧୁଘାଟୀର ଲିପି ପରି ପ୍ରଥମେ ଚିତ୍ରାତ୍ମକ ଥିଲା । କ୍ରମେ ଏହା ଭାବମୂଳକ ହେଲା ।

(ଯଥା—ସୂର୍ଯ୍ୟର ଚିହ୍ନ=ଦିନ, ପାଦର ଚିହ୍ନ=ବୁଲିବା ଇତ୍ୟାଦି)। ପରେ ଏହା ଅସିରିଆ, ଫିନିସୀ ଆଦି ଭାଷାରେ ଅର୍ଦ୍ଧ ଅକ୍ଷରାତ୍ମକ ହୋଇଗଲା। ସୁମେରୁ ବେବିଲୋନ, ଅସିରିଆ, ଇରାନ୍ ପ୍ରଭୃତିର ଲୋକମାନେ ଏହାର ବ୍ୟବହାର କରିଛନ୍ତି।

**ହାଇରୋଗ୍ଲିଫିକ୍ (ପବିତ୍ରାକ୍ଷର, ଗୂଢ଼ାକ୍ଷର, ଚିତ୍ରାକ୍ଷର, ବୀଜାକ୍ଷର)**— ପ୍ରାଚୀନ ଲିପିମାନଙ୍କ ମଧ୍ୟରେ ଏହାର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି। ୟୁନାନୀ ଭାଷାରେ ହାଇରୋଗ୍ଲିଫିକ ଶବ୍ଦର ଅର୍ଥ ହେଉଛି 'ପବିତ୍ର ଖୋଦିତ ଅକ୍ଷର'। ପ୍ରାଚୀନ କାଳରେ ମନ୍ଦିର ମୁଖଶାଳା ଉପରେ ଲେଖା ଖୋଦନ ବେଳେ ଏହି ଲିପିର ପ୍ରୟୋଗ ହେଉଥିଲା। ପ୍ରାୟ ୪୦୦୦ ଖ୍ରୀ: ପୂ: ସମୟରୁ ଏହାର ପ୍ରୟୋଗ ହେଲାଣି ବୋଲି ବିଦ୍ୱାନ୍‌ମାନେ ଅନୁମାନ କରନ୍ତି। ପ୍ରଥମେ ଏହା ଚିତ୍ରାତ୍ମକ ଥିଲା, ପରେ ଭାବାତ୍ମକ ଓ ଅକ୍ଷରାତ୍ମକ ହେଲା। ସମ୍ଭବତଃ ଏହି ଲିପିରେ ଅକ୍ଷରର ସର୍ବପ୍ରଥମ ବିକାଶ ହୋଇଥିଲା। ଏହି ଲିପିରେ କେବଳ ସ୍ୱର ଥିଲା, ବ୍ୟଞ୍ଜନ ନଥିଲା। ଏହା ଲିପି ମିଶର ଓ ୟୁନାନରେ ପ୍ରଚଳିତ ଥିଲା।

**କ୍ରିଟ୍‌ର ଲିପି**—କ୍ରିଟ୍‌ରେ ଚିତ୍ରାତ୍ମକ ଓ ରେଖାତ୍ମକ ଦୁଇ ପ୍ରକାର ଲିପି ମିଳୁଅଛି। ପରବର୍ତ୍ତୀ କାଳରେ ଏହା ଉପରେ ହାଇରୋଗ୍ଲିଫିକ୍ ଲିପିର କେତେକ ପ୍ରଭାବ ପଡ଼ିଅଛି। କେତେକଙ୍କ ମତରେ ହାଇରୋଗ୍ଲିଫିକ୍ ଲିପିରୁ ଏହାର ଉଦ୍‌ଭବ ହୋଇଅଛି। ଖ୍ରୀ. ପୂ. ପ୍ରାୟ ୩୦୦୦ ବର୍ଷ ବେଳକୁ ଏହାର ପ୍ରାଚୀନତମ ପ୍ରୟୋଗ ମିଳୁଅଛି। ଏହାର ଚିତ୍ରାତ୍ମକ ଲିପିରେ ପ୍ରାୟ ୩୫ଟି ଚିହ୍ନ ଓ ରେଖାମୂଳକ ଲିପିରେ ପ୍ରାୟ ୯୦ଟି ଚିହ୍ନ ଦେଖିବାକୁ ମିଳେ। ଚିତ୍ରାତ୍ମକ ଲିପି ଖ୍ରୀ. ପୂ. ୧୭୦୦ ବେଳକୁ ଓ ରେଖାତ୍ମକ ଲିପି ଖ୍ରୀ.ପୂ. ୧୨୦୦ ପୂର୍ବରୁ ଲୋପ ପାଇଯାଇଥିଲା।

**ହିଟ୍‌ଟାଇଟ୍ ଲିପି**—ଏହାକୁ ହିଟ୍‌ଟାଇଟ୍ ହାଇରୋଗ୍ଲିଫିକ୍ ଲିପି ମଧ୍ୟ କୁହାଯାଏ। ଏହାର ପ୍ରାଚୀନତମ ପ୍ରୟୋଗ ଖ୍ରୀ.ପୂ. ୧୫୦୦ ବେଳକୁ ମିଳୁଅଛି। ଖ୍ରୀ.ପୂ. ୭୦୦ ପରେ ଏହାର ପ୍ରୟୋଗ ହୋଇଥିବାର ଜଣାଯାଇ ନାହିଁ। ଏହା ପ୍ରଥମେ ଚିତ୍ରାତ୍ମକ ଥିଲା। ଏଥିରେ ସମୁଦାୟ ୪୧୯ଟି ଚିହ୍ନ ମିଳୁଛି। କେତେକ ଏହାକୁ ମିଶରୀୟ ହାଇରୋଗ୍ଲିଫିକ୍ ଲିପିରୁ ଓ ଅନ୍ୟ କେତେକ କ୍ରିଟ୍‌ର ଚିତ୍ରାତ୍ମକ ଲିପିରୁ ଉତ୍ପନ୍ନ ବୋଲି ନିର୍ଣ୍ଣୟ କରିଥାନ୍ତି।

**ଚୀନା ଲିପି**—ଚୀନା ଲିପିର ଉତ୍ପତ୍ତି ସମ୍ପର୍କରେ ନାନା କିମ୍ବଦନ୍ତୀ ଶୁଣାଯାଏ। ଯଥା—(କ) ଆଠ ପ୍ରକାରର ଝିଂକ୍ରୀୟ ରେଖାରୁ ଏହାର ସୃଷ୍ଟି। ଏହା ବିଶିଷ୍ଟ ରେଖାର ପ୍ରୟୋଗ ସେଠାର ଧାର୍ମିକ କର୍ମକାଣ୍ଡରେ ଦେଖିବାକୁ ମିଳେ। (ଖ) ଖ୍ରୀ.ପୂ. ୩୨୦୦ ରେ ଫୁ-ହେ ନାମକ ଜଣେ ବ୍ୟକ୍ତି ଏହି ଲିପିର ଆବିଷ୍କାର କରିଥିଲେ। (ଗ) ଦେବତା 'ତ୍‌ଜୂଟ୍ରଣ' ଏହାର ନିର୍ମାତା। (ଘ) ତ୍‌ସଂ-କୀ ନାମକ

ଜଣେ ବଡ଼ଟ ପ୍ରତିଭାଶାଳୀ ବ୍ୟକ୍ତି ଖ୍ରୀ.ପୂ. ୧୭୦୦ରେ ଏହାର ନିର୍ମାଣ କରିଥିଲେ । ସେ ଚତୁଃପାର୍ଶ୍ୱରେ ଜୀବ ଓ ଜନ୍ତୁମାନଙ୍କର ରେଖାଚିତ୍ର କରୁ କରୁ ଏହି ଲିପିର ସୃଷ୍ଟି ହେଲା । ଚୀନ୍‌ର ପ୍ରସିଦ୍ଧ ବୌଦ୍ଧ ଶବ୍ଦକୋଷ 'ଫା ୟୁଅନ ଚୁଲିଅନ୍' ତ୍ସଙ୍ଗ-ଖାଙ୍ଗ୍ଙ୍କୁ ନିର୍ମାତା ଭାବରେ ସ୍ୱୀକାର କରିଛି । ସେ ପକ୍ଷୀର ପାଦକୁ ଦେଖି ଲିପି ସୃଷ୍ଟି କଲେ ବୋଲି ଏହି ଶବ୍ଦକୋଷରେ ଲେଖାଅଛି । କିନ୍ତୁ ଏସବୁ ମତ ପାଇଁ ବଳିଷ୍ଠ ପ୍ରମାଣ ନାହିଁ । ଭାଷାବିତ୍ମାନେ ଏହା ଉପରେ ତନ୍ନତନ୍ନ ଆଲୋଚନା କରି ନିମ୍ନଲିଖିତ ଭିନ୍ନ ଭିନ୍ନ ମତରେ ଉପନୀତ ହୋଇଛନ୍ତି । ଯଥା—(୧) ପୀତୁର ଚିତ୍ରଲିପି ପରି କୌଣସି ଲିପିରୁ ଏହାର ଉଦ୍‌ଭବ ହୋଇଅଛି । (୨) ସୁମେରୀୟ କ୍ୟୁନିଫର୍ମ ଲିପିରୁ ଏହାର ବିକାଶ ହୋଇପାରିଥାଏ । (୩) ଚୀନରେ ହସ୍ତମୁଦ୍ରା ଦ୍ୱାରା ଭାବ ପ୍ରକାଶନ ପଦ୍ଧତିର ଅନୁକରଣରେ ଏହାର ସୃଷ୍ଟି ଅନୁମାନ କରାଯାଇପାରେ । (୪) ମିଶରୀୟ, ହିରୋ-ଗ୍ଲାଇଫିକ୍ ଲିପିରୁ ଏହାର ଉତ୍ପତ୍ତି ସମ୍ଭବ ହୋଇଅଛି । (୫) ମେସୋପଟାମିଆ, ଇରାନ୍ ଓ ସିନ୍ଧୁଘାଟୀର ଚିତ୍ରଲିପିରୁ ପ୍ରେରଣା ପାଇ ଚୀନର ଲୋକମାନେ ନିଜର ଲିପି ନିର୍ମାଣ କରିଛନ୍ତି ।

ଚୀନା ଲିପିରେ ଅକ୍ଷର ବା ବର୍ଣ୍ଣ ନାହିଁ । ଏଥିରେ ଅଲଗା ଅଲଗା ଅକ୍ଷର ବା ବର୍ଣ୍ଣ ପାଇଁ ଅଲଗା ଅଲଗା ଚିହ୍ନ ରହିଛି । ଏହି ଲିପିରେ ସମୁଦାୟ ୫୦୦୦୦ ଚିହ୍ନ ରହିଛି । ଏହାକୁ ମୋଟାମୋଟି ଚାରିଭାଗରେ ବିଭକ୍ତ କରାଯାଇପାରେ, ଯଥା— ଚିତ୍ରାତ୍ମକ ଚିହ୍ନ, ସଂଯୁକ୍ତ ଚିତ୍ରାତ୍ମକ ଚିହ୍ନ, ଭାବ ଚିହ୍ନ ଓ ଧ୍ୱନ୍ୟାର୍ଥ ସଂଯୁକ୍ତ ଚିହ୍ନ ।

**ଆରବୀ ଲିପି**—ଏହା ବିଶ୍ୱର ଏକ ବହୁପ୍ରଚଳିତ ଲିପି । ପ୍ରାଚୀନ ଶ୍ୟାମୀ-ଲିପି ଦୁଇ ଭାଗରେ ବିଭକ୍ତ ହୋଇଥିଲା—ଉତ୍ତରୀ ଓ ଦକ୍ଷିଣୀ । ଉତ୍ତରୀ ଶ୍ୟାମୀଲିପିରୁ ଆର୍ମେଇକ୍ ଲିପି, ଆର୍ମେଇକ୍ ଲିପିରୁ ନେବାତେନ୍ ଲିପି, ନେବାତେନ୍ ଲିପିରୁ ସିନେଟିକ ଲିପି ଓ ସିନେଟିକ ଲିପିରୁ ପ୍ରାଚୀନ ଆରବୀ ଲିପିର ଜନ୍ମ ହୋଇଅଛି । ଏହାର ପ୍ରାଚୀନତମ ଅଭିଲେଖର ସମୟ ହେଉଛି ୫୧୨ ଖ୍ରୀଷ୍ଟାବ୍ଦ । ତେଣୁ ଏହି ଲିପିର ବିକାଶ ଅନ୍ତତଃ ଖ୍ରୀ: ୫୧୨ ପୂର୍ବରୁ ହୋଇଯାଇଥିଲା । ମକ୍କା, ମଦନା, ବସରା, କୁଫା, ଦମସ୍କସ୍ ପ୍ରଭୃତି ଅଞ୍ଚଳରେ ଏହି ଲିପିର ବିକାଶ ହୋଇଥିଲା । ଏଥିରେ ସମୁଦାୟ ୧୮ଟି ଅକ୍ଷର ଅଛି ଓ ଏହା ଡାହାଣରୁ ବାମଆଡ଼କୁ ଲେଖାଯାଏ ।

**ସିନ୍ଧୁଘାଟୀ**—ଏହା ଭାରତର ପ୍ରାଚୀନତମ ଲିପି ବୋଲି ବିଦ୍ୱାନ୍‌ମାନେ ମନେକରନ୍ତି । ସିନ୍ଧୁଘାଟୀ ଲିପିର ଉତ୍ପତ୍ତି ସମ୍ପର୍କରେ ଅନେକଟି ମତ ଦେଖାଯାଏ । (କ) ଏଚ୍ ହେରାସ୍ ଓ ଜନ୍ ମାର୍ଶାଲଙ୍କ ମତରେ ସିନ୍ଧୁଘାଟୀର ସଭ୍ୟତା ହେଉଛି ଦ୍ରାବିଡ଼ ସଭ୍ୟତା । ଦ୍ରାବିଡ଼ମାନେ ଏହି ଲିପିର ଉଦ୍ଭାବକ । (ଖ) ଏଲ୍. ଏ.

ଓ୍ୱାଡ଼େଲଙ୍କ ମତରେ ସିନ୍ଧୁ ଘାଟୀରେ ଖ୍ରୀ: ପୂ: ୪୦୦୦ ବର୍ଷ ବେଳକୁ ସୁମେରୀୟ-ମାନେ ବାସକରୁଥିଲେ ଏବଂ ସେମାନେ ସେମାନଙ୍କ ଭାଷା ଓ ଲିପିକୁ ଏଠାରେ ପ୍ରଚଳନ କରାଇଥିଲେ । (ଗ) ଆର୍ଯ୍ୟମାନେ ଏହି ଲିପିର ଆବିଷ୍କାରକ । ତେବେ ଦ୍ରାବିଡ଼ମାନେ ଏହି ଲିପି ନିର୍ମାଣ କରିଥିବା ଅଧିକ ସମ୍ଭବ । ଏହି ଲିପି ଭାବମୂଳକତା ଓ ଅକ୍ଷରମୂଳକତାର ସନ୍ଧିସ୍ଥଳ । ହଣ୍ଟରଙ୍କ ମତରେ ଏହି ଲିପିର ଚିହ୍ନ ସଂଖ୍ୟା ୨୫୩, ଲ୍ୟାଙ୍ଗଡ଼ନଙ୍କ ମତରେ ୨୨୮ ଓ ସ୍ମିଥ୍ଙ୍କ ମତରେ ୩୯୭ ।

**ଖରୋଷ୍ଠୀ ଲିପି**—ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀଠାରୁ ଖ୍ରୀଷ୍ଟପର ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଲିପିର ବହୁଳ ପ୍ରଚଳନ ଥିଲା । ଖରୋଷ୍ଠୀ ଲିପିର ନାମକରଣ ସମ୍ପର୍କରେ ଭିନ୍ନ ଭିନ୍ନ ମତ ଦେଖାଯାଏ, ଯଥା—(କ) ଚୀନା ବିଶ୍ୱକୋଷ 'ଫା-ଓ୍ୱାନ୍-ଶୁ-ଲିନ୍'ରେ ଲେଖାଅଛି ଖରୋଷ୍ଟ ନାମକ ଜଣେ ବ୍ୟକ୍ତିଙ୍କ ଦ୍ୱାରା ଏହି ଲିପି ଉଦ୍ଭାବିତ ହୋଇଥିବାରୁ ଏହାର ନାମ ଖରୋଷ୍ଠୀ । (ଖ) ଚୀନ ଓ ଭାରତର ସୀମାନ୍ତ ପ୍ରଦେଶରେ ବାସ କରୁଥିବା ଏକ ଅର୍ଦ୍ଧ ସଭ୍ୟ ଜାତିକୁ ବୁଝାଯାଏ 'ଖରୋଷ୍ଟ' । ସେମାନଙ୍କଦ୍ୱାରା ବ୍ୟବହୃତ ଲିପି ଖରୋଷ୍ଠୀ ନାମରେ ଅଭିହିତ । (ଗ) ମଧ୍ୟ-ଏସିଆର ଗୋଟିଏ ଅଞ୍ଚଳର ନାମ 'କାଶ୍ଗର' । ଏହି ଅଞ୍ଚଳରେ ବ୍ୟବହୃତ ଲିପିର ନାମ କାଶ୍ଗର୍ଯ୍ୟ । ଖରୋଷ୍ଠୀ କାଶ୍ଗର୍ଯ୍ୟର ସଂସ୍କୃତ ରୂପ । (ଘ) ଗଧର ଚମଡ଼ାକୁ ଇରାନ୍ ଭାଷାରେ ବୁଝାଯାଏ ଖରୋପଶତ । ଏହାର ସଂସ୍କୃତ ରୂପାନ୍ତର ଖରୋଷ୍ଟ । ସେହି ଚମଡ଼ା ଉପରେ ଲିଖିତ ଲିପିର ନାମ ତେଣୁ ଖରୋଷ୍ଠୀ । (ଙ) ଡକ୍ଟର ପ୍ରଜିଲୁସ୍କିଙ୍କ ଅନୁଯାୟୀ ଖର (ଗଧ)ର ପୃଷ୍ଠ (ପିଠି) ଚମଡ଼ାରେ ଏହା ଲେଖାଯାଉ-ଥିବାରୁ ଏହାର ନାମ ହୋଇପାରେ ଖରପୃଷ୍ଠୀ । ଖରପୃଷ୍ଠୀର ରୂପାନ୍ତର ହେଉଛି ଖରୋଷ୍ଠୀ । (ଚ) ଜାହାଣ ଜାହାଣ ମତରେ ଆର୍ମେଇକ୍ ଭାଷାର 'ଖରୋଟ୍' ଶବ୍ଦ ଭ୍ରମାତ୍ମକ ବ୍ୟୁତ୍ପତ୍ତିର ଆଧାର ଉପରେ ସଂସ୍କୃତରେ ହୋଇଛି ଖରୋଷ୍ଟ । (ଛ) ଡକ୍ଟର ରାଜଓ୍ୱାଲି ପାଣ୍ଡେୟ କହନ୍ତି, ଏହି ଲିପି ଖର (ଗଧ)ର ଓଷ୍ଠ ପରି ବଙ୍କା ଓ ଅସୁନ୍ଦର ଦେଖା ଯାଉଥିବାରୁ ଏହାର ନାମ ଖରୋଷ୍ଠୀ । (ଜ) ଡକ୍ଟର ବ୍ୟୁଲର Indian Inscription ଗ୍ରନ୍ଥରେ ମତ ଦେଇଛନ୍ତି ଯେ ଖରୋଷ୍ଠୀ ଲିପି ଆର୍ମେଇକ୍ 'ଖରୋଟୀ' ଲିପିର ଏକ ରୂପାନ୍ତର । (ଝ) ଡକ୍ଟର ସୁନୀତ କୁମାର ଚଟ୍ଟୋପାଧ୍ୟାୟ କହନ୍ତି, ହିବ୍ରୁ ଭାଷାରେ 'ଖରୋଶେଥ' (Kharosheth)ର ଅର୍ଥ ହେଉଛି ଲେଖାଲେଖି । ଏହି ଶବ୍ଦର ସଂସ୍କୃତ ରୂପାନ୍ତର ହେଉଛି ଖରୋଷ୍ଟ । ଯେଉଁ ଲିପିରେ ଲେଖାଲେଖି କାର୍ଯ୍ୟ ସାଧିତ ହୁଏ ତାହା ଖରୋଷ୍ଠୀ ।

**ଖରୋଷ୍ଠୀ ଲିପିର ବିଶେଷତ୍ୱ**—(କ) ଏହା ଡାହାଣରୁ ବାମଆଡ଼କୁ ଲେଖା ହୁଏ । (ଖ) ଏହାର ଏଗାରଟି ଅକ୍ଷର ଆର୍ମେଇକ୍ ଲିପିର ଏଗାରଟି ଅକ୍ଷର

ସହିତ ସମାନ । (ଗ) ଏଥିରେ ବ୍ରାହ୍ମୀ ଲିପିର ମଧ୍ୟ କେତେକ ପ୍ରଭାବ ପଡ଼ିଅଛି । ତେଣୁ କେତେକ ସ୍ଥଳରେ ଏହି ଲିପି ବାମରୁ ଡାହାଣକୁ ଲେଖାଯାଇଛି । (ଘ) ଏଥିରେ ମୂଳତଃ ସ୍ୱରର ଅଭାବ ଥିଲା । ଏହାର ବର୍ଣ୍ଣମାଳାରେ ଅକ୍ଷରର ମୂଳସଂଖ୍ୟା ୩୭ । ଖରୋଷ୍ଠୀ ଲିପି ବୈଜ୍ଞାନିକ ବା ସ୍ୱୟଂସମ୍ପୂର୍ଣ୍ଣ ଲିପି ନୁହେଁ, କେବଳ ଏହା କାମଚଳା ଲିପି । ଏହାକୁ ଲୋକମାନେ ପ୍ରାୟ ଅନୁମାନ କରି ପଢ଼ି ଯାନ୍ତି ।

ବ୍ରାହ୍ମୀଲିପି—ବ୍ରାହ୍ମୀଲିପି ଭାରତର ସବୁ ପ୍ରଧାନ ଓ ପ୍ରାଚୀନ ସବୁ ବୈଜ୍ଞାନିକ ଲିପି । ଏହାର ପ୍ରାଚୀନତମ ନିଦର୍ଶନ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀଠାରୁ ଖ୍ରୀଷ୍ଟପର ତିନିଶହ ବର୍ଷ ମଧ୍ୟରେ ମିଳୁଅଛି । ବ୍ରାହ୍ମୀର ନାମକରଣ ସମ୍ପର୍କରେ ବିଭିନ୍ନ ମତ ଦେଖାଯାଏ । ଯଥା—(କ) ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ଏହାର ନିର୍ମାତା ହେଉଛନ୍ତି ବ୍ରହ୍ମା । ତେଣୁ ଏହାର ନାମ ବ୍ରାହ୍ମୀ । (ଖ) ଚୀନା ଶବ୍ଦକୋଷ 'ଫା-ଓ୍ୱାନ୍-ଶୁଲିନ୍' (ଖ୍ରୀଷ୍ଟୀୟ ୬୬୮ରେ ଲିଖିତ) ଅନୁଯାୟୀ ଏହାକୁ ବ୍ରହ୍ମ ବା ବ୍ରହ୍ମା ନାମକ ଜଣେ ଆଚାର୍ଯ୍ୟ ଲେଖିଥିଲେ । (ଗ) ଡକ୍ଟର ରାଜଓ୍ୱାଲି ପାଣ୍ଡେୟ କହନ୍ତି, ବ୍ରହ୍ମ (ବେଦ ଓ ଜ୍ଞାନ) ରକ୍ଷା କରିବା ଲାଗି ଏହି ଲିପିର ସୃଷ୍ଟି ହୋଇଥିବାରୁ ଏହାର ନାମ ବ୍ରାହ୍ମୀ ଲିପି । (ଘ) କେତେକ କହନ୍ତି ଯାଜ୍ଞିକ ବ୍ରାହ୍ମଣ ସମାଜରେ ପ୍ରଥମେ ଏହି ଲିପି ଅବଲମ୍ବିତ ଓ ପ୍ରଚଳିତ ଥିବାରୁ ଏହାର ନାମ ବ୍ରାହ୍ମୀ ।

ବ୍ରାହ୍ମୀ ଲିପିର ଉତ୍ପତ୍ତି ଉତ୍ସ ସମ୍ପର୍କରେ ଦୁଇଟି ମୁଖ୍ୟ ମତ ପ୍ରଚଳିତ । ପ୍ରଥମଟି ଭାରତୀୟ ପକ୍ଷର ଓ ଦ୍ୱିତୀୟଟି ବିଦେଶୀପକ୍ଷର ସମର୍ଥକ । ଏହି ମତଗୁଡ଼ିକ ହେଲା—(୧) ଫରାସୀ ବିଦ୍ୱାନ୍ କୁପେରି ବିଶ୍ୱାସ କରନ୍ତି ଯେ ବ୍ରାହ୍ମୀଲିପି ଚୀନା ଲିପିରୁ ଉତ୍ପନ୍ନ ହୋଇଅଛି । କିନ୍ତୁ ଏହି ମତ ଏକାବେଳକେ ଅବୈଜ୍ଞାନିକ । କାରଣ ଏହି ଦୁଇଟି ଲିପି ମଧ୍ୟରେ ବିନ୍ଦୁବିସର୍ଗ ସାମ୍ୟ ନାହିଁ । (୨) ଡକ୍ଟର ଆଲଫ୍ରେଡ୍ ମୂଲର, ଜେମସ୍ ପ୍ରିନ୍‌ସେପ ତଥା ସେନାର୍ଟ ଆଦିଙ୍କର ମତ ହେଉଛି ବ୍ରାହ୍ମୀ ଲିପି ୟୁନାନୀ ଲିପିରୁ ଉତ୍ପନ୍ନ । (୩) ହଲେଭିଙ୍କ ମତରେ ବ୍ରାହ୍ମୀ ଏକ ମିଶ୍ରିତ ଲିପି, ଯାହାର ୮ଟି ବ୍ୟଞ୍ଜନ ଖ୍ରୀ.ପୂ. ୪ର୍ଥ ଶତାବ୍ଦୀ ବେଳକୁ ଆର୍ମେଇକ୍ ଲିପିରୁ, ୬ଟି ବ୍ୟଞ୍ଜନ, ଦୁଇଟି ପ୍ରାଥମିକ ସ୍ୱର, ସମସ୍ତ ମଧ୍ୟବର୍ତ୍ତୀ ସ୍ୱର ଏବଂ ଅନୁସ୍ୱାର ଖରୋଷ୍ଠୀଲିପିରୁ, ୫ଟି ବ୍ୟଞ୍ଜନ ଏବଂ ତିନୋଟି ପ୍ରାଥମିକ ସ୍ୱର ପ୍ରତ୍ୟକ୍ଷ ବା ପରୋକ୍ଷ ରୂପରେ ୟୁନାନୀରୁ ଆସିଅଛି । ସିକନ୍ଦରଙ୍କ ଆକ୍ରମଣ (ଖ୍ରୀ.ପୂ. ୩୨୫) ପରେ ଏହି ମିଶ୍ରଣ ଘଟିଥିଲା । (୪) ସେମିଟିକ୍ ଲିପିରୁ ଏହାର ଉଦ୍ଭବ ହୋଇଅଛି ।

ଏହାର ବିଶେଷତ୍ୱ ହେଉଛି—(କ) ଏଥିରେ ସମସ୍ତ ବର୍ଣ୍ଣ ଯେପରି ଉଚ୍ଚାରିତ ହୁଏ, ସେପରି ଲେଖାଯାଏ । (ଖ) ପ୍ରତ୍ୟେକ ଉଚ୍ଚାରିତ ଧ୍ୱନି ପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ଚିହ୍ନ ରହିଛି । (ଗ) ସ୍ୱର ଏବଂ ବ୍ୟଞ୍ଜନମାନଙ୍କର ସଂଖ୍ୟା ପର୍ଯ୍ୟାପ୍ତ । (ଘ) ହ୍ରସ୍ୱ ଏବଂ

ଦୀର୍ଘ ସ୍ୱରମାନଙ୍କ ପାଇଁ ଭିନ୍ନ ଭିନ୍ନ ଚିହ୍ନ ରହିଛି । (ଙ) ଅନୁସ୍ୱାର, ଅନୁନାସିକ (ଚନ୍ଦ୍ର ବିନ୍ଦୁ) ଓ ବିସର୍ଗ ପାଇଁ ସ୍ୱତନ୍ତ୍ର ଚିହ୍ନ ରହିଛି । (ଚ) ସ୍ୱର ଓ ବ୍ୟଞ୍ଜନମାନଙ୍କର ସଂଯୋଗ ମାତ୍ରାମାନଙ୍କ ଦ୍ୱାରା ସାଧିତ ହୋଇଥାଏ । (ଛ) ଧ୍ୱନିମାନଙ୍କର ଉଚ୍ଚାରଣ ସ୍ଥାନ ଅନୁଯାୟୀ ସେଗୁଡ଼ିକର ବର୍ଗୀକରଣ ହୋଇଅଛି ।

ବ୍ରାହ୍ମୀଲିପି ମୌର୍ଯ୍ୟ ଯୁଗରେ ଯଥେଷ୍ଟ ପ୍ରସାର ଲାଭ କରିଥିଲା । ଚନ୍ଦ୍ରଗୁପ୍ତ ଓ ଅଶୋକ ଏହାର ପୃଷ୍ଠପୋଷକତା କରିଥିଲେ । ମୌର୍ଯ୍ୟ ଯୁଗର ଅଧିକାଂଶ ଶିଳା' ଲେଖ ବ୍ରାହ୍ମୀଲିପିରେ ଲିଖିତ ହୋଇଥିଲା । ବ୍ରାହ୍ମୀଲିପି କାଳକ୍ରମେ ଭିନ୍ନ ଭିନ୍ନ ରୂପରେ ବିକଶିତ ହୋଇଅଛି । ଏହାର ଚାରୋଟି ମୁଖ୍ୟ ଅବସ୍ଥା ହେଉଛି : ଗୁପ୍ତଲିପି, କୁଟିଳଲିପି, ନାଗରୀ ଲିପି ଓ ଶାରଦା ଲିପି ।

**ଗୁପ୍ତଲିପି**—ଗୁପ୍ତ ରାଜାମାନଙ୍କ ସମୟରେ (୪ର୍ଥ ତଥା ୫ମ ଶତାବ୍ଦୀ) ଏହାର ପ୍ରଚାର ହୋଇଥିବାରୁ ଏହାର ନାମ ଗୁପ୍ତଲିପି ।

**କୁଟିଳ ଲିପି**—ଗୁପ୍ତଲିପିରୁ ଏହାର ବିକାଶ ହୋଇଅଛି । ଏଥିରେ ସ୍ୱର-ମାତ୍ରାର ଆକୃତି କୁଟିଳ ବା ବଙ୍କାଟଙ୍କା ହୋଇଥିବାରୁ ଏହାର ନାମ କୁଟିଳ ଲିପି । ଏହାର ପ୍ରସାର ପୂର୍ବ-ଉତ୍ତର ଭାରତରେ ହୋଇଥିଲା । ଏଥିରୁ ମୈଥିଳି, କୈଥୀ, ବଙ୍ଗଳା, ଆସାମୀ, ଓଡ଼ିଆ, ନେପାଳୀ ତଥା ମଣିପୁର ଲିପିମାନଙ୍କର ବିକାଶ ହୋଇଅଛି । ଏହି ଲିପିର ପ୍ରଚଳନ କ୍ରମେ କ୍ରମେ ହ୍ରାସ ପାଇଅଛି ।

**ନାଗରୀ ଲିପି**—ଏହା ୭ମ ଶତାବ୍ଦୀ ବେଳକୁ ମଧ୍ୟପ୍ରଦେଶ, ରାଜସ୍ଥାନ ଓ ମହାରାଷ୍ଟ୍ରରେ ପ୍ରଚଳିତ ଥିଲା । ୧୦ମ ଶତାବ୍ଦୀ ବେଳକୁ ଏହି ଲିପିର ପୂର୍ଣ୍ଣବିକାଶ ହୋଇସାରିଥିଲା । ଏହାର ପ୍ରାଚୀନତମ ଲେଖା ୭ମ-୮ମ ଶତାବ୍ଦୀ ମଧ୍ୟରେ ମିଳୁଅଛି । ଏଥିରୁ ଗୁଜରାଟୀ ଓ ମୁଡ଼ିଆ ନାମକ ଦୁଇଟି ସ୍ଥାନୀୟ ଲିପିର ଓ ଦେବନାଗରୀ ନାମକ ଏକ ସର୍ବଭାରତୀୟ ଲିପିର ଉଦ୍ଭବ ହୋଇଅଛି ।

**ଦେବନାଗରୀ ଲିପି**—ବ୍ରାହ୍ମୀ ଲିପି କାଳକ୍ରମେ ବିକଶିତ ହୋଇ ୭ମ ଶତାବ୍ଦୀ ବେଳକୁ ଦୁଇଟି ଶାଖାରେ ବିଭକ୍ତ ହୋଇଯାଇଥିଲା—ଦକ୍ଷିଣ ଭାରତୀୟ ଶାଖା ଓ ଉତ୍ତର ଭାରତୀୟ ଶାଖା । ଉତ୍ତର ଭାରତୀୟ ଶାଖା ତିନି ଭାଗରେ ବିଭକ୍ତ—ଶାରଦା, ନାଗରୀ ଓ କୁଟିଳ । ନାଗରୀଲିପିରୁ ଦେବନାଗରୀ ଲିପିର ଉଦ୍ଭବ ହୋଇଅଛି । ୭ମ ଶତାବ୍ଦୀର ଶେଷାର୍ଦ୍ଧ ବେଳକୁ ମଧ୍ୟପ୍ରଦେଶ, ରାଜସ୍ଥାନ ଓ ମହାରାଷ୍ଟ୍ରର କେତେକ ଅଞ୍ଚଳରେ ଦେବନାଗରୀ ଲିପିର ଉଦ୍ଭବ ହୋଇସାରିଲାଣି । କାରଣ ଏହାର ପ୍ରାଚୀନତମ ଅଭିଲେଖ ୭ମ ଶତାବ୍ଦୀର ଶେଷଭାଗରେ ଲେଖା ହୋଇଅଛି । ଅବଶ୍ୟ ଏହି ମତ ଅନେକଙ୍କ ଦ୍ୱାରା ସମର୍ଥିତ ହୋଇନାହିଁ । ତେବେ ୧୦ମ ଶତାବ୍ଦୀ ବେଳକୁ

ଦେବନାଗରୀ ଲିପିର ବିକାଶ ହୋଇପାରିଥିଲା ବୋଲି ସମସ୍ତେ ସ୍ୱୀକାର କରନ୍ତି । ଗୁଜୁରାଟୀ ଏବଂ ମୁଡ଼ିଆ (Mudia) ଭାଷାର କେତେକ ଅଭିଲେଖ ଦେବନାଗରୀ ଲିପିରେ ୧୦ମ ଶତାବ୍ଦୀରେ ଲେଖାଯାଇଛି । ଗୁଜୁରାଟୀ ଲିପି ଦେବନାଗରୀ ଲିପିରୁ ଜନ୍ମଲାଭ କରିଛି ବୋଲି ଭାଷାବିତ୍‌ମାନେ ମତ ଦେଇଥାନ୍ତି । କେବଳ ଗୁଜୁରାଟୀ ନାହିଁକି ଅସାମୀ, ବଙ୍ଗଳା, ଓଡ଼ିଆ ଆଦି ଲିପି ଉପରେ ମଧ୍ୟ ଦେବନାଗରୀ ଲିପିର କିଛି ନା କିଛି ପ୍ରଭାବ ପଡ଼ିଅଛି ।

ଦେବନାଗରୀ ଲିପିର ବିଶେଷତ୍ୱ ହେଉଛି—(୧) ଏହା ଅର୍ଦ୍ଧ ଅକ୍ଷରାତ୍ମକ ଲିପି । (୨) ଏଥିରେ ୪୮ଟି ମୂଳ ଚିହ୍ନ ରହିଛି—ତନ୍ମଧ୍ୟରୁ ୧୪ଟି ସ୍ୱର ତଥା ସନ୍ଧ୍ୟକ୍ଷର ଏବଂ ୩୪ଟି ମୂଳ ବ୍ୟଞ୍ଜନ । ଏହି ବ୍ୟଞ୍ଜନ ଉଚ୍ଚାରଣ ସ୍ଥାନ ଅନୁସାରେ ୭ ଭାଗରେ ବିଭକ୍ତ । (୩) ଏଥିରେ ବର୍ଣ୍ଣଗୁଡ଼ିକର ଦକ୍ଷୀକରଣ ଓ କ୍ରମ ଅତ୍ୟନ୍ତ ବୈଜ୍ଞାନିକ । (୪) ସ୍ୱରଧ୍ୱନିମାନଙ୍କ ଭିତରେ 'ଏ'କୁ ଛାଡ଼ିଦେଲେ ଅନ୍ୟ ସ୍ୱରମାନଙ୍କ ହ୍ରସ୍ୱ ଏବଂ ଦୀର୍ଘ ରୂପ ପାଇଁ ଚିହ୍ନ ରହିଛି । (୫) ସ୍ୱରମାନଙ୍କର ମାତ୍ରା ନିର୍ଦ୍ଦିଷ୍ଟ ହୋଇଅଛି ଯାହା ବ୍ୟଞ୍ଜନ ସାଥିରେ ଯୁକ୍ତ ହେବା ପରେ ବ୍ୟବହୃତ ହୋଇଥାନ୍ତି । (୬) ମୂର୍ଦ୍ଧନ୍ୟ ଓ ମୂର୍ଦ୍ଧନ୍ୟେତର ଧ୍ୱନି ମଧ୍ୟରେ ସମସ୍ତ ଅଘୋଷର ସଘୋଷ ରୂପ ଓ ସମସ୍ତ ଅଳ୍ପପ୍ରାଣର ମହାପ୍ରାଣ ରୂପ ରହିଛି । (୭) ସମସ୍ତ ବର୍ଗର ଅନୁନାସିକ ଧ୍ୱନି ପାଇଁ ଅଲଗା ଅଲଗା ଲିପି ଚିହ୍ନ ରହିଛି । (୮) ଏହା ଯେପରି ଉଚ୍ଚାରିତ ହୁଏ ସେହିପରି ଲେଖାଯାଏ । (୯) ପ୍ରତ୍ୟେକ ଧ୍ୱନି ପାଇଁ ଗୋଟିଏ ମାତ୍ର ନିର୍ଦ୍ଦିଷ୍ଟ ଧ୍ୱନି ନାହିଁ, 'କ' ଲାଗି 'K' ଏବଂ 'C' ଧ୍ୱନି ରହିଛି । (୧୦) ଏଥିରେ ମୌନ ବର୍ଣ୍ଣ (silent-letters) ନାହିଁ । (୧୧) ସଂସ୍କୃତ ଭାଷା ଲେଖିବା ପାଇଁ ଏହା ଏକମାତ୍ର ମାଧ୍ୟମ ଥିବାରୁ ନିଖିଳ ଭାରତୀୟ ଲିପି ଭାବରେ ଆଦର ଲାଭ କରିଛି ଓ ଭାରତର ବହୁ ଲିପିକୁ ପ୍ରଭାବିତ କରିଛି ।

ଶାରଦା ଲିପି—କାଶ୍ମୀରର ଅଧିଷ୍ଠାତ୍ରୀ ଦେବୀ ଶାରଦାଙ୍କ ନାମ ଅନୁଯାୟୀ ଏହି ଲିପିର ନାମକରଣ ହୋଇଅଛି । ୧୦ମ ଶତାବ୍ଦୀରେ କୁଟିଳ ଲିପିରୁ ଏହାର ଉଦ୍ଭବ ହୋଇଥିଲା । କାଶ୍ମୀର, ଉତ୍ତର-ପଶ୍ଚିମ, ଭାରତ, ପଞ୍ଜାବ, ସିନ୍ଧୁପ୍ରଦେଶ ପ୍ରଭୃତିରେ ଏହା ପ୍ରସାର ଲାଭ କରିଥିଲା । ଏହାର ପ୍ରଧାନ ରୂପ ହେଉଛି—କାଶ୍ମୀରୀ, ଟାକ୍‌ରୀ, ଗୁରୁମୁଖୀ ଓ ଲଣ୍ଡା ।

ୟୁନାନୀ ଲିପି—ପୃଥିବୀର ଅନ୍ୟ ଲିପି ପରି ଏହି ଲିପିର ସୃଷ୍ଟି ସମ୍ପର୍କରେ ବହୁ କିମ୍ବଦନ୍ତୀ ରହିଛି । କିନ୍ତୁ ବସ୍ତୁତଃ ପ୍ରାଚୀନ ସେମିଟିକ୍ ଲିପିର ଉତ୍ତର ଶାଖାରୁ ଏହାର ଉତ୍ପତ୍ତି ହୋଇଅଛି । କେତେକ ବିଦ୍ୱାନ୍‌ଙ୍କ ମତରେ ଏହା ଉପରେ ଫୋନିସିଅନ୍ ଲିପିର ପ୍ରଭାବ ପଡ଼ିଅଛି । କେତେକଙ୍କ ମତରେ ଏହା ଫୋନିସିଅନ

ଲିପିରୁ ଜନ୍ମଲାଭ କରିଛି । କିନ୍ତୁ ଅକ୍ଷରର ସ୍ୱରୂପ ଓ ଅନ୍ୟ ଦୃଷ୍ଟିରୁ ଏହାର ସେମିଟିକ୍ ଉତ୍ତର ଶାଖା ଅନ୍ତର୍ଗତ ଏଶିୟାନିକ ଲିପିର କେତେକ ସାମ୍ୟ ଥିବାରୁ ଏହା ସେମିଟିକ୍ ଶାଖାରୁ ହିଁ ଆସିଅଛି ବୋଲି ଅନୁମାନ କରାଯାଏ । ଖ୍ରୀ.ପୂ. ୧୧ଶ ଶତାବ୍ଦୀ ବେଳକୁ ଏହାର ଜନ୍ମ ହୋଇସାରିଥିଲା । ଏହି ଲିପିର ଅନ୍ୟ ପରିଣତ ହେଉଛି ଲାଟିନ୍ ଲିପି । ଏଥିରେ ମୋଟେ ୨୪ଟି ଲିପି-ଚିହ୍ନ ରହିଛି ଓ ଏହା ବାମରୁ ଦକ୍ଷିଣକୁ ଲେଖାଯାଏ ।

**ଲାଟିନ୍ ଲିପି**—ଲାଟିନ୍ ଲିପି ତା'ର ପରିବାରର ଅନ୍ୟ ଲିପି ସମୂହ ଭିତର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଲିପି ଭାବରେ ବିବେଚିତ । ସେମିଟିକ୍ ଲିପିର ଉତ୍ତର ଉପଶାଖା 'ଏଟ୍ରୁସ୍କନ ଲିପି'ରୁ ଏହାର ସୃଷ୍ଟି ହୋଇଅଛି । ଖ୍ରୀ.ପୂ. ୭ମ ଶତାବ୍ଦୀ ବେଳକୁ ଏହା ବିକାଶ ଲାଭ କରିଥିଲା । ଆରମ୍ଭରେ ଏହା ମାତ୍ର ୨୧ଟି ଅକ୍ଷର ବିଶିଷ୍ଟ ଥିଲା, ଯଥା A, B, C, D, E, F, G, H, I, K, L, M, N, O, P, Q, R, S, T, V, X, କିନ୍ତୁ ଏଟ୍ରୁସ୍କନ ଲିପିରେ ଅକ୍ଷର ସଂଖ୍ୟା ଥିଲା ୨୬, ଅର୍ଥାତ୍ J, U, W, Y, Z, ଏହି ପାଞ୍ଚଟି ଅକ୍ଷର ମଧ୍ୟ ଏଥିରେ ଥିଲା । ସିଜରଙ୍କ ସମୟରେ ଲାଟିନ୍ ଭାଷାରେ ଅଧିକ ଅଧିକ ୟୁନାନୀ ଶବ୍ଦ ପ୍ରବେଶ ଲାଭ କରିବାରୁ Y, Z, ଏହି ଦୁଇଟି ଅକ୍ଷର ୟୁନାନୀ (ଏଟ୍ରୁସ୍କନ୍)ରୁ ଲାଟିନ୍ ଗ୍ରହଣ କଲା । ଫଳରେ ଅକ୍ଷର ସଂଖ୍ୟା ହେଲା ୨୩ । ମଧ୍ୟଯୁଗରେ ଧ୍ୱନି ଆବଶ୍ୟକ ହେବାରୁ ଆଉ ତିନୋଟି ଅକ୍ଷର J, U, W, ଏହି ଭାଷା ଗ୍ରହଣ କଲା ଓ ମୋଟରେ ଅକ୍ଷର ସଂଖ୍ୟା ହେଲା ୨୬ ।

ଇଂରାଜୀ, ଫରାସୀ, ସ୍ପେନୀୟ, ଇଟାଲୀ, ପର୍ତ୍ତୁଗୀଜ, ରୁମାନିୟନ୍, ଜର୍ମାନ, ଚେକ୍, ପୋଲିସ୍, ତୁର୍କୀ ଓ କେତେକ ଆଫ୍ରିକୀୟ ଭାଷା ଲାଟିନ୍ ଲିପିରେ ଲେଖାଯାଏ । ଏହି ଲିପିକୁ ରୋମାନ୍ ଲିପି କୁହାଯାଏ । ଲାଟିନ୍ ଲିପି ବା ରୋମାନ୍ ଲିପି ବର୍ଣ୍ଣନାତ୍ମକ ହୋଇଥିବାରୁ ଓ ଅନ୍ୟ ଦୃଷ୍ଟିରୁ ପୃଥିବୀର ସର୍ବୋତ୍କୃଷ୍ଟ ଲିପି ।

**ଉପସଂହାର**—ଭାବକୁ ଅଙ୍କନ କରିବା ହେଉଛି ଲିପିର କାର୍ଯ୍ୟ । ଏହି କାର୍ଯ୍ୟରେ ଲିପି ଯେତେ ସଫଳ ହେବ, ତାହାକୁ ସେତେ ଶକ୍ତିସମ୍ପନ୍ନ ବୋଲି ସ୍ୱୀକାର କରିବାକୁ ହେବ । ଚିତ୍ର ଲିପି, ସୂତ୍ର ଲିପି, ଭାବମୂଳକ ଲିପି ଆଦିଠାରୁ ଧ୍ୱନିମୂଳକ ଲିପି ଯେ ସର୍ବଶ୍ରେଷ୍ଠ ଉପଯୋଗୀ ଓ ଶକ୍ତିସମ୍ପନ୍ନ, ଏଥିରେ ସନ୍ଦେହ ନାହିଁ । ଲିପିକୁ ଅଧିକ ଭାବ-ବହନ-କ୍ଷମ କରିବା ଲାଗି ଏହା ଉପରେ ବହୁ ବୈଜ୍ଞାନିକ ଅଧ୍ୟୟନ କରାଯାଇଛି ଓ ତ୍ରୁଟି ନିରାକରଣ ଲାଗି ପ୍ରୟାସ ଦେଖାଦେଇଛି । ଏହାକୁ ଲିପି ସଂସ୍କାର କୁହାଯାଏ । ଆଧୁନିକ ଯୁଗରେ ଲିପିମାନଙ୍କର ଅଧ୍ୟୟନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଉଅଛି । ଆଶା କରାଯାଏ, ଭାଷା ଭାଷାତତ୍ତ୍ୱବିଜ୍ଞାନୀମାନେ ଲିପିକୁ ଅଧିକ ପୂର୍ଣ୍ଣାଙ୍ଗ କରିବେ ଓ ବିଶ୍ୱର ଅପୂର୍ଣ୍ଣ ଲିପିର ପୂର୍ଣ୍ଣତା ପାଇଁ ପ୍ରୟାସ କରିବେ ।

## ● ପଞ୍ଚମ ପରିଚ୍ଛେଦ ●

# ଭାଷାବିଜ୍ଞାନର ସ୍ଥୂଳ ପରିଚୟ

**ଭାଷାବିଜ୍ଞାନର ସଂଜ୍ଞା ଓ ସ୍ୱରୂପ**—ଭାଷା ସମ୍ପର୍କରେ ଅର୍ଜିତ ବିଶେଷ ଜ୍ଞାନ ବା ଭାଷାର ବୈଜ୍ଞାନିକ ଅଧ୍ୟୟନକୁ ଭାଷାବିଜ୍ଞାନ କହନ୍ତି । ସୃଷ୍ଟିରେ ପ୍ରାକୃତିକ ଭାବରେ ସୃଷ୍ଟ ସକଳ ପଦାର୍ଥର ବିଶେଷ ଅନ୍ୱେଷଣ, ଅନୁଶୀଳନ, ବ୍ୟାଖ୍ୟା, ବିବରଣ ଓ ବିଶେଷ ଜ୍ଞାନ ହେଉଛି ବିଜ୍ଞାନ । ପ୍ରାକୃତିକ ଭାବରେ ଏହି ସୃଷ୍ଟି ପଦାର୍ଥ ଈଶ୍ୱର ସୃଷ୍ଟି । ଅନ୍ୟ ପକ୍ଷରେ ମାନବ ସୃଷ୍ଟି ପଦାର୍ଥର ବିଶେଷ ବ୍ୟାଖ୍ୟା, ବିବରଣ, ଜ୍ଞାନ ଓ ପ୍ରକାଶ ହେଉଛି କଳା । ଭାଷା ଏକ ଐଶ୍ୱରିକ ଶକ୍ତି । ଏହାର ଉନ୍ମେଷ ଓ ବିକାଶ ପ୍ରାକୃତିକ ନିୟମରେ ପରିଚାଳିତ । ଅବଶ୍ୟ ଏହା ସ୍ୱୀକାର୍ଯ୍ୟ ଯେ ମଣିଷ ନିଜ ଶକ୍ତିଦ୍ୱାରା ଭାଷାରେ କିଛି ପରିବର୍ତ୍ତନ ଆଣିଅଛି । କିନ୍ତୁ ଏହି ପରିବର୍ତ୍ତନ ଏକ ବ୍ୟାପକ ସାମାଜିକ ଓ ସମଷ୍ଟିଗତ ପ୍ରଚେଷ୍ଟାରେ ସମ୍ଭବ । ଯାହା ସମଷ୍ଟିଗତ, ତାହା ପ୍ରାକୃତିକ ବୋଲି ସ୍ୱୀକୃତ ହୋଇଥାଏ । ତେଣୁ ଭାଷାର ବ୍ୟାଖ୍ୟା, ବିବରଣ ଓ ଅଧ୍ୟୟନ ଏକ କଳା ନ ହୋଇ ଏକ ବିଜ୍ଞାନ ।

**ଜ୍ଞାନ ଦ୍ୱିବିଧ**—ନୈସର୍ଗିକ ଓ ବୁଦ୍ଧିଗ୍ରାହ୍ୟ । ପ୍ରଥମ ପ୍ରକାରର ଜ୍ଞାନ ବେଶି ମାତ୍ରାରେ ଥାଏ ପଶୁପକ୍ଷୀ ପ୍ରଭୃତି ଇତର ପ୍ରାଣୀମାନଙ୍କଠାରେ ଓ ଦ୍ୱିତୀୟଟି ଅଧିକ ମାତ୍ରାରେ ଥାଏ ମଣିଷଠାରେ । ବୁଦ୍ଧିଗ୍ରାହ୍ୟ ଜ୍ଞାନକୁ ପୁଣି ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ବିଜ୍ଞାନ ଓ କଳା । କଳାରେ ଯେଉଁଠାରେ ଜାଗେ ଉଚ୍ଛ୍ୱାସ, ବିଜ୍ଞାନରେ ସେଇଠି ଜାଗେ ଜିଜ୍ଞାସା, କଳାରେ ଯେଉଁଠି ଜାଗେ ପ୍ରତ୍ୟୟ, ବିଜ୍ଞାନରେ ସେଇଠି ଜାଗେ ସଂଶୟ । ଏହି ସଂଶୟ ଓ ଜିଜ୍ଞାସାର ଅବସାନ ଓ ସମାଧାନ ମଧ୍ୟ ହୋଇଥାଏ ବିଜ୍ଞାନରେ । ଏହି ସମାଧାନ ପାଇଁ ଯେଉଁ ତନ୍ନତନ୍ନ ନିରୀକ୍ଷଣ, ଅଧ୍ୟୟନ, ବିଶ୍ଳେଷଣ, ବିଚାର ଓ ସିଦ୍ଧାନ୍ତ ତାହା ହିଁ ବିଜ୍ଞାନ । କଳାର ଚରମ ପରିଣତି ରସାନୁଭୂତିରେ, ବିଜ୍ଞାନର ଚରମ ପରିଣତି ସଂଶୟ ଉନ୍ମୋଚନରେ । ଭାଷାବିଜ୍ଞାନରେ ଭାଷାର ଉତ୍ପତ୍ତି, ବିକାଶ, ପ୍ରୟୋଗ ପ୍ରଭୃତି ସମ୍ପର୍କରେ ତାତ୍ତ୍ୱିକ ଅଧ୍ୟୟନ କରାଯାଏ ଓ ଫଳରେ ଏ ସମ୍ପର୍କରେ ଜାଗିଥିବା ସଂଶୟର ଅବସାନ ହୁଏ । ତେଣୁ ଭାଷାର ଅଧ୍ୟୟନ ଏକ କଳା ନୁହେଁ; ବିଜ୍ଞାନ ।

**ଭାଷାବିଜ୍ଞାନ ଓ ବ୍ୟାକରଣ**—ବ୍ୟାକରଣ ଶବ୍ଦର ଅର୍ଥ ହେଉଛି ବ୍ୟାକୃତ ଅର୍ଥାତ୍ କୌଣସି ଶବ୍ଦର ବ୍ୟବଚ୍ଛେଦ-ପୂର୍ବକ ତାହାର ପ୍ରକୃତ ସମ୍ପର୍କରେ ଜ୍ଞାନ ଅର୍ଜନ । ଏହି ଦୃଷ୍ଟିରୁ ବ୍ୟାକରଣ ସଙ୍ଗରେ ଭାଷାବିଜ୍ଞାନର ଘନିଷ୍ଠ ସମ୍ପର୍କ ରହିଛି ; କିନ୍ତୁ ଏ ଦୁଇଟି ଭିତରେ ବହୁ ପାର୍ଥକ୍ୟ ମଧ୍ୟ ରହିଛି । ଯଥା : (୧) ବ୍ୟାକରଣ କୌଣସି ଭାଷାର ନିଷ୍ପନ୍ନ ରୂପର ଶୁଦ୍ଧି-ଅଶୁଦ୍ଧି ସମ୍ପର୍କରେ ବିଚାର କରେ, 'ଏହି ରୂପ କିପରି ଗଠିତ ହେଲା' ତାହାର ବିଚାର କରେ ନାହିଁ । ଅନ୍ୟ ପକ୍ଷରେ ଭାଷାବିଜ୍ଞାନ ରୂପର ଶୁଦ୍ଧି-ଅଶୁଦ୍ଧି ଉପରେ ଗୁରୁତ୍ୱ ଆରୋପ କରେ ନାହିଁ । ଏହାର ଗଠନ କିପରି ହୋଇଅଛି, ଗଠନରେ ପରିବର୍ତ୍ତନ ଘଟିଛି କି ନାହିଁ, ଯଦି ଘଟିଛି ତା'ର କାରଣ କ'ଣ, ଏସବୁର ବିଶ୍ଳେଷଣ କରେ । ତେଣୁ ବ୍ୟାକରଣ ବର୍ଣ୍ଣନା-ପ୍ରଧାନ ଓ ଭାଷାବିଜ୍ଞାନ ବ୍ୟାଖ୍ୟା-ପ୍ରଧାନ ବା ବିଶ୍ଳେଷଣ-ପ୍ରଧାନ । (୨) ବ୍ୟାକରଣର କ୍ଷେତ୍ର ଅପେକ୍ଷାକୃତ ସୀମିତ । ଗୋଟିଏ ଭାଷାର ରୂପ ଉପରେ ପ୍ରାୟତଃ ଏହାର ଧ୍ୟାନ କେନ୍ଦ୍ରିତ । ଅନ୍ୟ ପକ୍ଷରେ ଯଦ୍ୟପି 'ଭାଷାବିଜ୍ଞାନ' 'ବହୁ ଭାଷାବିଜ୍ଞାନ' ନୁହେଁ, ତଥାପି ଏଥିରେ ତୁଳନାତ୍ମକ ଅଧ୍ୟୟନ ପାଇଁ ଏକାଧିକ ଭାଷାର ଆବଶ୍ୟକତା ପଡ଼େ । (୩) ବ୍ୟାକରଣ ଭାଷାବିଜ୍ଞାନର ଅନୁଗାମୀ । ପ୍ରଥମେ ଭାଷାବିଜ୍ଞାନର ସୃଷ୍ଟି । ଭାଷାବିଜ୍ଞାନ ଯେଉଁ ଭାଷା ଉପରେ ଅଧ୍ୟୟନ କଲା, ତାହାର ସାଧୁ ନିର୍ଦ୍ଦିଷ୍ଟ ରୂପ ରକ୍ଷାଲାଗି ବ୍ୟାକରଣ ପ୍ରଚେଷ୍ଟା ଆରମ୍ଭ କଲା । (୪) ବ୍ୟାକରଣ ମୁଖ୍ୟତଃ ରୂପରଚନା ଓ ବାକ୍ୟଗଠନ ଉପରେ ବିବେଚନା କରେ; କିନ୍ତୁ ଭାଷାବିଜ୍ଞାନ ଏହି ଦିଗ ସହିତ ଧ୍ୱନି, ଅର୍ଥ, ଶବ୍ଦାବଳୀ ଓ ଲିପି ଆଦି ସମ୍ପର୍କରେ ମଧ୍ୟ ବିବେଚନା କରେ । (୫) ବ୍ୟାକରଣ ପୁରାତନବାଦୀ ବା ପ୍ରତିଷ୍ଠାବାଦୀ ; ଭାଷାବିଜ୍ଞାନ ପ୍ରଗତିବାଦୀ । ବ୍ୟାକରଣ ଯାହାକୁ ଥରେ ଶିଷ୍ଟଜନୋଚିତ ପ୍ରୟୋଗ ବୋଲି ସ୍ଥିର କରିଦିଏ, ତାହାର ପରିବର୍ତ୍ତନ ଅମାନ୍ୟ ଘୋଷିତ କରିଦିଏ । ବ୍ୟାକରଣ ଦୃଷ୍ଟିରୁ ଏ ପରିବର୍ତ୍ତନ ବିକାଶର ନୁହେଁ, ପତନ ବା ବିକାରର ଲକ୍ଷଣ । ସେହି ଦୃଷ୍ଟିରୁ ପ୍ରାକୃତର ପରିବର୍ତ୍ତିତ ରୂପକୁ ବ୍ୟାକରଣ-ପଣ୍ଡିତମାନେ ଅପଭ୍ରଂଶ ଆଖ୍ୟା ଦେଇଥିଲେ । କିନ୍ତୁ ଭାଷାବିଜ୍ଞାନୀ ଦୃଷ୍ଟିରେ ଏ ପରିବର୍ତ୍ତନ ବିକାଶର ଲକ୍ଷଣ । (୬) ବ୍ୟାକରଣ ଏପରି ଏକ ଭାଷା ଉପରେ ଅଧ୍ୟୟନ କରେ ଯାହାର ରୂପ ଶିଷ୍ଟ ବା ନିର୍ଦ୍ଦିଷ୍ଟ ହୋଇଯାଇଛି । କିନ୍ତୁ ଭାଷାବିଜ୍ଞାନ ସଂସାରରେ ଉନ୍ନତ-ଅବନତ, ନିର୍ଦ୍ଦିଷ୍ଟ-ଅନିର୍ଦ୍ଦିଷ୍ଟ-ରୂପ ବିଶିଷ୍ଟ ସମସ୍ତ ଭାଷା ଉପରେ ଅଧ୍ୟୟନ ଚଳାଇପାରେ ।

## ଭାଷାବିଜ୍ଞାନର ବିଭିନ୍ନ ବିଭାଗ (Aspects) ବା କ୍ଷେତ୍ର (Field) ବା ପରିସର

ଭାଷାବିଜ୍ଞାନର କ୍ଷେତ୍ର ବା ପରିସର ଅତ୍ୟନ୍ତ ବ୍ୟାପକ । ଡକ୍ଟର ଗୁଣେଙ୍କ ମତରେ ମାନବ ସମାଜପରି ମାନବର ଭାଷା ଅନନ୍ତ । ଡକ୍ଟର ଗେ ଭାଷାବିଜ୍ଞାନର

ବହୁ ନୂତନ ବିଭାବ ଆବିଷ୍କାର କରିଛନ୍ତି । ସେ ଭାଷାବିଜ୍ଞାନର ବିଭାବକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରିଛନ୍ତି (୧) ପ୍ରଧାନ ବିଭାବ, (୨) ଗୌଣ ବିଭାବ ।

## ପ୍ରଧାନ ବିଭାବ

(୧) ବାକ୍ୟବିଜ୍ଞାନ—(Syntax)—ଭାଷାର ପ୍ରଧାନ କାର୍ଯ୍ୟ ହେଉଛି ବସ୍ତୁର ବିନିମୟ । ବସ୍ତୁର ବିନିମୟ ବାକ୍ୟମାନଙ୍କ ଦ୍ୱାରହିଁ କରାଯାଏ । ତେଣୁ ବାକ୍ୟ ଭାଷାରେ ସର୍ବାଧିକ ମହତ୍ତ୍ୱପୂର୍ଣ୍ଣ ଉପାଦାନ । ଭାଷାବିଜ୍ଞାନର ଯେଉଁ ବିଭାଗରେ ଏହି ଅଧ୍ୟୟନ କରାଯାଏ ତାହାକୁ ବାକ୍ୟବିଜ୍ଞାନ କୁହାଯାଏ । ଏହି ବିଭାଗରେ ବାକ୍ୟର ଗଠନ ପ୍ରଣାଳୀ ଉପରେ ଅଧ୍ୟୟନ କରାଯାଏ । ଏହି ଅଧ୍ୟୟନ ତ୍ରିବିଧ – (କ) ସମକାଳୀନ, (ଖ) ଐତିହାସିକ, (ଗ) ତୁଳନାତ୍ମକ । ସମକାଳରେ ବ୍ୟବହୃତ ଭାଷାର ବାକ୍ୟ ମଧ୍ୟରେ ଯେଉଁ ଆଙ୍ଗିକ ବୈଚିତ୍ର୍ୟ ପରିଲକ୍ଷିତ, ତାହାର କାରଣ, ପ୍ରବୃତ୍ତି ଓ ପ୍ରକୃତ ଉପରେ ଅନେକପାତ କରାଯାଏ । ସମକାଳୀନ ବାକ୍ୟବିଜ୍ଞାନ ଓ ଐତିହାସିକ ବାକ୍ୟବିଜ୍ଞାନଠାରୁ ତୁଳନାତ୍ମକ ବାକ୍ୟବିଜ୍ଞାନ ଅଧିକ ଜଟିଳ । ଏକାଧିକ ଭାଷାର ବାକ୍ୟ ଗଠନରେ ପରିଲକ୍ଷିତ ସାମ୍ୟ-ବୈଷମ୍ୟ ସମ୍ବନ୍ଧରେ କାରଣ-ସନ୍ଧାନ-ପୂର୍ବକ ତୁଳନାତ୍ମକ ଅଧ୍ୟୟନ ହେଉଛି ତୁଳନାତ୍ମକ ବାକ୍ୟବିଜ୍ଞାନ । ଏକାଧିକ ଭାଷାରେ ବ୍ୟାକରଣଗତ ଓ ବ୍ୟବହାରଗତ ଜ୍ଞାନ ନଥିଲେ ଜଣେ ତୁଳନାତ୍ମକ ବାକ୍ୟବିଜ୍ଞାନର ଅଧ୍ୟେତା ହୋଇପାରିବ ନାହିଁ । ବାକ୍ୟବିଜ୍ଞାନରେ ବାକ୍ୟ ଗଠନର ଅଧ୍ୟୟନ ପାଇଁ ଭାଷାବିତ୍‌ଙ୍କୁ ପଦକ୍ରମ, ପଦ ସଂଯୋଜନା, ପଦାନ୍ୱୟ, ପରିବର୍ତ୍ତନର କାରଣ, ପରିବର୍ତ୍ତନର ଦିଗ, ଭାଷାର ଅଭ୍ୟନ୍ତର ଓ ବାହ୍ୟ ସ୍ୱରୂପ ସମ୍ପର୍କରେ ଜ୍ଞାନଅର୍ଜନ କରିବାକୁ ହେବ ।

(୨) ରୂପବିଜ୍ଞାନ (Morphology)—ପଦକୁ ନେଇ ବାକ୍ୟ ଗଠିତ ହୁଏ । ପଦଗୁଡ଼ିକର ଯଥାର୍ଥ ଅର୍ଥ, ଯଥୋଚିତ ବ୍ୟବହାର ନ ଜାଣିଲେ ଜଣେ ବାକ୍ୟଗଠନ କରିପାରିବ ନାହିଁ । ତେଣୁ ବାକ୍ୟ ମଧ୍ୟରେ ବ୍ୟବହୃତ ପଦଗୁଡ଼ିକର ତତ୍ତ୍ୱ ଜାଣିବା ଭାଷାବିଜ୍ଞାନର ଏକ ବିଶିଷ୍ଟ ବିଭାବ । ଏହି ତତ୍ତ୍ୱ ଉପରେ ଜ୍ଞାନ ଓ ଅଧ୍ୟୟନକୁ ରୂପବିଜ୍ଞାନ ବା ପଦବିଜ୍ଞାନ କୁହାଯାଏ । ରୂପବିଜ୍ଞାନରେ ସମ୍ବନ୍ଧତତ୍ତ୍ୱ, ଏହାର ପ୍ରକାର ତଥା ରୂପ, ଭାଷାର ବୈୟାକରଣିକ ରୂପମାନଙ୍କର ବିକାଶ, ଏହାର କାରଣ, ଧାତୁ, ଉପସର୍ଗ, ପ୍ରତ୍ୟୟ ପ୍ରଭୃତିର ବୈଜ୍ଞାନିକ ଅଧ୍ୟୟନ କରାଯାଏ । ରୂପ-ନିର୍ମାଣ-ପ୍ରକ୍ରିୟା ସମ୍ପର୍କରେ ଅଧ୍ୟୟନ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଏହାକୁ ମଧ୍ୟ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯଥା—ସମକାଳୀନ, ଐତିହାସିକ ଓ ତୁଳନାତ୍ମକ ।

(୩) ଶବ୍ଦବିଜ୍ଞାନ (Wordology)—ରୂପ ବା ପଦର ଆଧାର ହେଉଛି ଶବ୍ଦ । ଶବ୍ଦ ଯେତେବେଳେ ବାକ୍ୟରେ ବ୍ୟବହୃତ ହୁଏ, ସେତେବେଳେ ପଦ ଭାବରେ ପରିଚିତ ହୁଏ । ପ୍ରଥମେ ଶବ୍ଦ ଓ ତା'ପରେ ପଦର ସୃଷ୍ଟି । ତେଣୁ ଶବ୍ଦ-ବିଚାର ପରେ ପଦ-ବିଚାର ହୋଇଥାଏ । ଶବ୍ଦର ବର୍ଗୀକରଣ, ନାମ ବିଜ୍ଞାନ, ଶବ୍ଦର ପରିବର୍ତ୍ତନ (ଏହାର କାରଣ ଓ ଦିଗ ପ୍ରଭୃତିର ବିଚାର ଶବ୍ଦବିଜ୍ଞାନର ଅନ୍ତର୍ଗତ) । ଶବ୍ଦାଭିଧାନ (Dictionary) ଓ ବ୍ୟୁତ୍ପତ୍ତି ବିଜ୍ଞାନ (Etymology) ମଧ୍ୟ ଶବ୍ଦ ବିଜ୍ଞାନର ଅନ୍ତର୍ଗତ । ଶବ୍ଦବିଜ୍ଞାନରେ ଶବ୍ଦମାନଙ୍କର ତୁଳନାତ୍ମକ ଅଧ୍ୟୟନ ମଧ୍ୟ କରାଯାଇଥାଏ ।

(୪) ଧ୍ୱନିବିଜ୍ଞାନ (Phonetics)—ଶବ୍ଦର ଆଧାର ହେଉଛି ଧ୍ୱନି । ଧ୍ୱନିବିଜ୍ଞାନରେ ଭାଷାର ଧ୍ୱନି ସମ୍ପର୍କରେ ଅନେକ ଦୃଷ୍ଟିରୁ ଅଧ୍ୟୟନ କରାଯାଇଥାଏ । ଧ୍ୱନିବିଜ୍ଞାନର ଦୁଇଟି ଉପବିଭାଗ ହେଉଛି– ଧ୍ୱନିତତ୍ତ୍ୱ (Phonetics) ଓ ଧ୍ୱନି-ପ୍ରକ୍ରିୟା-ବିଜ୍ଞାନ (Phonlogy) । ଧ୍ୱନିତତ୍ତ୍ୱରେ ଧ୍ୱନିସମ୍ବନ୍ଧୀୟ ଅବୟବ (ଓଷ୍ଠ, ଦନ୍ତ, ବର୍ତ୍ସ, କଠିନ ତାଳୁ, କୋମଳ ତାଳୁ, ଅଧିଜିହ୍ୱା ବା ଘଣ୍ଟିକା, ଜିହ୍ୱାଗ୍ର, ଜିହ୍ୱାଫଳକ, ଜିହ୍ୱାମଧ୍ୟ, ଜିହ୍ୱା ପଶ୍ଚାତ୍, ଉପାଲି ଜିହ୍ୱା ବା ଗଳ-ଗହ୍ୱର, ସ୍ୱରଯନ୍ତ୍ରା-ବରଣ, ସ୍ୱରତନ୍ତ୍ରୀ, ଶ୍ୱାସନଳୀ, ନାସାରନ୍ଧ୍ର), ଧ୍ୱନି-ଉତ୍ପତ୍ତି, ଧ୍ୱନି ଲହର, ଧ୍ୱନି ଶ୍ରବଣ ପ୍ରକ୍ରିୟା ଆଦି ସମ୍ପର୍କରେ ଅଧ୍ୟୟନ କରାଯାଏ । ଧ୍ୱନି ପ୍ରକ୍ରିୟା-ବିଜ୍ଞାନରେ ଧ୍ୱନି ପରିବର୍ତ୍ତନ (ଏହାର କାରଣ ଓ ଦିଗ), ଧ୍ୱନି-ନିୟମ ନିର୍ଦ୍ଧାରଣ ଆଦି ସମ୍ପର୍କରେ ବିଚାର କରାଯାଏ । ଧ୍ୱନିଗ୍ରାମବିଜ୍ଞାନ ହେଉଛି ଅନ୍ୟତମ ନୂତନ ଉପବିଭାଗ । ଧ୍ୱନିବିଜ୍ଞାନ ଅଧ୍ୟୟନକୁ ମଧ୍ୟ ତିନିଭାଗରେ ବିଭକ୍ତ କରାଯାଇପାରେ, ଯଥା— ସମକାଳୀନ, ଐତିହାସିକ ଓ ତୁଳନାତ୍ମକ ।

(୫) ଅର୍ଥବିଜ୍ଞାନ (Semantics)—ଶବ୍ଦ ହେଉଛି ଭାଷାର ଶରୀର, କିନ୍ତୁ ଅର୍ଥ ହେଉଛି ଭାଷାର ଆତ୍ମା । ଶରୀର ସମ୍ବନ୍ଧରେ ଜ୍ଞାନ ଅର୍ଜନ ପରେ ଆତ୍ମା ସମ୍ପର୍କରେ ଜ୍ଞାନ ଅର୍ଜନ ଅତ୍ୟାବଶ୍ୟକ ମନେହୁଏ । ବାସ୍ତବରେ ଭାଷାର ବୈଚିତ୍ର୍ୟ ଶବ୍ଦରେ ନାହିଁ, ଅଛି ଅର୍ଥରେ । ଶବ୍ଦର ଅର୍ଥ ନିର୍ଦ୍ଧାରଣ, ଏହାର ସ୍ତର, ଏହାର ବିକାଶ ଓ କାରଣ, ଧ୍ୱନି ସହିତ ଅର୍ଥର ସମ୍ପର୍କ ପ୍ରଭୃତି ଉପରେ ଅର୍ଥ ବିଜ୍ଞାନ ତାତ୍ତ୍ୱିକ ଅଧ୍ୟୟନ କରିଥାଏ । ଅର୍ଥ ବିଜ୍ଞାନ ମଧ୍ୟ ତିନିଭାଗରେ ବିଭକ୍ତ—ସମକାଳୀନ, ଐତିହାସିକ ଓ ତୁଳନାତ୍ମକ । ଅନେକ ଆଧୁନିକ ଭାଷାବିତ୍ ଅର୍ଥ ବିବେଚନକୁ ଭାଷାବିଜ୍ଞାନର ଅନ୍ତର୍ଭୁକ୍ତ ନକରି ଏହାକୁ ଏକ ଦାର୍ଶନିକ ଅଧ୍ୟୟନ ବୋଲି କହିଥାନ୍ତି । କିନ୍ତୁ ଭାଷାର ପ୍ରାଣପ୍ରାଚୁର୍ଯ୍ୟ ଅର୍ଥ ଭିତରେ ହିଁ ନିହିତ ରହିଥିବାରୁ ଏହା ଭାଷାବିଜ୍ଞାନର ପରିସର (field) ଅନ୍ତର୍ଭୁକ୍ତ କରାଯିବା ଆବଶ୍ୟକ ।

# ଗୌଣ ବିଭାଗ

(୧) ଭାଷାର ଉତ୍ପତ୍ତି—ଭାଷାବିଜ୍ଞାନର ସବୁଠାରୁ ଅଧିକ ସ୍ୱାଭାବିକ, ଆବଶ୍ୟକ ଓ ବିଚିତ୍ର ପ୍ରଶ୍ନ ହେଉଛି ଭାଷାର ଉତ୍ପତ୍ତି । ବିଦ୍ୱାନ୍‌ମାନେ ଏହା ଉପରେ ତନ୍ନତନ୍ନ ଅଧ୍ୟୟନ କରି ଅନେକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଅବଶ୍ୟ ଆଧୁନିକ କାଳର ଅନେକ ବିଦ୍ୱାନ୍ ଭାଷାବିଜ୍ଞାନରେ ଏହାକୁ ଏକ ପ୍ରଶ୍ନ ବୋଲି ସ୍ୱୀକାର କରନ୍ତି ନାହିଁ, କିନ୍ତୁ ଭାଷା-ବିଜ୍ଞାନର ଅଧ୍ୟୟନ ପୂର୍ବରୁ ଭାଷାର ଉତ୍ପତ୍ତି ସମ୍ପର୍କରେ ଜାଣିବା ସର୍ବାଦୌ କର୍ତ୍ତବ୍ୟ । ଯେତେବେଳେ ଭାଷାର ସମୁଦାୟ ଜୀବନ-ଅଧ୍ୟୟନକୁ ଭାଷା-ବିଜ୍ଞାନରେ ସ୍ୱୀକାର କରାଗଲା, ତାହାର ଜନ୍ମ ସମ୍ପର୍କରେ ଅଧ୍ୟୟନକୁ କିପରି ଅସ୍ୱୀକାର କରାଯିବ ? ଭାଷାର ଜନ୍ମ ସମ୍ପର୍କୀୟ ସିଦ୍ଧାନ୍ତ ଏଯାବତ୍ ଏକ କଠିନ ସମସ୍ୟା ହୋଇ ରହିଛି । ଏହି ସମସ୍ୟାର ସମାଧାନ ଆବଶ୍ୟକ ।

(୨) ଭାଷାର ବର୍ଗୀକରଣ—ପୃଥିବୀର ବିଭିନ୍ନ ଭାଷାକୁ ତାହାର ଉତ୍ପତ୍ତି, ବିକାଶ ଓ ଗଠନ ପ୍ରଣାଳୀ ଦୃଷ୍ଟିରୁ ବିଭିନ୍ନ ବର୍ଗରେ ବିଭକ୍ତ କରାଯାଇ ଅଧ୍ୟୟନ କରାଯାଇଥାଏ । ଏଥିରେ ବାକ୍ୟ, ରୂପ, ଶବ୍ଦ, ଧ୍ୱନି ଓ ଅର୍ଥକୁ ଆଧାର କରି ଭାଷାମାନଙ୍କର ତୁଳନାତ୍ମକ ଏବଂ ଐତିହାସିକ ଅଧ୍ୟୟନ କରାଯାଇଥାଏ । ଏହି ଆଧାର ଉପରେ କେଉଁ କେଉଁ ଭାଷା କେଉଁ କେଉଁ ପରିବାରର ଅନ୍ତର୍ଭୁକ୍ତ ତାହା ନିରୂପଣ କରାଯାଇଥାଏ । ଫଳରେ ଅର୍ଥ ଏବଂ ଧ୍ୱନି ସମ୍ପର୍କୀୟ ଅନେକ ରହସ୍ୟ ଉନ୍ମୋଚିତ ହୋଇଥାଏ । ତତ୍ତ୍ୱତଃ ଏହା ଭାଷାବିଜ୍ଞାନର ଏକ ସ୍ୱତନ୍ତ୍ର ବିଭାଗ ନହୋଇ ଉପର୍ଯ୍ୟୁକ୍ତ ପ୍ରଧାନ ପାଞ୍ଚଟି ବିଭବର ଆଧାର ଉପରେ ଅଧ୍ୟୟନର ଏକ ପୃଥକ୍ କକ୍ଷ ମାତ୍ର ।

(୩) ଭାଷିକ ଭୂଗୋଳ (Linguistic Geography)—ଭୌଗୋଳିକ ଭିତ୍ତିରେ ଭାଷାର ଅଧ୍ୟୟନକୁ ଭାଷିକ ଭୂଗୋଳ କୁହାଯାଏ । ଏଥିରେ ଆଞ୍ଚଳିକ ଭାଷା, ଉପଭାଷା ଓ ବୋଲିମାନଙ୍କର ବିଚାର କରାଯାଇଥାଏ । ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ କ୍ଷେତ୍ରରେ ଭାଷାରେ ଦେଖା ଦେଉଥିବା ଧ୍ୱନି, ରୂପ, ବାକ୍ୟ, ଅର୍ଥ ଓ ଶବ୍ଦ ଆଦିର ବୈଚିତ୍ର୍ୟକୁ କେନ୍ଦ୍ରକରି ଭାଷାର ଉପଭାଷା ଓ ବୋଲିମାନଙ୍କୁ ବିଭକ୍ତ କରାଯାଏ । ଉଦାହରଣ ସ୍ୱରୂପ—ଉତ୍ତର ଭାରତରେ ଆର୍ଯ୍ୟ ଭାଷା ପରିବାରର କେତୋଟି ଭାଷା ଅଛି ଏବଂ ଏହାର କେତୋଟି ବୋଲି ତଥା ଉପବୋଲି ଅଛି, ଏଗୁଡ଼ିକର ନିଶ୍ଚିତ ସୀମା କ'ଣ ?—ଏ ପ୍ରକାର ଅଧ୍ୟୟନ ହେଉଛି ଭାଷିକ ଭୂଗୋଳର ଅନ୍ତର୍ଗତ । 'ବୋଲି ଭୂଗୋଳ' (Dialect Geography) ହେଉଛି ଭାଷିକ ଭୂଗୋଳର ଏକ ପ୍ରଧାନ ଶାଖା । ଭାଷିକ ଓ ବୋଲି ଭୂଗୋଳ ସାହାଯ୍ୟରେ 'ଭାଷିକ ଭୂଚିତ୍ର' (Linguistic Atlas) ନିର୍ମାଣ କରାଯାଇଥାଏ ।

(୪) ଭାଷାକାଳକ୍ରମ ବିଜ୍ଞାନ (Glottochronology)—ପରିସଂଖ୍ୟାନ (Statistics) ବା ଗଣନା ଶାସ୍ତ୍ରର ଆଧାର ଉପରେ ଅନେକ ବିଜ୍ଞାନରେ

ଅନେକ ବଡ଼ ବଡ଼ ଉପାଦେୟ ନିଷ୍କର୍ଷ ବା ସିଦ୍ଧାନ୍ତର ସୃଷ୍ଟି ହୋଇଅଛି । ଭାଷା ସମ୍ପର୍କରେ ବହୁ ପରିମାଣରେ ଐତିହାସିକ ତଥ୍ୟ ଜାଣିବା ଲାଗି ଏହା ହେଉଛି ଗଣନା-ଶାସ୍ତ୍ର-ଆଧାରିତ ଏକ ବିଶିଷ୍ଟ ପଦ୍ଧତି । ଏ ପର୍ଯ୍ୟନ୍ତ ଏହି ବିଭାଗ ସ୍ଥଳରେ ଅଧିକ ଗବେଷଣା ହୋଇପାରିନାହିଁ । କିନ୍ତୁ ଶବ୍ଦ ସମୂହର ପୁରାତତ୍ତ୍ୱ ଓ ନୂତନତ୍ତ୍ୱ ଜାଣିବା ଦିଗରେ ଏହି ବିଭାଗ ହିଁ ଏକ ଉତ୍କୃଷ୍ଟ ବିଭାଗ । ଏହା ଶବ୍ଦର ଉତ୍ସ, ବିକାଶକ୍ରମ ଓ ପରିବର୍ତ୍ତନର ବୈଚିତ୍ର୍ୟକୁ ଉଦ୍‌ଘାଟନ କରେ ।

(୫) ଭାଷାଭିତ୍ତିକ ପ୍ରାଗୈତିହାସିକ ଅନୁସନ୍ଧାନ (Linguistic Palaeontology) —ଏହି ବିଭାଗରେ ଭାଷାର ଆଧାର ଉପରେ ପ୍ରାଗୈତିହାସିକ କାଳର ସମାଜ, ସଭ୍ୟତା ଓ ସଂସ୍କୃତି ସମ୍ପର୍କରେ ଜ୍ଞାନ ଅର୍ଜନ କରାହୁଏ । ବାସ୍ତବରେ ଆଦିମ ମଣିଷର ସଭ୍ୟତା ସମ୍ପର୍କରେ ଜାଣିବା ପାଇଁ ପ୍ରାମାଣିକ ନିଦର୍ଶନ ନାହିଁ । କିନ୍ତୁ ଭାଷା ହେଉଛି ଏକ ବସ୍ତୁ ଯାହାର ସୃଷ୍ଟି ଓ ବିକାଶ ମଣିଷର ସାଂସ୍କୃତିକ ଇତିହାସ ସମ୍ପର୍କରେ ଏକ ନିର୍ଦ୍ଦିଷ୍ଟ ଓ ପ୍ରାମାଣିକ ଆଭାସ ଦେଇଥାଏ । କିନ୍ତୁ ଏହି ବିଭାଗ ସମ୍ପର୍କରେ ଅଧ୍ୟୟନ ଏପର୍ଯ୍ୟନ୍ତ ତାହାର ଶୈଶବ ଅତିକ୍ରମ କରିନାହିଁ ।

(୬) ଲିପି ବିଜ୍ଞାନ —ଭାଷାର ଲିଖିତ ରୂପ ହେଉଛି ଲିପି । ଲିପି ବିଜ୍ଞାନରେ ଲିପିର ଉତ୍ପତ୍ତି, ବିକାଶ କ୍ରମ ଓ ଉପଯୋଗିତା ସମ୍ପର୍କରେ ବିଚାର କରାଯାଇଥାଏ ।

(୭) ବ୍ୟୁତ୍ପତ୍ତି ବିଜ୍ଞାନ (Etymology) - ଏହା ହେଉଛି ଭାଷା-ବିଜ୍ଞାନର ପ୍ରଥମ ଭିତ୍ତି । ବ୍ୟୁତ୍ପତ୍ତି ବିଜ୍ଞାନରେ ଶବ୍ଦର ପୂର୍ଣ୍ଣାଙ୍ଗ ଜୀବନର ଇତିବୃତ୍ତ, ଏହାର ଅନ୍ତରଙ୍ଗ ଓ ବହିରଙ୍ଗ ରୂପ ଓ କ୍ରମିକ ବିବରଣ ବିଚାର କରାଯାଏ ।

(୮) ଶୈଳୀ ବିଜ୍ଞାନ (Stylitics)—ଗୋଟିଏ ଭାଷା କହୁଥିବା ସମସ୍ତ ବ୍ୟକ୍ତିଙ୍କର ଧ୍ୱନି, ଶବ୍ଦ, ବାକ୍ୟ ରଚନା ପୂର୍ଣ୍ଣତଃ ସମାନ ନୁହେଁ । ଗୋଟିଏ ଭାଷାର ଲେଖକ ତଥା କବିମାନଙ୍କର ଲେଖାରେ ମଧ୍ୟ ଶୈଳୀଗତ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏହି ବ୍ୟକ୍ତିଗତ ଓ ଶୈଳୀଗତ ପାର୍ଥକ୍ୟର କାରଣ ଓ ବିଶେଷତଃ ସମ୍ପର୍କରେ ଅଧ୍ୟୟନ ହେଉଛି ଶୈଳୀ ବିଜ୍ଞାନର ଉପଜୀବ୍ୟ ।

(୯) ସର୍ବେକ୍ଷଣ ପଦ୍ଧତି (Field Method)—କୌଣସି ଏକ ଅଞ୍ଚଳକୁ ଯାଇ ସେହି ଅଞ୍ଚଳରେ ବ୍ୟବହୃତ ଭାଷାର ଶବ୍ଦ, ଧ୍ୱନି ଆଦି ସମ୍ପର୍କରେ ସମସ୍ତ ସ୍ୱାତନ୍ତ୍ର୍ୟ ଓ ତତ୍ତ୍ୱ ସଂଗ୍ରହ କରି ସେହି ଭାଷାର ସ୍ୱରୂପ ଅଧ୍ୟୟନ କରାଗଲେ ତାହାକୁ କୁହାଯାଏ ସର୍ବେକ୍ଷଣ ପଦ୍ଧତିର ଭାଷାବିଜ୍ଞାନ ।

(୧୦) ଭୂ-ଭାଷାବିଜ୍ଞାନ (Geo-Linguistics)—ବିଶ୍ୱରେ ଭାଷାମାନଙ୍କର ବିସ୍ତୃତି; ଏଗୁଡ଼ିକର ରାଜନୈତିକ, ଆର୍ଥିକ, ସାମାଜିକ, ସାଂସ୍କୃତିକ ମହତ୍ତ୍ୱ, ପାରସ୍ପରିକ ଅନ୍ତଃକ୍ରିୟା (Interact) ଇତ୍ୟାଦିର ଆକଳନ ହେଉଛି ଭୂ-ଭାଷାବିଜ୍ଞାନ । ଏହା ଭାଷାବିଜ୍ଞାନର ଏକ ନୂତନ ଶାଖା । ଗୋଟିଏ ଭାଷା ଉପରେ ତାହାର ଭୂଭାଗ ପ୍ରଭାବ ସମ୍ପର୍କରେ ଅଧ୍ୟୟନ କରିବା ଏହାର ମୁଖ୍ୟ ଉପଜୀବ୍ୟ ବିଷୟ ।

ଉପର୍ଯ୍ୟୁକ୍ତ ମୁଖ୍ୟ ଓ ଗୌଣ ବିଭାଗ ଛଡ଼ା ଅନ୍ୟାନ୍ୟ ଦୃଷ୍ଟିରୁ ଅଧୁନା ଅନେକ ଶାଖା ବିଭାଗର ଉଲ୍ଲେଖ କରାଯାଇପାରେ, ଯଥା—ସ୍ୱରବିଜ୍ଞାନ (Tonetics), ଭାଷାବିକାଶ (Linguistic Phylogeny), ବ୍ୟକ୍ତି ବୋଲି-ବିକାଶ ( Linguistic Ontogeny ), ରୂପାନ୍ତରଣ ( Transformation ), ବ୍ୟତିରେକୀ ବିଶ୍ଳେଷଣ (‹Contrastive Analysis ), ବ୍ୟବସ୍ଥିତ ବ୍ୟାକରଣ ( Systemic Grammar ), ଅନୁବନ୍ଧ ବିଜ୍ଞାନ ( Tagmemcis ), ବୋଲି ବିଜ୍ଞାନ, ( Dialectology ), ଭାଷା ପ୍ରକାର ବିଜ୍ଞାନ ( Linguistic Typology ) ଇତ୍ୟାଦି ।

## ଭାଷାବିଜ୍ଞାନର ବିଭିନ୍ନ ବିଭାଗ

**ଭାଷାବିଜ୍ଞାନ ଓ ଭାଷାତତ୍ତ୍ୱ** (Philology and Linguistics)—

ଭାଷା ସମ୍ପର୍କୀୟ ଅଧ୍ୟୟନ କ୍ଷେତ୍ରରେ ଭାଷାବିଜ୍ଞାନ ଓ ଭାଷାତତ୍ତ୍ୱ ସବୁଠାରୁ ଅଧିକ ଲୋକପ୍ରଚଳିତ ହେ । ଏହି ଶବ୍ଦ ଦୁଇଟିର ଏତେଦୂର ଅର୍ଥ ବିସ୍ତାର ହୋଇଯାଇଛି ଯେ ଭାଷା ସମ୍ପର୍କୀୟ ପ୍ରତ୍ୟେକ ଉପବିଭାଗର ଅଧ୍ୟୟନ ଏବଂ ଗବେଷଣା ଏହି ନାମରେ ନାମିତ ହେଉଅଛି । କିନ୍ତୁ ଭାଷାବିଜ୍ଞାନ ଓ ଭାଷାତତ୍ତ୍ୱ—ଏହି ଦୁଇଟି ସେଥିପାଇଁ ଇଂରାଜୀ ପ୍ରତିଶବ୍ଦ ଗ୍ରହଣୀୟ । ଭାଷାବିଜ୍ଞାନର ଇଂରାଜୀ ପ୍ରତିଶବ୍ଦରୂପେ 'Ph·lology'କୁ ଓ ଭାଷାତତ୍ତ୍ୱର ଇଂରାଜୀ ପ୍ରତିଶବ୍ଦରୂପେ 'Linguistics'କୁ ଗ୍ରହଣ କରାଯାଇପାରେ ।

'ଭାଷାବିଜ୍ଞାନ' (Philology) ହେଉଛି ଭାଷାସମ୍ପର୍କରେ ସାଧାରଣ ନିୟମଭିତ୍ତିକ ଜ୍ଞାନ ଓ 'ଭାଷାତତ୍ତ୍ୱ' (Linguistics) ହେଉଛି ଭାଷାସମ୍ପର୍କରେ ବିଶେଷ ବିସ୍ତୃତ ଓ ତାତ୍ତ୍ୱିକ ଜ୍ଞାନ । କିନ୍ତୁ ଉଭୟ ଭିତରେ ଯଥେଷ୍ଟ ସାମ୍ୟ ପରିଲକ୍ଷିତ ହୁଏ । ଅନେକ Philology କହିଲେ ଭାଷାତତ୍ତ୍ୱକୁ ଓ Linguistics କହିଲେ ଭାଷାବିଜ୍ଞାନକୁ ବୁଝିଥାନ୍ତି । 'ତୁଳନାତ୍ମକ ଭାଷାବିଜ୍ଞାନ'ର ଇଂରାଜୀ ପ୍ରତିଶବ୍ଦ ରୂପେ 'Chmparative Philology' ଏବଂ 'Comparative Linguistics'

ଉଭୟଙ୍କୁ ଗ୍ରହଣ କରାଯାଇଅଛି । Philology ଓ Linguistics Comparative Philology ଓ Comparative Linguistics—ଏହି ଶବ୍ଦଗୁଡ଼ିକୁ ସାଧାରଣତଃ ସମାନ ଅର୍ଥରେ ଗ୍ରହଣ କରାଯାଇଥାଏ । କିନ୍ତୁ ଅନେକଭାବରେ ଭାଷାବିଜ୍ଞାନ ଓ ଭାଷାତତ୍ତ୍ୱ ମଧ୍ୟରେ କେତେକ ପାର୍ଥକ୍ୟ ସ୍ୱୀକାର କରାଯାଇଛି । ଅନେକକାରେ Philologyକୁ ଭାଷା ଏବଂ ସାହିତ୍ୟର ମଧ୍ୟବର୍ତ୍ତୀ ସ୍ଥାନ ଦିଆଯାଇଛି, ଅର୍ଥାତ୍ ଲିଖିତ ଭାଷା ସାମଗ୍ରୀର ବ୍ୟାଖ୍ୟା, ବିଶ୍ଳେଷଣ ଓ ଉପଯୋଗକୁ ଭାଷାବିଜ୍ଞାନ (Philology) ରୂପେ ଏବଂ ବାଚିକ ଭାଷାର ଅଧ୍ୟୟନ ଭାଷାତତ୍ତ୍ୱ (Linguistics) ଭାବରେ ଗ୍ରହଣ କରାଯାଇଅଛି ।

## (କ) ତୁଳନାତ୍ମକ ଭାଷାବିଜ୍ଞାନ (Comparative Philology or Comparative Linguistics )—

ଏହା ସାମାନ୍ୟ ଭାଷାବିଜ୍ଞାନର ଏକ ପ୍ରଧାନ ଶାଖା । ଇଂଲଣ୍ଡରେ ଭାଷାବିଜ୍ଞାନ ଓ ତୁଳନାତ୍ମକ ଭାଷାବିଜ୍ଞାନ ମଧ୍ୟରେ କୌଣସି ପାର୍ଥକ୍ୟ ନଥିଲେହେଁ ପ୍ରକୃତରେ ତୁଳନାତ୍ମକ ଭାଷାବିଜ୍ଞାନ ଓ ଭାଷାବିଜ୍ଞାନ ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ତୁଳନାତ୍ମକ ଭାଷାବିଜ୍ଞାନରେ ଏକାଧିକ ବିଭିନ୍ନ ଭାଷାର ସୃଷ୍ଟି, ବିକାଶ ଓ ପ୍ରବୃତ୍ତିର ତୁଳନାତ୍ମକ ଅଧ୍ୟୟନ କରାଯାଇଥାଏ କିମ୍ବା ଗୋଟିଏ ଭାଷାର ବିଭିନ୍ନ ସମୟର ପ୍ରକୃତିକୁ ତୁଳନା କରାଯାଇଥାଏ । କୌଣସି ଭାଷା ଓ ତାହାର ଉପଭାଷା ମଧ୍ୟରେ ଥିବା ସାମଞ୍ଜସ୍ୟ ଓ ଅସାମଞ୍ଜସ୍ୟ ସମ୍ପର୍କରେ ମଧ୍ୟ ଏଥିରେ ତୁଳନାତ୍ମକ ଅଧ୍ୟୟନ କରାଯାଇଥାଏ । ଏଥିରେ ଏକ ଭାଷାର ଦୁଇଟି ବିଭିନ୍ନ ସ୍ତରରେ ବା ବିଭିନ୍ନ ଭାଷାର ଏକ ସ୍ତରର ତୁଳନା କରାଯାଇଥାଏ । ଉଦାହରଣ ସ୍ୱରୂପ ପ୍ରାଚୀନ ଓଡ଼ିଆ ଭାଷା ସହିତ ମଧ୍ୟଯୁଗୀୟ ବା ଆଧୁନିକ ଓଡ଼ିଆ ଭାଷାର ତୁଳନା କରାଯାଇପାରେ କିମ୍ବା କୌଣସି ଗୋଟିଏ କାଳର ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଆସାମୀୟ ପ୍ରଭୃତି ଭାଷାର ତୁଳନା କରାଯାଇପାରେ । ତୁଳନାତ୍ମକ ଭାଷାବିଜ୍ଞାନରେ ବ୍ୟାଖ୍ୟାର ସାହାଯ୍ୟ ନିଆଯାଉଥିବାରୁ ଏହାକୁ କେହି କେହି ବ୍ୟାଖ୍ୟାକାରୀ ବିଜ୍ଞାନ ଭାବରେ ଗ୍ରହଣ କରିଛନ୍ତି ।

ମନୁଷ୍ୟମାନଙ୍କ ପରି ଭାଷାମାନଙ୍କର ଯେ ପରିବାର ଅଛି ଓ ଏହି ପରିବାରର ଅନ୍ତର୍ଭୁକ୍ତ ଭାଷାମାନଙ୍କ ମଧ୍ୟରେ ବହୁ ସୌସାଦୃଶ୍ୟ ରହିଛି, ତାହାର ସନ୍ଧାନ ମିଳେ ତୁଳନାତ୍ମକ ଭାଷାବିଜ୍ଞାନ ଦ୍ୱାରା । ଗ୍ରୀକ୍, ଲାଟିନ୍ ଓ ସଂସ୍କୃତ ଭାଷା ମଧ୍ୟରେ ଯେ ଏହିପରି ଘନିଷ୍ଠ ସମ୍ପର୍କ ରହିଛି ତାହା ତୁଳନାତ୍ମକ ଭାଷାବିଜ୍ଞାନ ଦ୍ୱାରା ଜଣାଯାଇଥିଲା । ସାର୍ ଉଇଲିୟମ ଜୋନ୍ସ ସଂସ୍କୃତ ଭାଷା ସହିତ ବହୁ ଭାଷାର ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ପ୍ରତିପାଦନ କରିଥିଲେ ଯେ ସଂସ୍କୃତ ହେଉଛି ପୃଥିବୀର ପ୍ରାଚୀନତମ ଭାଷା । ଅତଏବ ହିବ୍ରୁ ଭାଷା ପୃଥିବୀର ପ୍ରାଚୀନତମ ଭାଷା ବୋଲି ଯେଉଁ ଭ୍ରାନ୍ତ ଧାରଣା ଚାଲିଆସିଥିଲା, ତାହା ତୁଳନାତ୍ମକ ଭାଷାବିଜ୍ଞାନ ଦ୍ୱାରା ଦୂରୀଭୂତ ହେଲା ।

Comparative Philology ଯେତି ଏତେ ଲୋକପ୍ରିୟ ଯେ ଆମେରିକାରେ ମଧ୍ୟ କେତେକ ଭାଷାବିଜ୍ଞାନ କେବଳ Comparative Philology ବିଷୟ ଭାବରେ ଅବହିତ ହୋଇଅଛି । ଗ୍ରିମ୍, ଭର୍ଣ୍ଣର, ବ୍ରୁମାନ୍, ଡେଲବ୍ରୁକ୍, ସାର୍ ଉଇଲିୟମ୍ ଜୋନ୍ସ ପ୍ରଭୃତି ତୁଳନାତ୍ମକ ଭାଷାବିଜ୍ଞାନର ପ୍ରସିଦ୍ଧ ଗବେଷକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି ।

Comparative Philology ଏତେ ପ୍ରିୟ ହେଉ; କିନ୍ତୁ ଆଧୁନିକ ଯୁଗରେ Linguistics ଏତେ ଉନ୍ନତ କଲାଣି ଯେ ତାହା ଆଗରେ Comparative Philology ପୁରୁଣା ବୋଲି ମନେହେଉଛି ।

## (ଖ) ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ (Descriptive Philology or Descriptive Linguistics)—

ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ସାଂପ୍ରତିକ କାଳରେ ସର୍ବାଧିକ ଜନପ୍ରିୟ ଭାଷାବିଦ୍ୟାର ବିଭାଗ । ଏଥିରେ ଭାଷାର ବାହ୍ୟ ରୂପ ଓ ନିର୍ମାଣ ପଦ୍ଧତି ଉପରେ ସୂକ୍ଷ୍ମାତିସୂକ୍ଷ୍ମ ଅଧ୍ୟୟନ କରାଯାଇଥାଏ । ଆମେରିକାରେ Linguistics କହିଲେ ମୁଖ୍ୟତଃ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ (Descriptive Linguistics)କୁ ବୁଝିଥାନ୍ତି । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ଅର୍ଥ—ବସ୍ତୁର ସମ୍ପୃକ୍ତ ନୁହେଁ, ଶବ୍ଦ ଗଠନ ସହିତ ସମ୍ପୃକ୍ତ । ଶବ୍ଦ କିପରି ହେବା ଉଚିତ ଏଥିରେ ବିଚାର କରାଯାଏ ନାହିଁ, ଯେତି କିପରି ଅଛି, ତାହାହିଁ ଦେଖିବା ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର କାର୍ଯ୍ୟ । ଏହା ଆଦର୍ଶ ଉପରେ ପ୍ରାଧାନ୍ୟ ନଦେଇ ବାସ୍ତବ ଉପରେ ପ୍ରାଧାନ୍ୟ ଦିଏ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ଭାଷାର ଲିଖିତ ରୂପ ଉପରେ ପ୍ରାଧାନ୍ୟ ନଦେଇ ଉଚ୍ଚାରିତ ରୂପ ଉପରେ ଅଧିକ ପ୍ରାଧାନ୍ୟ ଦିଏ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ଅନୁଯାୟୀ ଭାଷାର ଲିଖିତ ରୂପ ଅନିର୍ଦ୍ଦିଷ୍ଟ ଓ ମୃତ; କିନ୍ତୁ ଉଚ୍ଚାରିତ ରୂପ ଚିର ଜୀବନ୍ତ । କିନ୍ତୁ ଏ ବିଷୟରେ ମତଦ୍ୱୈଧ ଲକ୍ଷ୍ୟ କରାଯାଏ । ଡାନିଏଲ୍ ଜୋନ୍ସଙ୍କ ମତରେ ଭାଷାର ଲିଖିତ ରୂପ ଯଦିଚ ମୃତ, ତଥାପି ନିର୍ଦ୍ଦିଷ୍ଟ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ଅବ୍ୟବହିତ ଧ୍ୱନିରୁ ହିଁ ତାହାର କାର୍ଯ୍ୟ ଆରମ୍ଭ କରେ ; ଏକ ନିର୍ଦ୍ଦିଷ୍ଟ ଧ୍ୱନିକୁ ବହୁ ବ୍ୟକ୍ତିଠାରୁ ବହୁ ଭାବରେ ଶୁଣେ, ବହୁବାର ପରୀକ୍ଷା କରେ ଏବଂ ତାହାର ଧର୍ମ, କର୍ମ ଓ ଲକ୍ଷଣ ବୁଝିବାକୁ ଚେଷ୍ଟାକରେ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନ ପାଇଁ ଅନେକ ଯନ୍ତ୍ରର ସାହାଯ୍ୟ ଦରକାର ହୁଏ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନକୁ ସ୍ଥୂଳ-ଭାବରେ ବିଭକ୍ତ କରାଯାଇପାରେ—(କ) ଧ୍ୱନିବିଜ୍ଞାନ (ଖ) ଧ୍ୱନିଗ୍ରାମବିଜ୍ଞାନ (ଗ) ପଦବିଜ୍ଞାନ (ଘ) ବାକ୍ୟବିଜ୍ଞାନ ।

ଭାଷାର ମୁଖ୍ୟତଃ ଦୁଇଟି ବିଭାଗ ଅଛି; ଯଥା—ଅର୍ଥ ଓ ଅଭିବ୍ୟକ୍ତି ପ୍ରଣାଳୀ । ଉଦାହରଣ ସ୍ୱରୂପ 'ଜିନିଷ' ଶବ୍ଦକୁ ନିଆଯାଉ । ଏହି ଶବ୍ଦର ଅର୍ଥ ହେଲା ପଦାର୍ଥ ।

ଏହାର ଅର୍ଥ ସମସ୍ତଙ୍କୁ ଜଣା । କିନ୍ତୁ ଧ୍ୱନିତତ୍ତ୍ୱ ଦୃଷ୍ଟିରୁ ଏହା କ୍ + ଇ + ନ୍ + େ + ଷ୍ + ଅ ଅର୍ଥାତ୍ କେତେକ ବ୍ୟଞ୍ଜନ ଓ ସ୍ୱରଧ୍ୱନିର ସମାହାର; ଧ୍ୱନିତାତ୍ତ୍ୱିକ ଭାଷାରେ କହିବାକୁ ଗଲେ 'କିନେଷ' ହେଉଛି ଯଥାକ୍ରମେ ତାଳବ୍ୟ, ଦନ୍ତ୍ୟ ଅନୁନାସିକ ଓ ମୂର୍ଦ୍ଧନ୍ୟ ସଘର୍ଷୀର ଓ କେତେକ ସ୍ୱରଧ୍ୱନିର ସମବାୟ । ବର୍ଣ୍ଣନାତ୍ମକ ଭାଷାବିଜ୍ଞାନବିତ୍ ବିଶ୍ଳେଷଣ କରି ଦେଖନ୍ତି, ଯାହା ଅନ୍ୟମାନଙ୍କ ପକ୍ଷରେ ଉତ୍ପ୍ରେତଃ ବିକ୍ଷିପ୍ତ ଧ୍ୱନି ପରି ଜଣାଯାଉଛି, ତାହା ଇତସ୍ତତଃ ବିକ୍ଷିପ୍ତ ଧ୍ୱନି ନୁହନ୍ତି । ସେହି ସମସ୍ତ ଧ୍ୱନି ଭିତରେ ଏପରି ଏକ ନିୟମ ରହିଛି, ଯାହାର ବ୍ୟତିକ୍ରମ କରାଗଲେ ଭାଷା ଅବୋଧ ହୋଇପଡ଼ିବ । ଏହି ନିୟମ ବା ଶୃଙ୍ଖଳା ବା ପଦ୍ଧତିର ବର୍ଣ୍ଣନାହିଁ ବର୍ଣ୍ଣନାତ୍ମକ ଭାଷାବିତ୍‌ର କାମ । ଧରାଯାଉ ଜଣେ ଓଡ଼ିଆ ଭାଷା ଜାଣନ୍ତି ନାହିଁ; ଅଥଚ ତାଙ୍କୁ ଓଡ଼ିଆ ଭାଷା ବିଶ୍ଳେଷଣ କରିବାକୁ ହେବ । ପ୍ରଥମେ ତାଙ୍କୁ ଜଣେ ଓଡ଼ିଆଭାଷୀଠାରୁ ବା ଓଡ଼ିଆ ରେକର୍ଡ଼ରୁ ବାରମ୍ବାର ଓଡ଼ିଆ ଭାଷା ଶୁଣିବାକୁ ହେବ । ଶୁଣି ଶୁଣି ସେ ଏପରି ଏକ ଅବସ୍ଥାରେ ପହଞ୍ଚିବେ, ଯେତେବେଳେ ସେ ସ୍ଥିର କରିପାରିବେ ଯେ, ଓଡ଼ିଆ ଭାଷାରେ କେତେକ ଧ୍ୱନି ଅଛି ଯାହାକୁ ଅ, ଇ, କ୍, ନ୍, ଷ, ପ୍ରଭୃତି ଚିହ୍ନ ଦ୍ୱାରା ସଙ୍କେତିତ କରାଯାଇପାରେ । କେବଳ ସେତିକି ନୁହେଁ, ସେ ଲକ୍ଷ୍ୟ କରିବେ ଯେ, ଏହି ସଙ୍କେତଗୁଡ଼ିକ କେତେକ ନିୟମ ଅନୁସାରେ ଭାଷାରେ ସଜାଇ ହୋଇ ରହିଛନ୍ତି । କେତେକ ସ୍ଥଳରେ ସେମାନେ ଯେଉଁ ଦଳରେ ରହିପାରୁଛନ୍ତି, ଅନ୍ୟ ସ୍ଥଳରେ ସେପରି ଦଳରେ ରହିପାରୁନାହାନ୍ତି । ଉଦାହରଣ ସ୍ୱରୂପ ସେ ଦେଖିବେ ଯେ, କନ, ଆନ, କଲ, ଅଲ ପ୍ରଭୃତି କେତେକ ଧ୍ୱନି ଓଡ଼ିଆ ଭାଷାରେ ଶୁଣାଯାଉଛି । ମାତ୍ର ନଆ, ଲଅ, ଲକ, ଲନ ପ୍ରଭୃତି କେତେକ ଧ୍ୱନି ସମଷ୍ଟି ଦକ୍ଷ ସ୍ଥଳକୁ ଛାଡ଼ିଦେଲେ ଅନ୍ୟତ୍ର ଶୁଣାଯାଉନାହିଁ । ପୁଣି ସେ ଲକ୍ଷ୍ୟ କରିପାରିବେ, ସେମାନେ ଭିନ୍ନ ଭିନ୍ନ ସମଷ୍ଟିରେ ଭିନ୍ନ ଭିନ୍ନ ଧ୍ୱନି ସହିତ ମିଶି ଅନେକ ଅନେକ ନୂଆ ଶବ୍ଦ ସୃଷ୍ଟି କରିପାରୁଛନ୍ତି । ଉଦାହରଣ ସ୍ୱରୂପ କଲ, କାଲ, କଳ, କଲକ ପ୍ରଭୃତି ଶବ୍ଦ ଗଢ଼ାଯାଇପାରୁଛି । ଏହି ସେଗୁଡ଼ିକରେ ଧ୍ୱନିମାନଙ୍କର ସନ୍ନିବେଶ ପାଇଁ କେତେକ ବାଧ୍ୟବାଧକ ସ୍ଥାନ ରହିଛି । ପୁଣି ଏହି ଶବ୍ଦଗୁଡ଼ିକୁ ନେଇ ବାକ୍ୟ ଗଠନ କଲାବେଳେ ସେମାନଙ୍କର ବିନ୍ୟାସ ପାଇଁ କେତେକ ନିର୍ଦ୍ଦିଷ୍ଟ ବିଧି ରହିଛି । ଉଦାହରଣ ସ୍ୱରୂପ, "ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର ସତ୍ୟ ଯୁଗର ଏକ ଚୂଡ଼ାନ୍ତ ସୃଷ୍ଟି" ପରି ବାକ୍ୟ ଶୁଣାଯାଉଛି । କିନ୍ତୁ "ଏକ ଯୁଗର ପ୍ରବନ୍ଧ ସତ୍ୟ ସୃଷ୍ଟି ଚୂଡ଼ାନ୍ତ ପୂର୍ଣ୍ଣଚନ୍ଦ୍ର" ବାକ୍ୟ ପରି ଶୁଣାଯାଉନାହିଁ । ଏହିପରି ଭାଷାର ଗଠନ ପ୍ରଣାଳୀର ବିଶ୍ଳେଷଣ ହେଉଛି ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର କାର୍ଯ୍ୟ ।

ଏ ପ୍ରକାର ବିଶ୍ଳେଷଣ ବା ବର୍ଣ୍ଣନା ପାଇଁ ଯନ୍ତ୍ରପାତିର ଆବଶ୍ୟକତା ରହିଛି । କଥା କହିଲାବେଳେ ଜିହ୍ୱା କେତେ ପରିମାଣରେ ଡୋହଲୁଛି, ମୁଖନିଃସୃତ ଧ୍ୱନି କେତେ ପରିମାଣରେ କମ୍ପିତ ହେଉଛି, ତାହାକୁ ମାପିବା ପାଇଁ ଯନ୍ତ୍ର

ଆବଶ୍ୟକ । ଏହି ଯନ୍ତ୍ରର ସାହାଯ୍ୟ ନେଇ ଧ୍ୱନିକୁ ଚିତ୍ରରେ, ଚିତ୍ରକୁ ପୁଣି ଧ୍ୱନିରେ ପରିଣତ କରିବାର ଚେଷ୍ଟା ହୋଇଥାଏ । ଅତୀବ ଆନନ୍ଦର କଥା ପୃଥିବୀର ଭାଷା-ମାନଙ୍କ ମଧ୍ୟରେ ସଂସ୍କୃତ ଭାଷାରେ ହିଁ ପ୍ରଥମ ବର୍ଣ୍ଣନାତ୍ମକ ଅଧ୍ୟୟନ ହୋଇଛି ଓ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ପ୍ରଥମ ପ୍ରତିଷ୍ଠାତା ହେଉଛନ୍ତି ପାଣିନି । ପାଣିନିଙ୍କ ଅଷ୍ଟାଧ୍ୟାୟୀ ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ପ୍ରଥମ ଫଳଶ୍ରୁତି ।

(ଗ) ଐତିହାସିକ ଭାଷାବିଜ୍ଞାନ (Historical Linguistics)—

କୌଣସି ଭାଷାର ବିଭିନ୍ନ କାଳରେ ପ୍ରାକୃତିକ ପରିବର୍ତ୍ତନ, ଗତି ଓ ବିକାଶ ବିଶ୍ଳେଷଣାତ୍ମକ ଅଧ୍ୟୟନ ହେଉଛି ଐତିହାସିକ ଭାଷାବିଜ୍ଞାନ । ଏଥିରେ ଭାଷାର ସମ୍ପୂର୍ଣ୍ଣ ଜୀବନ ଇତିହାସ ବିଚାର କରାଯାଇଥାଏ । ପ୍ରଥମେ କୌଣସି ଭାଷା ପରିବାରର ମୂଳ ଭାଷାକୁ ଅଧ୍ୟୟନର ସାମଗ୍ରୀ ରୂପେ ଗ୍ରହଣ କରାଯାଇ ବିଭିନ୍ନ ଅବସ୍ଥାରେ, ବିଭିନ୍ନ ସ୍ଥାନରେ ଓ ବିଭିନ୍ନ କାଳରେ ତାହାର କିପରି ବିକାଶ ହୋଇଅଛି, ସେ ବିଷୟରେ ଅନୁସନ୍ଧାନ କରାଯାଇଥାଏ । ଏକ ଭାଷା ପରିବାରର ବିଭିନ୍ନ ଶାଖା ଭାଷାମାନଙ୍କର ବିବରଣୀ ପ୍ରସ୍ତୁତ କଲାବେଳେ ସେମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ଓ ସେମାନଙ୍କ ଉତ୍ପତ୍ତି କ୍ରମର ପୁଙ୍ଖାନୁପୁଙ୍ଖ ଇତିହାସ ଅନୁଶୀଳନ କରାଯାଏ । ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାମାନଙ୍କର ଅଧ୍ୟୟନ ବେଳେ ସେଗୁଡ଼ିକର ଲାକ୍ଷଣିକ ସାମ୍ୟ-ବୈଷମ୍ୟ, ସମକାଳୀନ ରୂପ ଓ ମଧ୍ୟ ଭାରତୀୟ ଆର୍ଯ୍ୟଭାଷାରୁ ସେଗୁଡ଼ିକର ଉତ୍ପତ୍ତିକ୍ରମ ଅନୁସନ୍ଧାନ କରିବା ଆବଶ୍ୟକ । ମଧ୍ୟଭାରତୀୟ ଆର୍ଯ୍ୟଭାଷା କିପରି ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷାରୁ ଓ ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷା କିପରି ଇଣ୍ଡୋ-ୟୁରୋପୀୟ ମୂଳଭାଷାରୁ ଉତ୍ପତ୍ତି ଲାଭ କରିଛି ତାହାର ଐତିହାସିକ ଅଧ୍ୟୟନ ମଧ୍ୟ ଆବଶ୍ୟକ । ଦେ. ଦୋସୀଙ୍କ ମତରେ ଐତିହାସିକ ଭାଷାବିଜ୍ଞାନରେ ଭାଷାର ସମକାଳୀନ ଅଧ୍ୟୟନ ସହିତ ଐତିହାସିକ ଅଧ୍ୟୟନ ଆବଶ୍ୟକ ହୋଇଥାଏ । ଗୋଟିଏ ମୂଳଭାଷାରୁ ବିଭିନ୍ନ ସମୟରେ ଓ ବିଭିନ୍ନ ଅବସ୍ଥାରେ ସୃଷ୍ଟିଲାଭ କରିଥିବା ଶାଖା ଭାଷାଗୁଡ଼ିକର ସୃଷ୍ଟି ଇତିହାସ ଅଧ୍ୟୟନ କାଳରେ ଧ୍ୱନି ପରିବର୍ତ୍ତନ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଏ । ଏହି ଶାଖା ଭାଷାଗୁଡ଼ିକ ମଧ୍ୟରେ ଥିବା ଧ୍ୱନି ସାମ୍ୟ ଉପରେ ବିଶେଷ ଧ୍ୟାନ ଦିଆଯାଏ । ଯଥା—ଇଣ୍ଡୋୟୁରୋପୀୟ ପେଦୋମ୍> ସଂସ୍କୃତ ପଦମ୍, ଗ୍ରୀକ୍ ପେଦୋନ୍, ହିଟାଇଟ୍ ପେଦନ୍ । ଇଣ୍ଡୋୟୁରୋପୀୟ ଭେନ୍ଦ୍> ସଂସ୍କୃତ ବନ୍ଧ୍, ଗ୍ରୀକ୍ ପେନ୍ଥ୍, ଇଂରାଜୀ ବାଇନ୍ଦ୍ । ଇଣ୍ଡୋୟୁରୋପୀୟ ଘଂ>ସଂସ୍କୃତ ହଂସ, ଜର୍ମାନ୍ ଗୁଜ୍ । ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭକ୍ତ>ମଧ୍ୟ ଭାରତୀୟ ଆର୍ଯ୍ୟ ଭତ୍ତ >ନବୀନ ଭାରତୀୟ ଆର୍ଯ୍ୟ ଭାତ । ପ୍ରାଚୀନ ଭାରତୀୟ ଆର୍ଯ୍ୟ କର୍ମ>ମଧ୍ୟ ଭାରତୀୟ ଆର୍ଯ୍ୟ କମ୍ମ>ନବୀନ ଭାରତୀୟ ଆର୍ଯ୍ୟ କାମ ।

ରୂପ ପରିବର୍ତ୍ତନ ଓ ଅର୍ଥ ପରିବର୍ତ୍ତନ ମଧ୍ୟ ଐତିହାସିକ ଭାଷା ବିଜ୍ଞାନର ଅଧିତବ୍ୟ ବିଷୟ । ପ୍ରତ୍ୟୟ, ବିଭକ୍ତି, ସମାସ ପ୍ରଭୃତିର ଅଧ୍ୟୟନ ମଧ୍ୟ ଏହାର ଏକ ଏକ

ଅବଲମ୍ବନ । ଭାଷାର କେବଳ ପାରିବାରିକ ବର୍ଗୀକରଣ ନୁହେଁ ଅକୃତିଗତ ବର୍ଗୀକରଣ ମଧ୍ୟ ଏଥିରେ ବର୍ଣ୍ଣ୍ୟ ।

ବର୍ଣ୍ଣନାତ୍ମକ ଭାଷାବିଜ୍ଞାନର ମୁଖ୍ୟ ଆଧାର ହେଉଛି ମୌଖିକ ଧ୍ୱନି; କିନ୍ତୁ ଐତିହାସିକ ଭାଷାବିଜ୍ଞାନର ମୁଖ୍ୟ ଆଧାର ହେଉଛି ଲିଖିତ ଉପାଦାନ, ଉପକରଣ ଓ ରେକର୍ଡ୍ । ଭାଷା-ଭାଷୀମାନଙ୍କର ସାଂସ୍କୃତିକ ଓ ସାମାଜିକ ଜୀବନ ପଦ୍ଧତି ସହିତ ଭାଷାର ବିକାଶ କିପରି ଘନିଷ୍ଠ ଭାବରେ ସମ୍ପୃକ୍ତ, ଐତିହାସିକ ଭାଷାବିଜ୍ଞାନ ତାହାର ଆବିଷ୍କାର କରେ । ଏଥିରେ ଉପଲବ୍ଧ ଉପାଦାନଗୁଡ଼ିକର ମୂଲ୍ୟାୟନ ପାଇଁ ତୁଳନାତ୍ମକ ଭାଷାବିଜ୍ଞାନର ସାହାଯ୍ୟ ନିଆଯାଇଥାଏ । ତେଣୁ ଐତିହାସିକ ଓ ତୁଳନାତ୍ମକ ଭାଷାବିଜ୍ଞାନ ମଧ୍ୟରେ ନିବିଡ଼ ସମ୍ପର୍କ ରହିଛି ।

## (ଘ) ସଂରଚନାତ୍ମକ ଭାଷାବିଜ୍ଞାନ (Glossematics)—

ଏହାକୁ ବ୍ୟବସ୍ଥାତ୍ମକ ଭାଷାବିଜ୍ଞାନ ମଧ୍ୟ କୁହାଯାଇପାରେ । ଭାଷାର ସଂଜ୍ଞା ସମ୍ପର୍କରେ ଆଲୋଚନା କଲାବେଳେ ଆମର 'ଧ୍ୱନି ପ୍ରତୀକମାନଙ୍କର ଏକ ବ୍ୟବସ୍ଥା' କଥାଟି ମନେପଡ଼େ । କେବଳ ଧ୍ୱନି ନୁହେଁ; ରୂପ, ଅର୍ଥ ଓ ବାକ୍ୟମାନଙ୍କର ବ୍ୟବସ୍ଥା ମଧ୍ୟ ଭାଷାର ସୃଷ୍ଟି ପାଇଁ ସହାୟକ । ଭାଷାର ସାର୍ଥକତା କେବଳ ଧ୍ୱନି, ରୂପ, ଅର୍ଥ ପ୍ରଭୃତିରେ ନିହିତ ନଥାଏ । ଅଭିବ୍ୟକ୍ତି ଓ ଅର୍ଥ ମଧ୍ୟରେ କୌଣସି ବିଭାଜକ ରେଖା ରହିନପାରେ । ଅଭିବ୍ୟକ୍ତିଠାରୁ ଅର୍ଥ ଉପଲବ୍ଧି ପର୍ଯ୍ୟନ୍ତ ଏକ ନିରବଚ୍ଛିନ୍ନ ପ୍ରସ୍ବାଦ-ପ୍ରକ୍ରିୟା ଚାଲିଥାଏ । ଏହି ପ୍ରସ୍ବାଦ-ପ୍ରକ୍ରିୟା ମଧ୍ୟରେ ଅଭିବ୍ୟକ୍ତିର ବିଭିନ୍ନ ଉପାଦାନ ହେଉଛି ଧ୍ୱନି, ରୂପ, ଅର୍ଥ ପ୍ରଭୃତିର ଶୃଙ୍ଖଳା ବା ବ୍ୟବସ୍ଥା । ଏହି ଶୃଙ୍ଖଳା ବା ବ୍ୟବସ୍ଥାହିଁ ଭାଷା ସୃଷ୍ଟି ପାଇଁ ଅପରିହାର୍ଯ୍ୟ ଅବଲମ୍ବନ । ଏହି ଶୃଙ୍ଖଳା ବା ବ୍ୟବସ୍ଥା ହେଉଛି ସଂରଚନା । ସଂରଚନା ଭିତ୍ତି ଉପରେ ପ୍ରତିଷ୍ଠିତ ଭାଷାବିଜ୍ଞାନକୁ ଭାଷାବିତ୍ ହେଲମ୍ସ୍ଲେଭ୍ କହିଛନ୍ତି ଗ୍ଲୋସେମେଟିକ୍ସ ବା ସଂରଚନାତ୍ମକ ଭାଷାବିଜ୍ଞାନ । ଏ କ୍ଷେତ୍ରରେ ଅଗଷ୍ଟଟଲ୍ ହେଉଛନ୍ତି ପ୍ରଥମ ଭାଷା-ବୈଜ୍ଞାନିକ ।

ଏହି ବିଭାଗରେ ଭାଷାର କେବଳ ସ୍ୱରୂପ ଆଲୋଚିତ ହୁଏ ନାହିଁ, ଏହି ସ୍ୱରୂପ ଗଠନ ପାଇଁ ଯେଉଁସବୁ ସଂରଚନାର ପ୍ରୟୋଜନ ହୋଇଥାଏ, ତାହାର ମଧ୍ୟ ବିଶ୍ଳେଷଣ ହୋଇଥାଏ । ବର୍ଣ୍ଣନାତ୍ମକ, ଐତିହାସିକ ଓ ତୁଳନାତ୍ମକ ଭାଷାବିଜ୍ଞାନ ସହିତ ମଧ୍ୟ ଏହାର ସମ୍ପର୍କ ରହିଛି । ଏହାର କାର୍ଯ୍ୟ ସହିତ ବ୍ୟାକରଣ କାର୍ଯ୍ୟ ପ୍ରାୟ ସମାନ ବୋଲି କେହି କେହି ମତ ଦେଇଥାନ୍ତି । ତେବେ ବ୍ୟାକରଣ ସହିତ ଏହା ସବୁ କ୍ଷେତ୍ରରେ ସମାନ ନୁହେଁ । ବ୍ୟାକରଣ ପରି ଏହା ରକ୍ଷଣଶୀଳ ନୁହେଁ । ବ୍ୟାକରଣ ଭାଷାର କେବଳ ନିର୍ଦ୍ଦିଷ୍ଟ ରୂପକୁ ଗ୍ରହଣ କଲାବେଳେ ସଂରଚନାତ୍ମକ ଭାଷାବିଜ୍ଞାନ ମୌଖିକ ରୂପ ଉପରେ ପ୍ରାଧାନ୍ୟ ଆରୋପ କରେ । ଧ୍ୱନି ବିଜ୍ଞାନ ଓ ଅର୍ଥ ବିଜ୍ଞାନ ସହିତ ମଧ୍ୟ ଏହାର ଘନିଷ୍ଠ ସମ୍ପର୍କ ରହିଛି ।

### (ଙ) ସମାଜ ଭାଷାବିଜ୍ଞାନ (Socio Linguistics)

ଏଥିରେ ସମାଜ ଓ ଭାଷାର ସମ୍ବନ୍ଧ, ବିଭିନ୍ନ ସାମାଜିକ ସ୍ତର ଦ୍ୱାରା ବ୍ୟବହୃତ ଭାଷାର ଧ୍ୱନି, ଶବ୍ଦ, ରୂପ, ଅର୍ଥବାକ୍ୟ ଆଦିର ବୈଶିଷ୍ଟ୍ୟ ସମ୍ପର୍କରେ ଅଧ୍ୟୟନ କରାଯାଇଥାଏ । ଭାଷା ଅତ୍ୟନ୍ତ ଏକ ସାମାଜିକ ବସ୍ତୁ । କୌଣସି ଏକ ସମାଜର ମଣିଷମାନଙ୍କର ଚିନ୍ତାଧାରାର ପାରସ୍ପରିକ ବିନିମୟ ପାଇଁ ହିଁ ଭାଷାର ସୃଷ୍ଟି । ମଣିଷ ସମାଜରେ ବଢ଼େ ଓ ସମାଜରୁ ଭାଷା ଅର୍ଜନ କରେ । ସାମାଜିକ ବ୍ୟବସ୍ଥା ଓ ସାଂସ୍କୃତିକ ଅବସ୍ଥା ସହିତ ଭାଷାର ସ୍ଥିତି, ଗତି, ବିକାଶ ଓ ପ୍ରବୃତ୍ତି ନିର୍ଭର କରେ । ତେଣୁ ସାମାଜିକ ସମସ୍ୟା ଓ ଭାଷାତାତ୍ତ୍ୱିକ ସମସ୍ୟା ପରସ୍ପର ସମ୍ବନ୍ଧଶୀଳ । କେହି କେହି ଭାଷାବିଜ୍ଞାନକୁ ସମାଜ ବିଜ୍ଞାନର ଏକ ବିଭାଗ ରୂପେ ଗ୍ରହଣ କରିଥାନ୍ତି । ଅନ୍ୟ ପକ୍ଷରେ କେତେକ ଭାଷାବିତ୍ ସମାଜ ବିଜ୍ଞାନକୁ ଭାଷାବିଜ୍ଞାନର ଏକ ବିଶିଷ୍ଟ ବିଭାଗ ରୂପେ ଗ୍ରହଣ କରିଥାନ୍ତି । ସମାଜ ବିଜ୍ଞାନକୁ ଭିତ୍ତିକରି ଏହି ଭାଷାବିଜ୍ଞାନର ସୃଷ୍ଟି ଓ ବିକାଶ ।

### (ଚ) ମନୋଭାଷାବିଜ୍ଞାନ (Psycho Linguistics) –

ଭାଷାର ସୃଷ୍ଟି ମୂଳରେ ରହିଛି ମଣିଷର ଚିନ୍ତାଶକ୍ତି । ଏହି ଚିନ୍ତାଶକ୍ତିର ମୂଳ ଉତ୍ସ ହେଉଛି ମନ । ଅଭିବ୍ୟକ୍ତିର ଆରମ୍ଭ ଚିନ୍ତାଶକ୍ତିରୁ ଉପଲବ୍ଧି ପାଇଁ ମଧ୍ୟ ଚିନ୍ତାଶକ୍ତି ଅପରିହାର୍ଯ୍ୟ । ଭାଷାକୁ ଏକ ମନୋବୈଜ୍ଞାନିକ ବ୍ୟବସ୍ଥା ବୋଲି କହିଲେ ମଧ୍ୟ ଭୁଲ ହେବ ନାହିଁ । ଭାଷା ସମ୍ପ୍ରସାରଣ ପାଇଁ ଦୁଇଟି ଆଧାର ଆବଶ୍ୟକ । ଗୋଟିଏ ମନୋବୈଜ୍ଞାନିକ, ଅନ୍ୟଟି ଭୌତିକ । ବକ୍ତା କହିବା ପୂର୍ବରୁ ଓ ଶ୍ରୋତା ଶୁଣିବା ପରେ ମନୋବୈଜ୍ଞାନିକ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଏହି ଦୁଇ କାର୍ଯ୍ୟର ମଧ୍ୟବର୍ତ୍ତୀ କ୍ରିୟା ହେଉଛି ଭୌତିକ କ୍ରିୟା । ଠିକ୍ ଭାବରେ ଅନୁଶୀଳନ କଲେ ଜଣାଯିବ ଭାଷାର ଆରମ୍ଭ ମନରୁ ଓ ପରିସମାପ୍ତି ମନରେ । ତେଣୁ ମଣିଷର ମନସ୍ତତ୍ତ୍ୱ ଅଧ୍ୟୟନ ପାଇଁ ଭାଷା ଏକ ବିଶିଷ୍ଟ ମାଧ୍ୟମ ।

ମନୋବିଜ୍ଞାନରେ ବକ୍ତାର ଉଚ୍ଚାରଣ ଭଙ୍ଗୀ, ଶବ୍ଦ ପ୍ରୟୋଗ ଓ ବାକ୍ୟଗଠନ ପଦ୍ଧତି ଇତ୍ୟାଦିକୁ ଭିତ୍ତିକରି ତାହାର ବ୍ୟକ୍ତିତ୍ୱ, ଚରିତ୍ର, ରୁଚି ଓ ମନୋଭାବର ଆବିଷ୍କାର କରାଯାଏ ।

## ଭାଷାବିଜ୍ଞାନ ଅଧ୍ୟୟନର ପ୍ରୟୋଜନୀୟତା

ଭାଷାବିଜ୍ଞାନ ଅଧ୍ୟୟନ ଏକ କଷ୍ଟକର ବ୍ୟାପାର ହେଲେହେଁ ଏଥିରେ ଏକ ଅବ୍ୟକ୍ତ ଆନନ୍ଦ ରହିଛି । ଭାଷାବିଜ୍ଞାନ ଜଣେ ବିଦ୍ୱାନ୍ ପାଇଁ ଯଥେଷ୍ଟ ପ୍ରୟୋଜନୀୟ । କେତୋଟି ମୁଖ୍ୟ ପ୍ରୟୋଜନ ସମ୍ପର୍କରେ ଏଠାରେ ସଂକ୍ଷେପରେ ବିଚାର କରାଯାଇପାରେ—

(କ) ନିଜର ତଥା ପରିଚିତ ଭାଷା ସମ୍ପର୍କରେ ଜାଗୃଥିବା ଜିଜ୍ଞାସାର ପରିତୃପ୍ତି ସାଧିତ ହୁଏ । (ଖ) ପ୍ରାଚୀନ ତଥା ପ୍ରାଗୈତିହାସିକ ସଂସ୍କୃତିର ସନ୍ଧାନ ମିଳେ । (ଗ) କୌଣସି ଜାତି ବା ମନୁଷ୍ୟର ମାନସିକ ବିକାଶ ସମ୍ପର୍କରେ ଜ୍ଞାନ ଲାଭ ହୁଏ । (ଘ) ପ୍ରାଚୀନ ସାହିତ୍ୟର ଅର୍ଥ, ଭାଷାର ଉଚ୍ଚାରଣ ତଥା ପ୍ରୟୋଗ ସମ୍ବନ୍ଧରେ ଜାଗୃଥିବା ସମସ୍ୟାର ସମାଧାନ ହୁଏ । (ଙ) ମାତୃଭାଷା ତଥା ବିଦେଶୀ ଭାଷା ଶିଖିବା ଶୀଘ୍ର ଓ ସରଳ ହୋଇଯାଏ । (ଚ) ସଠିକ ଅନୁବାଦ କରିବାରେ ସୁବିଧା ହୁଏ । (ଛ) ଭାଷା ଓ ଲିପି ଅତର ସବଳତା, ଶୁଦ୍ଧତା ଆଦି ସଂପାଦନ ପାଇଁ ଜ୍ଞାନାର୍ଜନ ହୁଏ । (ଜ) କୌଣସି ଭାଷାର ଲିପି, ବ୍ୟାକରଣ, ଅଭିଧାନ ତଥା ପାଠ୍ୟପୁସ୍ତକ ରଚନା ପାଇଁ ଜ୍ଞାନ ଅର୍ଜନ ହୁଏ । (ଝ) ଉଚ୍ଚାରଣ ଓ ଶ୍ରବଣରେ ଦେଖାଦେଉଥିବା ଅଶୁଦ୍ଧତା ଦୂରୀଭୂତ ହୁଏ । (ଞ) ମନସ୍ତତ୍ତ୍ୱ, ପ୍ରାଚୀନ ଭୂଗୋଳ, ଶିକ୍ଷା, ସମାଜ ବିଜ୍ଞାନ, ଦର୍ଶନ ତଥା ଇଞ୍ଜିନିୟରିଂ ଆଦି ଅଧ୍ୟୟନ ସୁବିଧାଜନକ ହୁଏ ।

ତେଣୁ ଯେ କୌଣସି ସାହିତ୍ୟ ଅଧ୍ୟୟନଠାରୁ ତାହାର ଭାଷା ଅଧ୍ୟୟନ ଅଧିକ ପ୍ରୟୋଜନୀୟ । ସାହିତ୍ୟ ଅଧ୍ୟୟନ ପାଇଁ ଭାଷା ଅଧ୍ୟୟନ ଏକ ସୋପାନ ।



# ● ଷଷ୍ଠ ପରିଚ୍ଛେଦ ●

# ଧ୍ୱନି ବିଜ୍ଞାନ ( Phonetics )

### ଧ୍ୱନିବିଜ୍ଞାନ ଓ ଧ୍ୱନିର ସଂଜ୍ଞା—

ଧ୍ୱନି ସମ୍ପର୍କରେ ବୈଜ୍ଞାନିକ ଅଧ୍ୟୟନକୁ ସ୍ଥୂଳତଃ ଧ୍ୱନିବିଜ୍ଞାନ (Phonetics) ସ୍ୱରୂପରେ ଅଭିହିତ କରାଯାଇପାରେ; କିନ୍ତୁ ଇଂରାଜୀରେ ଏଥିପାଇଁ ଦୁଇଟି ଶବ୍ଦ ପ୍ରଚଳିତ ଅଛି, ଯଥା—Phonetics ଓ Phonology । ଯଥାକ୍ରମେ ଶବ୍ଦ ଦୁଇଟିରେ ଥିବା 'Phone' ଓ Phonoର ମୂଳ ଉତ୍ସ ଗ୍ରୀକ୍ 'Phone', ଯାହାର ଅର୍ଥ ଧ୍ୱନି । ଟିକ୍ସ (tics) ଓ ଲଜି (logy)ର ଅର୍ଥ ବିଜ୍ଞାନ । ତେଣୁ ବ୍ୟୁତ୍ପତ୍ତି ଦୃଷ୍ଟିରୁ Phonetics ଓ Phonologyର ଅର୍ଥ ସମାନ; କିନ୍ତୁ ଧ୍ୱନିବିଜ୍ଞାନ କ୍ଷେତ୍ରରେ ପ୍ରୟୋଗ ଦୃଷ୍ଟିରୁ ଏ ଦୁଇଟି ଶବ୍ଦର ପୃଥକ୍ ଅର୍ଥ ପରିଲକ୍ଷିତ ହୋଇଥାଏ । 'Phonetics'ରେ ସାଧାରଣତଃ ଧ୍ୱନିର ସଂଜ୍ଞା ଭାଷା-ଧ୍ୱନି ଉତ୍ପନ୍ନ କରୁଥିବା ଅଙ୍ଗ, ଧ୍ୱନିର ସ୍ୱରୂପ, ଧ୍ୱନିର ବର୍ଗୀକରଣ, ଭାଷା-ବିଶେଷର ଧ୍ୱନି, ସେଗୁଡ଼ିକର ଉଚ୍ଚାରଣ ତଥା ବର୍ଗୀକରଣ ଅଧ୍ୟେତବ୍ୟ ବିଷୟ; କିନ୍ତୁ Phonologyରେ ସାଧାରଣତଃ ଭାଷା-ବିଶେଷର ଧ୍ୱନିମାନଙ୍କର ପ୍ରୟୋଗ, ବିତରଣ, ଇତିହାସ ତଥା ପରିବର୍ତ୍ତନ ଆଦିର ଅଧ୍ୟୟନ କରାଯାଇଥାଏ । ଅବଶ୍ୟ ଏ ଦୁଇଟି ପାରିଭାଷିକ ଶବ୍ଦର ପ୍ରୟୋଗ ସର୍ବସମ୍ମତ ନୁହେଁ । କେହି କେହି ଉଭୟ ଅର୍ଥରେ Phonetics ଶବ୍ଦର ବ୍ୟବହାର କରନ୍ତି ।

ସଂସ୍କୃତରେ ଧ୍ୱନିବିଜ୍ଞାନର ପ୍ରାଚୀନ ନାମ ଥିଲା ଶିକ୍ଷାଶାସ୍ତ୍ର । Phonetics ପାଇଁ ଓଡ଼ିଆରେ ଧ୍ୱନିତତ୍ତ୍ୱ, ଧ୍ୱନିବିଜ୍ଞାନ, ଧ୍ୱନିଶାସ୍ତ୍ର ଆଦି ଶବ୍ଦ ଓ Phonology ପାଇଁ ଧ୍ୱନିପ୍ରକ୍ରିୟା ବିଜ୍ଞାନ, ଧ୍ୱନିବିଜ୍ଞାନ, ଧ୍ୱନିପ୍ରକ୍ରିୟା ବିଚାର ଆଦି ଶବ୍ଦର ପ୍ରୟୋଗ କରାଯାଇପାରେ ।

ଧ୍ୱନିବିଜ୍ଞାନରେ ଯେଉଁ ଧ୍ୱନି ସମ୍ପର୍କରେ ଅଧ୍ୟୟନ କରାଯାଏ ତାହା ହେଉଛି ଭାଷାର ମୂଳାଧାର । ମୁଖନିଃସୃତ ଯେ କୌଣସି ଭାଷା କେବଳ ସାର୍ଥକ ଧ୍ୱନିର ସମାହାର ମାତ୍ର । ଆଧୁନିକ ଧ୍ୱନିବିତ୍‌ମାନଙ୍କର ସଂଜ୍ଞା ଅନୁସାରେ ଭାଷା ହେଉଛି ମୁଖନିଃସୃତ ଧ୍ୱନିମାନଙ୍କର ଏକ ନିୟମାବଦ୍ଧ ଶୃଙ୍ଖଳିତ ପଦ୍ଧତି, ଯାହା ସାହାଯ୍ୟରେ ଭାଷା-ବର୍ଗର ଅନ୍ତର୍ଗତ ସମସ୍ତ ବ୍ୟକ୍ତି ପାରସ୍ପରିକ ବିଚାରଧାରାର ବିନିମୟ କରି ସାମାଜିକ ଜୀବନ ଯାପନ କରନ୍ତି ।

ଏହି ଧ୍ୱନିର ସୃଷ୍ଟି ପାଇଁ ଆବଶ୍ୟକ ହୁଏ ନିର୍ଦ୍ଦିଷ୍ଟ ସ୍ଥାନ ବା ଯନ୍ତ୍ର ଏବଂ ନିର୍ଦ୍ଦିଷ୍ଟ ପ୍ରଯତ୍ନ । ତେଣୁ ପ୍ରଫେସର ଡାନିଏଲ୍ ଜୋନ୍‌ସଙ୍କ ମତରେ, "ଧ୍ୱନି ମନୁଷ୍ୟର ବକଲାଙ୍ଗ ପରିସ୍ଥାନ (ନିର୍ଦ୍ଦିଷ୍ଟ) ନିଯୁକ୍ତ (ନିଶ୍ଚିତ) ସ୍ଥାନ ଏବଂ ନିଶ୍ଚିତ ପ୍ରଯତ୍ନଦ୍ୱାରା ଉତ୍ପନ୍ନ ଏବଂ ଶ୍ରବଣେନ୍ଦ୍ରିୟ ଦ୍ୱାରା ଅବିକଳ୍ପ ରୂପେ ଗୃହୀତ ଶବ୍ଦ ଲହରୀ ।" ଧ୍ୱନିସୃଷ୍ଟି ପାଇଁ ଯେଉଁ

ବିଭିନ୍ନ ପରିସ୍ଥାନ ନିଯୁକ୍ତ ସ୍ଥାନର ଉଲ୍ଲେଖ କରାଯାଇଛି, ତାହା ହେଉଛି ବାଗ୍‌ଯନ୍ତ୍ର । ଏହି ବାଗ୍‌ଯନ୍ତ୍ରକୁ ଧ୍ୱନିଯନ୍ତ୍ର ମଧ୍ୟ କୁହାଯାଏ ।

## ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶ ଓ ତାହାର କାର୍ଯ୍ୟ

ମଣିଷ ଭାବ ପ୍ରକାଶ ଲାଗି ନାନା ପ୍ରକାରର ଧ୍ୱନି ସୃଷ୍ଟି କରିଥିଲେହେଁ ବାଗ୍‌ଯନ୍ତ୍ରରେ ଏହି ଧ୍ୱନିମାନଙ୍କର କିପରି ସୃଷ୍ଟି ହୁଏ, ସହଜରେ ଜାଣିପାରେ ନାହିଁ । କେଉଁ ଧ୍ୱନିର ସୃଷ୍ଟି ପାଇଁ ବାଗ୍‌ଯନ୍ତ୍ରର କେଉଁ କେଉଁ ଅଂଶ କିପରି ଭାବରେ ପରିଚାଳିତ ହୁଏ, ସେ ସମ୍ପର୍କରେ ସମ୍ୟକ୍ ଜ୍ଞାନ ଅର୍ଜନ ଆବଶ୍ୟକ । ତା' ନହେଲେ ଆବଶ୍ୟକତା ଅନୁସାରେ ମାତୃଭାଷା ଛଡ଼ା ଅନ୍ୟ ଭାଷାର ଧ୍ୱନି ସୃଷ୍ଟି କରିବା ସହଜ ହେବ ନାହିଁ । ଫୁସ୍‌ଫୁସ୍‌ରୁ ପ୍ରଶ୍ୱାସ ବାୟୁ ମୁଖରନ୍ଧ୍ର ଦେଇ ବାହାରକୁ ଆସିବା ସମୟରେ ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶ ବିଭିନ୍ନ ଭାଗରେ ଆଘାତପ୍ରାପ୍ତ ହୋଇ ଧ୍ୱନି ସୃଷ୍ଟିରେ ସାହାଯ୍ୟ କରେ । ଧ୍ୱନି ଏହି ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶରେ କିପରି ବିଭିନ୍ନ ଭାବରେ ଆଘାତପ୍ରାପ୍ତ ହୁଏ ତାହା ଜାଣିବା ପାଇଁ ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶ ଓ ତାହାର କ୍ରିୟାକଳାପ ଜାଣିବା ଆବଶ୍ୟକ ।




(୧) ଓଷ୍ଠ
(୨) ଦନ୍ତ
(୩) ଦନ୍ତମୂଳ
(୪) କଠିନତାଳୁ
(୫) କୋମଳତାଳୁ
(୬) ଅଳଜିହ୍ୱା ବା ଘଣ୍ଟିକା
(୭) ଜିହ୍ୱାଶୀର୍ଷ
(୮) ଜିହ୍ୱାଫଳକ
(୯) ଜିହ୍ୱାମଧ୍ୟ
(୧୦) ଜିହ୍ୱାପଶ୍ଚାତ୍
(୧୧) ଉପାଲିଜିହ୍ୱା ବା ଗଳଗହ୍ୱର
(୧୨) ସ୍ୱରଯନ୍ତ୍ରାବରଣ
(୧୩) ସ୍ୱରତନ୍ତ୍ରୀର ସ୍ଥାନ
(୧୪) ଶ୍ୱାସନଳୀ
(୧୫) ନାସାରନ୍ଧ୍ର

**ବାଗ୍‌ଯନ୍ତ୍ରର ବିଭିନ୍ନ ଅଂଶର ପରିଚୟ ଓ କ୍ରିୟାକଳାପ—**

(୧) ଓଷ୍ଠ (Lip)—ବାଗ୍‌ଯନ୍ତ୍ରର କେବଳ ଓଷ୍ଠ ହିଁ ବାହାରକୁ ଦେଖାଯାଏ । ଅନ୍ୟ ସମସ୍ତ ଅଂଶ ବିଭିନ୍ନ ଭାବରେ ଆବୃତ । ଧ୍ୱନି ଉଚ୍ଚାରଣରେ କେତେବେଳେ ଗୋଟିଏ ଓଷ୍ଠ ଓ କେତେବେଳେ ଦୁଇଟିଯାକ ଓଷ୍ଠ ବ୍ୟବହୃତ ହୋଇଥାଏ । ତଳ ଓଠଟି ଅପେକ୍ଷାକୃତ ଅଧିକ କ୍ରିୟାଶୀଳ । ଧ୍ୱନି ସୃଷ୍ଟିବେଳେ ଓଷ୍ଠ ଦୁଇଟି ନିମ୍ନଲିଖିତ ଭାବରେ ବ୍ୟବହୃତ ହୋଇପାରେ ।

(କ) ଓଷ୍ଠ ଦ୍ୱୟ ବୃତ୍ତାକାରରେ ରହିପାରନ୍ତି, ଯଥା —ଉ, ଓ ଉଚ୍ଚାରଣରେ

(ଖ) ଅବୃତ୍ତାକାରରେ ରହିପାରନ୍ତି, ଯଥା—ଅ, ଏ ଆଦି ଉଚ୍ଚାରଣରେ

(ଗ) ସ୍ୱଳ୍ପ ବୃତ୍ତାକାରରେ ରହିପାରନ୍ତି—ଆ ଉଚ୍ଚାରଣରେ
(ଘ) ବିସ୍ତୃତ ଭାବରେ ରହିପାରନ୍ତି—ଇ ଉଚ୍ଚାରଣରେ
(ଙ) ପୂର୍ଣ୍ଣବିସ୍ତୃତ ହୋଇପାରନ୍ତି—ଏ ଉଚ୍ଚାରଣରେ
(ଚ) ଉଦାସୀନ ରହିପାରନ୍ତି—ଅ ଉଚ୍ଚାରଣରେ
(ଛ) ସମ୍ପୂର୍ଣ୍ଣ ଉନ୍ମୁକ୍ତ ରହିପାରନ୍ତି—ଆ ଉଚ୍ଚାରଣରେ
(ଜ) ସମ୍ପୂର୍ଣ୍ଣ ବନ୍ଦ ହୋଇପାରନ୍ତି—ପ, ଫ, ବ, ଭ, ମ ଉଚ୍ଚାରଣରେ
(ଝ) ଅର୍ଦ୍ଧ ଉନ୍ମୁକ୍ତ ରହିପାରନ୍ତି—ହ ଉଚ୍ଚାରଣରେ
(ଞ) ଓଷ୍ଠ ଦ୍ୱୟ ମୁଖରନ୍ଧ୍ରରୁ ନିର୍ଗତ ବାୟୁ ଦ୍ୱାରା ଅଘାତ ପାଇ ପରସ୍ପରକୁ ଦୋହଲାଇ କମ୍ପି ପାରନ୍ତି—ଜର୍ମାନୀରେ ଚାଲୁଥିବା ଅଶ୍ୱକୁ ଅଟକାଇବା ପାଇଁ ଅଶ୍ୱାରୋହୀ ଓଷ୍ଠ ଦ୍ୱୟକୁ ଏହିପରି କମ୍ପିତ କରିଥାନ୍ତି । ଏହା ଦ୍ୱାରା ଉତ୍ପନ୍ନ ଧ୍ୱନିକୁ Pr···ଙ୍କଦ୍ୱାରା ସଙ୍କେତ କରାଯାଇପାରେ । ଶିଶୁମାନେ ମନ ଖୁସିରେ ଦୁଇ ଓଷ୍ଠକୁ ଅଗାଇ ଥରାଇ ଯେଉଁ ଧ୍ୱନି ସୃଷ୍ଟି କରିଥାନ୍ତି, ଓଡ଼ିଆ ଭାଷାରେ ତାହାକୁ ପ୍ରୁ······ଙ୍କଦ୍ୱାରା ସଙ୍କେତ କରାଯାଇପାରେ ।
(ଟ) ତଳ ଓଷ୍ଠ ଉପର ଧାଡ଼ି ଦାନ୍ତଦ୍ୱାରା ଘର୍ଷି ହୋଇପାରେ, ଯଥା —ଇଂରାଜୀ father ଶବ୍ଦର 'f' ଉଚ୍ଚାରଣରେ ।

(୨) ଦନ୍ତ (Teeth)—ମୁଖବିବର ମଧ୍ୟରେ ତାଳୁ ଏବଂ ଜିହ୍ୱାକୁ ଛାଡ଼ିଦେଲେ ଦ୍ୱିତୀୟ ପ୍ରଧାନ ଅଂଶଟି ହେଉଛି ଦାନ୍ତ । ଏହା ଭୋଜନ ଛଡ଼ା ଧ୍ୱନି-ଉଚ୍ଚାରଣରେ ମଧ୍ୟ ସାହାଯ୍ୟ କରିଥାଏ । ଏହାକୁ ଅଗ୍ରଦନ୍ତ ଓ ମୂଳଦନ୍ତ—ଏହିପରି ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଧ୍ୱନି ନିର୍ମାଣରେ ଉପର ଧାଡ଼ିର ସାମନା ଦାନ୍ତଗୁଡ଼ିକ ବିଶେଷ ଭାବରେ ବ୍ୟବହୃତ ହୋଇଥାଏ, ତଳଦାନ୍ତ ବା ପାଖ ଦାନ୍ତ-ଗୁଡ଼ିକ ଅପେକ୍ଷାକୃତ ଅନାବଶ୍ୟକ ବୋଲି ଧ୍ୱନିବିଜ୍ଞାନରେ ବିଚାର କରାଯାଇଥାଏ । ଦାନ୍ତଗୁଡ଼ିକ ତଳ ଓଠ ବା ଜିଭ ସହିତ ମିଳି ବା ତାହାର ସମୀପବର୍ତ୍ତୀ ହୋଇ ଧ୍ୱନି ନିର୍ମାଣରେ ସାହାଯ୍ୟ କରିଥାଏ । ଦାନ୍ତୁରି ଓ ଅଦାନ୍ତୁରି ମଣିଷର ଧ୍ୱନି ଉଚ୍ଚାରଣରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

(୩) ବର୍ତ୍ସ (Alveola)—ଓଡ଼ିଆରେ ଏହାକୁ କୁହାଯାଏ ଉପର ଦାନ୍ତମାଡ଼ି । ଉପର ଦାନ୍ତମୂଳଠାରୁ କଠିନ ତାଳୁର ଆରମ୍ଭ ପର୍ଯ୍ୟନ୍ତ ଏହା ବିସ୍ତୃତ । ଜିଭର ବିଭିନ୍ନ ଅଂଶ ବର୍ତ୍ସକୁ ସ୍ପର୍ଶ କରି ଅଥବା ତାହାର ନିକଟବର୍ତ୍ତୀ ହୋଇ ଧ୍ୱନି ଉଚ୍ଚାରଣରେ ସାହାଯ୍ୟ କରିଥାଏ । ଏହା ନିଜେ ଧ୍ୱନି ଉଚ୍ଚାରଣ କରିପାରେ ନାହିଁ; କିନ୍ତୁ ଏହା ଏକ ଉଚ୍ଚାରଣ ସ୍ଥାନ । ତେଣୁ ଏହା ଏକ ନିଷ୍କ୍ରିୟ ଭାଷଣାବୟବ । ତ, ଛ, ଜ, ଝ, ଡ ଧ୍ୱନିଗୁଡ଼ିକ ଏହି ସ୍ଥାନରୁ ଉଚ୍ଚାରିତ ହୋଇଥାଏ ।

(୪) କଠିନ ତାଳୁ (Hard palate)—ବର୍ତ୍ସଠାରୁ ଆରମ୍ଭ କରି କୋମଳ ତାଳୁ ପର୍ଯ୍ୟନ୍ତ ଏହା ବିସ୍ତୃତ, ବର୍ତ୍ସର ନିକଟବର୍ତ୍ତୀ ଏହାର ଅଂଶକୁ ମୂର୍ଦ୍ଧା (Cerebrum) କୁହାଯାଏ । ବାଗ୍‌ଯନ୍ତ୍ରର ଏହା ଏକ ସ୍ଥିର ଅଂଶ । ମୂର୍ଦ୍ଧା ଅଂଶରୁ ମୂର୍ଦ୍ଧନ୍ୟ ଧ୍ୱନିଗୁଡ଼ିକ (ଟ, ଠ, ଡ, ଢ, ଣ) ଓ କଠିନ ତାଳୁରୁ 'ୟ'ର ଉଚ୍ଚାରଣ ହୋଇଥାଏ ।

(୫) କୋମଳ ତାଳୁ (Soft palate)—କଠିନ ତାଳୁଠାରୁ ଅଳିଜିହ୍ୱା ପର୍ଯ୍ୟନ୍ତ ଏହା ବିସ୍ତୃତ । ଏହା ଆପେ ଆପେ ତଳ ଉପର ହୋଇପାରେ । ପ୍ରଶ୍ୱାସ ନେଲାବେଳେ କୋମଳ ତାଳୁ ଉପରକୁ ଉଠେ ଓ ନିଶ୍ୱାସ ଛାଡ଼ିଲା ବେଳେ ତଳକୁ ପଡ଼ିଯାଏ । କିନ୍ତୁ ନାକ ବାଟେ ପବନ ନେଇ ଯଦି ପାଟି ବାଟେ ଛଡ଼ାଯାଏ ତେବେ ବିପରୀତ କାର୍ଯ୍ୟ ଘଟିବ । ମୁଖଯନ୍ତ୍ରର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ମୁଖରନ୍ଧ୍ର ଓ ନାସାରନ୍ଧ୍ର ମଧ୍ୟରେ ଏହା ଏକ କବାଟପରି କାର୍ଯ୍ୟ କରିଥାଏ । ନାସିକା ବ୍ୟଞ୍ଜନ ଧ୍ୱନିଗୁଡ଼ିକ (ଙ, ଞ, ଣ, ନ, ମ)ର ଉଚ୍ଚାରଣ ବେଳେ ଏହା ତଳକୁ ଓହ୍ଲାଇ ଯାଉଥିବାରୁ ବାୟୁ ନାସାପଥରେ ବାହାରକୁ ନିର୍ଗତ ହୋଇଥାଏ; କିନ୍ତୁ କ, ଖ, ଗ, ଘ, ଇ, ଉ ପ୍ରଭୃତି ଧ୍ୱନି ଉଚ୍ଚାରଣ ବେଳେ ଏହା ଉପରକୁ ଉଠି ଯାଉଥିବାରୁ ନାସାରନ୍ଧ୍ର ବନ୍ଦ ହୋଇଯାଏ । ସର୍ଦ୍ଦି ସମୟରେ ଘଣ୍ଟିକା ବଢ଼ିଗଲେ କୋମଳ ତାଳୁ ସହଜରେ ତଳ ଉପର ହୋଇପାରେ ନାହିଁ । ତେଣୁ କଣ୍ଠ ଗଣଗଣିଆ ଶୁଭେ ଅର୍ଥାତ୍ ସର୍ବଦା ଅନୁନାସିକ ଧ୍ୱନି ଶୁଣାଯାଏ । ଫୁସ୍‌ଫୁସ୍‌ରୁ ବାୟୁର ଆଘାତରେ କୋମଳ ତାଳୁ ଶୀଘ୍ର ଶୀଘ୍ର ପଡ଼ିବା-ଉଠିବା ଫଳରେ ଘୁଙ୍ଗୁଡ଼ି ଶବ୍ଦ ଶୁଣାଯାଏ ଅର୍ଥାତ୍ ଏକପ୍ରକାର ଲୁଣ୍ଠିତ ବା ଲୋଡ଼ିତ ଧ୍ୱନି (thrilled or rolled)ର ସୃଷ୍ଟି ହୁଏ । କୋମଳ ତାଳୁ ଜିହ୍ୱାପଶ୍ଚକୁ ସ୍ପର୍ଶ କଲେ ଧ୍ୱନିର ସ୍ପର୍ଶ ସୃଷ୍ଟି ହୁଏ ।

(୬) ଅଳିଜିହ୍ୱା ବା ଘଣ୍ଟିକା (Uvula)—କୋମଳ ତାଳୁର ଶେଷ ଅଂଶରୁ ଅଳିଜିହ୍ୱାର ଆରମ୍ଭ । ଏହା ଏକ ମାଂସଳ ଶ୍ଳେଷ୍ମ ପିଣ୍ଡୁଳା । କୋମଳ ତାଳୁ ସହିତ ଏହା ତଳକୁ ଉପରକୁ ହୋଇ ବିଭିନ୍ନ ଧ୍ୱନି ସୃଷ୍ଟିରେ ସହାୟକ ହୋଇଥାଏ । ଯଥା—

(କ) ଏହା ଜିହ୍ୱାପଶ୍ଚ (ଜିହ୍ୱାମୂଳ)କୁ ସ୍ପର୍ଶକରି ଏକ ସ୍ପର୍ଶୀଧ୍ୱନି ଉତ୍ପନ୍ନ କରିଥାଏ । ଉର୍ଦ୍ଦୁ 'କ' (କାମତ୍ ଶବ୍ଦରେ), ଏସ୍କିମୋ ଭାଷାର ଅନୁନାସିକ ସ୍ପର୍ଶ (ଙ) ଏହାର ଦୃଷ୍ଟାନ୍ତ ।

(ଖ) ଜିହ୍ୱାପଶ୍ଚର ସମୀପବର୍ତ୍ତୀ ହୋଇ ଅଳିଜିହ୍ୱା ବାୟୁ ନିର୍ଗମ ପଥକୁ ସଙ୍କୀର୍ଣ୍ଣ କରି ସଂଘର୍ଷୀଧ୍ୱନି ସୃଷ୍ଟି କରିପାରେ, ଯଥା—ଆରବୀ ଖ, ଗ, ଇତ୍ୟାଦି ।

(ଗ) ଫୁସ୍‌ଫୁସ୍‌ରୁ ନିର୍ଗତ ନିଶ୍ୱାସବାୟୁ ଦ୍ୱାରା ଅଘାତପ୍ରାପ୍ତ ହୋଇ ଏକାଧିକବାର ଦୋହଲି ଏହା ଲୁଣ୍ଠିତ ବା କମ୍ପିତ ଧ୍ୱନି ସୃଷ୍ଟି କରିପାରେ, ଯଥା—'ର' ଭଳି ଏକ ଧ୍ୱନି । ପାରସ୍ପରୀ ପାର୍ସ ଶବ୍ଦକୁ ଉଚ୍ଚାରଣ କଲାବେଳେ ଏହି ଧ୍ୱନି ଶୁଣାଯାଏ । ଏହାର ସଙ୍କେତ ହେଉଛି R.

(ଘ) ଫୁସ୍‌ଫୁସ୍‌ରୁ ନିର୍ଗତ ନିଶ୍ୱାସବାୟୁ ଦ୍ୱାରା ଥରେମାତ୍ର ଉତ୍କ୍ଷିପ୍ତହୋଇ ଏହା ଏକ ପ୍ରକାର ଧ୍ୱନି ସୃଷ୍ଟି କରିପାରେ । ଏହା ମଧ୍ୟ ଫରାସୀ ଭାଷାରେ ଶୁଣିବାକୁ ମିଳେ ଓ ଏହାର ସଙ୍କେତ ମଧ୍ୟ R.

ଜିହ୍ୱା (Tongue)—ଜିହ୍ୱା ହେଉଛି ଧ୍ୱନି ଉତ୍ପାଦନରେ ସର୍ବ ପ୍ରଧାନ ଅଂଶ । ଭାଷଣ କ୍ରିୟାରେ ଜିହ୍ୱା ଶ୍ରେଷ୍ଠସ୍ଥାନ ଲାଭ କରିଥିବାରୁ ଏହାର ଲାଟିନ ନାମ 'Lingua' ଅନୁସାରେ ଭାଷାକୁ Language କୁହାଯାଏ । ଜିହ୍ୱା ନିମ୍ନଲିଖିତ ଭାବରେ ବ୍ୟବହୃତ ହୋଇ ବିଭିନ୍ନ ଧ୍ୱନି ସୃଷ୍ଟିରେ ସାହାଯ୍ୟ କରିଥାଏ ।

(କ) ଜିହ୍ୱା ସମ୍ମୁଖ ଦିଗକୁ ପ୍ରସୃତ ହୋଇ କେତୋଟି ସ୍ୱରଧ୍ୱନି ସୃଷ୍ଟି କରି-ପାରେ । ମୌଳିକ ସ୍ୱରଧ୍ୱନି ଭିତରୁ ଅଗ୍ରସ୍ୱର ଇ, ଏ, ଏ, ଆ, ଧ୍ୱନିର ସୃଷ୍ଟି ସମୟରେ ଜିହ୍ୱା ସମ୍ମୁଖ ଭାଗକୁ ପ୍ରସୃତ ହୋଇଥାଏ ।

(ଖ) ଏହା ପଶ୍ଚାଦ୍‌ଭାଗକୁ ଅାକୃଷ୍ଟ ହୋଇ କେତୋଟି ସ୍ୱରଧ୍ୱନି ସୃଷ୍ଟି କରି-ପାରେ, ଯଥା—ଅ, ଓ, ଓ, ଉ । ଜିହ୍ୱାକୁ ବିଭିନ୍ନ ଅଂଶରେ ବିଭକ୍ତ କରାଯାଇଅଛି—ଜିହ୍ୱାଶୀର୍ଷ, ଜିହ୍ୱାଫଳକ, ଜିହ୍ୱାମଧ୍ୟ ଓ ଜିହ୍ୱାପଶ୍ଚାତ୍ ।

(୭) ଜିହ୍ୱାଶୀର୍ଷ ( Tip of the tongue )—ଜିହ୍ୱାଶୀର୍ଷ ଜିହ୍ୱାର ଅନ୍ୟାନ୍ୟ ଅଂଶ ଅପେକ୍ଷା ଅଧିକ ଗତିଶୀଳ । ଏହା ନିମ୍ନଲିଖିତ ଭାବରେ ବ୍ୟବହୃତ ହୋଇଥାଏ ।

(କ) ତଳ ଧାଡ଼ି ଦାନ୍ତ ମୂଳରେ ନିଷ୍କ୍ରିୟ ଭାବରେ ପଡ଼ିରହିଥାଏ, ଯଥା—ଇ, ଉ ।

(ଖ) ଉପର ଧାଡ଼ିର ସାମନା ଦାନ୍ତକୁ ସ୍ପର୍ଶକରି ଏହା ଦନ୍ତ୍ୟ ବ୍ୟଞ୍ଜନ ଧ୍ୱନି ଉତ୍ପାଦନରେ ସହାୟକ ହୋଇଥାଏ । ଯଥା—ତ, ଥ, ଦ, ଧ, ନ ।

(ଗ) ବର୍ତ୍ସ୍ୱକୁ ସ୍ପର୍ଶକରି ବର୍ତ୍ସ୍ୟ ଧ୍ୱନି ଉଚ୍ଚାରଣରେ ସହାୟକ ହୋଇଥାଏ, ଯଥା—ହିନ୍ଦୀ 'ନ' ଇଂରାଜୀ ଦ (d) ଓଡ଼ିଆ ଚ, ଛ, ଜ, ଝ ।

(ଘ) ସାମନା ଦାନ୍ତ ବା ବର୍ତ୍ସ୍ୱର ନିକଟବର୍ତ୍ତୀ ହୋଇ ସଙ୍ଘର୍ଷୀ ଧ୍ୱନି ସୃଷ୍ଟିରେ ସହାୟକ ହୋଇଥାଏ, ଯଥା—'ସ' (S) ।

(ଙ) ଫୁସ୍‌ଫୁସ୍‌ରୁ ନିର୍ଗତ ବାୟୁ ଦ୍ୱାରା ଆଘାତପ୍ରାପ୍ତ ହୋଇ ତାଡ଼ିତ ହେବା ଫଳରେ ଲୁଣ୍ଠିତ ବା ତାଡ଼ିତ ଧ୍ୱନି ଉତ୍ପାଦନ କରିଥାଏ, ଯଥା— ର (r)।

(ଚ) ଦନ୍ତ ଓ ବର୍ତ୍ସ ମଧ୍ୟବର୍ତ୍ତୀ ଯେ କୌଣସି କେନ୍ଦ୍ରୀୟ ବିନ୍ଦୁ ସହିତ ମିଶି ଏକ ପ୍ରକାର ପାର୍ଶ୍ୱିକଧ୍ୱନି ଉତ୍ପାଦନରେ ସାହାଯ୍ୟ କରିଥାଏ, ଯଥା— ଲ (l)।

(ଛ) ଉପରକୁ ଉତ୍ତୋଳିତ ହୋଇ ମୂର୍ଦ୍ଧନ୍ୟଧ୍ୱନି ଉଚ୍ଚାରଣରେ ସାହାଯ୍ୟ କରିଥାଏ, ଯଥା—ଟ, ଠ, ଡ, ଢ, ଣ।

(୮) ଜିହ୍ୱାଫଳକ (Front of the tongue)—ଜିହ୍ୱାଶୀର୍ଷଠାରୁ ଜିହ୍ୱାଫଳକର ଆରମ୍ଭ। ସାଧାରଣତଃ ଜିହ୍ୱାର ଯେଉଁ ଅଂଶ ପ୍ରକୃତିକ ଭାବରେ ପାଟି ଭିତରୁ ବାହାରକୁ ବାହାରିପାରେ, ତାହାକୁ କୁହାଯାଏ ଜିହ୍ୱାଫଳକ। ଏହା ସାମନା ଦାନ୍ତ ବା ବର୍ତ୍ସର ନିକଟବର୍ତ୍ତୀ ହୋଇ ଧ୍ୱନି ଉତ୍ପାଦନରେ ସହାୟକ ହୋଇଥାଏ। ଇଂରାଜୀ 'S' ଉଚ୍ଚାରଣବେଳେ ଜିହ୍ୱାଫଳକ ବର୍ତ୍ସର ନିକଟବର୍ତ୍ତୀ ହୋଇଥାଏ।

(୯) ଜିହ୍ୱାମଧ୍ୟ (Middle of the tongue)—ଏହା ଜିହ୍ୱାଫଳକଠାରୁ ଭିତରକୁ ପ୍ରାୟ ତେରଇଞ୍ଚ ପର୍ଯ୍ୟନ୍ତ ବିସ୍ତୃତ। କଠିନ ତାଳୁ ସହିତ ମିଶି ଏହା ବିଭିନ୍ନ ଧ୍ୱନି ଉତ୍ପାଦନରେ ସାହାଯ୍ୟ କରିଥାଏ। ଜିହ୍ୱାମଧ୍ୟ ସାହାଯ୍ୟରେ ଉତ୍ପନ୍ନ ଧ୍ୱନିମାନଙ୍କୁ ତାଳବ୍ୟଧ୍ୱନି କୁହାଯାଏ। ଏହା ନିମ୍ନଲିଖିତ ଭାବରେ ବ୍ୟବହୃତ ହୋଇ ଧ୍ୱନି ଉତ୍ପାଦନରେ ସାହାଯ୍ୟ କରେ।

(କ) କଠିନ ତାଳୁଆଡ଼କୁ ଉଠି ଅଗ୍ରସ୍ୱର ଉତ୍ପନ୍ନ କରିପାରେ, ଯଥା—ଇ (i), ଏ (e), ଏ ଆ।

(ଖ) କଠିନ ତାଳୁ ସହିତ ମିଳିତ ହୋଇ ମୁଖଗହ୍ୱରସ୍ଥ ବାୟୁପଥ ରୁଦ୍ଧ କରିଦେଇପାରେ। ଏହି ପ୍ରକାର ଧ୍ୱନି ମାଳୟାଲମ ଓ ଫରାସୀ ଭାଷାରେ ଶୁଣିବାକୁ ମିଳେ।

(ଗ) କଠିନ ତାଳୁ ସହିତ ମିଳିତ ଥିବା ଅବସ୍ଥାରେ ଏହାର ଏକ ପାର୍ଶ୍ୱ ଖୋଲା ରହିଲେ ପାର୍ଶ୍ୱିକଧ୍ୱନିର ସୃଷ୍ଟି ହୁଏ, ଯଥା—ଲ (l)।

(୧୦) ଜିହ୍ୱାପଶ୍ଚାତ୍ (Back of the tongue)—ଜିହ୍ୱାମଧ୍ୟଠାରୁ ଉପାଲଜିହ୍ୱା ପର୍ଯ୍ୟନ୍ତ ବିସ୍ତୃତ ଜିହ୍ୱାର ଅଂଶକୁ ଜିହ୍ୱାପଶ୍ଚାତ୍ କୁହାଯାଏ। ଏହା ନିମ୍ନଲିଖିତ ଭାବରେ ବ୍ୟବହୃତ ହୋଇ ଧ୍ୱନି ଉତ୍ପାଦନରେ ସହାୟକ ହୋଇଥାଏ।

(କ) ଏହା ବିଭିନ୍ନ ପରିମାଣରେ କୋମଳ ତାଳୁ ଆଡ଼କୁ ଉଠି ଓ ଫୁସ୍‌ଫୁସ୍‌ରୁ

ନିର୍ଗତ ବାୟୁକୁ ନାନା ସ୍ୱରରେ ନିୟନ୍ତ୍ରିତ କରି ପଶ୍ଚସ୍ୱର ଉଚ୍ଚାରଣରେ ସାହାଯ୍ୟ କରିଥାଏ, ଯଥା—ଅ, ଓ, ଔ, ଉ ।

(ଖ) କୋମଳ ତାଳୁ ଓ ଘଣ୍ଟିକା ସହିତ ମିଳିତ ହୋଇ କେତେକ ଧ୍ୱନି ସୃଷ୍ଟି କରେ, ଯଥା—ଓଡ଼ିଆରେ 'କ', ଉର୍ଦ୍ଦୁ 'ଢ' ।

(ଗ) କୋମଳ ତାଳୁ ଓ ଘଣ୍ଟିକାର ନିକଟବର୍ତ୍ତୀ ହୋଇ ସଂଘର୍ଷୀ ଧ୍ୱନି ଉତ୍ପନ୍ନ କରେ ।

(ଘ) ଏହାର ମଝି ଅଂଶ ଟୋଲ ହୋଇଯାଏ ଓ ଘଣ୍ଟିକା ଏହି ଟୋଲ ଅଂଶର ସାମନାରେ ରହି ସଂଘର୍ଷୀ ଧ୍ୱନି ସୃଷ୍ଟି କରେ ।

(ଙ) ଏହା କୋମଳ ତାଳୁ ସହିତ ମିଶିଥିବା ଅବସ୍ଥାରେ ଜିହ୍ୱାର ଏକ ପାର୍ଶ୍ୱ ଖୋଲା ରହିଲେ ଏକପ୍ରକାର ପାର୍ଶ୍ୱିକଧ୍ୱନିର ସୃଷ୍ଟି ହୁଏ । ଇଂରାଜୀ milk ଉଚ୍ଚାରଣ ବେଳେ ଏହି ଧ୍ୱନି ଶୁଣିବାକୁ ମିଳେ ।

(ଚ) ପଶ୍ଚାଦ୍ଭାଗକୁ ଅପସୃତ ହୋଇ ଜିହ୍ୱା ମୂଳର ପଶ୍ଚାଦ୍ଭାଗରେ ଥିବା ଖୋଲା ଅଂଶକୁ ସଂକୀର୍ଣ୍ଣ କରିଦେଇ ଏକପ୍ରକାର ସଂଘର୍ଷୀ ଧ୍ୱନି ଉଚ୍ଚାରଣରେ ସହାୟକ ହୋଇଥାଏ । ଏହି ଧ୍ୱନି ଅରବୀ ଭାଷାରେ ଶୁଣିବାକୁ ମିଳେ ।

(୧୧) ଉପାଲିଜିହ୍ୱା ବା ଗଳଗହ୍ୱର (Pharynx)—ଜିହ୍ୱାମୂଳର ପଶ୍ଚାଦ୍ଭାଗରେ ଗଳଦେଶରେ ଯେଉଁ ଶୂନ୍ୟସ୍ଥାନ ଥାଏ ତାହାକୁ ଉପାଲିଜିହ୍ୱା କୁହାଯାଏ । ଜିହ୍ୱାକୁ ପଶ୍ଚାଦ୍ଭାଗକୁ ଘୁଞ୍ଚାଇ ଏହି ଶୂନ୍ୟସ୍ଥାନକୁ ବଡ଼ ସାନ କରି ଧ୍ୱନିର ରୂପକୁ ପରିବର୍ତ୍ତିତ କରାଯାଇପାରେ । ନାସାରନ୍ଧ୍ର ଓ ମୁଖରନ୍ଧ୍ରର ଏହା ମଧ୍ୟବର୍ତ୍ତୀ ଛକ ଜାଗା ।

(୧୨) ସ୍ୱରଯନ୍ତ୍ରାବରଣ (Epiglottis)—ଜିଭମୂଳର ତଳକୁ ଗଳର ପଛ ଜିମ୍ବା ଗ୍ରୀବର ଭଲି ଏକ ମାଂସଳ ଅଂଶ ତାହାରି ରହିଛି । ଖାଇଲାବେଳେ ଏହା ଶ୍ୱାସନଳୀକୁ ସୁରକ୍ଷିତ କରେ, ଶ୍ୱାସନଳୀର ମାର୍ଗକୁ ବନ୍ଦକରି ଦେଇ ଖାଦ୍ୟକୁ ଖାଦ୍ୟନଳୀ ଭିତରକୁ ପଠାଇ ଦିଏ । କେତେକ ଧ୍ୱନିବିତ୍‌ଙ୍କ ମତରେ ସଙ୍ଗୀତର ଧ୍ୱନି ଗୁଣ ଉପରେ ଏହାର ପ୍ରଭାବ ଅଛି । 'ଅ' ଉଚ୍ଚାରଣ କଲାବେଳେ ଏହା ପଛକୁ ଘୁଞ୍ଚିଯାଏ ଓ 'ଇ' ଉଚ୍ଚାରଣ କଲାବେଳେ ଏହା ଆଗକୁ ଖୁଲିଆସେ ।

(୧୩ ସ୍ୱରତନ୍ତ୍ରୀ (Vocal Chord)—ଶ୍ୱାସନଳୀର କଣ୍ଠନଳୀ ଉପର ଭାଗରେ ଓ ସ୍ୱରଯନ୍ତ୍ରାବରଣରେ କଣ୍ଠର ତଳେ ଧ୍ୱନି ଉତ୍ପାଦନକାରୀ ପ୍ରଧାନ ଅବୟବଟିର

ନାମ ସ୍ୱରତନ୍ତ୍ରୀ । ଜ. ଓ୍ୱାର୍ ରଫେଲଙ୍କ ଭାଷାରେ ଏହା ମନୁଷ୍ୟର ଧ୍ୱନି ପ୍ରସ୍ତର-କେନ୍ଦ୍ର । ଭି. ଇ. ନେଗସ୍‌ଙ୍କ ମତରେ ସ୍ୱରତନ୍ତ୍ରୀ ହିଁ ଭାଷା ସୃଷ୍ଟିର ପ୍ରଧାନ ଯନ୍ତ୍ର ଯାହା ମଣିଷକୁ ଭାଷା ଦେଇ ପ୍ରକୃତ ମଣିଷରେ ପରିଣତ କରିଛି । ରୁଗ୍ଣ ଦୁର୍ବଳ ମଣିଷ-ମାନଙ୍କର ଯେଉଁ ଗ୍ରୀବା (ବେକ) ହୋଇ କଣ୍ଠ ବା କଣ୍ଠା ବାହାରି ଅସିଥାଏ, ତାହା ହେଉଛି ସ୍ୱରତନ୍ତ୍ରୀ, ଇଂରାଜୀରେ ଯାହାକୁ କହନ୍ତି Adam's Apple (ଅଦାମ୍‌ଙ୍କ ଆଭ) । ଏହା ଗୋଟିଏ କ୍ଷୁଦ୍ର ପେଟିକାକାଳୀ । ଏହା ଭିତରେ ଅଗରୁ ପଛକୁ ବିସ୍ତୃତ ଦୁଇଟି ପତଳା ପରଦା ପରି ତନ୍ତ୍ରୀ ରହିଛି । ଷ୍ଟେଜ୍‌ର ପରଦା ପରି ଏହା ସଙ୍କୁଚିତ ଅଥବା ପ୍ରସାରିତ ହୋଇପାରେ । ତନ୍ତ୍ରୀଦ୍ୱୟ ପରସ୍ପରଠାରୁ ଦୂରେଇ ଗଲେ ବାୟୁପଥ ଉନ୍ମୁକ୍ତ ହୋଇଯାଏ, ପରସ୍ପରକୁ ଲାଗି ଆସିଲେ ବାୟୁପଥ ରୁଦ୍ଧ ହୋଇଯାଏ । ସ୍ୱରତନ୍ତ୍ରୀର ପ୍ରଥମ ଓ ପ୍ରଧାନ କାର୍ଯ୍ୟ ହେଲା ଶ୍ୱାସନଳୀର ବାୟୁ ସ୍ରୋତକୁ ନିୟନ୍ତ୍ରଣ କରିବା । ଏହି ସ୍ୱରତନ୍ତ୍ରୀକୁ କେହି କେହି ଇଂରାଜୀ ରେ Vocal Chordର ଅକ୍ଷରିତ ଅର୍ଥ କରି ସ୍ୱରରଜ୍ଜୁ ନାମ ଦେଇଥାନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ବରଂ ଓଷ୍ଠର ଅକୃତି ସହିତ ସ୍ୱରତନ୍ତ୍ରୀ ଅକୃତିର ସାମଞ୍ଜସ୍ୟ ଥିବାରୁ ଏହାକୁ ସ୍ୱରଓଷ୍ଠ କୁହାଯାଇ ପାରେ । ଦୁଇ ସ୍ୱରତନ୍ତ୍ରୀର ମଧ୍ୟବର୍ତ୍ତୀ ସ୍ଥାନକୁ କାକଳ (glottis) କହନ୍ତି । 'ସଙ୍ଗୀତ ଦର୍ପଣ'ରେ ଏହାକୁ 'ଶଙ୍କର ବୀଣା' କୁହାଯାଇଛି । ଅବଶ୍ୟକତା ଅନୁଯାୟୀ ଏହା ବନ୍ଦ ହୋଇଯାଏ ଓ ଖୋଲିଯାଏ । ଯେଉଁମାନେ ଇଚ୍ଛା ଅନୁଯାୟୀ ସ୍ୱରତନ୍ତ୍ରୀମାନଙ୍କର କ୍ରିୟାକୁ ନିୟନ୍ତ୍ରଣ କରିବାରେ ଅକ୍ଷମ ହୁଅନ୍ତି, ସେମାନେ ନାକ ସର କଥା କହୁଥାନ୍ତି । ଏହି ସ୍ୱରତନ୍ତ୍ରୀ ସାହାଯ୍ୟରେ 'ଘୋଷ' ଓ 'ଅଘୋଷ' ଧ୍ୱନିର ସୃଷ୍ଟି ହୋଇଥାଏ । କୌଣସି ଧ୍ୱନି ଉଚ୍ଚାରଣ କଲାବେଳେ ଯଦି ସ୍ୱରତନ୍ତ୍ରୀ ନିଷ୍କ୍ରିୟ ଓ ଶିଥିଳ ହୋଇ ରହେ ଓ କଣ୍ଠନଳୀ ମଧ୍ୟଦେଇ ନିଶ୍ୱାସବାୟୁ ଅବାଧରେ ନିର୍ଗତ ହୁଏ, ତେବେ ଅଘୋଷ ଧ୍ୱନିର ସୃଷ୍ଟି ହୁଏ । ଯଦି କୌଣସି ଧ୍ୱନିର ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀ କମ୍ପିତ ହୁଏ ଓ ଫଳରେ କଣ୍ଠନଳୀ ମଧ୍ୟଦେଇ ବାୟୁ ପ୍ରବେଶ କଲାବେଳେ ବାଧାକୁ ଠେଲିବାକୁ ପଡ଼େ, ତେବେ ସଘୋଷ ବା ଘୋଷ ଧ୍ୱନିର ସୃଷ୍ଟି ହୁଏ ।

(୧୪) ଶ୍ୱାସନଳୀ (Trachea)—ଏହା ଫୁସ୍‌ଫୁସ୍‌ରୁ କଣ୍ଠ ପର୍ଯ୍ୟନ୍ତ ବିସ୍ତୃତ ଏକ ନଳ । ଏହା ଭିତର ଦେଇ ବାୟୁ ଫୁସ୍‌ଫୁସ୍‌ରୁ ମୁଖରନ୍ଧ୍ର ଭିତରକୁ ଯାତାୟାତ କରେ । କେତେଗୁଡ଼ିଏ ଗୋଲାକାର ଉପାସ୍ଥି (Cartilage) ଉପା-ନ୍ତ୍ୟରେ ଯୋଡ଼ାହୋଇ ଏହା ଗଠିତ ହୋଇଥାଏ ।

(୧୫) ନାସାରନ୍ଧ୍ର (Nazal Cavity)—ମୁହଁ ବନ୍ଦ କରି ନିଶ୍ୱାସ-ପ୍ରଶ୍ୱାସ ନାସାରନ୍ଧ୍ର ଦେଇ ଯାତାୟାତ କରେ । କଥା କହିଲା ବେଳେ କୋମଳ ତାଳୁ ଉପରକୁ ଉଠି ନାସାରନ୍ଧ୍ରକୁ ବନ୍ଦ କରିଦିଏ ଓ ତଳକୁ ଦବି ନାସାରନ୍ଧ୍ରକୁ ଖୋଲିଦିଏ । ଣ, ନ, ମ ପ୍ରଭୃତି ନାସିକ୍ୟ ବ୍ୟଞ୍ଜନ ଉଚ୍ଚାରଣ ବେଳେ ମୁଖରନ୍ଧ୍ର ବନ୍ଦଥାଏ, କିନ୍ତୁ ନାସାରନ୍ଧ୍ର ଖୋଲିଥାଏ, କିନ୍ତୁ ଅଁ, ଆଁ, ଇଁ, ଉଁ ପ୍ରଭୃତି ଅନୁନାସିକ ଧ୍ୱନିର ଉଚ୍ଚାରଣ

ବେଳେ ମୁଖରନ୍ଧ୍ର ଓ ନାସାରନ୍ଧ୍ର ଉଭୟ ଖୋଲାଥାଏ ଏବଂ ବାୟୁ ଉଭୟ ରନ୍ଧ୍ରରେ ଯାଇଥାଏ ।

ଏହିପରି ଭାବରେ ବିଭିନ୍ନ ଭାଷଣ ଅବୟବ ବିଭିନ୍ନ ଧ୍ୱନି ଉତ୍ପାଦନରେ କ୍ଷମ ହୋଇଥାନ୍ତି । ଏହି ଧ୍ୱନି କିପରି ଉତ୍ପନ୍ନ ହେଉଛି, ତାହାର ପ୍ରତ୍ୟକ୍ଷୀକରଣ ପାଇଁ ପ୍ରୟୋଗାତ୍ମକ ଯନ୍ତ୍ରପାତିର ଆବଶ୍ୟକତା ରହିଛି । ଏହି ଯନ୍ତ୍ର ସାହାଯ୍ୟରେ ଭାଷଣ ଅବୟବମାନଙ୍କର ସୂକ୍ଷ୍ମାତିସୂକ୍ଷ୍ମ ଅଂଶ ଦେଖି ହୁଏ । ସେମାନଙ୍କର କ୍ରିୟାକଳାପ ଅନୁଭବ କରିହୁଏ ।

## ଧ୍ୱନିମାନଙ୍କର ବର୍ଗୀକରଣ

**ସ୍ୱର ଓ ବ୍ୟଞ୍ଜନ**—ଧ୍ୱନିର ସର୍ବାଧିକ ପ୍ରଚଳିତ ଏବଂ ପ୍ରାଚୀନ ବର୍ଗୀକରଣ ହେଉଛି ସ୍ୱର ଓ ବ୍ୟଞ୍ଜନ । ଯେଉଁ ଧ୍ୱନି ଅନ୍ୟ ଧ୍ୱନିର ସହାୟତା ବିନା ଉଚ୍ଚାରିତ ହୋଇପାରେ, ତାହାକୁ ସ୍ୱରଧ୍ୱନି କୁହାଯାଏ । ଯେଉଁ ଧ୍ୱନି ସ୍ୱରଧ୍ୱନିର ବିନା ସହାୟତାରେ ଉଚ୍ଚାରିତ ହୋଇପାରେ ନାହିଁ ତାହାକୁ ବ୍ୟଞ୍ଜନଧ୍ୱନି କୁହାଯାଏ । ୟୁନାନୀ ବୈୟାକରଣ ଡାୟୋନିଶସ୍ ଥ୍ରାକସ (ଖ୍ରୀ. ପୂ. ୨ୟ ଶତାବ୍ଦୀ) ଏହିପରି ଭାବରେ ସ୍ୱର ଓ ବ୍ୟଞ୍ଜନର ସଂଜ୍ଞା ନିରୂପଣ କରିଥିଲେ । ସଂସ୍କୃତରେ 'ସ୍ୱର' ଶବ୍ଦର ପ୍ରଥମ ପ୍ରୟୋଗ ଋକ୍‌ବେଦରେ ମିଳେ । ଏଥିରେ ଏହାର ଅର୍ଥ 'ଧ୍ୱନି' । ଐତରେୟ ବ୍ରାହ୍ମଣ ଗ୍ରନ୍ଥରେ 'ସ୍ୱର' ଶବ୍ଦ 'ବଳାଘାତ' ବା 'ସ୍ୱର' ଅର୍ଥରେ ବ୍ୟବହୃତ ହୋଇଅଛି । କ୍ରମେ କ୍ରମେ ଏହା ଧ୍ୱନିର ଏକ ଭେଦ (vowel) ଅର୍ଥରେ ପ୍ରଯୁକ୍ତ ହୋଇଅଛି ଏବଂ ସମ୍ଭବତଃ ଏହି ଅର୍ଥରେ ପ୍ରଥମେ 'ଐତରେୟ ବ୍ରାହ୍ମଣ' ଗ୍ରନ୍ଥରେ ଏହାର ଉଲ୍ଲେଖ ହୋଇଅଛି । 'ବ୍ୟଞ୍ଜନ' ଶବ୍ଦ 'ଅଞ୍ଜ୍' ଧାତୁ ସହିତ ସମ୍ବନ୍ଧାନ୍ୱିତ, ଯାହାର ଅର୍ଥ ପ୍ରକଟ ବା ପ୍ରକାଶ । ପତଞ୍ଜଳି ତାଙ୍କର 'ମହାଭାଷ୍ୟ'ରେ ସ୍ୱର ଓ ବ୍ୟଞ୍ଜନର ସଂଜ୍ଞା ଏହିପରି ନିର୍ଣ୍ଣୟ କରିଛନ୍ତି—

"ସ୍ୱୟଂ ରାଜନ୍ତେ ସ୍ୱରା ଅନ୍ୱକ୍ ଭବତି ବ୍ୟଞ୍ଜନମିତି ।"

କିନ୍ତୁ ଆଧୁନିକ ଧ୍ୱନିବିଜ୍ଞାନରେ ସ୍ୱର ଓ ବ୍ୟଞ୍ଜନର ସଂଜ୍ଞା ଓ ସ୍ୱରୂପ ଭିନ୍ନ । କାରଣ ଏପରି ଅନେକ ବ୍ୟଞ୍ଜନଧ୍ୱନି ଅଛି, ଯାହା ସ୍ୱର ବ୍ୟତିରେକେ ମଧ୍ୟ ଉଚ୍ଚାରିତ ହୋଇପାରେ । ଅଫ୍ରିକାର ଇବୋ ଭାଷାରେ ଏକ ଶବ୍ଦ ଅଛି ଯହିଁରେ ପାଞ୍ଚୋଟି ବ୍ୟଞ୍ଜନ ରହିଛି, ଅଥଚ ଗୋଟିଏ ହେଲେ ସ୍ୱରଧ୍ୱନି ନାହିଁ । ଆଧୁନିକ ଧ୍ୱନିବିଜ୍ଞାନୀମାନଙ୍କ ମତରେ ଯେଉଁ ଧ୍ୱନିର ଉଚ୍ଚାରଣ ସମୟରେ ବାୟୁପ୍ରବାହ ଗଳବିଳ (Pharynx) ବା ମୁଖବିବରର କୌଣସିଠାରେ ବାଧାପ୍ରାପ୍ତ ହୁଏ ନାହିଁ ବା ସଂକୀର୍ଣ୍ଣ ହୁଏ ନାହିଁ ଏବଂ ତା' ଫଳରେ ବାୟୁପ୍ରବାହ ନିର୍ବିଘ୍ନରେ ନିର୍ଗତ ହୁଏ, ତାହାକୁ ସ୍ୱରଧ୍ୱନି କୁହାଯାଏ । ଯେଉଁ ଧ୍ୱନିର ଉଚ୍ଚାରଣରେ ବାୟୁପ୍ରବାହ ଗଳବିଳ ବା ମୁଖବିବରର କୌଣସିଠାରେ ଅଳ୍ପବହୁତ ପରିମାଣରେ ବାଧା ପାଏ, ତାହାକୁ ବ୍ୟଞ୍ଜନଧ୍ୱନି କୁହାଯାଏ । ସ୍ୱରଧ୍ୱନି ଉଚ୍ଚାରିତ ହେଲାବେଳେ ସ୍ୱରଯନ୍ତ୍ର କମ୍ପିତ ହୁଏ ଏବଂ ଓଷ୍ଠ ତଥା ଜିହ୍ୱାର ଆକୁଞ୍ଚନ

ହେବୁ ଏକ ଘୋଷର ସୃଷ୍ଟି ହୁଏ । ତେଣୁ ସ୍ୱରଧ୍ୱନି ହେଉଛି ସଘୋଷଧ୍ୱନି । ଏହାର ଉଚ୍ଚାରଣ ବେଳେ ଜିହ୍ୱାର ବିଭିନ୍ନ ଅଂଶ ବିଭିନ୍ନ ପରିମାଣରେ ଉତ୍ତୋଳିତ ହୋଇଥାଏ, କିନ୍ତୁ ଏହି ଅଂଶ ଏକ ନିର୍ଦ୍ଦିଷ୍ଟ ସୀମାରେଖା ପର୍ଯ୍ୟନ୍ତ ଉପରକୁ ଉଠିପାରେ । ନଚେତ୍ ମୁଖବିବର ମଧ୍ୟରେ ବାୟୁପ୍ରବାହ ବାଧାପ୍ରାପ୍ତ ହେବ ଏବଂ ଉତ୍ପନ୍ନ ଧ୍ୱନି ସ୍ୱରଧ୍ୱନି ନହୋଇ ବରଂ ଏକ ବ୍ୟଞ୍ଜନଧ୍ୱନିରେ ପରିଣତ ହୋଇଯିବ । ବ୍ୟଞ୍ଜନଧ୍ୱନି ଅପେକ୍ଷା ସ୍ୱରଧ୍ୱନି ଯଥେଷ୍ଟ ସ୍ପଷ୍ଟ ଶୁଣାଯାଏ । ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ମୁଖବିବର ମୁକ୍ତ ରହୁଥିବାରୁ ସ୍ୱରକୁ ଯେତେ ଲମ୍ବା ଯାଏ ଦୀର୍ଘ କରି ଉଚ୍ଚାରଣ କରାଯାଇପାରେ, ମାତ୍ର ବ୍ୟଞ୍ଜନଧ୍ୱନି କ୍ଷେତ୍ରରେ ତାହା ସମ୍ଭବ ନୁହେଁ । ସେଥିପାଇଁ ସଙ୍ଗୀତ ସାଧନାରେ ସଙ୍ଗୀତଜ୍ଞମାନେ 'ଆ—ଆ—ଆ' ସ୍ୱରଧ୍ୱନି ଉଚ୍ଚାରଣ କରିଥାନ୍ତି କିନ୍ତୁ କେହି 'କ୍—କ୍—କ୍—କ୍' ଉଚ୍ଚାରଣ କରିବାର ଶୁଣାଯାଏ ନାହିଁ ।

## ସ୍ୱରଧ୍ୱନିର ବର୍ଗୀକରଣ

ବିଭିନ୍ନ ଭାଷାରେ ଏକାଧିକ ସ୍ୱରଧ୍ୱନି ଶୁଣାଯାଏ । ଏହି ସ୍ୱରମାନଙ୍କୁ ବିଭିନ୍ନ ଦୃଷ୍ଟିକୋଣରୁ ନାନା ଭାବରେ ବିଭକ୍ତ କରାଯାଇପାରେ । ଏହି ବିଭାଗଗୁଡ଼ିକ ଭିତରୁ କେତେକ ପ୍ରଧାନ ଓ କେତେକ ଅପ୍ରଧାନ । ଅପ୍ରଧାନ ବିଭାଗକୁ ପ୍ରଧାନ ବିଭାଗର ସଂସ୍କାର (Modification) ରୂପେ ଗ୍ରହଣ କରାଯାଇପାରେ । ଯେ କୌଣସି ସ୍ୱର-ଧ୍ୱନିର ଉଚ୍ଚାରଣ ପ୍ରଧାନତଃ ଜିହ୍ୱାର ବିଭିନ୍ନ ଅଂଶ, ଜିହ୍ୱାର ଉତ୍ତୋଳନ ଓ ଓଷ୍ଠ-ଦ୍ୱୟର ଅବସ୍ଥିତି ଅନୁଯାୟୀ ହୋଇଥାଏ । ନିମ୍ନରେ ବିଭିନ୍ନ ବିଭାଗର ବିଶେଷ ବିବରଣୀ ଦିଆଯାଉଅଛି ।

(୧) ପ୍ରଧାନ ବିଭାଗୀକରଣ—

(କ) ଜିହ୍ୱାର ବିଭିନ୍ନ ଅଂଶର କାର୍ଯ୍ୟ ଦୃଷ୍ଟିରୁ ସ୍ୱରମାନଙ୍କୁ ୩ ଭାଗରେ ବିଭକ୍ତ କରାଯାଇପାରେ :—

(i) ଅଗ୍ରସ୍ୱର—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ଅଗ୍ର ବା ସମ୍ମୁଖ ଦିଗକୁ ପ୍ରସୃତ ହୁଏ, ତାହାକୁ ଅଗ୍ରସ୍ୱର ବା ସମ୍ମୁଖସ୍ୱର କୁହାଯାଏ, ଯଥା— ଇ, ଏ, ଏ̄, ଆ ।

(ii) ପଶ୍ଚାତ୍‌ସ୍ୱର—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ପଶ୍ଚାତ୍ ଦିଗକୁ ଆକୃଷ୍ଟ ହୁଏ, ତାହାକୁ ପଶ୍ଚାତ୍‌ସ୍ୱର କୁହାଯାଏ, ଯଥା—ଅ̄, ଓ̄, ଓ, ଉ ।

(iii) **କେନ୍ଦ୍ରୀୟସ୍ୱର**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ସମୟରେ ଜିହ୍ୱାକେନ୍ଦ୍ର ( ଅଗ୍ରଜିହ୍ୱାର ପଶ୍ଚାର୍ଦ୍ଧ ଓ ପଶ୍ଚାଜ୍ଜିହ୍ୱାର ଅଗ୍ରାର୍ଦ୍ଧ ) ଉପରକୁ ଉଠିଯାଏ ତାହାକୁ କେନ୍ଦ୍ରୀୟସ୍ୱର କୁହାଯାଏ । ଯଥା—ଅ, ଅ ।

(ଖ) ଜିହ୍ୱାର ଉତ୍ତୋଳନ ଦୃଷ୍ଟିରୁ ସ୍ୱରମାନଙ୍କୁ ଚାରିଭାଗରେ ବିଭକ୍ତ କରାଯାଇପାରେ :—

(i) **ସଂବୃତ**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱାର କୌଣସି ଅଂଶ ବେଶି ପରିମାଣରେ ଉର୍ଦ୍ଧ୍ୱକୁ ଉତ୍ତୋଳିତ ହୁଏ ଓ ମୁଖଦ୍ୱାର ଅଧିକ ସଂବୃତ ବା ସଙ୍କୁଚିତ ହୋଇଯାଏ, ତାହାକୁ ସଂବୃତ ସ୍ୱର କୁହାଯାଏ, ଯଥା - ଇ, ଉ ।

(ii) **ବିବୃତ**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ବରାବର ଶୁଠି ରହିଥାଏ ଏବଂ ଫଳରେ ମୁଖଦ୍ୱାର ବିବୃତ ବା ଖୋଲା ରହେ, ତାହାକୁ ବିବୃତ ସ୍ୱରଧ୍ୱନି କୁହାଯାଏ, ଯଥା—ଅ, ଅ̄ ।

(iii) **ଅର୍ଦ୍ଧସଂବୃତ**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ଅଳ୍ପ ଉତ୍ତୋଳିତ ହୋଇଥାଏ ଓ ମୁଖଦ୍ୱାର ଅର୍ଦ୍ଧସଂବୃତ ରହିଥାଏ, ତାହାକୁ ଅର୍ଦ୍ଧସଂବୃତ ସ୍ୱରଧ୍ୱନି କୁହାଯାଏ, ଯଥା—ଏ̄, ଓ̄ ।

(iv) **ଅର୍ଦ୍ଧବିବୃତ**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ଅଳ୍ପ ଉତ୍ତୋଳିତ ହୋଇଥାଏ ଓ ମୁଖଦ୍ୱାର ଅର୍ଦ୍ଧବିବୃତ ରହିଥାଏ, ତାହାକୁ ଅର୍ଦ୍ଧବିବୃତ ସ୍ୱରଧ୍ୱନି କୁହାଯାଏ, ଯଥା—ଏ̄, ଓ̄ ।

(ଗ) **ଓଷ୍ଠଦ୍ୱୟର ଅବସ୍ଥିତି**—ଓଷ୍ଠଦ୍ୱୟର ଅବସ୍ଥିତି ଦୃଷ୍ଟିରୁ ସ୍ୱରମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା—ବୃତ୍ତାକାର ଓ ଅବୃତ୍ତାକାର । ଉ, ଊ ସ୍ୱରଧ୍ୱନି ଦୁଇଟିର ଉଚ୍ଚାରଣ ବେଳେ ଓଷ୍ଠଦ୍ୱୟ ବୃତ୍ତାକାରରେ ରହୁଥିବାରୁ ଏ ଦୁଇଟି ବୃତ୍ତାକାର ସ୍ୱରଧ୍ୱନି; କିନ୍ତୁ ଅ, ଏ ସ୍ୱରଧ୍ୱନି ଉଚ୍ଚାରଣବେଳେ ଓଷ୍ଠଦ୍ୱୟ ବୃତ୍ତାକାର ହୋଇ ନଥିବାରୁ ଏ ଦୁଇଟି ଅବୃତ୍ତାକାର ସ୍ୱରଧ୍ୱନି । 'ଅ' ହେଉଛି ସ୍ୱଳ୍ପ ବୃତ୍ତାକାର ଏବଂ 'ଊ' ହେଉଛି ପୂର୍ଣ୍ଣବୃତ୍ତାକାର ସ୍ୱରଧ୍ୱନି ।

ଉପର୍ଯ୍ୟୁକ୍ତ କ, ଖ, ଗ ଏହି ତିନି ବିଭାଗମାନଙ୍କୁ ସମବାୟରେ ଦେଖିଲେ ୩ × ୪ × ୨ ଅର୍ଥାତ୍ ୨୪ ପ୍ରକାରର ସ୍ୱରଧ୍ୱନି ଲକ୍ଷ୍ୟ କରାଯିବ । କେତେକ ଧ୍ୱନିବିତ୍ ମୌଳିକ ସ୍ୱରଧ୍ୱନିର ବା ମାନ ସ୍ୱରଧ୍ୱନିର ତ୍ରିକୋଣରେ ଇ-ଏ̄, ଏ̄-ଏ, ଏ-ଅ ମଧ୍ୟରେ ଥିବା ଦୂରତାକୁ ସମାନ ସମାନ ଭାଗକରି ଅଉ ଗୋଟିଏ ଲେଖାଏଁ ସ୍ୱରଧ୍ୱନି କଳ୍ପନା କରନ୍ତି । ତେଣୁ ଅଗ୍ର, ପଶ୍ଚାତ୍ ଏବଂ ମଧ୍ୟ ପ୍ରତ୍ୟେକ ବିଭାଗରେ ତିନୋଟି ଲେଖାଏଁ ସ୍ୱରଧ୍ୱନି ବଢ଼ିଯାଏ । ପୁଣି ପ୍ରତ୍ୟେକଙ୍କୁ ବୃତ୍ତାକାର ବା ଅବୃତ୍ତାକାର ଭାବରେ

ସ୍ୱତନ୍ତ୍ର କରାଯାଇପାରେ । ଫଳରେ ୩ × ୩ × ୨ ଅର୍ଥାତ୍ ୧୮ଟି ସ୍ୱରଧ୍ୱନି ବଢ଼ିଯାଏ । ଫଳରେ ୨୪ + ୧୮ = ୪୨ ପ୍ରକାରର ସ୍ୱରଧ୍ୱନିର ସୃଷ୍ଟି ହୁଏ ।

**(୨) ଅପ୍ରଧାନ ବର୍ଗ**—ପ୍ରଧାନ ବର୍ଗର ସ୍ୱରଧ୍ୱନିଗୁଡ଼ିକ ଜିହ୍ୱା ଓ ଓଷ୍ଠକୁ କେନ୍ଦ୍ରକରି ଗଠିତ । କିନ୍ତୁ ସ୍ୱର ସୃଷ୍ଟିରେ ଅନ୍ୟାନ୍ୟ ଅବୟବ ମଧ୍ୟ ବ୍ୟବହୃତ ହୋଇଥାନ୍ତି । ସେମାନଙ୍କୁ କେନ୍ଦ୍ରକରି ଅନେକେତୋଟି ସ୍ୱରଧ୍ୱନିର ଆବିଷ୍କାର କରାଯାଇଛି । ଯଥା :—

**(କ) ଅନୁନାସିକ**—ଯେଉଁ ସ୍ୱରଧ୍ୱନିର ଉଚ୍ଚାରଣ ସମୟରେ କୋମଳତାଳୁ ତଳକୁ ଓହ୍ଲାଇ ରହିବା ଫଳରେ ବାୟୁ ପ୍ରବାହର କିଛି ଅଂଶ ନାସାରନ୍ଧ୍ର ଦେଇ ବାହାରି ଆସେ, ତାହାକୁ ଅନୁନାସିକ ସ୍ୱରଧ୍ୱନି କୁହାଯାଏ । ଯଥା— ଅଁ, ଆଁ, ଇଁ, ଉଁ, ଏଁ, ଓଁ ଇତ୍ୟାଦି । ଦୁଇଟି ନାସିକ୍ୟବ୍ୟଞ୍ଜନ ମଧ୍ୟରେ ଦେଖା ଦେଉଥିବା ଅନୁନାସିକ ସ୍ୱରଧ୍ୱନିର ଅନୁନାସିକତାଠାରୁ ସ୍ୱାଧୀନ ଅନୁନାସିକ ସ୍ୱରଧ୍ୱନିର ଅନୁନାସିକତା ଯଥେଷ୍ଟ ବେଶି । ଉଦାହରଣ ସ୍ୱରୂପ 'ମନ' ଶବ୍ଦର ଉଚ୍ଚାରଣ ବେଳେ 'ମ' ଓ 'ନ' ମଧ୍ୟରେ ଥିବା 'ଅଁ' ଏବଂ 'ମଣ' ଶବ୍ଦର ଉଚ୍ଚାରଣରେ 'ମ' ଓ 'ଣ' ମଧ୍ୟରେ ଥିବା 'ଅଁ'ରେ ଅନୁନାସିକତା କ୍ଷୀଣ; କିନ୍ତୁ କାହିଁ, ବାଉଁଶ ଆଦି ଶବ୍ଦରେ ଥିବା 'ଇ', 'ଉ'ର ଉଚ୍ଚାରଣରେ ଅନୁନାସିକତା ବେଶି ।

**(ଖ) ମୂର୍ଦ୍ଧନ୍ୟ**—ଜିହ୍ୱାଗ୍ରକୁ କଠିନତାଳୁ ଆଡ଼କୁ ଟେକି କୌଣସି ସ୍ୱରଧ୍ୱନିର ଉଚ୍ଚାରଣ କରାଗଲେ ତାହାକୁ ମୂର୍ଦ୍ଧନ୍ୟ ସ୍ୱରଧ୍ୱନି କୁହାଯାଏ । ମୂର୍ଦ୍ଧନ୍ୟ ସ୍ୱରଧ୍ୱନି ଆମେରିକାନ୍ ଇଂରାଜୀ ଭାଷାରେ ବେଶି ଶୁଣାଯାଏ । ଏହି ଭାଷାରେ bird ଓ hurt ଶବ୍ଦରେ ଏହି ମୂର୍ଦ୍ଧନ୍ୟ ସ୍ୱରଧ୍ୱନି ରହିଛି । ଏହାକୁ ଦେଖାଇବା ପାଇଁ ଏହା ଉପରେ ଏକ ଛୋଟ 'r' ଲେଖାଯାଇପାରେ ।

**(ଗ) ଅଘୋଷ**—ଧ୍ୱନିଗୁଡ଼ିକ ସାଧାରଣତଃ ସଘୋଷ । କିନ୍ତୁ ଫୁସ୍‌ଫୁସ୍ କରି ସ୍ୱରଧ୍ୱନି ଉଚ୍ଚାରଣ କଲେ ଏହା ଅଘୋଷ ହୋଇଯାଏ । ଏହାକୁ ଦେଖାଇବା ପାଇଁ ଏହା ତଳେ ଏକ ଛୋଟ 'o' ବା ଓଲ୍ଟା 'v' ଲେଖାଯାଇଥାଏ ।

**(ଘ) ଦୃଢ଼ ଓ ଶିଥିଳ**—କୌଣସି ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱାର ମାଂସପେଶୀ ଦୃଢ଼ ହୋଇ ରହିଲେ ତାହାକୁ ଦୃଢ଼ (Tense) ସ୍ୱରଧ୍ୱନି ଓ ଶିଥିଳ ହୋଇ ରହିଲେ ଶିଥିଳ (Lax) ସ୍ୱରଧ୍ୱନି କୁହାଯାଏ । ଫରାସୀ ଭାଷାର ସ୍ୱରଧ୍ୱନିଗୁଡ଼ିକ ଇଂରାଜୀ ଭାଷାର ସ୍ୱରଧ୍ୱନି ଅପେକ୍ଷା ଅଧିକ ଦୃଢ଼ । ଉଦାହରଣ ସ୍ୱରୂପ ଫରାସୀ Si, ici ଶବ୍ଦରେ ଥିବା 'i', ଇଂରାଜୀ seeରେ ଥିବା 'ee' ଅପେକ୍ଷା ଅଧିକ ଦୃଢ଼ ।

**(ଙ) ଅର୍ଦ୍ଧଘୋଷ ବା ମର୍ମର**—ସଘୋଷ ସ୍ୱର ଓ ଅଘୋଷ ସ୍ୱରର ମଧ୍ୟବର୍ତ୍ତୀ ଏକ ସ୍ୱରକୁ ଅର୍ଦ୍ଧଘୋଷ (half voice) ବା ମର୍ମର ସ୍ୱର (murmur

vowel) କୁହାଯାଏ । ବଳାଘାତହୀନ ଅକ୍ଷରର ସ୍ୱର କେବେ କେବେ ଅର୍ଦ୍ଧଘୋଷ ହୋଇଯାଏ । Potato ଶବ୍ଦର ପ୍ରଥମ 'o' ହେଉଛି ଅର୍ଦ୍ଧଘୋଷ ସ୍ୱର । ଦୁର୍ବଳ ଦୁର୍ବଳ ବ୍ୟକ୍ତିମାନଙ୍କ ଦ୍ୱାରା ଉଚ୍ଚାରିତ ଅଧିକାଂଶ ସ୍ୱର ହେଉଛି ଏହି ପ୍ରକାରର । ହିନ୍ଦୀ ଭାଷାରେ ସ୍ୱହ୍, ଓହ୍ ଇତ୍ୟାଦି ଶବ୍ଦରେ ଯେତେବେଳେ 'ହ୍' ପ୍ରାୟତଃ ଅନୁଚ୍ଚାରିତ ରହେ, ସେତେବେଳେ ପୂର୍ବବର୍ତ୍ତୀ ସ୍ୱର ମର୍ମର ସ୍ୱର ହୋଇଯାଏ ।

(ଚ) ମୂଳ ଓ ସଂଯୁକ୍ତ—ସ୍ୱରଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା ଗୋଟିଏ ସ୍ଥାନରେ ରହିଲେ ସେହି ସ୍ୱରଧ୍ୱନିକୁ ମୂଳ (monophothong) ସ୍ୱରଧ୍ୱନି ଓ ଜିହ୍ୱା ଏକ ସ୍ୱରର ଉଚ୍ଚାରଣରୁ ଅନ୍ୟ ସ୍ୱରର ଉଚ୍ଚାରଣକୁ ଚାଲିଗଲେ ସେହି ସ୍ୱରଧ୍ୱନିକୁ ସଂଯୁକ୍ତ (diphthong) ସ୍ୱରଧ୍ୱନି କୁହାଯାଏ । ଅ, ଇ, ଆ, ଉ ପ୍ରଭୃତି ମୂଳ ସ୍ୱର, କିନ୍ତୁ ଐ (ଅ-ଇ), ଔ (ଅ-ଉ) ହେଉଛି ସଂଯୁକ୍ତ ସ୍ୱରଧ୍ୱନି । ଗୋଟିଏ ମାତ୍ର ସ୍ୱରଧ୍ୱନିର ଉଚ୍ଚାରଣ କଲାବେଳେ ଯେଉଁ ସମୟ ଲାଗେ, ସଂଯୁକ୍ତ ସ୍ୱରଧ୍ୱନିରେ ଦୁଇଟି ସ୍ୱରଧ୍ୱନି ଉଚ୍ଚାରଣ କରିବାକୁ ସେତିକି ସମୟ ଲାଗେ । ଏହାକୁ କେହି କେହି ଦ୍ୱିସ୍ୱରଧ୍ୱନି ବା ସନ୍ଧ୍ୟକ୍ଷର ମଧ୍ୟ କହିଥାନ୍ତି । ସାଧାରଣତଃ ସଂଯୁକ୍ତ ସ୍ୱର କହିଲେ ଦୁଇଟି ଧ୍ୱନିର ସଂଯୋଗକୁ ବୁଝାଏ, କିନ୍ତୁ ପ୍ରକୃତରେ ଏହା ଦୁଇଟି ଧ୍ୱନିର ସମବାୟ ନ ହୋଇ ଏକମାତ୍ର ଧ୍ୱନି । ଏହା ଏକ ସିଲେବ୍‌ଲ (syllable) ଭାବରେ ଉଚ୍ଚାରିତ ହୁଏ । ଏହା ପ୍ରଶ୍ୱାସର ଏକ ଆଘାତରେ ଉଚ୍ଚାରିତ ହୁଏ । ଦୁଇଟି ମୂଳ ସ୍ୱର ପାଇଁ ଯେପରି ପ୍ରଶ୍ୱାସର ଦୁଇଟି ଆଘାତ ଆବଶ୍ୟକ ହୁଏ, ସଂଯୁକ୍ତ ସ୍ୱରପାଇଁ ସେପରି ଆବଶ୍ୟକ ହୁଏ ନାହିଁ । ଏହାକୁ ଉଚ୍ଚାରଣ କରିବା ପାଇଁ ଜିହ୍ୱା ଏକ ସ୍ୱର ସ୍ଥାନରୁ ଅନ୍ୟ ସ୍ୱର ସ୍ଥାନକୁ ସରଳତମ ମାର୍ଗରେ ଗତି କରିଯାଏ । ତେଣୁ ଏହା ଶ୍ରୋତାର କାନକୁ ଏକ ଧ୍ୱନି ପରି ଶୁଣାଯାଏ । ଏ ପ୍ରକାର ଧ୍ୱନିକୁ ଡକ୍ଟର ସୁନୀତି କୁମାର ଚାଟାର୍ଜି R. M. S. Heffner ଗତିଧ୍ୱନି (glide) ବୋଲି କହିଛନ୍ତି । ଇଂରାଜୀରେ ୯ଟି, ବଙ୍ଗଳାରେ ୨୫ଟି ଓ ଓଡ଼ିଆରେ ଦୁଇଟି ସଂଯୁକ୍ତ ସ୍ୱର (ଐ, ଔ) ରହିଛି । ଆଫ୍ରିକାନ୍ ଭାଷାମାନଙ୍କରେ ଏହାର ସଂଖ୍ୟା ତେରୁ ବେଶି ।

## ମାନସ୍ୱରଧ୍ୱନି ବା ମୌଳିକ ସ୍ୱରଧ୍ୱନି (Cardinal vowels)

ଯେଉଁ ଧ୍ୱନିର ଉଚ୍ଚାରଣ ସମୟରେ ବାୟୁପ୍ରବାହ ଗଳବିଲ ବା ମୁଖବିବରର କୌଣସିଠାରେ ବାଧା ପାଏ ନାହିଁ, ତାହା ହେଉଛି ସ୍ୱରଧ୍ୱନି । ତେବେ ଜିହ୍ୱାର ଉଚ୍ଚତା ଓ ଓଷ୍ଠର ଅବସ୍ଥିତି ଅନୁଯାୟୀ ମୁଖବିବରର ଆୟତନରେ ପରିବର୍ତ୍ତନ ହେଉଥିବାରୁ ବିଭିନ୍ନ ପ୍ରକାରର ସ୍ୱରଧ୍ୱନି ସୃଷ୍ଟି ଲାଭ କରେ । କୌଣସି ସ୍ୱରର ପ୍ରକୃତି ନିର୍ଣ୍ଣୟ କରିବା ପାଇଁ ତିନୋଟି କଥା ଲକ୍ଷ୍ୟ କରିବାକୁ ହେବ, (କ) ଜିହ୍ୱାର କେଉଁ ଅଂଶ ବ୍ୟବହୃତ ହେଉଛି, (ଖ) ଜିହ୍ୱା କେତେ ଉଚ୍ଚକୁ ଉତ୍ତୋଳିତ ହେଉଅଛି,

(ଗ) ଓଷ୍ଠର କି ପ୍ରକାର ଅବସ୍ଥିତି ରହିଛି । ଜିହ୍ୱାର ସାଧାରଣତଃ ଅବସ୍ଥିତିଠାରୁ ସର୍ବୋଚ୍ଚ ଉତ୍ତୋଳନ ପର୍ଯ୍ୟନ୍ତ ଦୂରତାକୁ ସମାନ ସମାନ ଭାବରେ ବିଭକ୍ତ କରି ପ୍ରତି ଅଂଶରେ ଜିହ୍ୱାକୁ ରଖି ଉଚ୍ଚାରଣ କଲେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଧ୍ୱନି ଉଚ୍ଚାରିତ ହୋଇଥାଏ । ଏହି ଧ୍ୱନିମାନଙ୍କୁ ସ୍ୱରଧ୍ୱନିର କ୍ଷେତ୍ରରେ ଏକ ଏକ ମାନଦଣ୍ଡ ଭାବରେ ଗ୍ରହଣ କରାଯାଇଛି, ତେଣୁ ଏଗୁଡ଼ିକୁ ମାନସ୍ୱର କୁହାଯାଏ । ଏହି ଧ୍ୱନିଗୁଡ଼ିକୁ ମୂଳକରି ଅନ୍ୟ ସ୍ୱରଧ୍ୱନିର ପ୍ରକୃତି ନିର୍ଣ୍ଣୟ କରାଯାଇଥାଏ, ତେଣୁ ଏହାକୁ କୁହାଯାଏ ମୌଳିକ ସ୍ୱରଧ୍ୱନି । ସର୍ବପ୍ରଥମେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଭାଷାତତ୍ତ୍ୱ ପ୍ରଫେସର୍ ଡାନିଏଲ୍ ଜୋନ୍ସ ଏହାର ପରିକଳ୍ପନା କରିଥିଲେ ।

ବିଭିନ୍ନ ଭାଷାରେ ରହିଥିବା ସ୍ୱରଧ୍ୱନି ସହିତ ଏହି ମାନସ୍ୱରର ବିଶେଷ କିଛି ସମ୍ପର୍କ ନାହିଁ, ବରଂ ଏଗୁଡ଼ିକ କାଳ୍ପନିକ ସ୍ୱରଧ୍ୱନି ବୋଲି ଅନେକଙ୍କର ମତ । କିନ୍ତୁ ଡାନିଏଲ ଜୋନ୍ସଙ୍କ ମତରେ ଏହି ମୌଳିକ ସ୍ୱରଧ୍ୱନିଗୁଡ଼ିକ ଯେକୌଣସି ଭାଷାର ସ୍ୱରଧ୍ୱନିମାନଙ୍କର ଉଚ୍ଚାରଣ ପ୍ରକ୍ରିୟାକୁ ସମ୍ୟକ୍ ଭାବରେ ନିର୍ଦ୍ଧାରିତ କରିଥାଏ । ନିମ୍ନଲିଖିତ ପ୍ରଣାଳୀରେ ମାନସ୍ୱର ବା ମୌଳିକ ସ୍ୱରଧ୍ୱନିଗୁଡ଼ିକର ସୃଷ୍ଟି ହୋଇଥାଏ ।

(କ) ଜିହ୍ୱାକୁ ସମ୍ମୁଖ ବା ଅଗ୍ରଭାଗକୁ ପ୍ରସୃତ କିମ୍ବା ପଶ୍ଚାଦ୍‌ଭାଗକୁ ଆକୃଷ୍ଟ କରିବା ଦ୍ୱାରା ।

(ଖ) ଜିହ୍ୱାକୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ ଅଥବା ନିମ୍ନକୁ ଅବନମିତ କରିବା ଦ୍ୱାରା ।

(ଗ) ଓଷ୍ଠ ଦୁଇଟିକୁ କୁଞ୍ଚିତ ଅଥବା ପ୍ରସାରିତ କରିବା ଦ୍ୱାରା ।

ଜିହ୍ୱାର ଅବସ୍ଥାନକୁ ଲକ୍ଷ୍ୟ କରି ଉଚ୍ଚାରଣର ସ୍ୱାତନ୍ତ୍ର୍ୟ ଅନୁସାରେ ଆଠୋଟି ମୌଳିକ ସ୍ୱରଧ୍ୱନିର ଆବିଷ୍କାର ହୋଇଅଛି; ସେଗୁଡ଼ିକ ହେଉଛି—ଇ (i), ଏ (e), ଏ̄ (E), ଅ($\bar{a}$), ଅ(a), ଓ($\bar{o}$), ଓ(o), ଉ(u) ।

ଏହି ମୌଳିକ ସ୍ୱରଧ୍ୱନିଗୁଡ଼ିକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇଅଛି— (କ) ଅଗ୍ରସ୍ୱର, (ଖ) ପଶ୍ଚାତ୍‌ସ୍ୱର । ସ୍ୱରଧ୍ୱନିର ପ୍ରଧାନ ବର୍ଗୀକରଣରେ ଅଗ୍ରସ୍ୱର ଓ ପଶ୍ଚାତ୍‌ସ୍ୱର ସମ୍ପର୍କରେ ଆଲୋଚନା କରାଯାଇଛି । ଅଗ୍ରସ୍ୱର ଅଗ୍ରଜିହ୍ୱା (Front of the tongue) ସାହାଯ୍ୟରେ ଓ ପଶ୍ଚାତ୍‌ସ୍ୱର ଜିହ୍ୱାର ପଶ୍ଚାଦ୍‌ଭାଗ ସାହାଯ୍ୟରେ ସୃଷ୍ଟି ହୋଇଥାଏ । ଇ, ଏ, ଏ, ଆ ଏହି ଚାରୋଟି ହେଉଛି ଅଗ୍ରସ୍ୱର ଧ୍ୱନି ଏବଂ ଆ̄, ଓ̄, ଓ, ଉ ଏହି ଚାରୋଟି ହେଉଛି ପଶ୍ଚାତ୍‌ସ୍ୱର ଧ୍ୱନି ।

ଇ, ଏ ଏ̄, ଆ—ଏହି ଚାରୋଟି ଧ୍ୱନିର ଉଚ୍ଚାରଣ ସମୟରେ ଓଷ୍ଠଦ୍ୱୟ ନ୍ୟୂନାଧିକ ପରିମାଣରେ ପ୍ରସୃତ ହେବା ଯୋଗୁ ଏଗୁଡ଼ିକ ପ୍ରସୃତ ସ୍ୱରଧ୍ୱନି (Retracted vowels) ଏବଂ ଅ̄, ଓ̄, ଓ, ଉ—ଏହି ଚାରୋଟି ଧ୍ୱନିର ଉଚ୍ଚାରଣ ସମୟରେ ଓଷ୍ଠଦ୍ୱୟ ନ୍ୟୂନାଧିକ ପରିମାଣରେ କୁଞ୍ଚିତ ହୋଇ ବର୍ତ୍ତୁଳାକାର ବା ବୃତ୍ତାକାର ଦେଖାଯାଉଥିବାରୁ ଏଗୁଡ଼ିକୁ କୁଞ୍ଚିତ ସ୍ୱରଧ୍ୱନି ବା ବର୍ତ୍ତୁଳ ସ୍ୱରଧ୍ୱନି ବା ବୃତ୍ତାକାର ସ୍ୱରଧ୍ୱନି କୁହାଯାଏ ।

ଇ, ଉ—ଏହି ଧ୍ୱନି ଦୁଇଟିର ଉଚ୍ଚାରଣ ସମୟରେ ମୁଖବିବର ସବୃତ ହେଉଥିବା ଯୋଗୁ ଏହି ଦୁଇଟି ଧ୍ୱନିକୁ ସବୃତ ସ୍ୱର (Closed vowels) ଏବଂ ଆ, ଅ̄—ଏହି ଧ୍ୱନି ଦୁଇଟିର ଉଚ୍ଚାରଣ ସମୟରେ ମୁଖବିବର ବିବୃତ ହେଉଥିବା ଯୋଗୁ ଏ ଦୁଇଟିକୁ ବିବୃତ ସ୍ୱର (Open vowels) କୁହାଯାଏ ।

ଏ, ଓ—ଏହି ଧ୍ୱନି ଦୁଇଟିର ଉଚ୍ଚାରଣ ବେଳେ ମୁଖବିବର ଅର୍ଦ୍ଧ ସବୃତ ରହୁଥିବାରୁ ଏଗୁଡ଼ିକୁ ଅର୍ଦ୍ଧ ସଂବୃତ ସ୍ୱର (Half closed vowels) ଏବଂ ଏ̄, ଓ̄—ଏହି ଧ୍ୱନି ଦୁଇଟିର ଉଚ୍ଚାରଣ ବେଳେ ମୁଖବିବର ଅର୍ଦ୍ଧ ବିବୃତ ରହୁଥିବାରୁ ଏଗୁଡ଼ିକୁ ଅର୍ଦ୍ଧବିବୃତ ସ୍ୱର (Half open vowels) କୁହାଯାଏ । ଯେଉଁ ସ୍ୱରର ସୃଷ୍ଟି ପାଇଁ ଅଗ୍ରଜିହ୍ୱା ଓ ଜିହ୍ୱାପଶ୍ଚାତ୍ର ମଧ୍ୟବର୍ତ୍ତୀ କେନ୍ଦ୍ରଅଂଶ ଉପରକୁ ଉଠିଥାଏ, ତାହାକୁ କେନ୍ଦ୍ରୀୟ ସ୍ୱର କୁହାଯାଏ, ଯଥା—ଅ, ଅ̄ । ଏହି ମୌଳିକ ସ୍ୱରଧ୍ୱନିକୁ ବୁଝାଇବା ପାଇଁ ସ୍ୱର ତ୍ରିକୋଣର ସାହାଯ୍ୟ ନିଆଯାଏ । ବାସ୍ତବରେ ସ୍ୱର ତ୍ରିକୋଣ ଏକ ଚତୁଷ୍କୋଣ ହେଲେହେଁ ପରମ୍ପରା ଅନୁଯାୟୀ ଏହାକୁ ତ୍ରିକୋଣ କୁହାଯାଏ । ସ୍ୱର ତ୍ରିକୋଣ ଅଙ୍କନବେଳେ ନିମ୍ନପ୍ରକାର ପ୍ରଣାଳୀ ଅନୁସୃତ ହେବା ଉଚିତ । ଆ̄ (a) ଏବଂ ଉ (u) ବିନ୍ଦୁ ସନ୍ନିହିତ କୋଣ ପ୍ରତ୍ୟେକ ଏକ ଏକ ସମକୋଣ ହେବ ଏବଂ ଅ-ଆ̄,-ଆ̄-ଉ, ଉ-ଇ ବାହୁମାନଙ୍କର ଅନୁପାତ ଯଥାକ୍ରମେ ୨: ୩: ୪ ହେବ । ଭାରତୀୟ ଭାଷାମାନଙ୍କରେ ରଚିତ ବହୁ ଭାଷାବିଜ୍ଞାନ ଗ୍ରନ୍ଥରେ ଏହି ଚିତ୍ରର ଅଙ୍କନରେ ଭ୍ରମ ପରିଲକ୍ଷିତ ହୁଏ । ସାର୍ ପାକେଟ୍ ଓ ଭୌତୋର ମୌଳିକ ସ୍ୱରଧ୍ୱନିର ଚିତ୍ର କଳ୍ପନା କରିଥିଲେ ହେଁ ଡାନିଏଲ୍ ଜୋନ୍ସଙ୍କ ଦ୍ୱାରା ପରିକଳ୍ପିତ ଚିତ୍ର ଅଧିକ

ସୁଚିନ୍ତିତ ଓ ଜନପ୍ରିୟ । ଡାନିଏଲ୍ ଜୋନ୍‌ସଙ୍କ ଦ୍ୱାରା ନିର୍ଦ୍ଧାରିତ ଚେଶ୍ଟି ନିମ୍ନରେ ପ୍ରଦତ୍ତ ହୋଇଅଛି ।




(ମାନସ୍ୱର ତ୍ରିକୋଣ)

ପ୍ରତ୍ୟେକ ମାନସ୍ୱର ଧ୍ୱନି ଉଚ୍ଚାରଣରେ ହ୍ରସ୍ୱ ଓ ଦୀର୍ଘ ହୋଇପାରେ । ତେଣୁ ଏହା ହ୍ରସ୍ୱ ଦୀର୍ଘ ଭେଦରେ (୮ × ୨) ଷୋହଳ । ଅଧିକାଂଶ ଆର୍ଯ୍ୟ ଭାଷାରେ ଆଉ ଏକ ଅଧିକ ସ୍ୱରଧ୍ୱନି ଲକ୍ଷ୍ୟ କରାଯାଇପାରେ । ଏହି ଅଧିକ ସ୍ୱରଧ୍ୱନିଟି ହେଉଛି ଅତି ହ୍ରସ୍ୱଅ । ଅଗ୍ର ଓ ପଶ୍ଚାତ୍‌ର ଠିକ୍ ମଧ୍ୟଭାଗରୁ କ୍ରମେ କ୍ରମେ ଅ-ଆ ସ୍ୱରଧ୍ୱନି ଆଡ଼କୁ ଅଗ୍ରଗତି କଲେ ଶେଷରେ ଏକ କ୍ଷୀଣ ଓ ଅତି ହ୍ରସ୍ୱ ଧ୍ୱନିରେ ପହଞ୍ଚିବାକୁ ହୁଏ । କେତେକ ବିଦ୍ୱାନ୍ ə ନାମକ ଆଉ ଏକ ସ୍ୱରଧ୍ୱନିର ଅବିଷ୍କାର କରିଛନ୍ତି । ପଶ୍ଚାତ୍ ମାନସ୍ୱରଧ୍ୱନି 'ଓ' ରୁ ସମାନ୍ତରାଳ ସରଳ ରେଖାରେ ଅତି ହ୍ରସ୍ୱଧ୍ୱନି ଅଭିମୁଖେ କ୍ରମେ କ୍ରମେ ଅଗ୍ରଗତି କଲେ ଏହି ଧ୍ୱନିର ସୃଷ୍ଟି ହୁଏ । କାହାର କାହାର ମତରେ ପଶ୍ଚାତ୍ ମାନସ୍ୱରଧ୍ୱନିରୁ ଅତି ହ୍ରସ୍ୱଧ୍ୱନି ଆଡ଼କୁ କ୍ରମେ କ୍ରମେ ଅଗ୍ରଗତି କଲେ ଓ ଧ୍ୱନି ପାଖରେ ପହଞ୍ଚିବା ବେଳକୁ ଏହି ଧ୍ୱନିର ସୃଷ୍ଟି ହୁଏ ।

କେତେକ ବିଦ୍ୱାନ୍ ପ୍ରତ୍ୟେକ ମୌଳିକ ସ୍ୱରଧ୍ୱନିକୁ ହ୍ରସ୍ୱ, ଦୀର୍ଘ ଓ ପ୍ଳୁତ ଉଚ୍ଚାରଣ ଅନୁଯାୟୀ ତିନି ଭାଗରେ ବିଭକ୍ତ କରିଥାନ୍ତି । ଏହି ବିଭାଗୀକରଣ ଅନୁଯାୟୀ ମାନସ୍ୱରଧ୍ୱନି ୨୪ ପ୍ରକାର ।

ଏହିପରି ଭାବରେ ମୌଳିକ ସ୍ୱରଧ୍ୱନିଗୁଡ଼ିକ ଚର୍ଚ୍ଚିତ ହୋଇଥିଲେ ମଧ୍ୟ ବାସ୍ତବଉଚ୍ଚାରଣ କ୍ଷେତ୍ରରେ ଏଗୁଡ଼ିକର ଗୁରୁତ୍ୱ ପ୍ରାୟ ଉପଲବ୍ଧ ହୁଏ ନାହିଁ । ତଥାପି ପଶ୍ଚାତ୍ୟ ଭାଷାବିଜ୍ଞାନ ଧ୍ୱନିଗୁଡ଼ିକର ଏହିପରି ସୂକ୍ଷ୍ମାତିସୂକ୍ଷ୍ମ ଅଧ୍ୟୟନରେ ପ୍ରବୃତ୍ତ ହୋଇଥିବାରୁ ସେହି ଭାଷାମାନଙ୍କର ଉଚ୍ଚାରଣ ଅଧିକ ନିର୍ଦ୍ଦିଷ୍ଟ, ନିର୍ଦ୍ଧାରିତ ଓ ଶୃଙ୍ଖଳିତ ।

ମାନସ୍ୱରକୁ ଶିଖି ଅଭ୍ୟାସ କରିବା ଏକ କଷ୍ଟକର ବ୍ୟାପାର । କେହିରେ ମାନସ୍ୱରର ବର୍ଣ୍ଣନା ପଢ଼ି କେହି ଏହାକୁ ଅଭ୍ୟାସ କରିବା ସମ୍ଭବ ନୁହେଁ । ବାରମ୍ବାର

ରେକର୍ଡ଼ରୁ ଏହି ଧ୍ୱନି ନିର୍ଭୁଲ୍ ଭାବରେ ଶୁଣି, ତାକୁ ଭଲଭାବରେ ମନେରଖି, ଜିହ୍ୱାର ଅବସ୍ଥିତିକୁ ଠିକ୍ ରଖି, ଠିକ୍ ସେହିପରି ଧ୍ୱନି ଉଚ୍ଚାରଣ କଲେ ଯାଇ ଜଣେ ମାନସ୍ୱର ଶିକ୍ଷି ଅଭ୍ୟସ୍ତ କରିପାରିବ । ମାନସ୍ୱର ଶିକ୍ଷା ପାଇଁ ଯନ୍ତ୍ରର ଆବିଷ୍କାର ହୋଇଅଛି । ତେବେ ମୋଟାମୋଟି ଭାବରେ ଏହାର ଉଚ୍ଚାରଣ ସ୍ୱରୂପ ଜାଣିବା ପାଇଁ ବିଭିନ୍ନ ଭାଷାର କେତୋଟି ଉଦାହରଣ ଦିଆଯାଇପାରେ ।

| ମାନସ୍ୱର | ବିଭିନ୍ନ ଭାଷାର ଶବ୍ଦରେ ଏହାର ଉଚ୍ଚାରଣ |
|---|---|
| ଇ | ଫରାସୀ si ର i, vifର i |
| | ଜର୍ମାନ Bieneର ie |
| ଏ | ସ୍କଟିସ୍ dayର ay |
| ଏ̄ | ଫରାସୀ faireରେ ai, ଜର୍ମାନ୍ traneର e |
| ଅ | ଫରାସୀ laର a, patteର a |
| ଆ̄ | ଫରାସୀ pasର a, ଆମେରିକାନ୍ ଇଂରାଜୀ calmର a |
| ଓ̄ | ଜର୍ମାନ sooneର o |
| ଓ | ଫରାସୀ nosର o, ସ୍କଟ୍‌ଲଣ୍ଡ roseର o |
| ଉ | ଜର୍ମାନ୍ gutର u |

(ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତଗୁଡ଼ିକ ପ୍ରଫେସର ଗୋଲକବିହାରୀ ଧଳଙ୍କର ଧ୍ୱନିବିଜ୍ଞାନ ଗ୍ରନ୍ଥରୁ ଗୃହୀତ )

ଗୌଣମାନସ୍ୱର—ସାତୋଟି ମୁଖ୍ୟ ମାନସ୍ୱର (ମାନସ୍ୱର 'a'ର ସମକକ୍ଷ କୌଣସି ଗୌଣମାନସ୍ୱର ନାହିଁ )ର ନିର୍ଦ୍ଦିଷ୍ଟ ଉଚ୍ଚାରଣ ମଧ୍ୟରେ କିଛି ପରିବର୍ତ୍ତନ କରି କେତେକ ଗୌଣମାନସ୍ୱର ସୃଷ୍ଟି କରାଯାଇପାରେ । ଅଗ୍ରମାନସ୍ୱର ଇ, ଏ, ଏ,ର ଜିହ୍ୱାସ୍ଥିତି ସହିତ ବିଭିନ୍ନ ମାତ୍ରାରେ ଓଷ୍ଠକୁ ଗୋଲକୃତ କରି ତିନୋଟି ଗୌଣମାନସ୍ୱର ଓ ପଶ୍ଚାତ୍‌ମାନସ୍ୱର ଆ̄, ଓ, ଓ̄, ଉ ର ଜିହ୍ୱାସ୍ଥିତିରେ ସମକକ୍ଷ ଅଗ୍ରମାନସ୍ୱରମାନଙ୍କର ଓଷ୍ଠର ସ୍ଥିତି ମିଳାଇ ଚାରୋଟି ଗୌଣମାନସ୍ୱର ସୃଷ୍ଟି କରାଯାଇପାରେ ।

## ବ୍ୟଞ୍ଜନଧ୍ୱନିର ବର୍ଗୀକରଣ

ଯେଉଁ ଧ୍ୱନିର ଉଚ୍ଚାରଣ ସମୟରେ ବାୟୁପ୍ରବାହ ମୁଖବିବର ବା ନାସାବିବରର କୌଣସି ନା କୌଣସି ସ୍ଥାନରେ ବାଧାପ୍ରାପ୍ତ ହୁଏ ତାହାକୁ ବ୍ୟଞ୍ଜନଧ୍ୱନି କୁହାଯାଏ । ଏହି ଧ୍ୱନିର ଉଚ୍ଚାରଣ ବେଳେ ବାଗ୍‌ଯନ୍ତ୍ରସ୍ଥ ବାୟୁମାର୍ଗ କୌଣସି ସ୍ଥାନରେ ପୂର୍ଣ୍ଣତଃ ବା ଆଂଶିକତଃ କିଛି କାଳ ପାଇଁ ରୁଦ୍ଧ ହୋଇଯାଏ କିମ୍ବା ଏତେ ସଙ୍କୀର୍ଣ୍ଣ ହୋଇଯାଏ ଯେ ବାୟୁ ପ୍ରବାହରେ ସଂଘର୍ଷ ଶୁଣାଯାଏ ବା ଆଲୋଡ଼ନ ସୃଷ୍ଟି ହୁଏ ।

ଉଚ୍ଚାରଣର ସ୍ଥାନ, ଉଚ୍ଚାରଣବିଧି, ସ୍ୱରତନ୍ତ୍ରୀ, ପ୍ରାଣତ୍ୱ, ଉଚ୍ଚାରଣଶକ୍ତି ଓ ଅନୁନାସିକତା ପ୍ରଭୃତି ଭିତ୍ତିରେ ବ୍ୟଞ୍ଜନଧ୍ୱନିର ବର୍ଗୀକରଣ ହୋଇପାରେ ।

**ଉଚ୍ଚାରଣ ସ୍ଥାନ ଭିତ୍ତିରେ ବର୍ଗୀକରଣ**—ଏହି ଆଧାର ଉପରେ ବ୍ୟଞ୍ଜନର ମୁଖ୍ୟତଃ ନିମ୍ନଲିଖିତ ବର୍ଗୀକରଣ ହୋଇପାରେ, ଯଥା—

(କ) କଣ୍ଠ୍ୟ ବା କୋମଳ ତାଳବ୍ୟ ( Guttural, velar or soft palatal)—କ, ଖ, ଗ, ଘ, ଙ ହେଉଛି କଣ୍ଠଧ୍ୱନି । ଜିହ୍ୱାର ପଶ୍ଚାଦ୍‌ଭାଗ ସାହାଯ୍ୟରେ କୋମଳତାଳୁ ବା କଣ୍ଠକୁ ସ୍ପର୍ଶ କରାଯାଇ ଏହି ଧ୍ୱନିର ସୃଷ୍ଟି କରାଯାଏ ।

(ଖ) ତାଲବ୍ୟ ବା କଠୋର ତାଲବ୍ୟ (Palatal) – ଜିହ୍ୱାଶୀର୍ଷ ଦ୍ୱାରା କଠୋର ତାଳୁକୁ ସ୍ପର୍ଶ କରାଗଲେ ଏହି ଧ୍ୱନିର ସୃଷ୍ଟି ହୁଏ । ଓଡ଼ିଆ ଚ, ଛ, ଜ, ଝ, ଞ ଏହାର ଅନ୍ତର୍ଗତ । ସଂସ୍କୃତରେ ଇ, 'ଚ' ବର୍ଗ (ଚ, ଛ, ଜ, ଝ, ଞ), ଯ, ଶ କୁ ତାଲବ୍ୟଧ୍ୱନି ଭାବରେ ଗ୍ରହଣ କରାଯାଇଛି । ("ଇଚୁଯଶାନାଂ ତାଳୁ") ।

(ଗ) ମୂର୍ଦ୍ଧନ୍ୟ (Cerebral) – ଜିହ୍ୱାଶୀର୍ଷ ମୂର୍ଦ୍ଧା (Cerebrum)କୁ କଠିନ ତାଳୁର ଉପର ଅଂଶକୁ ସ୍ପର୍ଶ କଲେ ଏହି ଧ୍ୱନିର ସୃଷ୍ଟି ହୁଏ । ସଂସ୍କୃତରେ 'ଟ' ବର୍ଗ ଧ୍ୱନିସମୂହ (ଟ, ଠ, ଡ, ଢ, ଣ), ଋ, ଷ ଆଦି ମୂର୍ଦ୍ଧନ୍ୟଧ୍ୱନି । ("ଋଟୁରଷାଣାଂ ମୂର୍ଦ୍ଧା") । ଓଡ଼ିଆ ଭାଷାରେ ମଧ୍ୟ ଏହି ଧ୍ୱନିର ଉତ୍ପତ୍ତିସ୍ଥଳ ମୂର୍ଦ୍ଧା, ତେଣୁ ଏଗୁଡ଼ିକ ଓଡ଼ିଆରେ ମୂର୍ଦ୍ଧନ୍ୟଧ୍ୱନି ।

(ଘ) ଦନ୍ତ୍ୟ (dental)—ଦାନ୍ତକୁ ଜିହ୍ୱାଶୀର୍ଷଦ୍ୱାରା ସ୍ପର୍ଶ କରାଯାଇ ଏହାର ଉଚ୍ଚାରଣ କରାଯାଏ । ଓଡ଼ିଆରେ ତ, ଥ, ଦ, ଧ, ନ ହେଉଛି ଦନ୍ତ୍ୟ ବ୍ୟଞ୍ଜନ । ସଂସ୍କୃତରେ ଳ, ତ ବର୍ଗ (ତ, ଥ, ଦ, ଧ, ନ), ଲ, ସ ହେଉଛି ଦନ୍ତଧ୍ୱନି । ଓଡ଼ିଆରେ ମଧ୍ୟ 'ସ'କୁ ଦନ୍ତ୍ୟ କୁହାଯାଏ ।

(ଙ) ଓଷ୍ଠ୍ୟ (bilabial)—ଦୁଇ ଓଷ୍ଠର ସ୍ପର୍ଶଦ୍ୱାରା ଏହି ଧ୍ୱନିର ସୃଷ୍ଟି ହୁଏ । ପ, ଫ, ବ, ଭ, ମ ହେଉଛି ଓଷ୍ଠ୍ୟଧ୍ୱନି ।

(ଚ) ବର୍ତ୍ସ୍ୟ ବା ଦନ୍ତମୂଳୀୟ (alveolar)—ବର୍ତ୍ସ୍ୟ (ଦାନ୍ତମାଢ଼ି)କୁ ଜିହ୍ୱାଶୀର୍ଷ ସାହାଯ୍ୟରେ ସ୍ପର୍ଶ କରି ଏହି ଧ୍ୱନି ଉତ୍ପନ୍ନ କରାଯାଏ । ନ, ଲ, ର, ସ, ଜ ଏହି ବର୍ଗର । ଇଂରାଜୀ T, D ମଧ୍ୟ ବର୍ତ୍ସ୍ୟଧ୍ୱନି ।

(ଛ) ସ୍ୱରଯନ୍ତ୍ରମୁଖୀ ବା କାକଲ୍ୟ (Laryngeal or glottal)—ସ୍ୱରଯନ୍ତ୍ରମୁଖରୁ ଏହି ଧ୍ୱନି ଉଚ୍ଚାରିତ ହୁଏ । ଓଡ଼ିଆ 'ହ' ହେଉଛି ଏକ ସ୍ୱରଯନ୍ତ୍ରମୁଖୀ (କାକଲ୍ୟ) ସଂଘର୍ଷୀଧ୍ୱନି ।

(ଜ) ଅଳଜିହ୍ୱୀୟ (Uvular)—ଜିହ୍ୱାମୂଳ ବା ଜିହ୍ୱାପଶ୍ଚକୁ ଅଳଜିହ୍ୱା ନିକଟବର୍ତ୍ତୀ କରାଇ ବାୟୁମାର୍ଗକୁ ସଙ୍କୀର୍ଣ୍ଣ କରି ଏହି ଧ୍ୱନି ଉଚ୍ଚାରଣ କରାଯାଇପାରେ । ଏହା ଏକ ସ୍ପର୍ଶ-ସଂଘର୍ଷୀଧ୍ୱନି । ଏହାକୁ ଜିହ୍ୱାମୂଳୀୟ ବା ଜିହ୍ୱାପଶ୍ଚୀୟଧ୍ୱନି ମଧ୍ୟ କୁହାଯାଇପାରେ । ଆରବୀୟ ଏବଂ ଏସ୍କିମୋ ଭାଷାରେ ଏହି ଧ୍ୱନି ଶୁଣିବାକୁ ମିଳେ । ଆରବୀୟ ଭାଷାର ପ୍ରଭାବରେ ଏହି ଧ୍ୱନି ଭାରତୀୟ ଭାଷାରେ ମଧ୍ୟ ସ୍ଥାନ ପାଇଛି, ଯଥା — କ, ଖ, ଗ ଇତ୍ୟାଦି ।

(ଝ) ଦନ୍ତୌଷ୍ଠ୍ୟ (Labiodental)—ତଳ ଓଷ୍ଠକୁ ଉପର ଦାନ୍ତଦ୍ୱାରା ସ୍ପର୍ଶ କରାଇ ଧ୍ୱନିର ସୃଷ୍ଟି କରାଯାଏ, ଯଥା—ଫ (ଇଂରାଜୀ father ଶବ୍ଦର ଉଚ୍ଚାରଣରେ) ।

## ଉଚ୍ଚାରଣ ବିଧି ଭିତ୍ତିରେ ବର୍ଗୀକରଣ

(କ) ସ୍ପର୍ଶ (Stop, Plosive)—ଏହି ଧ୍ୱନିର ଉଚ୍ଚାରଣ ସମୟରେ ଓଠ ସହିତ ଓଠର, ତଳ ଓଠ ସହିତ ଉପର ଦାନ୍ତର, ଜିହ୍ୱାର ଅଗ୍ରଭାଗ ସହିତ ଦାନ୍ତର ଅଥବା ଜିହ୍ୱାର ପଶ୍ଚାଦ୍‌ଭାଗ ସହିତ କୋମଳ ତାଳୁର ସ୍ପର୍ଶ ହୋଇଥାଏ । ଏପରି ସ୍ପର୍ଶ ଫଳରେ ବାୟୁ ପ୍ରବାହ କିଛି ସମୟ ପାଇଁ ଅବରୁଦ୍ଧ ହୋଇଯାଏ । ପରେ ପରସ୍ପରକୁ ସ୍ପର୍ଶ କରୁଥିବା ଉଚ୍ଚାରଣ ଅବୟବ ପରସ୍ପରଠାରୁ ଅପସରିଯାନ୍ତି, ଫଳରେ ବାୟୁ ନିର୍ଗମନ ପଥ ଉନ୍ମୁକ୍ତ ହୋଇଯାଏ । ଏହି ଉନ୍ମୋଚନ ବେଳେ ଫୁସ୍‌ଫୁସ୍‌ର ନିର୍ଗତ ବାୟୁରୂପରେ ଏକ ସ୍ଫୋଟନଧ୍ୱନି ଶୁଣାଯାଏ । ଅବରୋଧ ବେଳେ ବାଗ୍‌ଯନ୍ତ୍ରର ଅବୟବମାନେ ପରସ୍ପରକୁ ସ୍ପର୍ଶ କରୁଥିବାରୁ ସଂସ୍କୃତରେ ଏହାକୁ ସ୍ପର୍ଶବ୍ୟଞ୍ଜନ କୁହାଯାଏ । କିନ୍ତୁ ବାୟୁମାର୍ଗର ଅବରୋଧ ଉପରେ ଗୁରୁତ୍ୱ ଦିଆଯାଇ ଇଂରାଜୀରେ ଏହାକୁ Stop consonant କୁହାଯାଏ ଏବଂ ଅବରୋଧ ପରେ ସ୍ଫୋଟନଧ୍ୱନି ଯୋଗୁ କେହି କେହି ଏହାକୁ ସ୍ଫୋଟ ବା ସ୍ଫୋଟକ ବ୍ୟଞ୍ଜନ (Plosive consonant) କହିଥାନ୍ତି ।

ସ୍ପର୍ଶବ୍ୟଞ୍ଜନର ସୃଷ୍ଟି ବେଳେ ବାୟୁପ୍ରବାହ ଅଳ୍ପ ସ୍ଫୋଟନ ବା ଅଧିକ ସ୍ଫୋଟନ ସହିତ ନିର୍ଗତ ହୋଇପାରେ । ଅଳ୍ପ ସ୍ଫୋଟନ ସହିତ ଯେଉଁ ଧ୍ୱନିର ସୃଷ୍ଟି ହୁଏ ତାହାକୁ **ଅଳ୍ପପ୍ରାଣ ବ୍ୟଞ୍ଜନ** ଓ ଅଧିକ ସ୍ଫୋଟନ ସହିତ ଯେଉଁ ଧ୍ୱନିର ସୃଷ୍ଟି ହୁଏ ତାହାକୁ **ମହାପ୍ରାଣ ବ୍ୟଞ୍ଜନ** (Aspirate) କୁହାଯାଏ । ମହାପ୍ରାଣ ବ୍ୟଞ୍ଜନର ସୃଷ୍ଟି-ବେଳେ ଅଧିକ ବାୟୁ ଜୋରରେ ବହିର୍ଗତ ହେବା ଫଳରେ ଏକ ପ୍ରକାର 'h' ଶୁଣାଯାଏ । କ (k) ହେଉଛି ଅଳ୍ପପ୍ରାଣ ଓ ଖ (kh) ହେଉଛି ମହାପ୍ରାଣ । ବ୍ୟଞ୍ଜନର ବିଭିନ୍ନ ବର୍ଗର ପ୍ରଥମ ଓ ତୃତୀୟ ଧ୍ୱନି ହେଉଛି ଅଳ୍ପପ୍ରାଣ ଏବଂ ଦ୍ୱିତୀୟ ଓ ଚତୁର୍ଥ ଧ୍ୱନି

ହେଉଛି ମହାପ୍ରାଣ । କେତେକ ଭାଷାବିତ୍ ଅଳ୍ପପ୍ରାଣକୁ ଶିଥିଳଧ୍ୱନି (Lenis) ଓ ମହାପ୍ରାଣକୁ ଦୃଢ଼ଧ୍ୱନି (fortis) ବୋଲି କହିଥାନ୍ତି ।

ସ୍ପର୍ଶବ୍ୟଞ୍ଜନର ଉଚ୍ଚାରଣ ସମୟରେ ସ୍ୱରତନ୍ତ୍ରୀରେ ଘୋଷ ସୃଷ୍ଟି ହେଲେ ତାହାକୁ **ସଘୋଷଧ୍ୱନି** (voiced) ଓ ଘୋଷ ସୃଷ୍ଟି ନହେଲେ ତାହାକୁ **ଅଘୋଷଧ୍ୱନି** (Unvoiced, voiceless) କୁହାଯାଏ ।

ସ୍ପର୍ଶ ବ୍ୟଞ୍ଜନକୁ ସମ୍ପୂର୍ଣ୍ଣ ବା ଅସମ୍ପୂର୍ଣ୍ଣ ଭାବରେ ଉଚ୍ଚାରଣ କରାଯାଇପାରେ । ଯେଉଁ ବ୍ୟଞ୍ଜନର ଉନ୍ମୋଚନ ପୂର୍ବରୁ ଅନ୍ୟ ବ୍ୟଞ୍ଜନ ମୁଖରନ୍ଧ୍ରରେ ଅନ୍ୟ ଏକ ଅବରୋଧ ସୃଷ୍ଟି ହୋଇଯାଏ, ତାହାକୁ **ଅସଂପୂର୍ଣ୍ଣ ବ୍ୟଞ୍ଜନ** ବା **ଅସ୍ଫୋଟିତବ୍ୟଞ୍ଜନ** (Incomplete or unexploded) କୁହାଯାଏ, ଯଥା—ରକ୍ତ, ଏଠାରେ 'କ' ପାଇଁ ମୁଖରନ୍ଧ୍ରରେ ଯେଉଁ ଅବରୋଧ ସୃଷ୍ଟି ହୁଏ ତାହାର ଉନ୍ମୋଚନ ପୂର୍ବରୁ 'ତ' ପାଇଁ ମୁଖରନ୍ଧ୍ରରେ ଅନ୍ୟ ଏକ ଅବରୋଧ ସୃଷ୍ଟି ହୋଇଯାଏ, ଅଥଚ 'କ'ର ଉନ୍ମୋଚନ ସମ୍ଭବ ହୋଇପାରେ ନାହିଁ । ଏପରି କ୍ଷେତ୍ରରେ ଅବରୋଧ କେବଳ 'ତ' କ୍ଷେତ୍ରରେ ଦେଖାଯାଏ, 'କ୍' କ୍ଷେତ୍ରରେ ନୁହେଁ ।

ସ୍ପର୍ଶବ୍ୟଞ୍ଜନ **ନାସିକ୍ୟ** (Nasal) ହୋଇପାରେ ବା **ନିରନୁନାସିକ** ହୋଇପାରେ । ନିରନୁନାସିକ ସ୍ପର୍ଶବ୍ୟଞ୍ଜନର ଉଚ୍ଚାରଣ ବେଳେ ବାୟୁ ପ୍ରବାହ ମୁଖରନ୍ଧ୍ର ଦେଇ ନିର୍ଗତ ହୋଇଥାଏ, ମାତ୍ର ନାସିକ୍ୟ ସ୍ପର୍ଶବ୍ୟଞ୍ଜନର ଉଚ୍ଚାରଣ ବେଳେ ବାୟୁ ପ୍ରବାହ ମୁଖରନ୍ଧ୍ର ନଦେଇ ନାସାରନ୍ଧ୍ରରେ ନିର୍ଗତ ହୋଇଥାଏ ।

ସ୍ପର୍ଶବ୍ୟଞ୍ଜନର ପାର୍ଶ୍ୱିକ ଉନ୍ମୋଚନ ମଧ୍ୟ ସମ୍ଭବ ହୋଇପାରେ, ଅର୍ଥାତ୍ ଏହାର ଉଚ୍ଚାରଣ ବେଳେ ବାୟୁପ୍ରବାହ ମୁଖବିବରର ବା ନାସାରନ୍ଧ୍ରର ମଧ୍ୟଭାଗରେ ବହିର୍ଗତ ନହୋଇ ଏକ ପାର୍ଶ୍ୱରେ ବା ଉଭୟ ପାର୍ଶ୍ୱରେ ନିର୍ଗତ ହୋଇପାରେ । ପାର୍ଶ୍ୱିକ ଉନ୍ମୋଚନ ଘଟିଲେ ଏହାକୁ **ପାର୍ଶ୍ୱିକ** (Lateral) ବ୍ୟଞ୍ଜନ କୁହାଯାଏ । ସ୍ପର୍ଶ ବ୍ୟଞ୍ଜନର ଦୃଷ୍ଟାନ୍ତ ହେଉଛି—କ, ଖ, ଗ, ଘ (ଜିହ୍ୱାପଶ୍ଚାତ୍ ସହିତ କୋମଳ ତାଳୁର ସ୍ପର୍ଶ), ତ, ଥ, ଦ, ଧ (ଜିହ୍ୱା ଶୀର୍ଷ ସହିତ ଦନ୍ତର ସ୍ପର୍ଶ), ପ, ଫ, ବ, ଭ, (ଓଷ୍ଠ ସହିତ ଓଷ୍ଠର ସ୍ପର୍ଶ), ଇଂରାଜୀ father ଶବ୍ଦରେ ଫ (ନିମ୍ନ ଓଷ୍ଠ ସହିତ ଉପର ଦାନ୍ତର ସ୍ପର୍ଶ) ଇତ୍ୟାଦି ।

(ଖ) **ସଂଘର୍ଷୀ** ବା **ଉଷ୍ମ** (Fricative ବା Spirant) ସଂଘର୍ଷୀ ଧ୍ୱନିରେ ବାୟୁପ୍ରବାହ ସ୍ପର୍ଶ ବ୍ୟଞ୍ଜନଧ୍ୱନି ପରି ସମ୍ପୂର୍ଣ୍ଣ ଭାବରେ ଅବରୁଦ୍ଧ ହୁଏନାହିଁ କିମ୍ବା ସ୍ୱରଧ୍ୱନି ପରି ଅବାଧରେ ମୁଖରୁ ନିର୍ଗତ ହୁଏନାହିଁ । ଏହା'ର ସ୍ଥିତି ସ୍ପର୍ଶବ୍ୟଞ୍ଜନ ଓ ସ୍ୱରଧ୍ୱନିର ମଧ୍ୟବର୍ତ୍ତୀ । ଏହି ଧ୍ୱନିର ଉଚ୍ଚାରଣ ବେଳେ ବାୟୁମାର୍ଗ ବାୟୁଚାପର

କୌଣସି ନା କୌଣସି ସ୍ଥାନରେ ଏପରି ସଙ୍କୀର୍ଣ୍ଣ ହୋଇଯାଏ ଯେ ସେହି ସଙ୍କୀର୍ଣ୍ଣ ମାର୍ଗ ଦେଇ ବାୟୁ ନିର୍ଗତ ହେଲାବେଳେ ଏକପ୍ରକାର ସଂଘର୍ଷଧ୍ୱନି ଶୁଣାଯାଏ । ଏହି ସଂଘର୍ଷ-ଧ୍ୱନି ଯୋଗୁ ଏହାକୁ ସଂଘର୍ଷୀଧ୍ୱନି କୁହାଯାଏ । ଏହି ସଂଘର୍ଷରୁ କିଛିଟା ଉଷ୍ମତା ଜାତ ହୁଏ ବୋଲି ଏହାକୁ କେହି କେହି ଉଷ୍ମଧ୍ୱନି ମଧ୍ୟ କହନ୍ତି । ଏହି ଧ୍ୱନିକୁ ଶ୍ୱାସ ପ୍ରବାହର ଶେଷ ପର୍ଯ୍ୟନ୍ତ ଉଚ୍ଚାରଣ କରାଯାଇପାରେ । ଏହାକୁ କେହି କେହି ଅବ୍ୟାହତ ସପ୍ରବାହ (Continuant, durative) ଇତ୍ୟାଦି କହିଥାନ୍ତି । ସଂଘର୍ଷୀଧ୍ୱନିର ଉଚ୍ଚାରଣ ସମୟରେ ବାୟୁପଥ ମୁକ୍ତ ରହୁଥିବାରୁ ଏହାକୁ କେହି କେହି ଉନ୍ମୁକ୍ତ ବ୍ୟଞ୍ଜନ, ବିବୃତ ବ୍ୟଞ୍ଜନ, ଅନବରୁଦ୍ଧ ବ୍ୟଞ୍ଜନ (open consonant) କହିଥାନ୍ତି । ଏହି ଧ୍ୱନି ଉଚ୍ଚାରଣ ବେଳେ ଓଠ ସହିତ ଓଠ, ଦାନ୍ତ ସହିତ ଓଠ, ଜିଭ ସହିତ ଦାନ୍ତ, ଜିଭ ସହିତ ବର୍ତ୍ସ ଘଷି ହୋଇଯାଏ । ଫ, ବ, ଜ, ସ, ଶ, ଖ, ଗ, ହ ଏହି ବର୍ଗର ଅନ୍ତର୍ଭୁକ୍ତ । ସ, ଶ୍, ଷ୍, ଉଚ୍ଚାରଣ ବେଳେ ଏକ ପ୍ରକାରର ସୀତ୍କାର (hissing) ଧ୍ୱନି ଶୁଣାଯାଏ । 'ସ'ର ଉଚ୍ଚାରଣ ବେଳେ ଜିହ୍ୱାଗ୍ରର ଦୁଇପାର୍ଶ୍ୱ ଉଠି ରହିଥାଏ, ତେଣୁ ଏହାକୁ ଉତ୍ଥିତ ପାର୍ଶ୍ୱ ବା ନାଦସଂଘର୍ଷ (grooved ବା reel fricative) ଏବଂ 'ଶ' ଉଚ୍ଚାରଣ ବେଳେ ଜିହ୍ୱାଗ୍ରର ଦୁଇପାର୍ଶ୍ୱ ସମସ୍ତରରେ ରହୁଥିବାରୁ ଏହାକୁ ସମପାର୍ଶ୍ୱ ସଂଘର୍ଷୀ (silt fricative) କୁହାଯାଏ ।

(ଗ) ସ୍ପର୍ଶ-ସଂଘର୍ଷୀ (Affricative) ସ୍ପୃଷ୍ଟ-ଘୃଷ୍ଟଧ୍ୱନି —ଏହି ଧ୍ୱନିଗୁଡ଼ିକର ଆରମ୍ଭ ହୁଏ ସ୍ପର୍ଶରୁ, ଏହାର ଉନ୍ମୋଚନ ହଠାତ୍ ନ ହୋଇ ଧୀରେ ଧୀରେ ହୁଏ, ଯାହା ଫଳରେ କିଛି ସମୟରେ ବାୟୁକୁ ଘର୍ଷଣ କରି ସ୍ରୋତ ସୃଷ୍ଟି ହୁଏ । ଏ ପ୍ରକାର ଧ୍ୱନି ଏକ ସ୍ପର୍ଶ ଏବଂ ତଦ୍‌ବର୍ଗୀୟ ସଂଘର୍ଷୀର ସମବାୟରେ ସୃଷ୍ଟି ହୋଇଥାଏ । ବାଗ୍‌ଯନ୍ତ୍ରର ଯେଉଁ ଅଂଶରେ ସ୍ପର୍ଶଧ୍ୱନି ଉଚ୍ଚାରିତ ହୋଇପାରେ, ସେହି ସେହି ଅଂଶରେ ସଂଘର୍ଷୀଧ୍ୱନି ମଧ୍ୟ ଉଚ୍ଚାରିତ ହୋଇପାରେ । ଯେଉଁ ସ୍ଥାନରେ ଯେତ ମିଳିତ ଭାବରେ ଉଭୟ ଧ୍ୱନି ଉଚ୍ଚାରିତ ହୋଇପାରେ ତେବେ ଏହି ମିଳିତ ଧ୍ୱନିକୁ କୁହାଯିବ ସ୍ପର୍ଶ-ସଂଘର୍ଷୀ ବା ସ୍ପୃଷ୍ଟ-ଘୃଷ୍ଟଧ୍ୱନି । ପ୍ରକୃତରେ ଏହି ମିଳିତଧ୍ୱନି ଭାଷାବିଜ୍ଞାନ ଦୃଷ୍ଟିରୁ ଦୁଇଟି ସ୍ୱତନ୍ତ୍ର ଧ୍ୱନି ନୁହେଁ, ଏକ ଧ୍ୱନି । ଏହି ଧ୍ୱନିକୁ କେହି କେହି ଏକ ସଙ୍କେତ ଓ କେହି କେହି ଦୁଇ ସଙ୍କେତ ଦ୍ୱାରା ଚିହ୍ନାଇଥାନ୍ତି । ସ୍ପର୍ଶଧ୍ୱନି ପରି ଏହାର ପୂର୍ଣ୍ଣ ଉଚ୍ଚାରଣ ଓ ଅପୂର୍ଣ୍ଣ ଉଚ୍ଚାରଣ ରହିଛି । ସ୍ପର୍ଶ ଓ ସଂଘର୍ଷୀଧ୍ୱନି ପରି ଏହା ମଧ୍ୟ ସଘୋଷ, ଅଘୋଷ, ମହାପ୍ରାଣ, ଅଳ୍ପପ୍ରାଣ ଭାବରେ ଉଚ୍ଚାରିତ ହୋଇପାରେ । ସ୍ପାନିଶର ଲେଟୋ, ଦକ୍ଷିଣ ଜର୍ମାନ, ଇଂରାଜୀ, ଇଟାଲୀ, ରୁଷ୍, ଜର୍ମାନ, ତେଲୁଗୁ, ମରାଠୀ ଭାଷାରେ ଏହାର ବହୁ ଉଦାହରଣ ଦିଆଯାଇପାରେ । ଜର୍ମାନ Pferd ଓ ଇଂରାଜୀ camphor ଶବ୍ଦରେ ପ୍‌ଫ (pf), ଇଂରାଜୀ eight ଶବ୍ଦରେ ତ୍‌ଥ, ଇଂରାଜୀ hats, ଜର୍ମାନ୍ Hitie ଆଦିର ଶବ୍ଦରେ 'ts' ଇଟାଲୀ Zona ଓ

ଇଂରାଜୀ birds ଶବ୍ଦରେ 'dz', ଇଂରାଜୀ Church ଶବ୍ଦରେ 'ଚ' ଆଦି ସ୍ପର୍ଶ-ସଂଘର୍ଷୀର ଉଦାହରଣ । ଭାରତୀୟ ଭାଷାମାନଙ୍କରେ ପ୍ରାଣୈତ୍ରୋପାତ ପୂର୍ବବ ଉଚ୍ଚାରିତ ଚ, ଛ, ଜ, ଝ ଧ୍ୱନିଗୁଡ଼ିକୁ ମଧ୍ୟ ସ୍ପର୍ଶ-ସଂଘର୍ଷୀର ଅନ୍ତର୍ଭୁକ୍ତ କରାଯାଇପାରେ । ଅଫ୍ଗାନିସ୍ତାନ ହେଟେନଟଟ୍ ଏବଂ କେତେକ ଜର୍ମାନ୍ ଉପଭାଷାରେ ଏକ ପ୍ରକାର କଣ୍ଠ୍ୟ ସ୍ପର୍ଶ-ସଂଘର୍ଷୀଧ୍ୱନି (kx) ଶୁଣିବାକୁ ମିଳେ । ଓଡ଼ିଆ 'ଅଖୁ' ଦେବ 'ଖୁ' ଉଚ୍ଚାରଣରେ ମଧ୍ୟ ଏହି ସ୍ପର୍ଶ-ସଂଘର୍ଷୀଧ୍ୱନିର ଅବସ୍ଥିତି ଲକ୍ଷ୍ୟ କରାଯାଇପାରେ ।

(ଘ) ନାସିକ୍ୟ (Nasal)—ଏହି ବ୍ୟଞ୍ଜନଧ୍ୱନିର ଉଚ୍ଚାରଣ ବେଳେ ବାୟୁପ୍ରବାହ ନାସାରନ୍ଧ୍ର ମାର୍ଗରେ ନିର୍ଗତ ହୁଏ, କାରଣ ଏହା ସ୍ପର୍ଶଧ୍ୱନି ହୋଇଥିବାରୁ ମୁଖରନ୍ଧ୍ରର କୌଣସି ନା କୌଣସି ସ୍ଥଳରେ ସ୍ପର୍ଶ ଘଟି ମୁଖରନ୍ଧ୍ର ମାର୍ଗରେ ଅବରୋଧ ଦେଖାଯାଏ । କୋମଳ ତାଳୁ ତଳକୁ ଓହ୍ଲାଇବା ଫଳରେ ବାୟୁପ୍ରବାହ ନାସା ପଥରେ ନିର୍ଗତ ହୁଏ ଓ ସ୍ୱରଯନ୍ତ୍ର କମ୍ପିତ ହେବାରୁ ଘୋଷ ଶୁଣାଯାଏ । କିନ୍ତୁ କେତେକ ଭାଷାରେ ଅଘୋଷ ନାସିକ୍ୟଧ୍ୱନି ମଧ୍ୟ ଶୁଣିବାକୁ ମିଳେ । ବ୍ୟଞ୍ଜନମାନଙ୍କ ମଧ୍ୟରେ ନିରନୁନାସିକ୍ୟ ସ୍ପର୍ଶଧ୍ୱନିଗୁଡ଼ିକର ସଂପୂର୍ଣ୍ଣ ବିପରୀତଧର୍ମୀ; କିନ୍ତୁ ନାସିକ୍ୟ ବ୍ୟଞ୍ଜନଗୁଡ଼ିକ ସ୍ୱରମାନଙ୍କର ନିକଟଧର୍ମୀ । ତାମିଲ୍ ଭାଷାରେ ଏଗୁଡ଼ିକୁ କୋମଳଧ୍ୱନି (ମେଲ୍ଲିନମ୍) ଭାବରେ ଗ୍ରହଣ କରାଯାଇଛି ।

ଣ, ନ, ମ ହେଉଛି ନାସିକ୍ୟଧ୍ୱନି । 'ଣ' ଉଚ୍ଚାରଣ ବେଳେ ଜିହ୍ୱାଗ୍ର ଉପରକୁ ଉଠି ଓ ପଛକୁ ଓଲଟି କଠିନ ତାଳୁର ସମ୍ମୁଖ ଭାଗକୁ ସ୍ପର୍ଶ କରେ । 'ନ' ଉଚ୍ଚାରଣ ବେଳେ ଜିହ୍ୱାଗ୍ର ଉପର ଦାନ୍ତର ତଳଧାରକୁ ସ୍ପର୍ଶ କରେ ଓ 'ମ' ଉଚ୍ଚାରଣ ବେଳେ ଓଷ୍ଠଦ୍ୱୟ ପରସ୍ପର ସହିତ ମିଶିଯାଇ ମୁଖରନ୍ଧ୍ର ମାର୍ଗକୁ ବନ୍ଦ କରିଦିଏ ।

ନାସିକ୍ୟ ବ୍ୟଞ୍ଜନଧ୍ୱନି ଉଭୟ ଅଳ୍ପପ୍ରାଣ ଓ ମହାପ୍ରାଣ ଭାବରେ ଉଚ୍ଚାରିତ ହୋଇପାରନ୍ତି ।

(ଙ) ପାର୍ଶ୍ୱିକ (Lateral)—ଏହାକୁ ବିଭକ୍ତ ବ୍ୟଞ୍ଜନ (Divided Consonant) ମଧ୍ୟ କୁହାଯାଏ । ଏହା ସ୍ପର୍ଶ ବ୍ୟଞ୍ଜନର ଅନ୍ତର୍ଭୁକ୍ତ । ଏହାର ଉଚ୍ଚାରଣ ବେଳେ ମୁଖବିବରର ମଧ୍ୟରେଖାରେ କୌଣସି ନା କୌଣସି ସ୍ଥାନରେ ଜିହ୍ୱା ବାୟୁମାର୍ଗକୁ ଅବରୋଧ କରେ, କିନ୍ତୁ ଜିହ୍ୱାର ଏକ ପାର୍ଶ୍ୱରେ ବା ଉଭୟ ପାର୍ଶ୍ୱରେ ବାୟୁମାର୍ଗ ଉନ୍ମୁକ୍ତ ରହିଥାଏ, ଫଳରେ ଏକ ପାର୍ଶ୍ୱ ବା ଉଭୟ ପାର୍ଶ୍ୱରେ ବାୟୁ ନିର୍ଗତ ହୁଏ । ଇଂରାଜୀରେ ଆଧୁନିକ ପରିଭାଷା ଅନୁଯାୟୀ ଏହାକୁ Lateral ଏବଂ ପ୍ରାଚୀନ ପରିଭାଷା ଅନୁଯାୟୀ Liquid କହନ୍ତି । ଏକ ପାର୍ଶ୍ୱରେ ବାୟୁ ନିର୍ଗତ ହେଲେ ଏହାକୁ ଏକପାର୍ଶ୍ୱିକ ଓ ଉଭୟ ପାର୍ଶ୍ୱରେ ବାୟୁ ନିର୍ଗତ ହେଲେ

ଦ୍ୱିପାର୍ଶ୍ୱିକ କୁହାଯାଏ । 'ଲ' ଦ୍ୱିପାର୍ଶ୍ୱିକ ଓ 'ଳ' ଏକପାର୍ଶ୍ୱିକ ବ୍ୟଞ୍ଜନ । 'ଲ' ସୃଷ୍ଟି ବେଳେ ଜିହ୍ୱାଗ୍ର ବର୍ତ୍ସ ସହିତ ମିଳିତ ହୋଇ ବାୟୁପ୍ରବାହକୁ ମୁଖରନ୍ଧ୍ରର ମଝି-ଧାରରେ ଅବରୁଦ୍ଧ କରେ, କିନ୍ତୁ ଜିହ୍ୱାର ଉଭୟ ପାର୍ଶ୍ୱ ଉନ୍ମୁକ୍ତ ଥାଏ । 'ଳ' ଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱାଗ୍ର ଉପରକୁ ଉଠି ପଛକୁ ଓଲଟି କଠିନତାଳୁକୁ ସ୍ପର୍ଶ କରି ମୁଖରନ୍ଧ୍ରରେ ବାୟୁମାର୍ଗକୁ ଅବରୋଧ କରେ, କିନ୍ତୁ ଜିହ୍ୱାର ଏକ ପାର୍ଶ୍ୱ ଉନ୍ମୁକ୍ତ ଥାଏ । ଏହା ଶବ୍ଦ ଆଦ୍ୟରେ ବ୍ୟବହୃତ ହୋଇପାରେ ନାହିଁ, ମଧ୍ୟ ବା ପ୍ରାନ୍ତରେ ବ୍ୟବହୃତ ହୋଇଥାଏ । ଏହାଛଡ଼ା କେତେକ ଭାଷାରେ ଅନ୍ୟ ଏକପ୍ରକାର ପାର୍ଶ୍ୱିକଧ୍ୱନି ପରିଲକ୍ଷିତ ହୁଏ । ଏହି ଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱାର ମଧ୍ୟଭାଗ ବର୍ତ୍ସ ଏବଂ କଠିନତାଳୁଠାରେ ଅବରୋଧ ସୃଷ୍ଟିକରେ । ଏହାକୁ ଅଳ୍ପପ୍ରାଣ ସଘୋଷ ତାଲବ୍ୟ ପାର୍ଶ୍ୱିକଧ୍ୱନି କୁହାଯାଇପାରେ । ଇଟାଲୀ ଭାଷାର 'figlio', luglio ପ୍ରଭୃତି ଶବ୍ଦରେ ଥିବା 'gl'କୁ ଉଚ୍ଚାରଣ କଲାବେଳେ ଏହି ଧ୍ୱନି ଶୁଣିବାକୁ ମିଳେ ।

(ଚ) ଲୁଣ୍ଠିତ ବା ଲୋଡ଼ିତ (Rolled) ବା କମ୍ପିତ (Thrilled) —ଜିହ୍ୱାଶୀର୍ଷକୁ ଲୋହିଟାଇ ବା ଲୁଣ୍ଠନକରି ତାଳୁକୁ ସ୍ପର୍ଶ କରାଇ ଏହି ଧ୍ୱନି ଉତ୍ପନ୍ନ କରାଯାଇଥାଏ । ତେଣୁ ଏହାକୁ ଲୁଣ୍ଠିତ ଧ୍ୱନି କୁହାଯାଏ । ଏହି ଧ୍ୱନି ଉଚ୍ଚାରଣରେ ଜିହ୍ୱାଶୀର୍ଷ ଖୁବ୍ ଜୋର୍‌ରେ ଆଲୋଡ଼ିତ ହୁଏ ବୋଲି ଏହାକୁ ଲୋଡ଼ିତ ଧ୍ୱନି କୁହାଯାଏ । ଏହି ଆଲୋଡ଼ନର ପ୍ରଭାବରେ 'କମ୍ପନ' ଭଙ୍ଗୀରେ ହେତୁ କେହି ଏହାକୁ କମ୍ପିତ (thrilled) ବୋଲି ମଧ୍ୟ କହିଥାନ୍ତି । ଅଧିକାଂଶ ଭାଷାର ଲୋଡ଼ିତ ଧ୍ୱନି ଉଚ୍ଚାରଣରେ ଜିହ୍ୱାଗ୍ର ଥରଟିରୁ ଆରମ୍ଭକରି ପାଞ୍ଚଥର ପର୍ଯ୍ୟନ୍ତ ଆଲୋଡ଼ିତ ବା କମ୍ପିତ ହୋଇପାରେ । ଓଡ଼ିଆ 'ର' ଉଚ୍ଚାରଣ ବେଳେ ଜିହ୍ୱାଗ୍ର ଦୁଇଥର ପର୍ଯ୍ୟନ୍ତ ଦୋହଲିବା ପରୀକ୍ଷା କରାଯାଇଛି । କୌଣସି ଭାଷାରେ ଏହାର ସାର୍ଥକ ବ୍ୟବହାର ସ୍ପଷ୍ଟ ଭାବରେ ଲକ୍ଷ୍ୟ କରାଯାଇ ପାରୁନାହିଁ । ତେବେ ଜର୍ମାନ୍ ଭାଷାରେ ଘୋଡ଼ାକୁ ଅଟକାଇବା ପାଇଁ ଯେଉଁ Prr···ଧ୍ୱନି ଉଚ୍ଚାରଣ କରନ୍ତି, ସେଥିରେ ଲୁଣ୍ଠିତ ବା ଲୋଡ଼ିତ ବ୍ୟଞ୍ଜନର ଉଲ୍ଲେଖଯୋଗ୍ୟ ଉଚ୍ଚାରଣ ଲକ୍ଷ୍ୟ କରାଯାଏ । ଓଡ଼ିଆ ଭାଷାରେ ମଧ୍ୟ ପୋଢ଼ୁଆ, ମଇଁଷିମାନଙ୍କୁ ଅଟକାଇବା ପାଇଁ ଯେଉଁ 'ର୍‌ର୍‌ର୍ ହୋ' ଶବ୍ଦ କୁହାଯାଏ, ତାହାର 'ର୍‌ର୍'ରେ ଏବଂ ଗ୍ରେଟ ବୁଆମାନେ ଶେଯରେ ଗଡ଼ି ଗଡ଼ି ଯେଉଁ 'ପୁର୍‌ର୍‌ର୍' ବା 'ପ୍ରୂ' ଶବ୍ଦ ସୃଷ୍ଟି କରିଥାଆନ୍ତି ତାହାର 'ର୍‌ର୍‌ର୍'ରେ ଏହି ଧ୍ୱନି ଲକ୍ଷ୍ୟ କରାଯାଇପାରେ । ଘର୍‌ର୍ ଘର୍‌ର୍ (ମଟରର ଶବ୍ଦ) ଠର୍‌ର୍ ଠର୍‌ର୍ (ସାଇକେଲ ଶବ୍ଦ) ଶବ୍ଦରେ ମଧ୍ୟ ଏହି ଧ୍ୱନି ରହିଅଛି । ନିମ୍ନରେ ଏହାର ଚାର ପ୍ରବନ୍ଧ ହୋଇଅଛି—

(ଛ) ଉତ୍କ୍ଷିପ୍ତ ବା ତାଡ଼ିତ ବ୍ୟଞ୍ଜନ (Flapped)—ଏହି ଧ୍ୱନିର ଉଚ୍ଚାରଣ ସମୟରେ ଜିହ୍ୱାଶୀର୍ଷ ପଛକୁ ଓଲଟି ଅନ୍ୟାନ୍ୟ ମୂର୍ଦ୍ଧନ୍ୟ ଉଚ୍ଚାରଣ ପରି କଠିନ ତାଳୁର ସାମନା ଅଂଶ ପର୍ଯ୍ୟନ୍ତ ଉଠିଯାଏ ଏବଂ ପରେ ବାୟୁପ୍ରବାହର ଚାପରେ ହଠାତ୍ ଜୋର୍‌ରେ ଖସିପଡ଼େ । କେତେକ ବ୍ୟଞ୍ଜନ ଉଚ୍ଚାରଣରେ ଜିହ୍ୱାଗ୍ର ଚାରି ପାଞ୍ଚଥର ପର୍ଯ୍ୟନ୍ତ ଦୋହଲିପାରେ; କିନ୍ତୁ ଉତ୍କ୍ଷିପ୍ତ ବ୍ୟଞ୍ଜନରେ ଜିହ୍ୱା ଥରେମାତ୍ର ଦୋହଲେ । କିନ୍ତୁ ଏ ଦୋହଲିବା ବେଳେ ଏତେ ଜୋର୍‌ରେ ଓ ଏତେ ଶୀଘ୍ର ଆଘାତ ହୋଇଥାଏ ଯେ ଜିହ୍ୱା ଛିଟାଡ଼ି ହୋଇପଡ଼େ, ତେଣୁ ଏହାକୁ 'ଉତ୍କ୍ଷିପ୍ତ' କହିବାରେ ଯାଥାର୍ଥ୍ୟ ରହିଛି । ଜିହ୍ୱା ଖସିପଡ଼ିବା ସମୟରେ ଜିହ୍ୱାର ପଛପାଖ (ତଳପାଖ) ଦାନ୍ତମୂଳରେ ପିଟି ହୋଇଯିବା ଫଳରେ ଏହି ଧ୍ୱନି ଶୁଣାଯାଏ । ଦାନ୍ତମୂଳ ଦ୍ୱାରା ଜିହ୍ୱାର ତଳପାଖ ତାଡ଼ିତ ହୁଏ ବୋଲି ଏହାର ଅନ୍ୟ ନାମ ତାଡ଼ିତ ବ୍ୟଞ୍ଜନ । ସାଧାରଣତଃ ଏହା ଶବ୍ଦର ଆଦ୍ୟରେ କେବେହେଲେ ଶୁଣାଯାଏ ନାହିଁ । ଶବ୍ଦର ମଧ୍ୟ ବା ପ୍ରାନ୍ତରେ ହିଁ ଏହା ଉଚ୍ଚାରିତ ହୋଇଥାଏ । ଓଡ଼ିଆ ଡ଼, ଢ଼ ହେଉଛି ଉତ୍କ୍ଷିପ୍ତ ଧ୍ୱନି । ଓଡ଼ିଆ ବଡ଼ିମା, କାକୁଡ଼ି, ବଢ଼ିଅ, ବୁଢ଼ା ପ୍ରଭୃତି ଶବ୍ଦରେ, ଇଂରାଜୀ carry, hurry ପ୍ରଭୃତି ଶବ୍ଦରେ ଏହି ଧ୍ୱନି ଶୁଣିବାକୁ ମିଳେ ।

(ଜ) ରଣିତ (Resonant)—ଏହି ଧ୍ୱନିର ଉଚ୍ଚାରଣରେ ଶ୍ୱାସବାୟୁ ନାସା ଏବଂ ମୁଖଗହ୍ୱରରେ ଅନୁରଣିତ ହୋଇ ନାସାରନ୍ଧ୍ର ବା ମୁଖରନ୍ଧ୍ରରେ ଅଥବା ଯୁଗପତ୍ ନାସା ଏବଂ ମୁଖ ଉଭୟ ରନ୍ଧ୍ରରେ ନିର୍ଗତ ହୋଇଥାଏ । ରଣିତଧ୍ୱନି ଭାବରେ ଣ, ମ, ର, ଲ କୁ ଗ୍ରହଣ କରାଯାଇପାରେ ।

(ଝ) ଅର୍ଦ୍ଧସ୍ୱର ବା ଅର୍ଦ୍ଧବ୍ୟଞ୍ଜନ (Semi vowel ବା Semi consonant)—ଉଚ୍ଚାରଣରେ ଏହି ଧ୍ୱନିସ୍ୱର ଏବଂ ବ୍ୟଞ୍ଜନର ମଧ୍ୟବର୍ତ୍ତୀ । ଏହା ପ୍ରକୃତରେ ବ୍ୟଞ୍ଜନର ଅଧିକ ନିକଟବର୍ତ୍ତୀ । କାରଣ ସ୍ୱର ପରି ଏହା ଅଧିକ ଘୋଷ ନହୋଇ କମ୍ ଘୋଷ । ଏହା ଉପରେ ବଳାଘାତ ପଡ଼େ ନାହିଁ । ଏହାକୁ ସ୍ୱର କହିବାର କାରଣ ହେଉଛି ଏହାର ଉଚ୍ଚାରଣରେ ଆରମ୍ଭ ସ୍ୱର ସ୍ଥିତିରୁ ହୋଇଥାଏ ।

ଏହି ଧ୍ୱନିର ଉଚ୍ଚାରଣ ପାଇଁ ବାୟୁପ୍ରବାହର ଗତି ବଡ଼ ଧୀର ହୋଇଥାଏ । ଏହି ଧ୍ୱନି ଉଚ୍ଚାରଣ ବେଳେ ଜିହ୍ୱା ଏକ ସଂବୃତ ସ୍ଥାନରୁ ବିବୃତ ସ୍ଥାନ ଆଡ଼କୁ ଗତିକରେ । ଓଡ଼ିଆରେ ଦୁଇଟି ଅର୍ଦ୍ଧସ୍ୱର ବା ଅର୍ଦ୍ଧବ୍ୟଞ୍ଜନ ରହିଛି—ୟ୍, ଓ୍ୱ । ଏହି ଦୁଇଟି ଧ୍ୱନିର ଉଚ୍ଚାରଣରେ ଉଚ୍ଚାରଣ ଅବସ୍ଥିତି ଯଥାକ୍ରମେ ପ୍ରଥମେ ଇ, ଉ କୁ ଆରମ୍ଭ ହୋଇ କିଛିକାଳ ଅଟକିଯାଇ ତା'ପରେ ଆଗାମୀ ସ୍ୱର ସ୍ଥାନକୁ ('ଅ' ପାଖକୁ) ଚାଲିଯାଏ । ଏହି ପ୍ରକାର ଧ୍ୱନିକୁ କେତେକ ବିଦ୍ୱାନ୍ ଶ୍ରୁତିଧ୍ୱନି ଭାବରେ ଗ୍ରହଣ

କରନ୍ତି । ଇଂରାଜୀରେ ମଧ୍ୟ ଦୁଇଟି ଅର୍ଦ୍ଧସ୍ୱର ବା ଅର୍ଦ୍ଧବ୍ୟଞ୍ଜନ ରହିଛି ଯଥା— y, v ।

**ସ୍ୱରତନ୍ତ୍ରୀ ଭିତ୍ତିରେ ବର୍ଗୀକରଣ**—ଏହି ଭିତ୍ତିରେ ବ୍ୟଞ୍ଜନକୁ ସଘୋଷ ଅଘୋଷ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—

**ଘୋଷ ଓ ଅଘୋଷ ( Voiced and Unvoiced )**—ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀରେ କମ୍ପନ ସୃଷ୍ଟି ହୁଏ ଓ ଗଳବିଳ ମଧ୍ୟ ଦେଇ ବାୟୁ ପ୍ରବେଶ କଲାବେଳେ ବାଧାକୁ ଠେଲିବାକୁ ବାଧ୍ୟ ହୁଏ ଅର୍ଥାତ୍ ସ୍ୱରତନ୍ତ୍ରୀ ସହିତ ଘର୍ଷି ହୁଏ ତାକୁ ଘୋଷଧ୍ୱନି କୁହାଯାଏ । ଆମେମାନେ କଥା କହିଲାବେଳେ ସ୍ୱରତନ୍ତ୍ରୀ ଦୁଇଟି ଧ୍ୱନି ସୃଷ୍ଟି କରିବା ଲାଗି ପରସ୍ପର ସହିତ ଲାଗିଯାନ୍ତି ଓ ସେମାନଙ୍କ ମଧ୍ୟରେ ଗୋଟିଏ ସୂକ୍ଷ୍ମରେଖା ପରି ସ୍ୱଳ୍ପ ବ୍ୟବଧାନ ରହେ । ସ୍ୱରତନ୍ତ୍ରୀ ଦୁଇଟିର ଧାର ଶିଥିଳ ଥିବାରୁ ଫୁସ୍‌ଫୁସ୍‌ରୁ ନିର୍ଗତ ବାୟୁ ସ୍ପର୍ଶରେ ତାହା ଦେହରେ କମ୍ପନ ସୃଷ୍ଟି ହୁଏ । ଏହି କମ୍ପନକୁ ଘୋଷ କୁହାଯାଏ । ଯେଉଁ ଧ୍ୱନି ଉଚ୍ଚାରଣରେ ଏହି ଘୋଷ ଉତ୍ପନ୍ନ ହୁଏ ତାହାକୁ ସଘୋଷଧ୍ୱନି କୁହାଯାଏ । ଅଘୋଷଧ୍ୱନି ଉଚ୍ଚାରଣରେ ଏହି ଘୋଷ ବା କମ୍ପନର ସୃଷ୍ଟି ହୁଏ ନାହିଁ, କାରଣ ଏତିକିବେଳେ ସ୍ୱରତନ୍ତ୍ରୀଦ୍ୱୟ ପରସ୍ପରର ନିକଟବର୍ତ୍ତୀ ନହୋଇ ଟିକିଏ ଦୂରେଇ ରହିଥାନ୍ତି ଓ ଫଳରେ ବାୟୁ ପ୍ରବାହ ଅବାଧରେ ନିର୍ଗତ ହୁଏ । ଫୁସ୍‌ଫୁସ୍‌କରି କଥା କହିଲେ କୌଣସି ଧ୍ୱନି ସଘୋଷ ହୋଇପାରିବ ନାହିଁ, ବରୁ ଅଘୋଷ ହୋଇଯିବ । କାରଣ ଏତିକିବେଳେ ସ୍ୱରତନ୍ତ୍ରୀଦ୍ୱୟ ପରସ୍ପରର ନିକଟବର୍ତ୍ତୀ ହୋଇଥିଲେହେଁ ଫୁସ୍‌ଫୁସ୍ କଥାରେ ସେମାନଙ୍କୁ ଏପରି ଟାଣିରଖିବାକୁ ପଡ଼େ ଯେ ବହିର୍ମୁଖୀ ବାୟୁଦ୍ୱାରା ସ୍ୱରତନ୍ତ୍ରୀରେ କମ୍ପନ ଜାତ ହୋଇପାରେ ନାହିଁ । ତଳେ ସଘୋଷଧ୍ୱନିର ଚିହ୍ନ ଅଧିକ କୁଞ୍ଚିତ ରେଖା ଦ୍ୱାରା ଓ ଅଘୋଷଧ୍ୱନିର ଚିହ୍ନ ସ୍ୱଳ୍ପ କୁଞ୍ଚିତ ରେଖା ଦ୍ୱାରା ଦେଖାଇ ଦିଆଯାଇଛି ।

(ସଘୋଷ ଧ୍ୱନିର ଚିତ୍ର)

(ଅଘୋଷ ଧ୍ୱନିର ଚିତ୍ର)

ଓଡ଼ିଆରେ କ, ଚ, ଟ, ତ, ପ ବ୍ୟଞ୍ଜନବର୍ଗର ପ୍ରଥମ, ଦ୍ୱିତୀୟ ଧ୍ୱନି ହେଉଛି ଅଘୋଷ ଏବଂ ତୃତୀୟ, ଚତୁର୍ଥ, ପଞ୍ଚମ ଧ୍ୱନି ଓ ଯ, ର, ଲ, ବ, ହ ହେଉଛି ସଘୋଷଧ୍ୱନି ।

ପ୍ରାଣତ୍ୱ ଭିତ୍ତିରେ ବର୍ଗୀକରଣ—ଧ୍ୱନି ବିଜ୍ଞାନରେ 'ପ୍ରାଣ'ର ଅର୍ଥ ଶ୍ୱାସଶକ୍ତି ବା ବାୟୁର ଶକ୍ତି । ଏହି ଭିତ୍ତିରେ ବ୍ୟଞ୍ଜନକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା—ମହାପ୍ରାଣ ଓ ଅଳ୍ପପ୍ରାଣ । ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ଅଧିକ ଶ୍ୱାସଶକ୍ତି ପ୍ରୟୋଗ କରିବାକୁ ପଡ଼େ, ଫଳରେ ବାୟୁ ପ୍ରବାହ ଅଧିକ ସ୍ଫୋଟନ ସହିତ ନିର୍ଗତ ହୁଏ, ତାହାକୁ ମହାପ୍ରାଣ ବ୍ୟଞ୍ଜନ (Aspirated consonant) ଓ ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ଶ୍ୱାସଶକ୍ତି ଅଳ୍ପ ପରିମାଣରେ ପ୍ରୟୋଗ କରିବାକୁ ହୁଏ ଓ ତେଣୁ ବାୟୁପ୍ରବାହ ଅଳ୍ପ ସ୍ଫୋଟନ ସହିତ ନିର୍ଗତ ହୁଏ, ତାହାକୁ ଅଳ୍ପପ୍ରାଣବ୍ୟଞ୍ଜନ (Unaspirated) କୁହାଯାଏ । ମହାପ୍ରାଣବ୍ୟଞ୍ଜନର ସୃଷ୍ଟି ବେଳେ ଅଧିକ ବାୟୁ ଜୋର୍‌ରେ ବହିର୍ଗତ ହେବା ଫଳରେ ଏକ ପ୍ରକାର ହ୍ (h) ଶୁଣାଯାଏ । 'ହ୍' ଧ୍ୱନି ପ୍ରାଣତ୍ୱ-ସୂଚକ । ତେଣୁ ଅନେକ ମହାପ୍ରାଣକୁ ହ୍-ଯୁକ୍ତ ଧ୍ୱନି ଓ ଅଳ୍ପପ୍ରାଣକୁ ହ୍-ରହିତ ଧ୍ୱନି ବୋଲି କହିଥାନ୍ତି । କେତେକ ମହାପ୍ରାଣକୁ ସପ୍ରାଣ ଓ ଅଳ୍ପପ୍ରାଣକୁ ଅପ୍ରାଣ ବୋଲି କହିଥାନ୍ତି ।

ବ୍ୟଞ୍ଜନର ଭିନ୍ନ ବର୍ଗର ପ୍ରଥମ ଓ ତୃତୀୟ ଧ୍ୱନି ହେଉଛି ଅଳ୍ପପ୍ରାଣ ଏବଂ ଦ୍ୱିତୀୟ ଓ ଚତୁର୍ଥ ଧ୍ୱନି ହେଉଛି ମହାପ୍ରାଣ । ଅନେକେ ମହାପ୍ରାଣକୁ ଦେଖାଇବା ପାଇଁ ସଂପୃକ୍ତ ଅଳ୍ପପ୍ରାଣରେ 'ହ୍' ବା 'h' ଯୋଗିଥାନ୍ତି । ଉଦାହରଣ ସ୍ୱରୂପ ସେମାନଙ୍କ ମତରେ ଖ୍ = କ୍ = ହ (kh) । କିନ୍ତୁ ଏପରି ଧାରଣା ଭ୍ରମାତ୍ମକ ।

'ହ୍' ହେଉଛି ସଂଘର୍ଷୀଧ୍ୱନି ଓ 'କ୍' ହେଉଛି ସ୍ପର୍ଶଧ୍ୱନି । ଯଦି 'ଖ୍'କୁ 'କ୍ + ହ୍' ବୋଲି ଗ୍ରହଣ କରାଯାଏ, ତେବେ 'ଖ୍' ଏକ ସ୍ପର୍ଶ ସଂଘର୍ଷୀଧ୍ୱନି ହୋଇଯିବ, କିନ୍ତୁ ବସ୍ତୁତଃ 'ଖ୍' ଶୁଦ୍ଧ ସ୍ପର୍ଶଧ୍ୱନି । ତେଣୁ 'ଖ୍'କୁ 'କ୍'ର ମହାପ୍ରାଣ ରୂପ ରୂପେ ଗ୍ରହଣ କରାଯିବା ଉଚିତ, କିନ୍ତୁ 'କ୍' ଓ 'ହ୍'ର ସମନ୍ୱିତ ଧ୍ୱନି-ରୂପ ନୁହେଁ ।

ଉଚ୍ଚାରଣ ଶକ୍ତି ଭିତ୍ତିରେ ବର୍ଗୀକରଣ—ଏହି ଭିତ୍ତିରେ ବ୍ୟଞ୍ଜନକୁ ଶକ୍ତ (fortis), ଅଶକ୍ତ (lenis) ଓ ମଧ୍ୟମ (moderate) ଏପରି ତିନି ଭାଗରେ ବିଭକ୍ତ କରାଯାଇପାରେ । ଶକ୍ତ ବ୍ୟଞ୍ଜନର ଉଚ୍ଚାରଣ ବେଳେ ମୁଖର ମାଂସପେଶୀ ଦୃଢ଼ ହୋଇଯାଏ, ଯଥା - ସ୍, ଟ୍ । ଅଶକ୍ତବ୍ୟଞ୍ଜନର ଉଚ୍ଚାରଣରେ ଏହି ମାଂସପେଶୀ ଶିଥିଳ ହୋଇଯାଏ । ଯଥା ର୍, ଲ୍ । ଏହି ଦୁଇ ଧ୍ୱନିର ମଧ୍ୟବର୍ତ୍ତୀ ଧ୍ୱନି ହେଉଛି ବ୍, ଶ୍ ।

ଅନୁନାସିକତା ଭିତ୍ତିରେ ବର୍ଗୀକରଣ—ଏହି ଭିତ୍ତିରେ ବ୍ୟଞ୍ଜନକୁ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯଥା—ନିରନୁନାସିକ ବା ମୌଖିକ, ଅନୁନାସିକ ବା ମୌଖିକ-ନାସିକ୍ୟ ଓ ନାସିକ୍ୟ । କ, ଖ, ଗ, ଚ, ଛ, ଜ, ଝ ଆଦି ନିରନୁନାସିକ, କଁ, ଖଁ, ଗଁ, ଘଁ, ଚଁ, ଛଁ, ଜଁ, ଝଁ ଆଦି ଅନୁନାସିକ ଓ ଙ, ଞ, ଣ, ନ, ମ ହେଉଛି ନାସିକ୍ୟ ବ୍ୟଞ୍ଜନଧ୍ୱନି ।

ସଂଯୁକ୍ତତା-ଅସଂଯୁକ୍ତତା ଭିତ୍ତିରେ ବର୍ଗୀକରଣ—ଏହି ଭିତ୍ତିରେ ବ୍ୟଞ୍ଜନକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ଅସଂଯୁକ୍ତ ଓ ସଂଯୁକ୍ତ । ଏକାକୀ ଗୋଟିଏ ବ୍ୟଞ୍ଜନ ଥିଲେ ତାହାକୁ ଅସଂଯୁକ୍ତ ବ୍ୟଞ୍ଜନ ଓ ଏକାଧିକ ବ୍ୟଞ୍ଜନଯୁକ୍ତ ହୋଇଥିଲେ ତାହାକୁ ସଂଯୁକ୍ତ-ବ୍ୟଞ୍ଜନ କୁହାଯାଏ । କ୍, ଖ୍, ଚ୍, ଘ୍ ଆଦି ଅସଂଯୁକ୍ତ ବ୍ୟଞ୍ଜନ, କ୍କ, ଖ୍ଖ, ଗ୍ଗ, ଘ୍ନ ଆଦି ସଂଯୁକ୍ତବ୍ୟଞ୍ଜନ । ଗୋଟିଏ ସଂଯୁକ୍ତବ୍ୟଞ୍ଜନରେ ଦୁଇରୁ ଅଧିକ ବ୍ୟଞ୍ଜନ ମଧ୍ୟ ରହିପାରନ୍ତି, ଯଥା—ର୍ତ୍ସ୍ୟ, (ବର୍ତ୍ସ୍ୟ). କ୍ତ୍ର (ବକ୍ତ୍ର) । ସଂଯୁକ୍ତ-ବ୍ୟଞ୍ଜନକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଯଥା—ସମସଂଯୁକ୍ତ ବା ଦ୍ୱିତ୍ୱବ୍ୟଞ୍ଜନ (long or double consonant) ଏବଂ ଅସମସଂଯୁକ୍ତବ୍ୟଞ୍ଜନ (compound consonant) । ସମସଂଯୁକ୍ତବ୍ୟଞ୍ଜନ ବର୍ଣ୍ଣର ଉଦାହରଣ ହେଉଛି କ୍କ୍ (କ୍ + କ୍), କ୍ଖ୍ (କ୍ + ଖ୍), ଗ୍ଗ୍ (ଗ୍ + ଗ୍), ଘ୍ଘ୍ (ଘ୍ + ଘ୍), ଚ୍ଚ୍ (ଚ୍ + ଚ୍), ଛ୍ଛ୍ (ଛ୍ + ଛ୍) ଇତ୍ୟାଦି । ଅସମସଂଯୁକ୍ତବ୍ୟଞ୍ଜନ ବର୍ଣ୍ଣର ଦୃଷ୍ଟାନ୍ତ ହେଉଛି—ତ, କ୍ତ, କ୍ଲ, କ୍ନ, କ୍ୱ, କ୍ମ, କ୍ଷ, କ୍ସ, ସ୍କ ଇତ୍ୟାଦି ।

ସ୍ଫୋଟନ ପଦ୍ଧତି ଭିତ୍ତିରେ ବର୍ଗୀକରଣ—ଏହି ଭିତ୍ତିରେ ବ୍ୟଞ୍ଜନର ବର୍ଗୀକରଣ ଦ୍ୱିବିଧ, ଯଥା—ବହିଃସ୍ଫୋଟାତ୍ମକ ଓ ଅନ୍ତଃସ୍ଫୋଟାତ୍ମକ ଉପରେ ଯେଉଁ ବ୍ୟଞ୍ଜନମାନଙ୍କର ଆଲୋଚନା ହୋଇଅଛି, ସେଗୁଡ଼ିକ ବହିଃସ୍ଫୋଟାତ୍ମକ । ଅନ୍ତଃ-ସ୍ଫୋଟାତ୍ମକ ବ୍ୟଞ୍ଜନକୁ ମୁଖ୍ୟତଃ ତିନି ଭାଗ କରାଯାଇପାରେ, (କ) ଅନ୍ତଃସ୍ଫୋଟ ସ୍ପର୍ଶ, (ଖ) ଅନ୍ତଃସ୍ଫୋଟ ଘୃଷ୍ଟ, (ଗ) ଉଦ୍‌ଗାର ।

(କ) ଅନ୍ତଃସ୍ଫୋଟ ସ୍ପର୍ଶ (Implosive)—ଏହା ଏକ ଅନ୍ତର୍ମୁଖୀ ସ୍ପର୍ଶବ୍ୟଞ୍ଜନ । ଏହାର ଉଚ୍ଚାରଣ ସମୟରେ ସାଧାରଣ ସ୍ପର୍ଶପରି ମୁଖର କୌଣସି ଗୋଟିଏ ସ୍ଥାନରେ ବା ଅଂଶରେ ସ୍ପର୍ଶ ବା ଅବରୋଧ ଘଟେ ଏବଂ ଠିକ୍ ଏହି ସମୟରେ ସ୍ୱରଯନ୍ତ୍ର କିଛି ତଳକୁ ଟାଣି ହୋଇଯାଏ । ଫଳରେ ସ୍ପର୍ଶ ସ୍ଥାନ ଓ ସ୍ୱରଯନ୍ତ୍ର ମଧ୍ୟସ୍ଥାନ କିଛିଟା ବଡ଼ ହୋଇଯାଏ ଓ ତେଣୁ ବାୟୁ ଖେଳେଇ ହୋଇ ଲଘୁ ବା ହାଲୁକା ହୋଇଯାଏ । ଅବରୋଧ ଉନ୍ମୁକ୍ତ ହୋଇଯିବା ମାତ୍ରେ ବାହାରର ଗୁରୁଚାପ ବିଶିଷ୍ଟ ବାୟୁ ମୁଖ ଭିତରର ଲଘୁଚାପ ବିଶିଷ୍ଟ ସ୍ଥାନକୁ ପ୍ରବେଶ କରେ । ଏତିକିବେଳେ ଏକ ପ୍ରକାର ଧ୍ୱନି ଶୁଣାଯାଏ । ଏହା ହେଉଛି ଅନ୍ତଃସ୍ଫୋଟଧ୍ୱନି । ଓ୍ୱେଷ୍ଟରମ୍ୟାନଙ୍କ ମତରେ ଉନ୍ମୋଚନର ଠିକ୍ ପରେ ପରେ ଏକପ୍ରକାର ସ୍ୱରଧ୍ୱନି ମଧ୍ୟ ଶୁଣାଯାଏ । ଏ ପ୍ରକାର ଧ୍ୱନି ଦ୍ୱି-ଓଷ୍ଠ୍ୟ, ଦନ୍ତ୍ୟ, ତାଲବ୍ୟ ଓ କୋମଳ ତାଲବ୍ୟ ହୋଇପାରେ । ଅଫ୍ରିକାର ଏଫିକ୍, ଇବୋ, ହୋସା, ଜୁଲୁ, ହଡ଼ ଆଦି ଭାଷାରେ ଭାରତର ସିନ୍ଧୀ, ରାଜସ୍ଥାନୀ ଓ ଅମେରିକାର କେତୋଟି ଭାଷାରେ ଏହି ଧ୍ୱନି ଶୁଣିବାକୁ ମିଳିଥାଏ । ଏହି ଧ୍ୱନିକୁ ବୁଝାଇବା ପାଇଁ ମୂଳଧ୍ୱନି ସଙ୍କେତର ଆଗରେ ଉପର ଅଂଶରେ ଗୋଟିଏ ଓଲଟା

କମା ଚିହ୍ନ ଲେଖାଯାଏ । ଯଥା—ହୌସା ଭାଷାର b' (b'auna), d' (d'aka) ।

(ଖ) ଅନ୍ତଃସ୍ଫୋଟ ଦ୍ୱିସ୍ପର୍ଶ ବା କ୍ଲିକ୍ (Click)—ଏହି ଧ୍ୱନିର ଦୁଇଟି ବିଶେଷତ୍ୱ ଲକ୍ଷ୍ୟ କରାଯାଇପାରେ—(i) ଏହାର ଉଚ୍ଚାରଣ ବେଳେ ମୁଖ-ରନ୍ଧ୍ରରେ ଦୁଇଥର ଅବରୋଧ ବା ସ୍ପର୍ଶ ଘଟେ । (ii) ବାୟୁ ପ୍ରବାହକୁ ବାହାରରୁ ଭିତରକୁ ପ୍ରବେଶ କରି ସ୍ଫୋଟନ ସୃଷ୍ଟି କରେ । ଏହି ସମୟରେ ଜିହ୍ୱା ଏବଂ ମାଂସପେଶୀ କଣ୍ଠର ପରିମାଣରେ କଠିନ ହୋଇଯାଏ । ଓଷ୍ଠ, ଦନ୍ତ, ବର୍ତ୍ସ ଓ କଠିନ ତାଳୁ ପ୍ରଭୃତି ବିଭିନ୍ନ ସ୍ଥାନରେ ଅବରୋଧ ସୃଷ୍ଟି କରି ଓଷ୍ଠ୍ୟ, ଦନ୍ତ୍ୟ, ପାର୍ଶ୍ୱିକ, ମୂର୍ଦ୍ଧନ୍ୟ ପ୍ରଭୃତି ଅନ୍ତଃସ୍ଫୋଟ ଦ୍ୱିସ୍ପର୍ଶଧ୍ୱନି ସୃଷ୍ଟି କରାଯାଇପାରେ । କ୍ଲିକ୍‌ଧ୍ୱନି ଘୋଷ, ଅଘୋଷ, ଅଳ୍ପପ୍ରାଣ ଓ ମହାପ୍ରାଣ, ଅନୁନାସିକ, ନିରନୁନାସିକ ହୋଇପାରେ । ଚୁମା ଦେଲାବେଳେ ଓଷ୍ଠ୍ୟ, ସମବେଦନାରେ ଚୁଚୁ କଲାବେଳେ, ଗାଈ ବଳଦମାନଙ୍କୁ ଅଟକାଇବା ପାଇଁ ଚୁଚୁ କଲାବେଳେ ଦନ୍ତ୍ୟ, ଅଶ୍ୱର ଗୃହିଲବେଳେ ବର୍ତ୍ସ୍ୟ, ବଳଦ, ଘୋଡ଼ାଅ ଅଡ଼େଇବା ପାଇଁ ଟ-ଟ କଲାବେଳେ ମୂର୍ଦ୍ଧନ୍ୟ ଓ 'ଟି ଟି' କରି ଡାକରା ଫୁଟାଇବା ବେଳେ ପାର୍ଶ୍ୱିକ କ୍ଲିକ୍‌ଧ୍ୱନି ଶୁଣିବାକୁ ମିଳେ । ଓଡ଼ିଆ ଭାଷାରେ କ୍ଲିକ୍‌ଧ୍ୱନି ଧ୍ୱନିମାଳାର ଅନ୍ତର୍ଭୁକ୍ତ ନୁହେଁ; କିନ୍ତୁ ବାଣ୍ଟୁ, ଜୁଲୁ, ବୁସ୍‌ମାନ୍, ହଟେନ୍‌ଟଟ୍ ପ୍ରଭୃତି ଭାଷାରେ ଏହାର ସଂଖ୍ୟା ପ୍ରଚୁର ।

(ଗ) ଉଦ୍‌ଗାର (Glotalized stop)—ଏହା ମଧ୍ୟ ଏକ ସ୍ୱତନ୍ତ୍ର ଧରଣର ସ୍ପର୍ଶଧ୍ୱନି । ଏହି ଧ୍ୱନିର ଉଚ୍ଚାରଣରେ ମୁଖ ମଧ୍ୟରେ ଉଚ୍ଚାରଣ ସ୍ଥାନରେ ଅବରୋଧ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ସ୍ୱରତନ୍ତ୍ରୀଦ୍ୱୟ ସ୍ୱରଯନ୍ତ୍ର ମୁଖ ନିକଟକୁ ଲାଗିଯାଇ ସେଠାରେ ଅବରୋଧ ସୃଷ୍ଟି କରନ୍ତି । ପ୍ରଥମେ ମୁଖରନ୍ଧ୍ରରେ ଥିବା ଅବରୋଧ ଉନ୍ମୁକ୍ତ ହୋଇଯାଏ ଓ ତା'ର ପ୍ରାୟ ଅଧସେକେଣ୍ଡ ପରେ ସ୍ୱରଯନ୍ତ୍ରରେ ଥିବା ଅବରୋଧ ଉନ୍ମୁକ୍ତ ହୁଏ । ଏହି ସମୟରେ ସ୍ୱରଯନ୍ତ୍ର କଣ୍ଠନଳୀ ଉପରକୁ ଉଠିଯିବା ଫଳରେ ମଧ୍ୟବର୍ତ୍ତୀ ବାୟୁର ଉଦ୍‌ଗାର ହୋଇଯାଏ ଓ ଏକ ଭୀଷଣ ଧ୍ୱନିର ସୃଷ୍ଟି ହୁଏ । ବୋତଲରୁ ଠିପି କାଢ଼ିଲା ବେଳେ ବୋତଲରୁ ବାୟୁ ଉଦ୍‌ଗୀର୍ଣ୍ଣ ହୋଇ ଯେପରି ଏକ ଧ୍ୱନି ସୃଷ୍ଟି କରେ, ସ୍ୱରଯନ୍ତ୍ର ଓ ମୁଖରନ୍ଧ୍ରର ଅବରୋଧ ମଧ୍ୟବର୍ତ୍ତୀ ବାୟୁ ବାହାରକୁ ଉଦ୍‌ଗୀର୍ଣ୍ଣ ହୋଇ ସେହିପରି ଧ୍ୱନି ସୃଷ୍ଟି କରୁଥିବାରୁ ଏହି ଧ୍ୱନିର ନାମ ଉଦ୍‌ଗାରଧ୍ୱନି ।

ଅଫ୍ରିକାନ୍ ହୌସା ଭାଷାର k'a k'a ଶବ୍ଦରେ ଓ ଜୁଲୁ ଭାଷାର nt'a nt'a ଶବ୍ଦରେ ଥିବା k' ଓ t' ହେଉଛି ଉଦ୍‌ଗାର ବ୍ୟଞ୍ଜନ । ଫରାସୀ 'p' ଇଂରାଜୀ 'p' ପରି ଉଚ୍ଚାରିତ ନହୋଇ ଏକପ୍ରକାର କଣ୍ଠ୍ୟଧ୍ୱନି ସହିତ ଉଚ୍ଚାରିତ ହୋଇଥାଏ । ଫରାସୀ 'p' ହେଉଛି ଏକ ଉଦ୍‌ଗାର ବ୍ୟଞ୍ଜନ ।

ଏହିପରି ସ୍ତରରେ ବ୍ୟଞ୍ଜନଧ୍ୱନିର ବର୍ଗୀକରଣ ହୋଇପାରେ ।

# ଧ୍ୱନି ପରିବର୍ତ୍ତନର ବିଭିନ୍ନ କାରଣ

ଭାଷାବିଜ୍ଞାନରେ ଧ୍ୱନି ପରିବର୍ତ୍ତନର କାରଣ ଜିଜ୍ଞାସା ଏକ ସାଧାରଣ ପ୍ରଶ୍ନ । ଧ୍ୱନି ପରିବର୍ତ୍ତନ କାରଣରୁ ନୂତନ ନୂତନ ଭାଷାର ସୃଷ୍ଟି ହୁଏ । ନୂତନ ଭାଷାର ପାଇଁ ଯାହା ମୂଳପିଣ୍ଡ, ତାହାର କାରଣ ଜିଜ୍ଞାସା କରିବା ଅତି ସ୍ୱାଭାବିକ ପ୍ରବୃତ୍ତି । ଧ୍ୱନି ପରିବର୍ତ୍ତନର କାରଣ ଶାରୀରିକ, ମାନସିକ, ରାଜନୀତିକ, ସାଂସ୍କୃତିକ ଓ ଭୌଗୋଳିକ ପ୍ରଭୃତି ବିଭିନ୍ନ ଭିତ୍ତି ଉପରେ ନିର୍ଭର କରିପାରେ । ଏହିସବୁ ଭିତ୍ତି ଉପରେ ଗଢ଼ି ଉଠିଥିବା ବିଭିନ୍ନ କାରଣଗୁଡ଼ିକୁ ନିମ୍ନୋକ୍ତ ପ୍ରକାରେ ବିଶ୍ଳେଷଣ କରାଯାଇପାରେ ।

(୧) ବାଗ୍‌ଯନ୍ତ୍ରର ବିଭିନ୍ନତା—ପ୍ରତ୍ୟେକ ମଣିଷର ବାଗ୍‌ଯନ୍ତ୍ର ଗଠନରେ କିଛି ନା କିଛି ସ୍ୱାତନ୍ତ୍ର୍ୟ ବା ପ୍ରଭେଦ ଥାଏ । ତେଣୁ କୌଣସି ଏକ ଧ୍ୱନିର ଉଚ୍ଚାରଣ ଏକ ମନୁଷ୍ୟଠାରୁ ଅନ୍ୟ ମନୁଷ୍ୟଠାରେ ଅଳ୍ପବହୁତ ଭିନ୍ନ ହୋଇପାରେ । ଏହି ପ୍ରଭେଦ ସୀମିତ ବ୍ୟକ୍ତି, ପରିବାର ଓ ସମସ୍ତ ମଧ୍ୟରେ ସ୍ପଷ୍ଟ ଜଣାପଡ଼େ ନାହିଁ; କିନ୍ତୁ ସ୍ଥାନ କାଳ ପାତ୍ରର ବ୍ୟାପକତାରେ ଏହି ପ୍ରଭେଦ ସ୍ପଷ୍ଟ ଜଣାଯାଏ । ଉଚ୍ଚାରଣରେ ଏହି ଭିନ୍ନତା ଯୋଗୁ ନୂଆ ନୂଆ ଭାଷାର ସୃଷ୍ଟି ହୁଏ ବୋଲି ବହୁ ଭାଷାବିତ୍ ମତ ଦେଇଛନ୍ତି ।

(୨) ଶ୍ରବଣେନ୍ଦ୍ରିୟର ବିଭିନ୍ନତା—ମା' ଗର୍ଭରୁ କେହି ଭାଷା ଶିଖି ଆସିନଥାଏ । ଚୈତନ୍ୟ ଆସିବା ପରେ କାନରେ ଶୁଣି ଶୁଣି ମଣିଷ ଶିଶୁ ଧୀରେ ଧୀରେ ଭାଷା ଶିକ୍ଷା କରେ । ବାଗ୍‌ଯନ୍ତ୍ର ସହ ଶ୍ରବଣେନ୍ଦ୍ରିୟର ବିଭିନ୍ନତା ଧୀରେ ଧୀରେ ଧ୍ୱନି ପରିବର୍ତ୍ତନରେ ସହାୟକ ହୁଏ । ପ୍ରଥମେ ହୁଏତ ଏହି କାରଣ ହାସ୍ୟାସ୍ପଦ ମନେ ହୋଇପାରେ, କିନ୍ତୁ ଏହା ସତ୍ୟ । ଜଣେ ଯଦି ଶ୍ରବଣେନ୍ଦ୍ରିୟର ଭ୍ରମ ଯୋଗୁଁ ଶବ୍ଦଟିର ଭୁଲ୍ ଉଚ୍ଚାରଣ ଶୁଣେ, ତେବେ ସେ କହିଲା ବେଳେ ଭ୍ରାନ୍ତ ଶବ୍ଦଟିଏ ହିଁ ଉଚ୍ଚାରଣ କରେ । ଉଦାହରଣ ସ୍ୱରୂପ, କେହି ଯଦି 'ଗୃହଳ'କୁ 'ଗୁଡ଼ର' ଭାବରେ ଶୁଣେ ତେବେ ସେ ଶବ୍ଦଟିକୁ 'ଗୁଡ଼ର' ଭାବରେ ହିଁ ଉଚ୍ଚାରଣ କରେ । ଫଳରେ ଭ୍ରାନ୍ତ ଶବ୍ଦଟିଏ ଭାଷାରେ ପ୍ରଚଳିତ ହୋଇଯାଏ । ଏହିଭଳି ଭାବରେ 'କଟକ' 'କୁଟ୍ଟାକ' (Cuttack)ରେ, 'ବ୍ରହ୍ମପୁର' 'ବରହମପୁର' (Berhampur)ରେ, 'ବାଲେଶ୍ୱର' 'ବାଲେଶୋର' (Balasore) ରେ, 'ଅଳ' 'ଅଲ' (Aul)ରେ, 'ଓଡ଼ଗାଁ' 'ଓର୍ଗାଓଁ' (Orgaon)ରେ, 'ଅସିକା' 'ଅସ୍କା' (Aska)ରେ ପରିଣତ ହୋଇଅଛୁ । 'Cuttack'କୁ ଜାଣିବା ଶୁଣିବା ଲୋକେ 'କଟକ' ଉଚ୍ଚାରଣ କଲେ ମଧ୍ୟ ବିଦେଶର ଲୋକେ ଏହାକୁ 'କୁଟ୍‌ଟାକ୍' ଉଚ୍ଚାରଣ କରିବା ସ୍ୱାଭାବିକ । ଏହା ଅନ୍ୟ ଶବ୍ଦମାନଙ୍କ ପକ୍ଷରେ ମଧ୍ୟ ପ୍ରଯୋଜ୍ୟ ।

(୩) ଅନୁକରଣର ଅପୂର୍ଣ୍ଣତା—ଜଣେ ବ୍ୟକ୍ତି ଅନ୍ୟଠାରୁ ଭାଷାକୁ ଅନୁକରଣ କରେ । ଅଟୋ ଜେସ୍‌ପର୍‌ସନ୍‌ଙ୍କ ମତରେ, ଭାଷା ହେଉଛି ଅନୁକରଣର ପରିପକ୍ୱ ଫଳ । ଜଣେ ବ୍ୟକ୍ତି ଯଦି ପୂର୍ଣ୍ଣ ରୂପରେ ଅନୁକରଣ କରିନପାରେ ତା' ହେଲେ ତା'ଠାରୁ ଭାଷା ଶିକ୍ଷା କରୁଥିବା ବ୍ୟକ୍ତି ଅପୂର୍ଣ୍ଣ ଅନୁକରଣ ହିଁ ଶିଖିବ । ଉଦାହରଣ ସ୍ୱରୂପ, ଇଂରାଜୀ ଇଞ୍ଜେକ୍‌ସନ୍ ଶବ୍ଦକୁ ଜଣେ ବ୍ୟକ୍ତି ଯଦି ପୂର୍ଣ୍ଣ ଭାବରେ ଅନୁକରଣ କରି ନପାରି, 'ଇଞ୍ଜିକସନ୍' କହେ, ତାଠାରୁ ଏ ଶବ୍ଦଟି ଶିଖିଥିବା ବ୍ୟକ୍ତି ଏହାକୁ 'ଇଞ୍ଜିକସନ୍' ଭାବରେ ହିଁ ଉଚ୍ଚାରଣ କରିବ । ଭୋଜପୁରୀ ଭାଷାରେ ଓକିଲମାନଙ୍କଠାରୁ 'କନେକ୍‌ସନ୍' ଶବ୍ଦ ଶୁଣି ମହକିଲମାନେ ଅନୁକରଣ କରିବାକୁ ଚେଷ୍ଟା କରନ୍ତି, କିନ୍ତୁ ଅନୁକରଣ କରି ନପାରି କହନ୍ତି କନସନ୍ । ଏହିପରି ଭାବରେ 'ବ୍ରାହ୍ମଣ' ଶବ୍ଦ କେତେକ ଅପଭ୍ରଂଶ ଭାଷାରେ 'ବ୍ରାମ୍‌ହନ୍'ରେ ପରିଣତ ହୋଇଅଛି । 'ଶକ୍‌ପା' 'ଶପ୍ପା'ରେ ଓ 'ଡେପ୍ଥ' 'ଡେକ୍‌ଥ'ରେ ପରିଣତ ହେବା ମୂଳରେ ଏହି କାରଣ ରହିଛି ।

(୪) ଅଜ୍ଞତା––ଅପରିଚିତ ବିଦେଶୀ ଶବ୍ଦ ଅଜ୍ଞତାବଶତଃ ଭୁଲ୍ ଉଚ୍ଚାରିତ ହୋଇଥାଏ । ଯଥା—

ଇଞ୍ଜିନିଅର>ଇଞ୍ଜିଅର, ଇଞ୍ଜିନିହର । ଓଭରସିଅର>ଉଭେରଦର
ଏକ୍‌ସପ୍ରେସ୍>ଇସ୍‌ପ୍ରେସ୍ । ଗେଡ଼>ଗେଟ୍
କମ୍ପାଉଣ୍ଡର>କମ୍ପାଣ୍ଡର, କୁମ୍ପାଣ୍ଡର । ଡିଷ୍ଟ୍ରିକ୍ଟବୋର୍ଡ>ଡିଷ୍ଟିବୋର୍ଡ୍

(୫) ଲୌକିକ ବ୍ୟୁତ୍ପତ୍ତି ବା ଭ୍ରାମକ ବ୍ୟୁତ୍ପତ୍ତି (Popular Etymology)—ଗୋଟିଏ ବିଦେଶୀ ଶବ୍ଦକୁ ଶୁଣି ଅଥବା ଦେଖି ଅନେକ ବ୍ୟକ୍ତି ତାକୁ ନିଜ ଭାଷାର ଗୋଟିଏ ଶବ୍ଦ ସହିତ ସମ୍ବନ୍ଧାନ୍ୱିତ ବୋଲି ଭାବି ନିଅନ୍ତି ଓ ନିଜ ଭାଷାର ଶବ୍ଦ ସହିତ ସଦୃଶ କରି ଗଢ଼ିବାକୁ ଚେଷ୍ଟା କରିଥାଆନ୍ତି । ଅକ୍ଷର ଏପାଖ ସେପାଖ ହେଲାବେଳେ କେତେବେଳେ ନୂଆ ରୂପ ମଧ୍ୟ ଦେଖାଦିଏ । ଲୋକଦ୍ୱାରା ଏପରି ଏକ ବ୍ୟୁତ୍ପତ୍ତି କଳ୍ପିତ ହେଉଥିବାରୁ ଏହାକୁ କୁହାଯାଏ ଲୌକିକ ବ୍ୟୁତ୍ପତ୍ତି । ଧ୍ୱନି ସାମ୍ୟ ଯୋଗୁ ଶବ୍ଦକୁ ଅନ୍ୟ ଅର୍ଥରେ ଗ୍ରହଣ କରିନେବା ଫଳରେ ଭ୍ରମ ଦେଖାଦିଏ । ତେଣୁ ଏହାର ନାମ ଭ୍ରାମକ ବ୍ୟୁତ୍ପତ୍ତି ।

ଲାଇବ୍ରେରୀ>ରାୟବରେଲି । ଖାରକୁଦ୍>ଖାରକୁଣ୍ଡ । କ୍ରିସ୍‌ମାସ୍>କିସ୍‌ମିସ୍ । ବାନାର୍ଜୀ>ବାନରଜୀ । ଅନ୍ଧର>ଅନ୍ଧ୍ର ।

Who comes there>ହୁକୁମ୍ ସଦର୍ । Art college>ଅଠ କାଲିଜ (ହିନ୍ଦୀ) । Quarters guard>କୋତଲ ଗାରଦ । Charge sheet—ଚିର୍ଗ ସିଟ୍ । ଆରବୀକ ଇନ୍ତକାଲ୍>ହିନ୍ଦୀ 'ଅନ୍ତକାଳ । ପାରଲୌକିକ ବ୍ୟୁତ୍ପତ୍ତି

(Popular Etymology) ଓ ଲୋକ ନିରୁକ୍ତି (Folk Etymology ମଧ୍ୟରେ କେତେକ ସାମାନ୍ୟ ଲକ୍ଷ୍ୟ କରାଯାଏ ।

(୬) ଦ୍ରୁତକଥନ—ଉଚ୍ଚାରଣ ଦ୍ରୁତ ହେଲେ ଧ୍ୱନିର ପରିବର୍ତ୍ତନ ଦେଖାଯାଏ । ଯଥା—

ପଣ୍ଡିତଜୀ>ପଣ୍ଡିଜୀ । ମେହେର୍‌ବାନ>ମେହେର୍‌ବା, ମେହେର୍ବି । କବନ୍ଧ>କନ୍ଧ । ମାଷ୍ଟର ସାହେବ>ମାସ୍‌ସାବ । Thank you>ଥାଙ୍କ୍ୟୁ । ମହାଶୟେ>ମାହାଶେ । ଶ୍ୱେତମଣ୍ଡପ>ଭଣ୍ଡ । ପାନ ବିଡ଼ି ସିଗାରେଟ୍>ପାଣୁମିଶ୍ରେ ଜଏ (ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଏକ ଗଳ୍ପରୁ ଜଣାଯାଏ ଷ୍ଟେସନରେ ଫେରିବାଲାଙ୍କର 'ପାନ, ବିଡ଼ି, ସିଗାରେଟ' ଡାକର ଦ୍ରୁତ ଉଚ୍ଚାରଣ ଫଳରେ 'ପାଣୁ ମିଶ୍ର, ନାମରେ ଜଣେ ବ୍ୟକ୍ତି ତାଙ୍କୁ କେହି 'ପାଣୁ ମିଶ୍ରେ ଜଏ' ଡାକୁଛନ୍ତି ବୋଲି ସନ୍ଦେହରେ ପଡ଼ିଥିଲେ ।)

(୭) ପ୍ରଯତ୍ନ ଲାଘବ (Economy of effort)—ପ୍ରଯତ୍ନ ଲାଘବ ଧ୍ୱନି ପରିବର୍ତ୍ତନର ଏକ ବିଶିଷ୍ଟ କାରଣ । ବକ୍ତା ଅଧିକ ଆୟାସ ପାଇଁ ପରାଙ୍‌ମୁଖ ହୁଏ । ଫଳରେ ସେ କଷ୍ଟୋଚ୍ଚାରିତ ଶବ୍ଦକୁ ଭାଙ୍ଗି ସରଳ କରିଦିଏ ବା କୌଣସି ଧ୍ୱନିକୁ ଛାଡ଼ିଦିଏ । ଯଥା—

ଭକ୍ତ>ଭକତ, ଧର୍ମ>ଧମ୍ମ>ଧମ, ମକୁଟ>ମଉଡ଼

Knife>ନାଇଫ୍ (ପୂର୍ବରୁ ଉଚ୍ଚାରଣ ଥିଲା କ୍ନାଇଫ୍)
Talk>ଟକ୍ ( ,, ,, ,, ଟଲ୍କ)
Know>ନୋ ( ,, ,, ,, କ୍ନୋ)
Knight>ନାଇଟ୍ ( ,, ,, ,, କ୍ନାଇଟ୍)
Psychology>ସାଇକୋଲଜି ( ,, ,, ,, ପ୍‌ସାଇକୋଲଜି)
ସ୍ଥିର>ଥିର, ସ୍ଥାନ>ଥାନ, ଷ୍ଟେସନ୍>ଟେସନ୍ ।

(୮) ଲଘୁକତା—ଲଘୁପ୍ରବଣତା ଧ୍ୱନି ପରିବର୍ତ୍ତନର ଅନ୍ୟତମ କାରଣ । ବିଶେଷତଃ ଲୋକପ୍ରଚଳିତ ବ୍ୟକ୍ତିବାଚକ ବିଶେଷ୍ୟ ଏହି କାରଣରୁ ଧ୍ୱନି ପରିବର୍ତ୍ତନର ଅଧୀନ ହୁଏ । ଯଥା—

ବିଦ୍ୟାଧର>ବିଦ୍ଧିଆ, ବିଦେଇ, ବିଦି; କୁମୁଦିନୀ>କୁମି, କୁଇଁ; ପାର୍ବତୀ>ପାରି;
ବନମାଳୀ>ବନା; ସୁକୁମାରୀ>ସୁକୁରୀ; ବିଜୟ>ବିଜୁ, ବିଜି;
ଚନ୍ଦ୍ରକା>ଚଇଁ; ଜଗନ୍ନାଥ>ଜଗେଇ; ମିନତି>ମିନି, ମିନୁ, ମିନି, ମିନା;
କଲ୍ୟାଣୀ>କଇ; କୃଷ୍ଣ>କହ୍ନା, କହ୍ନେଇ; ଜନାର୍ଦ୍ଦନ>ଜନେଇ ।

(୯) ମନରୁ ଗଢ଼ି କହିବା—ମନରୁ ଗଢ଼ି ଏକ ନିର୍ଦ୍ଦିଷ୍ଟ ଧ୍ୱନି ସ୍ଥାନରେ ଅନ୍ୟ ଏକ ଧ୍ୱନି ବ୍ୟବହାର କରିବା ଫଳରେ ତାହା କ୍ରମେ ସ୍ଥାୟୀ ହୋଇଯାଏ । ହିନ୍ଦୀ ଭାଷାରେ ଅନେକ 'ଶୁକ୍ରେଚ୍ଛୁ' ସ୍ଥାନରେ 'ଶୁକ୍ରେକ୍ଷୁ', 'ଗ୍ରନ୍ଥ' ସ୍ଥାନରେ 'ଗ୍ରାନ୍ଥ' ଉଚ୍ଚାରଣ କରିଥାନ୍ତି । ଓଡ଼ିଶାରେ କେତେ ଅଞ୍ଚଳରେ 'ଗୃହଳ' ସ୍ଥାନରେ 'ଗୃହର' ଉଚ୍ଚାରଣ କରିଥାନ୍ତି ।

(୧୦) ଅନ୍ୟ ଭାଷାର ପ୍ରଭାବ—କୌଣସି ଗୋଷ୍ଠୀ, ଜାତି ବା ସଂଘ ଅନ୍ୟ କୌଣସି ଗୋଷ୍ଠୀ, ଜାତି ବା ସଂଘର ସଂସ୍ପର୍ଶରେ ଆସିଲେ ଶବ୍ଦପରିବର୍ତ୍ତନ ସଙ୍ଗେ ସଙ୍ଗେ ଧ୍ୱନି-ପରିବର୍ତ୍ତନ ମଧ୍ୟ ଦେଖା ଦେଇଥାଏ । ଆର୍ଯ୍ୟଜାତି ଦ୍ରାବିଡ଼ଜାତିର ସଂସ୍ପର୍ଶରେ ଫଳରେ ଦ୍ରାବିଡ଼ ଧ୍ୱନି ଟ, ଠ, ଡ, ଢ, ଣ ଆର୍ଯ୍ୟ ଭାଷା (ସଂସ୍କୃତ)କୁ ଆସିଅଛି ।

(୧୧) ଭୌଗୋଳିକ ପ୍ରଭାବ—ଭୌଗୋଳିକ ପ୍ରଭାବ ସର୍ବବାଦୀ ସମ୍ମତ ନହେଲେ ହେଁ ଗ୍ରୀଷ୍ମ ଓ ଶୈତ୍ୟ ବାଗ୍‌ଯନ୍ତ୍ର ଉପରେ ପ୍ରଭାବ ପକାଉଥିବାରୁ ଧ୍ୱନିରେ ପରିବର୍ତ୍ତନ ଦେଖାଦେବା ସ୍ୱାଭାବିକ । ପ୍ରାମାଣିକ ଓଡ଼ିଆ ଭାଷାର ବିବୃତଧ୍ୱନି ଉତ୍ତର ଓଡ଼ିଆ ଭାଷାରେ ସମ୍ବୃତଧ୍ୱନିରେ ପରିଣତ ହୋଇଅଛି । ଯଥା—ଭେକ>ଭୂକ, ଶୋଇବା>ଶୁଇବା, କେଉଁଠି>କ'ଠି, ଯୋଡ଼େ>ଯୁଡ଼େ, ସେଇଟା>ସି'ଟା ।

(୧୨) ସାମାଜିକ ଓ ରାଜନୀତିକ ଅବସ୍ଥା—ସମାଜର ଅବସ୍ଥା ଯଦି ଶୋଚନୀୟ ଥାଏ ତେବେ ସମାଜର ଭାଷାର ଧ୍ୱନି ସମ୍ବୃତ ହୁଏ, ଯଦି ସମାଜ ବଳଦର୍ପ-ଶାଳୀ ଥାଏ ତେବେ ତା'ର ଭାଷାର ଧ୍ୱନି କ୍ରମଶଃ ବିବୃତ ହୋଇଥାଏ । ସୁଖି ସୁଖ-ଶାନ୍ତିମୟ ସମୟରେ ଧ୍ୱନିରେ ନୂଆ ନୂଆ ଗଠନ କରିବାକୁ ଏକ ବିଳାସ ବୋଲି ଲୋକମାନେ ଭାବିଥାନ୍ତି ।

(୧୩) ଲିପି ଦୋଷ—କୌଣସି ଭାଷାରେ ଲୋଡ଼ିତ ଲିପି ଯଦି ଧ୍ୱନିକୁ ଭୁଲ୍ ଭାବରେ ରୂପ ଦେଇଥାଏ, ତାହାହେଲେ ପରବର୍ତ୍ତୀ କାଳରେ ତାହାର ପ୍ରଭାବ ପଡ଼େ । ଯଥା—

ସଂସ୍କୃତ 'ଶରଦ୍' ଶବ୍ଦକୁ ଓଡ଼ିଆ ଶିଳାଲେଖରେ 'ସ୍ରାହ୍ଦ' ଭାବରେ ଲେଖା-ଯାଇଥିବାରୁ କାଳକ୍ରମେ ସ୍ରାହ୍ଦ ଶବ୍ଦ ଓଡ଼ିଆ ଭାଷାରେ ପ୍ରଚଳିତ ହୋଇଗଲାଣି । ଲିପି ଦୋଷ ଯୋଗୁ ସଂଘଟିତ ଧ୍ୱନି ପରିବର୍ତ୍ତନର ଅନ୍ୟ କେତୋଟି ଦୃଷ୍ଟାନ୍ତ ହେଉଛି—ସହସ୍ର>ସସ୍ର, ଗୁପ୍ତ>ଗୁପ୍ତା, ମିଥ>ମିଥା, ଅଶୋକହୋଟେଲ>ଅଶୋକା ହୋଟେଲ ।

(୧୪) ଶବ୍ଦର ଅଧିକ ଦୈର୍ଘ୍ୟ—କୌଣସି ଶବ୍ଦ ଯଦି ଅଧିକ ଦୀର୍ଘ ହୋଇଥାଏ, ତାହାକୁ ସଂକ୍ଷେପରେ ପ୍ରକାଶ କରିବାକୁ ଚେଷ୍ଟା କରାଯାଏ । ଫଳରେ

ଧ୍ୱନି ପରିବର୍ତ୍ତନ ଦେଖାଯାଏ । ଯଥା—ଅଧ୍ୟାପକ>ଝା, ଉପାଧ୍ୟାୟ>ଓଝା, ଜୟ-ରାମଜୀକି>ଜୈରାମ୍ (ହିନ୍ଦୀ), ସ୍ୱୟଂବରମ>ସ୍ୱରମ୍, ପାକିସ୍ଥାନ୍>ପାକ୍, ଶୁକ୍ଳଦିବସ>ଶୁଦି (ହିନ୍ଦୀ), ବହୁଳ କୃଷ୍ଣଦିବସ>ବଦି (ହିନ୍ଦୀ), ଭାରତ ୟୁରୋପୀୟ>ଭାରୋପୀୟ । United States of America>USA, Patiala East Punjab States Union>Pepsu.

(୧୫) ବଳହୀନ ବ୍ୟଞ୍ଜନର ଆଧିକ୍ୟ—ବଳ ଦୃଷ୍ଟିରୁ ବ୍ୟଞ୍ଜନ ଦୁଇ ପ୍ରକାର—ସବଳ ଓ ଦୁର୍ବଳ । କ, ଚ, ଟ, ତ, ପ ଏହି ପାଞ୍ଚବର୍ଗର ପ୍ରଥମ ସ୍ପର୍ଶ ବ୍ୟଞ୍ଜନ ସବଳ, ଅନୁନାସିକ, ଅନ୍ତଃସ୍ଥ ଏବଂ ଉଷ୍ମ ବ୍ୟଞ୍ଜନଗୁଡ଼ିକ ହେଉଛି ଦୁର୍ବଳ । ଯେଉଁ ଭାଷାରେ ଦୁର୍ବଳ ବ୍ୟଞ୍ଜନର ସଂଖ୍ୟା ଅଧିକ, ସେହି ଭାଷାରେ ଅଧିକ ଧ୍ୱନି ପରିବର୍ତ୍ତନ ଦେଖାଦିଏ ବୋଲି ଫରାସୀ ବିଦ୍ୱାନ୍ J· Vendryesଙ୍କର ମତ । ଅନେକ ସମୟରେ ଦୁର୍ବଳ ବ୍ୟଞ୍ଜନ ସବଳ ବ୍ୟଞ୍ଜନ ଦ୍ୱାରା ପ୍ରଭାବିତ ହୋଇ ଲୋପ ପାଇଯାଏ । କିନ୍ତୁ ଅନେକ ଭାଷାରେ ବ୍ୟଞ୍ଜନର ଏପରି ବିଭାଗୀକରଣ ନାହିଁ ।

(୧୬) ସ୍ୱାଭାବିକ ପରିବର୍ତ୍ତନ—କେତେକ ଭାଷାରେ ଧ୍ୱନିର ପରିବର୍ତ୍ତନ ପାଇଁ କୌଣସି କାରଣ ନଥାଏ । ଉଦାହରଣ ସ୍ୱରୂପ, ସମୀପରେ ଙ, ନ, ମ ଇତ୍ୟାଦି ନାସିକ୍ୟବ୍ୟଞ୍ଜନ ଥିଲେ ଧ୍ୱନିରେ ଅନୁନାସିକତା ଘଟିଥାଏ । କିନ୍ତୁ ସମୀପରେ ନାସିକ୍ୟ-ବ୍ୟଞ୍ଜନ ନଥାଇ ମଧ୍ୟ ଧ୍ୱନିରେ ଅନୁନାସିକତା ଘଟିଥାଏ । ଏପରି ବ୍ୟାପାରକୁ ସ୍ୱତଃ ନାସିକ୍ୟଭବନ କୁହାଯାଏ । ଯଥା—ହସିବା>ହଁସିବା, ଘାସ>ଘାଂସ, କୂଅ>କୂଅଁ, ପୋଗୁଁ ଇତ୍ୟାଦି ।

ସେହିପରି ସମୀପରେ ଋ, ର (ରଫଳା ଓ ରେଫ୍), ଷ୍, ଶ୍, ସ୍ ଥିଲେ ଦନ୍ତ୍ୟ ବ୍ୟଞ୍ଜନ ମୂର୍ଦ୍ଧନ୍ୟ ବ୍ୟଞ୍ଜନରେ ପରିଣତ ହୁଏ । କିନ୍ତୁ ଏହି ଧ୍ୱନି ନଥାଇ ମଧ୍ୟ ବେଳେ ଦନ୍ତ୍ୟ ବ୍ୟଞ୍ଜନ ମୂର୍ଦ୍ଧନ୍ୟ ବ୍ୟଞ୍ଜନରେ ପରିଣତ ହୁଏ । ଏହି ବ୍ୟାପାରକୁ ସ୍ୱତଃ ମୂର୍ଦ୍ଧନ୍ୟ ଭବନ କୁହାଯାଏ । ଯଥା – ପତିତ>ଓଡ଼ିଆ, ପତତି>ପଡ଼ଇ, ଉଦ୍ଦୀନ>ଉଡ୍ଡୀନ ଇତ୍ୟାଦି ।

(୧୭) କବିତାରେ ମାତ୍ରା ବା କୋମଳତା ଆନୟନ ପାଇଁ ପରିବର୍ତ୍ତନ – କବିମାନେ ଶବ୍ଦକୁ କୋମଳ ଅଥବା ସୁଶ୍ରାବ୍ୟ କରିବା ପାଇଁ ଧ୍ୱନିରେ ପରିବର୍ତ୍ତନ ଆଣିଥାଆନ୍ତି । ଯଥା—ଚନ୍ଦ୍ର>ଚାଁନ୍ଦ, ଜପ>ଜଇପ, ରାଜ୍ୟ>ରାଇଜ, ବାଦ୍ୟ>ବାଇଦ ।

(୧୮) ବଳାଘାତ—ଯଦି କୌଣସି ଗୋଟିଏ ଧ୍ୱନି ଉପରେ ଅଧିକ ବଳାଘାତ ଦିଆଯାଏ, ତେବେ ତା'ର ସମୀପବର୍ତ୍ତୀ ଧ୍ୱନିର ଲୋପ ହୋଇଯାଏ ।

ଯଥା—ଅଭ୍ୟନ୍ତର>ଭିତର, ଅଲାବୁ>ଲାଉ, ଅଧ୍ୟାପକ>ଝା, ଡାଇରେକ୍ଟର>ଡିରେକ୍ଟର, ଫାଇନାନ୍ସ>ଫିନାନ୍ସ, ଅସ୍ଥି>ହଡ୍ଡି (ହିନ୍ଦୀ), ଉତ୍‌ସ୍ଥାନେ>ଉଠ୍‌ନା (ହିନ୍ଦୀ)।

(୧୯) ସାଦୃଶ୍ୟ (Analogy)—କେତେକ ଶବ୍ଦ ଅନ୍ୟ କେତେକ ଶବ୍ଦର ସାଦୃଶ୍ୟ ହେତୁ ନିଜର ଧ୍ୱନିରେ ପରିବର୍ତ୍ତନକୁ ଗ୍ରହଣ କରନ୍ତି। 'ପୌଞ୍ଚିଶ'ର ସାଦୃଶ୍ୟରେ ଛେଦିଶ୍ (ଅନୁନାସିକତା ଘଟିଅଛି), ସଂସ୍କୃତ 'ଦ୍ୱାଦଶ' ସାଦୃଶ୍ୟରେ 'ଏକାଦଶ' (ଏକଦଶ ହେବାର କଥା), ହିନ୍ଦୀର ମୁଝ୍ (=ମହ୍ୟଂ)ରେ 'ଝ' ଧ୍ୱନି ତୁଝ୍ (=ତୁଭ୍ୟଂ)ର ସାଦୃଶ୍ୟ ଅନୁଯାୟୀ ଘଟିଅଛି। ସେହିପରି ହିନ୍ଦୀ ଭାଷାରେ ଦେହାତ୍‌ରୁ ସୃଷ୍ଟି 'ଦେହାତୀ'ର ସାଦୃଶ୍ୟ ଅନୁଯାୟୀ 'ଶହରାତୀ' ଶବ୍ଦର ସୃଷ୍ଟି। 'ସ୍ୱର୍ଗ'ର ସାଦୃଶ୍ୟ ଅନୁଯାୟୀ 'ନରକ' ନର୍କରେ, 'ନିରୀକ୍ଷକ'ର ସାଦୃଶ୍ୟ ଅନୁଯାୟୀ 'ପରୀକ୍ଷକ'ରେ, 'ପିଙ୍ଗଳା'ର ସାଦୃଶ୍ୟ ଅନୁଯାୟୀ 'ଇଡ଼ା' 'ଇଙ୍ଗଳା'ରେ ପରିଣତ ହୋଇଅଛି।

(୨୦) କୌଣସି ବିଦେଶୀ ଧ୍ୱନିର ନିଜଭାଷାରେ ଅଭାବ—ଯେତେବେଳେ କୌଣସି ଭାଷାଭାଷୀ ଅନ୍ୟ କୌଣସି ବିଦେଶୀ ଭାଷାର ସମ୍ପର୍କରେ ଆସେ ଏବଂ ସେହି ବିଦେଶୀ ଭାଷାରେ ଥିବା ଧ୍ୱନି ନିଜ ଭାଷାରେ ନଥିବା ଲକ୍ଷ୍ୟ କରେ ତେବେ ସେ ନିଜଭାଷାରେ ଥିବା ଧ୍ୱନିକୁ ତାହା ସ୍ଥାନରେ ବ୍ୟବହାର କରେ, ଫଳରେ ଧ୍ୱନିର ପରିବର୍ତ୍ତନ ଘଟେ। ଭାରତୀୟ ଭାଷାମାନଙ୍କରେ ବ୍ୟବହୃତ ୟୁନାନୀ, ଜାପାନୀ, ଚୀନା, ତୁର୍କୀ, ଆରବୀକ, ପାରସିକ, ଇଂରାଜୀ ଓ ପର୍ତ୍ତୁଗୀଜ ଆଦି ଶବ୍ଦରେ ଏପରି ଦୃଷ୍ଟାନ୍ତ ଲକ୍ଷ୍ୟ କରାଯିବ। ଇଂରାଜୀରେ t, d, ଓଡ଼ିଆରେ ଟ, ଡ, ଧ୍ୱନି ପରି ମୂର୍ଦ୍ଧନ୍ୟ ନୁହେଁ, ଏହା ତାଲବ୍ୟ ନୁହେଁ, ଅଥବା ତ, ଦ, ପରି ଦନ୍ତ୍ୟ ନୁହେଁ। ଏହା ବର୍ତ୍ସ୍ୟ। କିନ୍ତୁ ଓଡ଼ିଆରେ ଏହା ମୂର୍ଦ୍ଧନ୍ୟ ଧ୍ୱନିରେ ପରିବର୍ତ୍ତିତ ହୋଇଯାଇଛି। ଯଥା—Cat> କ୍ୟାଟ୍, August—ଅଗଷ୍ଟ୍, Report—ରିପୋର୍ଟ୍, ରପଟ, Desk—ଡେସ୍କ୍।

(୨୧) ଅନ୍ଧବିଶ୍ୱାସ—ଅନ୍ଧବିଶ୍ୱାସ ଯୋଗୁଁ ଅନେକେ ଗୋଟିଏ ଶବ୍ଦକୁ ଜାଣି ଜାଣି ବିକୃତ କରି ଉଚ୍ଚାରଣ କରିଥାନ୍ତି। ଦୃଷ୍ଟାନ୍ତ ସ୍ୱରୂପ, ହିନ୍ଦୀ ଭାଷାରେ 'ଗୋଭୀ' ଏକ ପ୍ରସିଦ୍ଧ ତରକାରି। ଏହାର ଆରମ୍ଭରେ ଗୋ (ଗାଈ) ଧ୍ୱନି ରହିଛି। ହିନ୍ଦୁମାନେ ଗାଈକୁ ଆଘାତ କଲେ ଦୋଷ ଲାଗିବ ବୋଲି ବିଶ୍ୱାସ କରୁଥିବାରୁ 'ଗୋଭୀ' ସ୍ଥାନରେ 'କୋଭୀ' ବା 'କୋବି' ବୋଲି କହିଥାନ୍ତି। ସେହିପରି ସ୍ତ୍ରୀଲୋକମାନେ ସ୍ୱାମୀର ନାମ ଧରିବା ଅପରାଧ ଭାବି ସେହି ନାମ ବା ସେହି ନାମ ସହିତ ଧ୍ୱନି ସାମ୍ୟଥିବା ଶବ୍ଦ ଉଚ୍ଚାରଣ ନକରି କିନ୍ତୁ ପରିବର୍ତ୍ତିତ ଶବ୍ଦ ଉଚ୍ଚାରଣ କରିଥାନ୍ତି।

ଏହିପରି ଭାବରେ ଧ୍ୱନି ପରିବର୍ତ୍ତନ ଦେଖା ଦେଇଥାଏ।

## ଧ୍ୱନି ପରିବର୍ତ୍ତନର ବିଭିନ୍ନ ଧାରା

ଧ୍ୱନି ପରିବର୍ତ୍ତନ ମୁଖ୍ୟତଃ ଦ୍ୱିବିଧ—ସ୍ୱୟଂସ୍ଫୂର୍ତ୍ତ (Unconditional, Spontaneous or Incontact) ଓ ସାପେକ୍ଷ (Conditional or Contact) ସ୍ୱୟଂସ୍ଫୂର୍ତ୍ତ ଧ୍ୱନି ପରିବର୍ତ୍ତନ ସ୍ୱାଭାବିକ ପ୍ରଚଳନରେ ସ୍ୱାଭାବିକ ଭାବରେ ଘଟିଥାଏ । ସ୍ୱତଃ ଅନୁନାସିକୀଭବନ, ସ୍ୱତଃ ତାଳବ୍ୟୀଭବନ, ସ୍ୱତଃ ମୂର୍ଦ୍ଧନ୍ୟୀଭବନ ପ୍ରଭୃତି ଏହାର ଅନ୍ତର୍ଭୁକ୍ତ । କିନ୍ତୁ ସାପେକ୍ଷ ପରିବର୍ତ୍ତନ କେତେକ କାରଣରେ ଅପେକ୍ଷା ରଖେ । ଏହି କାରଣ ସମସ୍ତ କ୍ଷେତ୍ରରେ ପ୍ରଯୋଜ୍ୟ ନ ହେଲେ ମଧ୍ୟ ଏହି କାରଣରୁ ବିଭିନ୍ନ ଧାରାରେ ଧ୍ୱନିର ପରିବର୍ତ୍ତନ ଦେଖା ଦେଇପାରେ । ଧ୍ୱନି ପରିବର୍ତ୍ତନର ବିଭିନ୍ନ ଧାରାକୁ ନିମ୍ନଲିଖିତ ଭାବରେ ସଂକ୍ଷେପରେ ବିଭକ୍ତ କରାଯାଇପାରେ ।

(୧) ଲୋପ (Elision)—ଅନେକ ସମୟରେ ସହଜ ଉଚ୍ଚାରଣ, ମୃଦୁ ଉଚ୍ଚାରଣ, ଶୀଘ୍ର ଉଚ୍ଚାରଣ ବା ସ୍ୱରାଘାତ ଯୋଗୁ କେତେକ ଧ୍ୱନିର ଲୋପ ଘଟିଥାଏ । ଏହା ତ୍ରିବିଧ— ସ୍ୱର ଲୋପ, ବ୍ୟଞ୍ଜନ ଲୋପ ଓ ଅକ୍ଷର ଲୋପ ।

(କ) ସ୍ୱରଲୋପ—ଶବ୍ଦରେ ଏକ ବା ଏକାଧିକ ସ୍ଥାନରେ ସ୍ୱରଧ୍ୱନିର ଲୋପ ଘଟିଥାଏ । ଏହା ତ୍ରିବିଧ :—

(ଅ) ଆଦିସ୍ୱର ଲୋପ—(Aphesis)- ଶବ୍ଦର ଆଦିସ୍ଥିତ ସ୍ୱର ଲୋପ ହେଲେ ତାହାକୁ ଆଦିସ୍ୱର ଲୋପ କୁହାଯାଏ ।

**ଉଦାହରଣ—**

ଅନାଜ>ନାଜ, ଇକାଦଶ>ଗ୍ୟାରହ, ଅଟସାନା>ଟସାନା, ଉପାଧ୍ୟାୟ>ବାଝ୍ୟା, ଅଲାବୁ>ଲାଉ, ଅପୂପ>ପୂପ, ପୂଓ । ଅଗର>ଗର, ଅପଓ୍ୱାର>ପଓ୍ୱାର, ଅରପୀ >ଆପୀ ଅହାତା>ହାତା, ଉଧାର>ଧାର, ଏରଣ୍ଡ>ରେଣ୍ଡ଼, ଅମୀର>ମୀର, ଉପାନତ୍>ପାଣ୍ଡେଇ, Esquire>squire, ଅଭ୍ୟନ୍ତର>ଭିତର, ଅରଘଟ୍ଟ >ରହଁଟ, amuck>muck, ଅପାର>ପ୍ତର ।

(ଆ) ମଧ୍ୟସ୍ୱର ଲୋପ (Syncope)—ଏ କ୍ଷେତ୍ରରେ ଶବ୍ଦର ମଧ୍ୟବର୍ତ୍ତୀ ସ୍ୱରଧ୍ୱନି ଲୋପପାଏ, ଯଥା—ଅଭିଜାନୁ>ଅଭିଜ୍ଞ (ଜ୍+ନ=ଜ୍ଞ), ଏଠାରେ 'ଜ'ରେ ଥିବା 'ଅ'ର ଲୋପ ହୋଇଅଛି । ସେହିପରି ଅଗରୁ>ଅଗ୍ରୁ, ସୁବର୍ଣ୍ଣ>ସ୍ୱର୍ଣ୍ଣ, ଶାକାପ>ଶାକ୍ପ (ଇଂରାଜୀ), ତରବୁଜ>ତର୍ବୁଜ, ହରଦମ>ହର୍ଦମ, Do not —Don't, storey—story, ଅପରାଧ—ଅପ୍ରାଧ, ଉପରୋଧ—ଉପ୍ରୋଧ, ପରଶୁ>ପର୍ଶୁ, ନରକ>ନର୍କ, ମରକତ>ମର୍କତ, ନଗର>ନଗ୍ର, ଭଗନୀ>ଭଗ୍ନୀ, ଚମୂପତି>ଚମ୍ପତି ।

(ଇ) ଅନ୍ତ୍ୟସ୍ୱର ଲୋପ—ଶବ୍ଦର ଶେଷରେ ଥିବା ସ୍ୱର ଯଦି ଲୋପ ପାଏ, ତାହାକୁ ଅନ୍ତ୍ୟସ୍ୱର ଲୋପ କୁହାଯାଏ । ଭାରତୀୟ ଭାଷାମାନଙ୍କ ମଧ୍ୟରେ ହିନ୍ଦୀ ଓ ବଙ୍ଗଳା ଭାଷାରେ ଅନ୍ତ୍ୟସ୍ୱର ଲୋପ ଦୃଷ୍ଟାନ୍ତ ପର୍ଯ୍ୟାପ୍ତ । ଯଥା—ରାମ>ରାମ୍, ଶିଳା>ସିଲ, କମଳ>କମଲ୍, ଅଗ୍ନି>ଅଗ୍, ଦନ୍ତ୍>ଦା'ନ୍, ପରୀକ୍ଷା>ପରେଖ୍, ଦୂର୍ବା ଦୂବ୍. ଦ୍ରାକ୍ଷା>ଦାଖ୍, ଗର୍ଭିଣୀ>ଗାଭିନ, ଭଗିନୀ>ବହିନ୍, କଣ୍ଟକ>କଣ୍ଟକ୍, ନୀଳ କମଳ—ନୀଲ୍ କମଲ୍ ।

Affaire (French)>Affair (English)
Bombe (French)>Bomb (English)
Differo (Latin)>Differ (English)
Assisto (Latin)>Assist (English)

(ଖ) ବ୍ୟଞ୍ଜନ ଲୋପ—ଏହା ତ୍ରିବିଧ, ଯଥା—ଆଦ୍ୟବ୍ୟଞ୍ଜନ ଲୋପ, ମଧ୍ୟବ୍ୟଞ୍ଜନ ଲୋପ, ଅନ୍ତ୍ୟବ୍ୟଞ୍ଜନ ଲୋପ ।

(ଅ) ଆଦ୍ୟବ୍ୟଞ୍ଜନ ଲୋପ କଥିତ ଭାଷାରେ କେତେକ ଶବ୍ଦର ଆଦ୍ୟରେ ବ୍ୟଞ୍ଜନବର୍ଣ୍ଣ ଥିଲେହେଁ ଉଚ୍ଚାରଣରେ ଲୋପ ପାଇଥାଏ, ଯଥା—

ସ୍ଥିର>ଥିର, ସ୍ଥାନ>ଥାନ, ସ୍ଥଳୀ>ଥଳୀ, ଶ୍ମଶାନ>ମଶାଣି, ଶ୍ମଶ୍ରୁ>ମୁଞ୍ଛ, ସ୍କନ୍ଧ>କାନ୍ଧ, knife>nife (ଉଚ୍ଚାରଣରେ 'k'ର ଲୋପ), know>ନୋ (now), write>rite, knight>night.

(ଆ) ମଧ୍ୟବ୍ୟଞ୍ଜନ ଲୋପ—କେତେକ ଶବ୍ଦର ମଧ୍ୟରେ ଥିବା ବ୍ୟଞ୍ଜନ ଲୋପପାଏ । ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷାରେ ବହୁ ମଧ୍ୟବ୍ୟଞ୍ଜନ ମଧ୍ୟ ଭାରତୀୟ ଓ ନବୀନ ଭାରତୀୟ ଆର୍ଯ୍ୟଭାଷାରେ ଲୋପପାଇଛି, ଯଥା—ନଗର>ନଅର, କୋକିଳ>କୋଇଲି, ଜ୍ୱର>ଜର, ଜ୍ୱଳା>ଜାଳା, ଉପବାସ>ଉପାସ, କପିତ୍ଥ>କଇଥ, ଶବର>ଶଅର, ସୂଚୀ>ସୂଈ, ମୁକୁଟ>ମଉଡ଼, ସାଗର>ସାଅର, ଶୃଗାଳ>ଶିଆଳ, ଭେଗୀ>ଭେଇ, ନିଗୁଣ୍ଡ>ନିଉଣ୍ଡ, ଘୃତ>ଘିଅ, ମାତା>ମାଆ, କୂପ>କୂଅ, ବଚନ>ବଅଣ, ଡାକିନୀ>ଡାଇଣୀ, Walk>Wak (ଉଚ୍ଚାରଣରେ), ସେହିପରି ଉଚ୍ଚାରଣରେ talk>tak, right>rit, daughter>dauter, neighbour>neibour, doubt>dout.

(ଇ) ଅନ୍ତ୍ୟବ୍ୟଞ୍ଜନ ଲୋପ ଭାଷାରେ ଅନ୍ତ୍ୟବ୍ୟଞ୍ଜନ ଲୋପର ଦୃଷ୍ଟାନ୍ତ ଅଳ୍ପ ।

ଉଦାହରଣ—ପଶ୍ଚାତ୍>ପଚ୍ଛା, ପଚ୍ଛ (ପ୍ରାକୃତ), ମହାନ୍>ମହା, ବିଦ୍ୟୁତ୍>ବିଜୁ, ଭବିଷ୍ୟତ୍>ଭବିଷ୍ୟ, ପୁନର୍>ପୁନ, ମନସ୍>ମନ, ନଭସ୍>

ନଭ, ଶିରସ>ଶିର, ତେଜସ୍>ତେଜ, ଯଶସ୍>ଯଶ, ଯାବତ୍>ଯାବ (ପ୍ରାକୃତ), ସମ୍ୟକ୍>ସମ୍ମା (ପାଲି), ଜଗତ୍>ଜଗ, Bomb>ବମ୍ (ଉଚ୍ଚାରଣରେ); Command>କମାନ୍ (ଉଚ୍ଚାରଣରେ) ।

(ଗ) ଅକ୍ଷର ଲୋପ—ଏହା ଚାରିପ୍ରକାର, ଯଥା—ଆଦ୍ୟକ୍ଷର ଲୋପ, ମଧ୍ୟାକ୍ଷର ଲୋପ, ଅନ୍ତ୍ୟାକ୍ଷର ଲୋପ ଓ ସମାକ୍ଷର ଲୋପ ।

(ଅ) ଆଦ୍ୟକ୍ଷର ଲୋପ (Apheresis)—ଏହାର ଦୃଷ୍ଟାନ୍ତ ପ୍ରଚୁର ନୁହେଁ । ଉଦାହରଣ—ସ. ଯଷ୍ଟିକ>ଇଂ. Stick, ଅଧ୍ୟାପକ>ଝା, ଅଭ୍ୟନ୍ତରବାର>ଇତ୍ତବାର, ଇତବାର, ଶିଥିଳ>ଢିଲ, କୁସୀଦ>ସୁଦ, necktie>tie, Defence>fence, University>Versity.

(ଆ) ମଧ୍ୟାକ୍ଷର ଲୋପ—

| | |
|---|---|
| ଭାଣ୍ଡାଗାର>ଭଣ୍ଡାର ('ଗା'ର ଲୋପ) | କେରଲକ>କେଲା |
| ନାସିକା>ନାକ ('ସି'ର ଲୋପ) | ଗୋହୁଁଚନା>ଗୋଚନା |
| ଗେହୁଁଜବ>ଗୋଜଈ (ହିନ୍ଦୀ) | ବର୍ଦ୍ଧିତ>ବଢ଼ଇ |
| ନୀଲମଣି>ନୀଲଣି (ହିନ୍ଦୀ ଓ ଓଡ଼ିଆ) | ରାଜକୁଳ>ରାଉଳ |
| ଶାଦବାଶ>ଶାବାଶ (ଫାର୍ସୀ) | ଫଲାହାର>ଫଲାର |
| ଦସ୍ତଖତ>ଦସ୍ଖତ | ଉଦ୍ୟକାଲ>ସକାଳ |

(ଇ) ଅନ୍ତ୍ୟାକ୍ଷର ଲୋପ (Apocope)—ମାତା>ମାଅ, ବିଙ୍କପ୍ତିକା>ବନଠ, ଭ୍ରାତୃଜାୟା>ଭାଉଜ, ମୌକ୍ତିକ>ମୋତି, କଣ୍ଠିକା>କଣ୍ଟାର, ଜବ>ଜ, ପାଦବର୍ତ୍ତିକା>ପାବଟ, କୁଞ୍ଚିକା>କୁଞ୍ଚି, ମନ୍ଥର>ମଣ୍ଡର, ମଣ୍ଡ>ମଠ, ଦେବ>ଦେ, କର୍ପୂର—କପ୍ପୂର>କପା, ବନ୍ଧାଗ୍ର>ବନ୍ଧା, ବରେନ୍ଦ୍ର>ବାରେନ୍ ।

(ଉ) ସମାକ୍ଷର ଲୋପ (Haplology)—Haplologyରେ ଦୁଇଟି ଗ୍ରୀକ୍ ଶବ୍ଦ ରହିଛି । ଗୋଟିଏ Haploos (ଯାହାର ଅର୍ଥ single ବା ଏକ ଅନ୍ୟଟି Logose (ଯାହାର ଅର୍ଥ ଜାଣିବା) । ତେଣୁ Haplologyର ଅର୍ଥ ହେଉଛି ଦୁଇଟି ସମାନ ଧ୍ୱନି ବା ସମାନ ଅକ୍ଷର ମଧ୍ୟରୁ ଗୋଟିଏ ଜଣାଯାଏ ଓ ଅନ୍ୟଟି ଲୋପପାଏ । ମାନବ ମସ୍ତିଷ୍କ ସାଧାରଣତଃ ଏକପ୍ରକାର ଅକ୍ଷରକୁ ଏକ ସମୟରେ ଦୁଇଥର ଉଚ୍ଚାରଣ କରିବାକୁ ଚାହେଁ ନାହିଁ । ତେଣୁ ଗୋଟିକୁ ଛାଡ଼ିଦିଏ । ଏହି ଛାଡ଼ିଦେବାକୁ କୁହାଯାଏ ସମାକ୍ଷର ଲୋପ । ଏହି ନାମ ଦେଇଥିଲେ Bloomfield, ଏହାର ଦୃଷ୍ଟାନ୍ତ ହେଉଛି—

ପାଦୋଦକ>ପାଦୁକା, ମମ+ମତ୍>ମମତ୍ (ବୈଦିକ) । ସ୍ୱର୍ଗଗଙ୍ଗା>ସ୍ୱର୍ଗଙ୍ଗା, ନାକକଟା>ନାକଟା, ଖଣ୍ଡଦ୍ୱାର>ଖଣ୍ଡଦ୍ୱାର, ନାଟକକାର>ନାଟକାର,

ସମ୍ବାଦଦାତା>ସମ୍ବାଦାତା, ଶେବବୃଧଃ>ଶେବୃଧଃ, ତୃଣାଚବବାନ୍>ତୃଣାଚବାନ, ଶଷ୍ପପିଞ୍ଜର>ଶଷ୍ପିଞ୍ଜର, କହାହ୍ନ>କହ୍ନ, ନାମମାତ୍ର>ନାମାତ୍ର, ନନ୍ଦଦୁଲାଲରେ>ନନ୍ଦୁଲାଲରେ, ବଡ଼ଦାଦା>ବଡ଼ଦା, ମେଜ୍‌ଦଦ>ମେଜ୍‌ଦ, ଖଇଜନା>ଖଇନା, ହରଜନା>ହଟନା, ମାତୁଳଶ୍ୱଶୁର>ମଉଲାଶୁର>ମଲାଶୁର, ଜ୍ୟେଷ୍ଠଶ୍ୱଶୁର>ଜେଠାଶୁର, ମଙ୍ଗଳବାର>ମଙ୍ଗବାର, ଲୁକିତତରେ>ଲୋତରେ, କୁସ୍ତିତତରେ>କୋତରେ, ପ୍ରହରରାଜ>ପ୍ରହରାଜ, Camelleo rd>Cameleoyard, Parttime>Partime, Cinemamatinee>Cinematinee, ଚକ୍‌କଣେ>ଚକଣ, କୁକ୍‌କୁର>କୁକୁର, ପିଣ୍ଡଳ>ପିଡଳ ।

(୬) ଆଗମ—ଲୋପର ବିପରୀତ ହେଉଛି ଆଗମ । ଶବ୍ଦରେ କୌଣସି ନୂତନ ଧ୍ୱନିର ଆଗମନକୁ ଭାଷାବିଜ୍ଞାନରେ ଆଗମ କୁହାଯାଏ । ଉଚ୍ଚାରଣରେ ସୌକର୍ଯ୍ୟ ପାଇଁ ଏହି ନୂତନ ଧ୍ୱନିର ଆଗମ ହୋଇଥାଏ । ଏହା ତ୍ରିବିଧ—ସ୍ୱରାଗମ, ବ୍ୟଞ୍ଜନାଗମ ଓ ଅକ୍ଷରାଗମ ।

(କ) ସ୍ୱରାଗମ—ଏହା ଚତୁର୍ବିଧ—ଆଦ୍ୟସ୍ୱରାଗମ, ମଧ୍ୟସ୍ୱରାଗମ, ଅନ୍ତ୍ୟସ୍ୱରାଗମ ଓ ସମସ୍ୱରାଗମ ।

(ଅ) ଆଦ୍ୟସ୍ୱରାଗମ, ପ୍ରାଗୁଞ୍ଜନ, ପୁରୋହିତ (Prothesis)—ଶବ୍ଦର ଆରମ୍ଭରେ କୌଣସି ସ୍ୱରର ଆଗମକୁ ଆଦ୍ୟସ୍ୱରାଗମ କୁହାଯାଏ । ବହୁ କ୍ଷେତ୍ରରେ ଏହି ସ୍ୱର ହ୍ରସ୍ୱ ହୋଇଥାଏ । ଆଦ୍ୟସ୍ୱରାଗମକୁ କେହି କେହି ପ୍ରାଗୁଞ୍ଜନ ବା ପୁରୋହିତ କହିଥାନ୍ତି । ଉଦାହରଣ—

ସ୍କୁଲ>ଇସ୍କୁଲ, ସ୍ତ୍ରୀ>ଇତ୍ଥୀ (ପ୍ରାକୃତ), ରଙ୍ଗମ>ଇରଙ୍ଗମ୍ (ତାମିଲ୍), ପ୍ଲେଟୋ>ଅଫଲତୁନ, ସ୍ନାନ>ଅସ୍ନାନ, ଘ-ବ (ପକ୍ଷୀ) ଲାଟିନ୍, ଅବି (avi) ସ୍ତୁତ>ଅସ୍ତୁତ, ସ୍ପର୍ଦ୍ଧା>ଅସ୍ପର୍ଦ୍ଧା, ସ୍ଥାବଲ (Stable)>ଅସ୍ଥାବଲ, ଲୋପ>ଅଲୋପ, ସ୍ପୋର୍ଟ>ଇସ୍ପୋର୍ଟ, ପର୍ଯ୍ୟାପ୍ତ>ଅପର୍ଯ୍ୟାପ୍ତ, ଷ୍ଟେସନ୍>ଇଷ୍ଟେସନ୍, ସଓ୍ୱାଗ>ଅସଓ୍ୱାଗ, ରତ୍ନ>ଅତରଛ, ପ୍ରାନ୍ତର>ଅପନ୍ତର, ପର୍ଯ୍ୟାପ୍ତ>ଅପର୍ଯ୍ୟାପ୍ତ ।

(ଆ) ମଧ୍ୟସ୍ୱରାଗମ (Anaptyxis) ଅଜ୍ଞାନ, ଆଳସ୍ୟ ବା କଥନର ସୌକର୍ଯ୍ୟ କାରଣରୁ ବେଳେବେଳେ ଶବ୍ଦ ମଧ୍ୟରେ ଏକ ସ୍ୱରର ଆଗମ ହୋଇଥାଏ । ଦୁଇଟି ବ୍ୟଞ୍ଜନ (ସଂଯୁକ୍ତ) ମଧ୍ୟରେ ସ୍ୱରଟିର ଆଗମ ହୁଏ । ପଞ୍ଜାବୀ ଭାଷାରେ ଅଧିକ ମଧ୍ୟସ୍ୱରାଗମ ଦେଖାଯାଏ ।

ପଞ୍ଜାବୀରେ—ସ୍କୁଲ>ସକୁଲ, ସ୍ନାନ>ସନାନ, ଷ୍ଟେଶନ୍>ସଟେଶନ୍, ସ୍ପ୍ରିଙ୍ଗ୍>ସପ୍ରିଙ୍ଗ୍ ।

ସଂସ୍କୃତରେ—ପୃଥ୍ୱୀ>ପୃଥିବୀ, ଇନ୍ଦ୍ରା>ଇନ୍ଦର ।

ପ୍ରାକୃତ ଓ ଆଧୁନିକ ଭାରତୀୟ ଭାଷାରେ—ମର୍ମ>ମରମ, ପ୍ରଜା>ପରଜା, ରତ୍ନ>ରତନ, କର୍ମ>କରମ, ଶ୍ରୀ>ଶିରୀ, ସ୍ତ୍ରୀ>ସ୍ତିରୀ, ଭ୍ରୂ>ଭୂରୁ, ଧର୍ମ>ଧରମ, ପ୍ରୀତ>ପୀରତ, ପର୍ବ>ପରବ, ଜନ୍ମ>ଜନମ, ପୂର୍ବ>ପୂରୁବ, ଯୁକ୍ତ>ଯୁକୁତ, କୀର୍ତ୍ତି>କୀରତ, ଭକ୍ତ>ଭକତ, ଇଂ. ଗ୍ଲାସ୍>ଗିଲାସ, ଇଂ. ଫିଲମ>ଫିଲ୍ମ, ଫାର୍ସୀ—ଫିକ>ଫିକର (ଓଡ଼ିଆ), ଶର୍ମ>ସରମ (ଓଡ଼ିଆ), ମର୍ଦ୍ଦ>ମରଦ (ଓଡ଼ିଆ) ।

ମଧ୍ୟସ୍ୱରାଗମକୁ ସ୍ୱରଭକ୍ତି, ସ୍ୱରଵିପ୍ରକର୍ଷ, ଯୁକ୍ତବିକର୍ଷ ମଧ୍ୟ କୁହାଯାଏ । ଅପନିହିତି ମଧ୍ୟ ଏକ ପ୍ରକାର ମଧ୍ୟସ୍ୱରାଗମ ବୋଲି କେତେକ ଭାଷାବିତ୍‌ଙ୍କର ମତ । ଯଥା—ବେଡ଼ି>ବେଇଡ଼ି, ସାଧୁ>ସାଉଧୁ (ବଙ୍ଗଳା) । କିନ୍ତୁ ଅପନିହିତି ବ୍ୟାପାରରେ ପଶ୍ଚଗାମୀ ସମସ୍ୱରାଗମ ଏକ ବଡ଼ ବିଶେଷତ୍ୱ । ଅନେକତ ଏହା ମଧ୍ୟ ସ୍ୱରାଗମ ନ ହୋଇପାରେ ।

(ଗ) ଅନ୍ତସ୍ୱରାଗମ—ପ୍ରବୃତ୍ତି ଭାଷାରେ ଖୁବ୍ କମ୍ ଦେଖାଯାଏ । ଜର୍ମାନ୍ Agon>ଇଂ. Agony, ଜର୍ମାନ୍ Marl—ଇଂ. Marle, ଯାବନିକ—ଜିଦ୍>ଜିଦ, ଦୱା>ଦବାଇ, ଦବାଇ, ସ. ଜଗତ୍>ଜଗତ, ମହତ୍>ମହତ, ଇଂ. ବସ୍ (Bus)>ବସୁ (ଦକ୍ଷିଣୀ ଓ: ଭାଷା), ସତ୍>ସତ, ଇଅରିଙ୍ଗ (Earing)>ଯ୍ୟାରୁଙ୍ଗୁ (ଦକ୍ଷିଣୀ ଓ: ଭାଷା), ଠିକ୍>ଠିକ, ହଠାତ୍>ହଠାତେ, ଇଚ୍ଛତ୍>ଇଚ୍ଛତ, ସପଦ୍>ସପଦ, ଗଜନ୍>ଗଜନ, ଶରତ୍>ଶରତ, ବଣିକ୍>ବଣିକ, ନଭସ୍>ନଭସ, ଦମ୍ଭ୍>ଦମ୍ଭା, ରଭସ୍>ରଭସୁ, ବହିର୍>ବାହାର ।

(ଘ) ସମସ୍ୱରାଗମ (Epenthesis)—ସମାନ ସ୍ୱରଧ୍ୱନିର ଆଗମ ହେଲେ ଏହି ବ୍ୟାପାର ଘଟିଥାଏ । ଯଥା ସ. ତରୁଣ>ଆଭେସ୍ତା ତଉରୁଣ, ଇ. Goldsmith>Goldismith, ସ. ସ୍ତ୍ରୀ>ଇତ୍ଥୀ (ପ୍ରାକୃତ), ଇଂ ସ୍ପ୍ରିଙ୍ଗ (Spring)>ଇସ୍ପ୍ରିଙ୍ଗ (ଓଡ଼ିଆ), ବଙ୍ଗଳା—ଚଉଅ>କଇଉଅ । ଅପନିହିତି ମଧ୍ୟ ଏକ ସମସ୍ୱରାଗମର ଦୃଷ୍ଟାନ୍ତ । ଅପନିହିତି ଓ ସମସ୍ୱରାଗମ ଉଭୟକୁ ଇଂରାଜୀରେ epenthesis କୁହାଯାଏ ।

(ଙ) ସ୍ୱର ସଂଶ୍ଳେଷ—ଅନେକ ସମୟରେ ଶବ୍ଦର ମଧ୍ୟବର୍ତ୍ତୀ ଅଳ୍ପପ୍ରାଣୋଚ୍ଚାରିତ ଲୋପପାଇବା ପରେ ଅବଶିଷ୍ଟ ସ୍ୱର ହୁଏତ ତା'ର ପରବର୍ତ୍ତୀ ବା ପୂର୍ବବର୍ତ୍ତୀ ସ୍ୱର ସଂଶ୍ଳିଷ୍ଟ ହୋଇଯାଏ । ଏହି ପ୍ରକ୍ରିୟାକୁ କୁହାଯାଏ ସ୍ୱର ସଂଶ୍ଳେଷ । ଯଥା—ଅବସର>ଅଅସର>ଅସର, ଅନ୍ଧକାର>ଅନ୍ଧଅର>ଅନ୍ଧାର, ରାଜକୁଳ>ରାଅଉଳ>ରାଉଳ, ଅଶୀତି>ଅଶୀତ>ଅଶୀ ।

(ଖ) ବ୍ୟଞ୍ଜନାଗମ—ଏହା ତ୍ରିବିଧ ଆଦ୍ୟବ୍ୟଞ୍ଜନାଗମ, ମଧ୍ୟବ୍ୟଞ୍ଜନାଗମ ଓ ଅନ୍ତ୍ୟବ୍ୟଞ୍ଜନାଗମ ।

(ଅ) ଆଦ୍ୟବ୍ୟଞ୍ଜନାଗମ—

ଅସ୍ଥି>ହଡ଼୍ଡ଼ି, ହାଡ଼, ଔରଙ୍ଗାବାଦ>ନୌରଙ୍ଗାବାଦ, ଅଧଃ>ହେଠ, ଉଲ୍ଲାସ>ହୁଲାସ, ଅଁଠସ୍ଥ>ହୁଁଠଲ, ଓଷ୍ଠ>ହୋଠ ।

(ଆ) ମଧ୍ୟବ୍ୟଞ୍ଜନାଗମ—

ବାନର>ବନ୍ଦର, ଜେଲ୍—ଜଅଲ>ଜହଲ, Panel>Pannel, ସମନ୍>ସମ୍ମନ୍, ଟାଲଟୁଲ>ଟାଲମଟୁଲ, ପୀଡ଼>ପୀଡ଼୍ଡା ( ଦକ୍ଷିଣୀ ଓଡ଼ିଆ ), ସୁନର>ସୁନ୍ଦର, ବାନର>ବାନ୍ଦର, ବନ୍ଦର, ହମେଶା>ହର୍ମେଶା, ସାହାଯ୍ୟ>ସାହାର୍ଯ୍ୟ, ମଚ୍>ମଞ୍ଚ ( ଦକ୍ଷିଣୀ ଓଡ଼ିଆ ), ଅନ୍ଧକାର>ଅନ୍ଧତ୍କାର, ସମୁଦ୍ର>ସମୁନ୍ଦ୍ର, ଫର୍ସୀ—ଲଶ>ଲହାଶ ( ହିନ୍ଦୀ ), ଶତପଥୀ>ଶତପ୍ତ୍ରୀ, କଦାଚିତ୍>କଦଣ୍ଟି ଚେ, ଅନିବାର୍ଯ୍ୟ>ଅନିର୍ବାର୍ଯ୍ୟ ।

(ଇ) ଅନ୍ତ୍ୟବ୍ୟଞ୍ଜନାଗମ--

ଚୀଲ୍>ଚୀଲ୍ହ୍ (ଭୋଜପୁରୀ), ଦେହ>ଦେହାତ୍, କଲ୍>କଲ୍ହ୍ (ହିନ୍ଦୀ), ରଙ୍ଗ>ରଙ୍ଗତ୍, ଭୌ>ଭୌଁହ୍ (ହିନ୍ଦୀ), ଆରବିକ—ଦଣସ୍ତା>ଦଣସ୍ତାତ୍, (ଭୋଜପୁରୀ), ଉମରା>ଉମରାଓ୍ (ହିନ୍ଦୀ), ତାରା>ତରୁଣ୍ (କାଶ୍ମୀରୀ), ପରୱା>ପରୱାହ୍ (ହିନ୍ଦୀ), ଫରାସୀ Cautio, ଇଂ Caution ।

(ଗ) ଅକ୍ଷରାଗମ—

(ଅ) ଆଦ୍ୟଅକ୍ଷରାଗମ—ଗୁଣ୍ଡା>ଘୁଁ ଗୁଚୀ (ଭୋଜପୁରୀ)

(ଆ) ମଧ୍ୟଅକ୍ଷରାଗମ ଖଳ>ଖରଳ, ଅଳସ—ଅଳକସ

(ଇ) ଅନ୍ତ୍ୟଅକ୍ଷରାଗମ—ଅଁଖ୍>ଅଁଖ୍ଡ଼ୀ, ଆରବିକ–ଫନା>କାଶ୍ମୀରୀ—ଫନାସ୍ତି, ବଧୂ>ବଧୂଟୀ, ବହୁ—ବହୁଣସ୍ତା (ହିନ୍ଦୀ), ବାଁହ>ବହସ୍ତାଁ (ହିନ୍ଦୀ), କାଭ୍>କଭଡ଼ୀ (ହିନ୍ଦୀ) ଅଁକ୍>ଅକ୍ଡ଼ା, ଆରବିକ ବଳ>ଭୋଜପୁରୀ, ବଲାସ୍ତି, ମୁଖ>ମୁଖ୍ଡ଼ା ।

(ଘ) ବିପର୍ଯ୍ୟୟ ( Metathesis )—ଏହାକୁ 'ପରସ୍ପର ବିନିମୟ', 'ବର୍ଣ୍ଣବ୍ୟତ୍ୟୟ', 'ବର୍ଣ୍ଣବିପର୍ଯ୍ୟୟ', 'ବର୍ଣ୍ଣପ୍ଲୁତି' ଆଦି କୁହାଯାଇଥାଏ । ଏଥିରେ କୌଣସି ଶବ୍ଦର ସ୍ୱର ବ୍ୟଞ୍ଜନ ବା ଅକ୍ଷର ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଚାଲିଯାଏ ଏବଂ ଦ୍ୱିତୀୟ ସ୍ଥାନ ସ୍ୱର, ବ୍ୟଞ୍ଜନ ବା ଅକ୍ଷର ପ୍ରଥମର ସ୍ଥାନକୁ

ସୃଷ୍ଟିହୁଏ । ଏହି ବିପର୍ଯ୍ୟୟ ପାର୍ଶ୍ୱବର୍ତ୍ତୀ ହୋଇପାରେ ଅଥବା ଦୂରବର୍ତ୍ତୀ ହୋଇପାରେ । ଏହା ସ୍ୱର ବିପର୍ଯ୍ୟୟ, ବ୍ୟଞ୍ଜନ ବିପର୍ଯ୍ୟୟ, ଅକ୍ଷର ବିପର୍ଯ୍ୟୟ, ଏକାଙ୍ଗୀ ବିପର୍ଯ୍ୟୟ ଓ ଶବ୍ଦଅଧ୍ୟାଂଶ ବିପର୍ଯ୍ୟୟ ଏହିପରି ପଞ୍ଚବିଧ ।

(କ) **ସ୍ୱରବିପର୍ଯ୍ୟୟ**—ଦୁଇଟି ସ୍ୱରଧ୍ୱନିର ପାରସ୍ପରିକ ବିପର୍ଯ୍ୟୟକୁ ସ୍ୱର-ବିପର୍ଯ୍ୟୟ କୁହାଯାଏ । ଏହା ଦ୍ୱିବିଧ—ପାର୍ଶ୍ୱବର୍ତ୍ତୀ ଓ ଦୂରବର୍ତ୍ତୀ ।

(ଅ) ପାର୍ଶ୍ୱବର୍ତ୍ତୀ ସ୍ୱରବିପର୍ଯ୍ୟୟ—ଅଫ୍ରିକାର ଇବୋ ଭାଷାରେ lie>lei (ଗଢ଼ିବା) ।

(ଆ) ଦୂରବର୍ତ୍ତୀ ସ୍ୱରବିପର୍ଯ୍ୟୟ—

ପାଗଳ>ପଗଲା, ଉଦାର>ଅଦୁର, ବନ୍ଦ>ବୁନ୍ଦ, ଜାନଓ୍ୱାର୍>ଜନାଓ୍ୱାର, କଛ>କୁଛ (ହିନ୍ଦୀ), ଅଙ୍ଗୁଲି>ଉଁଗଲୀ, ଅମ୍ଳିକା>ଇମ୍ଲୀ (ହିନ୍ଦୀ), ଲଙ୍କା>ଲଙ୍କ, (ଅମ୍ଲଇକା>ଇମ୍ଲଅ), ଅନୁମାନ>ଉନମାନ, କାଣ>କଣା, କାଲ>କଲା, ନାଲ>ନଲା, ବାଲ>ବଲା, ଉପମା>ଉପାମ, ଅଶ୍ରୁ>ଅରଷ୍ଟି, ଖନଥ>ଖଥେ ।

(ଖ) **ବ୍ୟଞ୍ଜନବିପର୍ଯ୍ୟୟ**—

(ଅ) ପାର୍ଶ୍ୱବର୍ତ୍ତୀ—ଚିହ୍ନ>ଚିନ୍ହ, ଡେସ୍କ>ଡେକ୍ସ, ବ୍ରାହ୍ମଣ>ବ୍ରାମ୍ହଣ, ଶକ୍ତା>ଶସ୍କା, ସିଗ୍ନଲ୍>ସିଙ୍ଗଲ୍, ବାକ୍ସ>ବାସ୍କ ।

(ଆ) ଦୂରବର୍ତ୍ତୀ—ଅରବିକ—କୁଫଲ୍>କୁଲଫ୍>କୋଲପ୍, ଅମରୁଦ>ଅରମୁଦ (ହିନ୍ଦୀ) ନାରକେଳ>ନାଲକେର, ଚମଗା>ତଗମା (ହିନ୍ଦୀ), ସ. ସ୍ନାନ ହନାନ>ନହାନ, ମହାରାଷ୍ଟ୍ର>ମରହଠା, ଡୂବ୍ନା>ବୁଡ୍‌ନା । ହ୍ରଦ>ହରଦ>ରହଦ, ହ୍ରଦ>ହଦ>ଦହ, ମୁକଲକ୍ସ>ମୁଚଲକା (ହିନ୍ଦୀ), ବାରାଣସୀ>ବାଣରାସୀ, ଖୁରଦା>ଖୁଦରା (ହିନ୍ଦୀ), କୋଟର>କୋଡ଼ର>କୋରଡ଼, ଅବରୋଧ>ଅଉରୋଧ>ଓରୋଧ>ଓଧୋର ।

(ଗ) **ଅକ୍ଷରବିପର୍ଯ୍ୟୟ**—

ପାର୍ଶ୍ୱବର୍ତ୍ତୀ - ବଫର (ଅବେସ୍ତା)>ବରଫ (ଫାର୍ସୀ), ଅଜରକ (ଆରବିକ)> ଅରଜକ (ଉର୍ଦ୍ଦୁ), ମତଲବ>ମତବଲ, ସ. ଖନ>ନଖ ।

ଦୂରବର୍ତ୍ତୀ—ଲଖନଉ>ନଖଲଉ (ହିନ୍ଦୀ), ପହୁଁଚନା (ହିନ୍ଦୀ)>ଚହୁଁପନା (ଭୋଜପୁରୀ) ।

(ଘ) ଏକାଙ୍ଗୀବିପର୍ଯ୍ୟୟ—

Vendreys ପ୍ରଥମେ ଏକାଙ୍ଗୀବିପର୍ଯ୍ୟୟ ସମ୍ପର୍କରେ ଆଲୋଚନା କରିଥିଲେ । ତାଙ୍କ ମତରେ ଯଦି କୌଣସି ସ୍ୱର ବା ବ୍ୟଞ୍ଜନ ବା ଅକ୍ଷର ନିଜ ସ୍ଥାନ ଛାଡ଼ି ଅନ୍ୟ ସ୍ଥାନକୁ ଚାଲିଯାଏ, କିନ୍ତୁ ତାହା ସ୍ଥାନକୁ ଅନ୍ୟ କୌଣସି ଧ୍ୱନି ଆସେ ନାହିଁ, ତାହାହେଲେ ଏକାଙ୍ଗୀବିପର୍ଯ୍ୟୟ ଘଟେ । ପର୍ତ୍ତୁଗୀଜ ଭାଷାରେ Festra>Fresta, ଫ୍ରେଞ୍ଚର ଏକ ଉପଭାଷାରେ Debri>Drebi, ଉଲ୍‌କା>ଲୁକା, ବୁନ୍ଦ> ବୁନ୍ଦା ।

(ଙ) ଶବ୍ଦ-ଆଦ୍ୟାଂଶ ବିପର୍ଯ୍ୟୟ (Spoonerism)—

କେବେ କେବେ ଦୁଇଟି ଶବ୍ଦର ଆରମ୍ଭ ଅଂଶ ଏକ ସଙ୍ଗରେ ବିପର୍ଯ୍ୟସ୍ତ ହୋଇଯାଏ । Spooner ସାହେବ ହେଉଛନ୍ତି ଏହାର ଅବିଷ୍କର୍ତ୍ତା । ତେଣୁ ଏହି ବିପର୍ଯ୍ୟୟକୁ spoonerism ମଧ୍ୟ କୁହାଯାଏ ।

ଉଦାହରଣ—Loving Sepherd>Shoving Leopard Two bugs and a rug>Two rags and a bug. ଡାଲ୍‌ଗୁଣ୍ଡ୍‌ଲ> ଗୁଲଡାଣ୍ଡ୍‌ଲ (ହିନ୍ଦୀ), ବତ୍ତୀବିଡାବ>ବଡ଼ୀକିତାବ (ହିନ୍ଦୀ), ଘୋଡ଼ାଗାଡ଼ି> ଗୋଡ଼ାଘାଡ଼ି (ଓଡ଼ିଆ) ।

ଥରେ Spooner ସାହେବ ଏକ ଛାତ୍ର ଉପରେ ରାଗିଯାଇ "You have wasted a whole term" (ତୁମେ ସାରା ବର୍ଷ ନଷ୍ଟକରି ଦେଇଛ) କହିବାକୁ ଯାଇ କହିପକାଇଲେ, "You have tasted a whole worm" (ତୁମେ ଗୋଟିଏ ପୋକକୁ ପୂରା ଚାଖିଦେଇଛ) ।

(୪) ସମୀକରଣ ବା ସମୀଭବନ (Assimilation)—ଶବ୍ଦର ଉଚ୍ଚାରଣ ସମୟରେ ଯଦି ଦୁଇଟି ବିଷମଧ୍ୱନି ପାରସ୍ପରିକ ପ୍ରଭାବରେ ଅଥବା ଗୋଟିଏ ଅନ୍ୟର ପ୍ରଭାବରେ ନ୍ୟୂନାଧିକ ପରିମାଣରେ ସାମ୍ୟ ଲାଭ କରେ, ତେବେ ସେହି ବ୍ୟାପାରକୁ ସମୀକରଣ ବା ସମୀଭବନ କୁହାଯାଏ । ଏହି ପ୍ରକ୍ରିୟା ତିନୋଟି ପ୍ରଣାଳୀରେ ସଂଘଟିତ ହୋଇପାରେ ।

(କ) ପୂର୍ବବର୍ତ୍ତୀଧ୍ୱନି ପରବର୍ତ୍ତୀଧ୍ୱନିକୁ ପ୍ରଭାବିତ କରିପାରେ ।
(ଖ) ପରବର୍ତ୍ତୀଧ୍ୱନି ପୂର୍ବବର୍ତ୍ତୀଧ୍ୱନିକୁ ପ୍ରଭାବିତ କରିପାରେ ।
(ଗ) ପରସ୍ପରର ପ୍ରଭାବରେ ଦୁଇଟି ଧ୍ୱନି ସାମ୍ୟ ଲାଭ କରିପାରନ୍ତି ।

ଏହି ତିନିବିଧ ପ୍ରଣାଳୀରେ ସଂଘଟିତ ସମୀକରଣକୁ ଯଥାକ୍ରମେ ପ୍ରଗତ ବା ପୁରୋଗାମୀ ବା ଅଗ୍ରଗାମୀ (Progressive) ସମୀଭବନ, ପରାଗତ ବା ପଶ୍ଚଗାମୀ

(Regressive) ସମୀଭବନ ଓ ପାରସ୍ପରିକ ବା ଅନ୍ୟୋନ୍ୟ (Mutual) ସମୀଭବନ କୁହାଯାଏ । ଏହି ସମୀଭବନ ବ୍ୟଞ୍ଜନଧ୍ୱନି ଓ ସ୍ୱରଧ୍ୱନି ଉଭୟ କ୍ଷେତ୍ରରେ ଦେଖାଯାଏ ।

### (ଅ) ବ୍ୟଞ୍ଜନ ସମୀଭବନ—

(କ) ଦୂରବର୍ତ୍ତୀ ପୁରୋଗାମୀ ସମୀକରଣ—ଏଥିରେ ଦୁଇଟି ଧ୍ୱନି ପାଖାପାଖି ନ ରହି ଦୂରରେ ଥା'ନ୍ତି ଏବଂ ପୂର୍ବବର୍ତ୍ତୀଧ୍ୱନି ପରବର୍ତ୍ତୀ ଧ୍ୱନିକୁ ପ୍ରଭାବିତ କରେ । ଯଥା—ଧୂପଦୀପ>ଧୂପଧୀପ, ସଂ. ଭ୍ରଷ୍ଟ>ଓଡ଼ିଆ ଗ୍ରାମୀଣ ଭାଷା ଭରଭଟ, କଚପଚ୍>କଚକଚ (ହିନ୍ଦୀ), ଖଟପଟ୍>ଖଟ୍‌ଖଟ୍ (ହିନ୍ଦୀ), ବଳପନା>ବଳବନା (ହିନ୍ଦୀ) ।

(ଖ) ପାର୍ଶ୍ୱବର୍ତ୍ତୀ ପୁରୋଗାମୀ ସମୀକରଣ—ଏଥିରେ ଦୁଇଟି ଧ୍ୱନି ପାଖାପାଖି ଥାଆନ୍ତି ଏବଂ ପୂର୍ବବର୍ତ୍ତୀଧ୍ୱନି ପରବର୍ତ୍ତୀଧ୍ୱନିକୁ ପ୍ରଭାବିତ କରେ । ଯଥା—ଚକ୍ର>ଚକ୍‌କ, ଅଗ୍ର>ଅଗ୍‌ଗ, ପଦ୍ମ>ପଦ୍ଦ, ଭକ୍ତି—ରତ୍ତି, ପତ୍ର>ପତ୍ତ, ବପ୍ତା>ବପ୍‌ପା, ବ୍ୟାଘ୍ର>ବଗ୍‌ଘ, ମିତ୍ର>ମିତ୍ତ, ଲଗ୍ନ>ଲଗ୍‌ଗ, ଅଗ୍ନି>ଅଗ୍‌ଗି, ପୁତ୍ର>ପୁତ୍ତ, ରଶ୍ମି>ରସ୍‌ସି ।

(ଗ) ଦୂରବର୍ତ୍ତୀ ପଶ୍ଚଗାମୀ ସମୀକରଣ—ଏଥିରେ ଦୁଇଟି ଧ୍ୱନି ପାଖାପାଖି ନ ରହି ଦୂରରେ ଥା'ନ୍ତି ଏବଂ ପରବର୍ତ୍ତୀଧ୍ୱନି ପୂର୍ବବର୍ତ୍ତୀ ଧ୍ୱନିକୁ ପ୍ରଭାବିତ କରେ । ଯଥା—ନାଲା>ଲାଲା, ଯଜମାନ>ଜେଜମାନ, ଖରକଟ>କରକଟ, ଦଣ୍ଡ>ଡଂଡ଼ା, ଲକଡ଼ବଗ୍‌ଘା>ବଗଡ଼ବଗ୍‌ଘା ।

(ଘ) ପାର୍ଶ୍ୱବର୍ତ୍ତୀ ପଶ୍ଚଗାମୀ ସମୀକରଣ—ଏଥିରେ ଦୁଇଟି ଧ୍ୱନି ପାଖାପାଖି ଥାଆନ୍ତି ଏବଂ ପରବର୍ତ୍ତୀଧ୍ୱନି ପୂର୍ବବର୍ତ୍ତୀଧ୍ୱନିକୁ ପ୍ରଭାବିତ କରେ । ଯଥା—କର୍ମ>କମ୍ମ, ଧର୍ମ>ଧମ୍ମ, ସର୍ପ>ସପ୍ପ, ଚର୍ମ>ଚମ୍ମ, ଦୁଗ୍ଧ>ଦୁଦ୍ଧ, ବଲ୍‌କଲ>ବକ୍‌କଲ, ଭକ୍ତ>ଭତ୍ତ, ଶ୍ରେଷ୍ଠ>ଶ୍ରେଟ୍‌ଠ, (ଠ୍+ଠ) ଦୁର୍ଗା>ଦୁଗ୍‌ଗା, ସର୍କର>ସକ୍‌କର, ସଜ୍ଜନ>ସଜ୍ଜନ, ପ୍ରପ୍ରୌଢ଼>ପପ୍‌ପୋଢ଼, ବଲ୍‌ଗା>ବଗ୍‌ଗା, ଖର୍ପର>ଖପ୍‌ପର, ମୁଦ୍‌ଗର>ମୁଗ୍‌ଗର, ହସ୍ତ>ହତ୍ତ, ଗଲ୍ପ>ଗପ୍‌ପ, ପୃଷ୍ଠ>ପିଟ୍‌ଠ, କାଷ୍ଠ>କଟ୍‌ଠ, ଫାଲ୍‌ଗୁନ>ଫଗ୍‌ଗୁଣ ।

### (ଆ) ସ୍ୱର ସମୀଭବନ—

(କ) ଦୂରବର୍ତ୍ତୀ ପୁରୋଗାମୀ ସମୀକରଣ—ଏଠାରେ ପୂର୍ବସ୍ୱର ଦୂରବର୍ତ୍ତୀ ସ୍ୱରକୁ ପ୍ରଭାବିତ କରେ । ଯଥା—ଜୁଲୁମ>ଜୁଲୁମ, ସୁରଜ>ସୁରୁଜ, ଉଲଙ୍ଗ>ଉଲଙ୍ଗ, ଉପକାର>ଉପୁକାର, ଖୁରପୀ>ଖୁରୁପି, ସାହସ>ସାହାସ, ଯଂଙ୍ଗ>ଯଂଙ୍ଗ, କମଣ୍ଡଳୁ>କମଣ୍ଡଳ, ପୃଷ୍ଠ>ପିଟ୍‌ଠ>ପିଠ>ପିଠି, ବୃକ୍‌କ>ବୃକ>ବୃକ୍କ, କୋକିଳ>କୋଇଲି, କୁହୁକ>କୁହୁକ, ପୁରାଣକ>ପୁରାଣଅପୁ>ରୁଣା, ଉପରି>ଉପର ।

(ଖ) ପାର୍ଶ୍ୱବର୍ତ୍ତୀ ପୁରୋଗାମୀ ସମୀକରଣ—ସାଧାରଣତଃ ଶବ୍ଦର ସ୍ୱରଧ୍ୱନି ପାଖାପାଖି ନଥାନ୍ତି । ଅଧିକାଂଶ କ୍ଷେତ୍ରରେ ଦୁଇ ସ୍ୱର ମଧ୍ୟରେ ବ୍ୟଞ୍ଜନଧ୍ୱନି ଥାଏ । ପ୍ରାକୃତ ଭାଷାର ଅନ୍ତିମ ଅବସ୍ଥାରେ ଶବ୍ଦରେ ସ୍ୱର ପ୍ରାଧାନ୍ୟ ଥିଲା । ତତ୍କାଳୀନ ପ୍ରାକୃତ ସାହିତ୍ୟରେ ଏହାର ଉଦାହରଣ ଦେଖିବାକୁ ମିଳେ । ପ୍ରାକୃତ ଭାଷାରେ ପାର୍ଶ୍ୱବର୍ତ୍ତୀ ପୁରୋଗାମୀ ସ୍ୱର ସମୀକରଣର ଉଦାହରଣ ଦେଉଛୁ—

ଅଉର>ଅଅର, ଅଇଏ>ଅଇଇ ।

(ଗ) ଦୂରବର୍ତ୍ତୀ ପଶ୍ଚଗାମୀ ସମୀକରଣ ପରବର୍ତ୍ତୀ ସ୍ୱରଧ୍ୱନି ପୂର୍ବବର୍ତ୍ତୀ ଦୂରସ୍ଥ ସ୍ୱରଧ୍ୱନିକୁ ପ୍ରଭାବିତ କଲେ ଏହି ସମୀକରଣ ଘଟେ । ଯଥା—

ଅଙ୍ଗୁଳି>ଉଙ୍ଗୁଳି, ଅପୁପ୍ପା>ଓପୁପ୍ପା, ଇକ୍ଷୁ>ଉକ୍ଖୁ, ଅଦମୀ>ଅଦମୀ, ସହାସ୍ର>ସହାଅ>ଦହା>ସାହା ।

(ଘ) ପାର୍ଶ୍ୱବର୍ତ୍ତୀ ପଶ୍ଚଗାମୀ ସମୀକରଣ—ଏହାର ଉଦାହରଣ ଯଥେଷ୍ଟ ନୁହେଁ । ଭୋଜପୁରୀ ଭାଷାରେ ଦ୍ରୁତ ଉଚ୍ଚାରଣ ଫଳରେ ଏପରି ଦୃଷ୍ଟାନ୍ତ ଖୁବ୍ କମ୍ ପରିମାଣରେ ଦେଖାଯାଏ । ଯଥା—କଡ୍ ଅଇଲ ହ >ଡଡ୍ ଇଇଲ ହ ।

(ଙ) ପାରସ୍ପରିକ ବା ଅନ୍ୟୋନ୍ୟ ସମୀଭବନ—ଏଥିରେ ଦୁଇଟି ବ୍ୟଞ୍ଜନବର୍ଣ୍ଣର ପାରସ୍ପରିକ ସମୀକରଣ ଘଟେ । ଦୁଇଟି ପାର୍ଶ୍ୱବର୍ତ୍ତୀ ବ୍ୟଞ୍ଜନ ପରସ୍ପରକୁ ପ୍ରଭାବିତ କରନ୍ତି ଏବଂ ଉଭୟେ ପରିବର୍ତ୍ତିତ ହୋଇଯାନ୍ତି । ଉଭୟଙ୍କ ପରିବର୍ତ୍ତନରେ ଏକ ନୂତନ ଧ୍ୱନି ବା ଦୁଇଟି ସମଧ୍ୱନିର ଉଦ୍ଭବ ହୁଏ । ଅର୍ଥାତ୍ କେଉଁଠି ନୂତନ ଧ୍ୱନିର ଦ୍ୱିତ୍ୱ ନ ହୋଇ ଏକତ୍ୱ ହୋଇଥାଏ ଓ କେଉଁଠି ଦ୍ୱିତ୍ୱ ହୋଇଥାଏ । ଯଥା—

(କ) ଏକ ନୂତନ ଧ୍ୱନିରେ ସମୀଭବନ—ସତ୍ୟ>ସଂଚ୍, ସାଚ୍, ସାର୍ଦ୍ଧ>ସାଢ଼େ, ବାଦ୍ୟ>ବାଜା, ବିଦ୍ୟୁତ୍>ବିଜୁଳି, ଅନାଦ୍ୟ>ଅନାଜ, ଖାଦ୍ୟ>ଖଜା, କର୍ତ୍ତରିକା>କଟାରି, ଯୁଦ୍ଧ>ଯୁଝ ।

(ଖ) ଦୁଇ ନୂତନ ସମଧ୍ୱନିରେ ସମୀଭବନ—ଉତ୍ଶୃଙ୍ଖଳ>ଉଚ୍ଛୃଙ୍ଖଳ, ଉତ୍ଶ୍ୱାସ>ଉଚ୍ଛ୍ୱାସ, ମିଥ୍ୟା—ମିଛା, ତତ୍ଶତ୍ର - ତଚ୍ଛତ୍ର ।

(ଗ) ଅପୂର୍ଣ୍ଣ ସମୀଭବନ—ଉପରେ ପୂର୍ଣ୍ଣ ସମୀକରଣ ସମ୍ପର୍କରେ ଆଲୋଚନା କରାଯାଇଛି । କେତେକ ସ୍ଥଳରେ ଅପୂର୍ଣ୍ଣ ସମୀଭବନ ମଧ୍ୟ ଘଟିଥାଏ । ଯଥା—ନାଗପୁର—ନାକ୍ପୁର, ଡାକଘର—ଡାଗ୍ଘର ।

(୫) ବିଷମୀଭବନ (Dissimilation)—ବିଷମୀଭବନ ସମୀଭବନର ଠିକ୍ ବିପରୀତ । କୌଣସି ଧ୍ୱନି ଏକ ସମଧ୍ୱନିକୁ ପ୍ରଭାବିତ କରିବା ଫଳରେ ଯଦି ସେହି

ଧ୍ୱନିଟି ପରିବର୍ତ୍ତିତ ହୋଇଯାଏ, ତେବେ ସେହି ବ୍ୟାପାରକୁ ସମୀଭବନ କୁହାଯାଏ । ସମୀଭବନ ଦ୍ୱିବିଧ—ବ୍ୟଞ୍ଜନ ସମୀଭବନ ଓ ସ୍ୱର ସମୀଭବନ ।

**(ଅ) ବ୍ୟଞ୍ଜନ ସମୀଭବନ**—ଏହା ଦ୍ୱିବିଧ—ପୁରୋଗାମୀ ଓ ପଶ୍ଚଗାମୀ ।

(କ) ପୁରୋଗାମୀ ସମୀଭବନ ଯଦି ଦୁଇଟି ସମଧ୍ୱନି ମଧ୍ୟରୁ ପୂର୍ବ ଧ୍ୱନିଟି ଅପରିବର୍ତ୍ତିତ ରହେ ଓ ପରଧ୍ୱନିଟି ପରିବର୍ତ୍ତିତ ହୋଇଯାଏ, ତାହାହେଲେ ପୁରୋଗାମୀ ସମୀଭବନ ଦେଖାଯାଏ । ଯଥା—ଲଗ୍‌ନ>ଲଗ୍‌ଗ, କଙ୍କଣ>କଙ୍ଗନ, କଙ୍ଗଣ, କାକ>କାଗ, ଲାଟିନ୍ turtur>ଇଂ turtle, ଶର୍କର>ଶକ୍କର (ବଙ୍ଗଳା) ଲାଟିନ୍ marmor>ଇଂ marble ।

(ଖ) ପଶ୍ଚଗାମୀ ସମୀଭବନ—ଯଦି ଦୁଇଟି ସମଧ୍ୱନି ମଧ୍ୟରୁ ପରଧ୍ୱନିଟି ଅପରିବର୍ତ୍ତିତ ରହେ ଓ ପୂର୍ବ ଧ୍ୱନିଟି ପରିବର୍ତ୍ତିତ ହୋଇଯାଏ, ତେବେ ପଶ୍ଚଗାମୀ ସମୀଭବନ ଘଟେ । ଯଥା—ପିପିଲିକା>କପିଲିକା, ପିମ୍ପୁଡ଼ି>ଝିମ୍ପୁଡ଼ି, ସାବାସ>ସୁବସ (ହିନ୍ଦୀ), ନବନୀତ>ଲହୁଣୀ, ଲବଣୀ, ଦରିଦ୍ର>ଦଲିଦର (ହିନ୍ଦୀ), ପର୍ତ୍ତୁ—lelloo>ନିଲାମ, ଲାଙ୍ଗଳ>ନାଙ୍ଗଳ, ଲଲାଟ>ନଲାଟ, ଲାଲ୍>ନାଲ୍, ପର୍ତ୍ତୁ—ଅରମାରିଓ>ଅଲମାରି, ପକ୍ବ>ପକ୍କ>ପାକା>ପିକା, ଧଧାସି>ଦଧାସି ।

**(ଆ) ସ୍ୱର ସମୀଭବନ**—ଏହା ଦ୍ୱିବିଧ—ପୁରୋଗାମୀ ଓ ପଶ୍ଚଗାମୀ ।

(କ) ପୁରୋଗାମୀ ସମୀଭବନ—ଚଳକ>ଚଳିକ, ପୁରୁଷ>ପୁରିଷ ।

(ଖ) ପଶ୍ଚଗାମୀ ସମୀଭବନ—ମୁକୁଟ>ମଉଡ଼, ନୂପୁର>ନେଉର ।

(୬) ସନ୍ଧି—ଯ, ବ, ମ, ଯ ଆଦି କେତେକ ବ୍ୟଞ୍ଜନ ଉଚ୍ଚାରଣରେ ସ୍ୱରର ନିକଟବର୍ତ୍ତୀ ହେବାରୁ ସ୍ୱରରେ ପରିବର୍ତ୍ତିତ ହୋଇଯାନ୍ତି ଏବଂ ପୁଣି ନିଜର ପୂର୍ବରେ ଥିବା ବ୍ୟଞ୍ଜନରେ ମିଶିଯାନ୍ତି । କେବେ କେବେ ଏହାଦ୍ୱାରା ଧ୍ୱନିମାନଙ୍କରେ ଏତେ ପରିବର୍ତ୍ତନ ଦେଖାଯାଏ ଯେ ସାଧାରଣତଃ ଏହାକୁ ବୁଝିହୁଏ ନାହିଁ । ବ୍ୟଞ୍ଜନର ରୂପାନ୍ତର ସ୍ୱରଟି ପୂର୍ବବ୍ୟଞ୍ଜନରେ ମିଶିବାବେଳେ ବ୍ୟାକରଣର ସନ୍ଧି ନିୟମ ଅନୁସୃତ ହୁଏ ନାହିଁ । ଧ୍ୱନିବିଜ୍ଞାନରେ ସନ୍ଧି ନିୟମ ଅନୁସୃତ ହୋଇଥାଏ । ଯଥା—ଶତ>ସତ୍>ସଓ>ସଉ>ସୌ, ସପତ୍ନୀ>ସପତ୍ତୀ>ସବତନୀ>ସଉତୁଣୀ>ସୌତୁଣୀ, ସମପସ୍ଥିତ>ହଉଁପଇ>ପୌଁପେ, ନୟନ>ନଇନ>ନୈନ ।

(୭) ଊଷ୍ମୀଭବନ (Spirantization)—ବାୟୁପ୍ରବାହ ମୁହୂର୍ତ୍ତିକ ପାଇଁ ସମ୍ପୂର୍ଣ୍ଣ ଭାବରେ ରୁଦ୍ଧ ହୋଇ ପରକ୍ଷଣରେ ସ୍ଫୋଟନଧ୍ୱନି ସହିତ ନିର୍ଗତ ହେଲେ ସ୍ପର୍ଶବ୍ୟଞ୍ଜନର ସୃଷ୍ଟି ହୁଏ, କିନ୍ତୁ ବାୟୁପ୍ରବାହ ଆଂଶିକ ଭାବରେ ରୁଦ୍ଧ ହୋଇ ସଙ୍କୀର୍ଣ୍ଣ

ପଥଦେଇ ଘର୍ଷଣ ଶବ୍ଦକରି ନିର୍ଗତ ହେଲେ ସଂଘର୍ଷୀ ବା ଉଷ୍ମଧ୍ୱନିର ସୃଷ୍ଟି ହୁଏ। ଯେଉଁଠାରେ ସ୍ପର୍ଶଧ୍ୱନି ଉଷ୍ମଧ୍ୱନି ବା ସଂଘର୍ଷ ଧ୍ୱନିରେ ପରିବର୍ତ୍ତିତ ହୋଇଯାଏ, ସେଠାରେ ଉଷ୍ମୀଭବନ ଘଟେ। କେଣ୍ଟୁମ୍ ବର୍ଗର ଭାଷାମାନଙ୍କରେ ଥିବା ସ୍ପର୍ଶଧ୍ୱନି 'କ୍' ସତେମ୍-ବର୍ଗରେ ଉଷ୍ମଧ୍ୱନି (ଶ୍, ସ୍)ରେ ପରିଣତ ହୋଇଯାଏ। ଏହି ଆଧାର ଉପରେ ଭାରୋପୀୟ ଭାଷାକୁ କେଣ୍ଟୁମ୍ ଓ ସତେମ୍ ଏହିପରି ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇଛି। ଶହେ (hundred) ପାଇଁ ଏ ଦୁଇ ଶ୍ରେଣୀର ଅନ୍ତର୍ଭୁକ୍ତ ଭାଷାରେ କେଉଁ କେଉଁ ଶବ୍ଦ ବ୍ୟବହୃତ ହୋଇଛି ଓ କେଣ୍ଟୁମ୍ ବର୍ଗର 'କ୍' କିପରି ସତେମ୍ ବର୍ଗର ଶ, ସରେ ପରିଣତ ହୋଇଛି ଲକ୍ଷ୍ୟ କରାଯାଉ।

| କେଣ୍ଟୁମ୍ ବର୍ଗ | | ସତେମ୍ ବର୍ଗ | |
|---|---|---|---|
| ଭାଷା | ଶବ୍ଦ | ଭାଷା | ଶବ୍ଦ |
| ଲାଟିନ୍ | କେଣ୍ଟୁମ୍ | ଅବେସ୍ତା | ସତେମ୍ |
| ଗ୍ରୀକ୍ | କତନ୍ | ସଂସ୍କୃତ | ଶତମ୍ |
| ଫରାସୀ | କେଣ୍ଟ୍ | ପାରସିକ | ସଦ |
| ଇଟାଲି | କେଣ୍ଟୋ | ହିନ୍ଦୀ | ସୌ |
| ବ୍ରେଟନ୍ | କେଣ୍ଟ୍ | ଓଡ଼ିଆ | ଶହେ |
| ଗେଲିକ୍ | କାଉଦ୍ | ରୁଷୀୟ | ସ୍ତୋ |
| ଜର୍ମାନ | କାଣ୍ଡ | ବୁଲ୍ଗେରିୟା | ସୁଟୋ |
| ଓଏଲସ୍ | କାଣ୍ଟ୍ | ଲିଥୁଆନିଆ | ସିମ୍ତାସ |
| ଆଇରିସ୍ | କେଡ୍ | ସ୍ଲାଭିକ୍ | ସୁଟୋ |

(୮) ଘୋଷୀଭବନ (Vocalization, Voicing) ଓ ଅଘୋଷୀଭବନ (Devocalization, Devoicing)—

ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀ ନିଷ୍କମ୍ପ ଓ ଶିଥିଳ ହୋଇ ରହେ, ଫଳରେ କଣ୍ଠନାଳୀ ମଧ୍ୟଦେଇ ନିଶ୍ୱାସବାୟୁ ଅବାଧରେ ନିର୍ଗତ ହୁଏ ତାହାକୁ ଅଘୋଷଧ୍ୱନି କୁହାଯାଏ। କାରଣ ଏଥିକାବେଳେ କୌଣସି ଘୋଷର ଉତ୍ପତ୍ତି ହୁଏନାହିଁ। ବର୍ଗର ପ୍ରଥମ ଓ ଦ୍ୱିତୀୟ ଧ୍ୱନି ଶ୍, ଷ୍, ସ୍ ହେଉଛି ଅଘୋଷଧ୍ୱନି।

ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ସ୍ୱରତନ୍ତ୍ରୀରେ କମ୍ପନ ସୃଷ୍ଟି ହୁଏ ଓ କଣ୍ଠନାଳୀ ମଧ୍ୟ ଦେଇ ବାୟୁ ପ୍ରବେଶ କଲାବେଳେ ବାଧାକୁ ଠେଲିବାକୁ ବାଧ୍ୟ ହୁଏ, ତାହାକୁ ଘୋଷଧ୍ୱନି କୁହାଯାଏ। କାରଣ ଏଥିକାବେଳେ ଘୋଷର ଉତ୍ପତ୍ତି ହୁଏ। ବର୍ଗର ତୃତୀୟ, ଚତୁର୍ଥ, ପଞ୍ଚମବର୍ଣ୍ଣ, ଯ୍, ର୍, ଲ୍, ବ୍, ହ୍ ପ୍ରଭୃତି ଘୋଷଧ୍ୱନି।

ଯେଉଁଠି ଅଘୋଷଧ୍ୱନି ଘୋଷଧ୍ୱନିରେ ପରିଣତ ହୁଏ ସେଇଠି ଘୋଷୀଭବନ ଓ ଯେଉଁଠି ଘୋଷଧ୍ୱନି ଅଘୋଷଧ୍ୱନିରେ ପରିଣତ ହୁଏ, ସେଇଠି ଅଘୋଷୀଭବନ ଘଟେ । ଯଥା : **ଘୋଷୀଭବନ—**

ଶାକ>ଶାଗ, ଦୃଢ଼>ଦଢ଼ (ହିନ୍ଦୀ), ପ୍ରକଟ>ପ୍ରଗଟ, କପାଟ>କବାଟ, ଏକାଦଶ>ଏଗାର, ଶକଟ>ଶଗଡ଼, ମକର>ମଗର, ନାଟିକା>ନାଡ଼ି, ବକ>ବଗ, ପାକ>ପାଗ, କୁକ୍କୁଟକ>କୁକୁଡ଼ା, ଘଟିକା>ଘଡ଼ି, ଘୋଟକ>ଘୋଡ଼ା, ଝଟିକା>ଝଡ଼ି, ପାଠୀ>ପୀଢ଼ୀ, ପୀଠ>ପୀଢ଼, କପୋତ>କାବତା, ତପ୍ତ>ତପତ>ତବତ, ପଠତି>ପଢ଼ଇ ।

ଅଘୋଷବ୍ୟଞ୍ଜନ କ୍ଷେତ୍ରରେ ଘୋଷୀଭବନର ବହୁଳ ଦୃଷ୍ଟାନ୍ତ ଲକ୍ଷ୍ୟ କରାଯାଇପାରେ । ଯଥା—ଦିକ୍+ଅନ୍ତ>ଦିଗନ୍ତ, ଷଟ୍+ଆନନ>ଷଡ଼ାନନ, ଅପ୍+ଧି>ଅବ୍ଧି, ଉତ୍+ଭବ>ଉଦ୍ଭବ, ଉତ୍+ଯମ>ଉଦ୍ୟମ, ଯାବତ୍+ଏବ>ଯାବଦେବ ।

**ଅଘୋଷୀଭବନ—**

ଗ୍ରନ୍ଥ>ଗ୍ରନ୍ତ, ଫରାଦ>ଫଯାଦ, କବଚ>କପଚ (ପ୍ରା ଓ), ବ୍ୟଜନ>ବିଞ୍ଚଣା, ଗଗନ>ଗକନ, ବାଦେ>ବାତେ, ବୀଜ>ବୀଚ (ବଙ୍ଗଳା), ଠଗ>ଠକ, ଛଗଳ>ଛକଳା, ଖୁବ୍‌ସୁରତ>ଖୁପ୍‌ସୁରତ, ଅବସର>ଅପ୍‌ସର, ନଗର>ନକର, ମେଘ>ମେଗ, ଦଣ୍ଡ>ତଣ୍ଡ, ମଦ୍+ତ>ମତ୍ତ ।

(୯) **ମହାପ୍ରାଣୀଭବନ (Aspiration) ଓ ଅଳ୍ପପ୍ରାଣୀଭବନ (De-aspiration)** – ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ଅଧିକ ଶ୍ୱାସ ନିର୍ଗତ ହୁଏ ଓ ଅଧିକ ଶକ୍ତି ପ୍ରୟୋଗ କରିବାକୁ ପଡ଼େ ତାହାକୁ ମହାପ୍ରାଣଧ୍ୱନି କହନ୍ତି । ବର୍ଗର ଦ୍ୱିତୀୟ ଓ ଚତୁର୍ଥବର୍ଣ୍ଣ ମହାପ୍ରାଣ । ଯେଉଁ ଧ୍ୱନି ଉଚ୍ଚାରଣ କଲାବେଳେ ଅପେକ୍ଷାକୃତ ଅଳ୍ପ ଶ୍ୱାସ ନିର୍ଗତ ହୁଏ ଓ ଅଳ୍ପଶକ୍ତି ପ୍ରୟୋଗ କରିବାକୁ ପଡ଼େ, ତାହାକୁ ଅଳ୍ପପ୍ରାଣଧ୍ୱନି କହନ୍ତି । ବର୍ଗର ପ୍ରଥମ ଓ ତୃତୀୟ ବର୍ଣ୍ଣ ହେଉଛି ଅଳ୍ପପ୍ରାଣ ।

ଅଳ୍ପପ୍ରାଣଧ୍ୱନି ମହାପ୍ରାଣଧ୍ୱନିରେ ପରିଣତ ହେଲେ ତାହାକୁ ମହାପ୍ରାଣୀଭବନ ଓ ମହାପ୍ରାଣଧ୍ୱନି ଅଳ୍ପପ୍ରାଣଧ୍ୱନିରେ ପରିଣତ ହେଲେ ତାହାକୁ ଅଳ୍ପପ୍ରାଣୀଭବନ କୁହାଯାଏ । ଯଥା :

**ମହାପ୍ରାଣୀଭବନ** -

କର୍ଣ୍ଣାରୁ>କକ୍‌ରୁ>କକାରୁ>ଖଣାରୁ

କାଣ>ଖାଣ, ବେଶ>ଭେଶ, ତପ>ତଫ (କାଶ୍ମୀରି)

ଅର୍କ>ଅର୍ଘ, ପରଶୁ>ଫାର୍ଶା, ତନ୍ତୁ>ଚନ୍ତୁ ( କାଶ୍ମୀରୀ )
ପାଣ>ଫାଣ, ଡାପୀ>ଡାଫୀ, ରୂକ୍କ>ରୂକ୍ଖ (”)
କସ୍ମିସ୍>ଖିସ୍ମିସ, ବାଟ୍ଟ>ବାଠ, ତାକ>ତାଖା (ହିନ୍ଦୀ)
ପୁକୁର>ପୁଖୁର (ବଙ୍ଗଳା), କଁଟାଲ>ଖାଁଠାଲ (ବଙ୍ଗଳା)
ସଦ୍ୟକାଳ>ସକାଳ>ସଖାଳ, ଭରତ>ଭରଥ, ସ୍ୱରତ>ସ୍ୱରଥ ।

ଅଳ୍ପପ୍ରାଣୀଭବନ—

ସିନ୍ଧୁ>ହିନ୍ଦୁ, ବଲିଷ୍ଠ>ବଲିଷ୍ଟ (ଉଚ୍ଚାରଣରେ); ବୁଭୁକ୍ଷା>ଭୁକ୍ଖ>ଭୁଖ>ଭୋକ, ଭେଧାମି>ବେଧାମି, ଘର୍ମ>ଗରମ, ଭସ୍ମର>ବସ୍ମର, ଧଧାମି>ଦଧାମି, ହାଠ>ହାତ, ବ୍ୟାଧି>ବୋଦ (କାଶ୍ମୀରୀ), ସ୍ୱାଦିଷ୍ଠ>ସ୍ୱାଦିଷ୍ଟ, ଶ୍ରେଷ୍ଠ>ଶ୍ରେଷ୍ଟ (ଉଚ୍ଚାରଣରେ), ପାପିଷ୍ଠ>ପାପିଷ୍ଟ (ଉଚ୍ଚାରଣରେ), ଶୃଙ୍ଖଳିକା>ଶିକୁଳି, ମହାର୍ଘ>ମହରଗ, ଅସ୍ଥାନ>ଅସ୍ତାନ (ଉଚ୍ଚାରଣରେ), ସାଧାରଣ>ସାଦା, ସିଧା>ସିଦା, ସୁଖ>ସୁକ୍ (ବଙ୍ଗଳା), ଦୁଧ୍>ଦୁଦ୍ (ବଙ୍ଗଳା) ।

**(୧୦) ନାସିକ୍ୟୀଭବନ ଓ ଅନୁନାସିକୀଭବନ** (Nasalisation)—ନାସିକ୍ୟବ୍ୟଞ୍ଜନଧ୍ୱନି ଲୁପ୍ତ ହେବା ଫଳରେ ଯଦି ଅବଶିଷ୍ଟ ସ୍ୱରଧ୍ୱନି ଅନୁନାସିକ ଭାବରେ ଉଚ୍ଚାରିତ ହୁଏ; ତେବେ ଏହି ପ୍ରକ୍ରିୟାକୁ କୁହାଯାଏ ଅନୁନାସିକୀଭବନ । ଅନେକ ସମୟରେ ଲୁପ୍ତବ୍ୟଞ୍ଜନର ପୂର୍ବବର୍ତ୍ତୀ ସ୍ୱର ଅନୁନାସିକ ଭାବରେ ଉଚ୍ଚାରିତ ହେବାପରି ଜଣାଯାଏ । ଉଚ୍ଚାରଣ ଅନୁନାସିକ ହେଉଥିବାରୁ ଏହି ପ୍ରକ୍ରିୟାକୁ କେବଳ ଅନୁନାସିକୀଭବନ କୁହାଯିବାର କଥା ; କିନ୍ତୁ କେତେକ ବିଦ୍ୱାନ୍ ଏହାକୁ **ନାସିକ୍ୟୀଭବନ** ମଧ୍ୟ କହିଥାନ୍ତି । ପ୍ରକୃତରେ ନାସିକ୍ୟବ୍ୟଞ୍ଜନ ଧ୍ୱନିର ପ୍ରଭାବରେ ଯଦି ବର୍ଣ୍ଣରେ ନାସିକ୍ୟତା ଆସେ, ତେବେ ତାକୁ ନାସିକ୍ୟୀଭବନ କୁହାଯିବ । ଅନେକ ସମୟରେ ନାସିକ୍ୟବ୍ୟଞ୍ଜନର ସଂଘର୍ଷ ଫଳରେ ସ୍ୱରରେ ଅନୁନାସିକତା ଆସିଥାଏ ।

ଅନୁନାସିକୀଭବନ –

ବାମ>ବାଁ, ଯୋଗେନ>ଯୋଗେଁ, ଭୂମି>ଭୂଇଁ, ଗ୍ରାମ>ଗାଅଁ, ଗାଁ, କୋମଳ>କଅଁଳ, ସ୍ଥାନେ>ଠାଏଁ, ଠେଁ, କୁମାର>କୁଅଁର, ନାମ>ନାଅଁ, ନାଁ, ସ୍ୱାମୀ>ସାଇଁ, ଚନ୍ଦ୍ର>ଚାନ୍ଦ, ଭ୍ରମର>ଭଅଁର, ଧୂମ>ଧୂଅଁ, ମାମୀ>ମାଇଁ, ସ୍ଥାନ>ଠାଁ, ସନ୍ଧ୍ୟା>ସଁଜ, ମହିଷ>ମଇଁଷି (ନାସିକ୍ୟବ୍ୟଞ୍ଜନର ସଂଘର୍ଷ ହେତୁ), ନାସ୍ତି>ନତ୍ଥି>ନାହିଁ (ନାସିକ୍ୟବ୍ୟଞ୍ଜନର ସଂଘର୍ଷ ହେତୁ) ।

**ନାସିକ୍ୟୀଭବନ** –ମର୍କଟ>ମାଙ୍କଡ଼, ମର୍ତ୍ତ୍ୟ>ମଞ୍ଚ, ଜଳାଞ୍ଚଳ>ଜଳାଞ୍ଜଳି, ମଜ୍ଜା>ମଞ୍ଜା, ମାର୍ଜାର>ମଞ୍ଜାର, ଡାଡ୍ୟାସ୍ତନ>ଢାନ୍ଦାନ, ବର୍ଦ୍ଧନ>ବଢ଼ାଣି ।

(୨୧) ସ୍ୱତଃ ଅନୁନାସିକୀଭବନ (Spontaneous Nasalisation)—ଅନେକ ସମୟରେ ନାସିକ୍ୟବ୍ୟଞ୍ଜନର ସଂସର୍ଗ ନଥାଇ ମଧ୍ୟ ସ୍ୱରଧ୍ୱନି ଆପେ ଆପେ ଅନୁନାସିକ ହୋଇଯାଏ । ଏହାକୁ ସ୍ୱତଃ ଅନୁନାସିକୀଭବନ କୁହାଯାଏ । ଯଥା—

ହସିବା>ହଁସିବା, କୂଅ>କୁହଁ, କୁଅଁ; ଅଦୌ>ଅଦୌଁ, ଚେତାଇ>ଚେଆଁଇ, ସର୍ପ>ସାଁପ, ଯୋଗ୍ୟ>ଯୋଗୁଁ, ଘାସ>ଘାଁସ, ପୁସ୍ଥ>ପୁଁଥି (ବଙ୍ଗଳା), ଅକ୍ଷି>ଆଁଖି, ଅଶ୍ରୁ>ଆଁଶୁ (ବଙ୍ଗଳା), ଆଁସୁ (ହିନ୍ଦୀ), କପିତ୍ଥ>କଇଁଥ, ଦେବ>ଦଅଁ, ବର୍ତ୍ତିକା>ବଇଁଚ, ଇକ୍ଷୁ>ଅଖୁଁ ।

ନାସିକ୍ୟବ୍ୟଞ୍ଜନର ସଂସର୍ଗ ନଥାଇ ମଧ୍ୟ ବର୍ଣ୍ଣରେ ନାସିକ୍ୟତା ଆସିଗଲେ ତାହାକୁ ସ୍ୱତଃ ନାସିକ୍ୟଭବନ କୁହାଯିବ । ଯଥା —

ବକ>ବଙ୍କା, କର୍କଟ>କଙ୍କଡ଼ା, ଭେକ>ବେଙ୍ଗ, ବାଦକ>ବାଦଙ୍ଗ, ଉଚ୍ଚ>ଉଞ୍ଚ, ଉଞ୍ଚା, ସୂଚୀ>ଛୁଞ୍ଚି, ପିପିଲିକା>ପିମ୍ପୁଡ଼ି ।

ନିରନୁନାସିକୀଭବନ—ନାସିକ୍ୟବ୍ୟଞ୍ଜନ ନିରନୁନାସିକ ହେଲେ ନିରନୁନାସିକୀଭବନ ଘଟେ । ଯଥା—ଅଙ୍ଗନକ>ଅଗଣା, ବାତିଙ୍ଗଣ>ବାଇଗଣ, ବନ୍ଧୁଲ୍ଲି>ବଧୁଲି, ମନ୍ଥର>ମଠ, ବଂଶ>ବଶ୍, ବଶା, ଉଦଂଶ>ଓଡ଼ଶ ।

(୨୨) ମୂର୍ଦ୍ଧନ୍ୟୀଭବନ (Cerebralization, Retroflection)—'ର୍', 'ଋ' ( ର ଫଳା ଓ ରେଫ୍ ମଧ୍ୟ ), 'ଯ୍' 'ଷ୍' 'ଣ୍' ପ୍ରଭୃତି ଧ୍ୱନିର ସମ୍ପର୍କରେ ଆସିଲେ ଅନେକ ସମୟରେ ଦନ୍ତ୍ୟବ୍ୟଞ୍ଜନଧ୍ୱନି ମୂର୍ଦ୍ଧନ୍ୟଧ୍ୱନିରେ ପରିଣତ ହୋଇଯାଏ । ଏହି ପ୍ରକ୍ରିୟାକୁ ମୂର୍ଦ୍ଧନ୍ୟୀଭବନ କୁହାଯାଏ, ଯଥା—

ମୃତ୍ତିକା>ମାଟି, ମୃତ>ମଡ଼ା, ମଢ଼ା, ମାଢ଼, ମୃତବସ୍ତ୍ରୀ—ମଡ଼ଛି, ସକୃତ>ସକଟ, ବୃଦ୍ଧ>ବୁଢ଼ା, ବୃଦ୍ଧି>ବଢ଼ି, ବିକୃତ>ବିକଟ, ହଣତକ>ହଣଡ଼ା, ବର୍ତ୍ତୁଳିକା>ବାଟୁଳି, ବର୍ଦ୍ଧକୀ>ବଢ଼େଇ, ବର୍ତ୍ମ>ବାଟ, ଗର୍ତ୍ତ>ଗାଡ଼, କର୍ତ୍ତରିକା>କଟାରି, କଟୁରି, ପ୍ରଥମା>ପୋଢ଼ୁଅଁ, ପ୍ରତିହାସ୍ୟ>ପଢ଼ିହାସ୍ୟ, ଗ୍ରନ୍ଥି>ଗଣ୍ଠି, ଅସ୍ଥି>ହାଡ଼, ସ୍ଥାନ>ଠାଁ, ଶିଥିଳକ>ଢିଲା, ଦଂଶକ>ଡାଉଁଶ, ଦକ୍ଷିଣ>ଡାହାଣ, ମନୁଷ୍ୟ>ମଣିଷ ।

(୨୩) ସ୍ୱତଃ ମୂର୍ଦ୍ଧନ୍ୟୀଭବନ (Spontaneous Cerebralization)—'ର୍', 'ଋ' (ର ଫଳା ଓ ରେଫ୍ ମଧ୍ୟ) ଓ 'ଷ' ପ୍ରଭୃତିର ସଂସର୍ଗ ନଥାଇ ମଧ୍ୟ ଯଦି ଦନ୍ତ୍ୟବ୍ୟଞ୍ଜନ ମୂର୍ଦ୍ଧନ୍ୟବ୍ୟଞ୍ଜନରେ ପରିଣତ ହୋଇଯାଏ, ତେବେ ଏହି ପ୍ରକ୍ରିୟାକୁ ସ୍ୱତଃ ମୂର୍ଦ୍ଧନ୍ୟୀଭବନ କୁହାଯାଏ । ଉଦାହରଣ—

ପତତି>ପଡ଼ଇ, (ବୈଦିକ), ଅଟତି>ଅଟଇ (ସଂସ୍କୃତ), ଉତ୍-ଯାନ> ଉଡ୍‌ଡୀନ, ବୈଦିକ-ଚଟତି>ପ୍ରାକୃତ-ଚଡ଼ଇ, ପାନୀୟ>ପାଣି, ବନ>ବଣ, ଜନ>ଜଣ, ଊନ>ଊଣା, ଫେନ>ଫେଣ, ପତାକା>ପଡ଼ାଈ (ପ୍ରାକୃତ), ପତଙ୍ଗ>ଫଡ଼ିଙ୍ଗ (ବଙ୍ଗଳା), ତଗର>ଟଗର, ଲତା>ଲଟା, ଦର>ଡର, ଦାଳିତ>ଡାଳିଅ>ଡାଲି, ଦୋଳକ>ଡୋଳା, ଦାଡ଼ିମ>ଡାଳିମ୍ବ, ଭଗିନୀ> ଭଉଣୀ ।

(୧୪) ତାଲବ୍ୟୀଭବନ (Palatalisation)—'ଯ୍', 'ଚ୍' ବର୍ଗର ଧ୍ୱନି (ତାଲବ୍ୟଧ୍ୱନି)ର ସଂସ୍ପର୍ଶ ଯୋଗୁ ଯେଉଁ ଦନ୍ତ୍ୟବ୍ୟଞ୍ଜନ ତାଲବ୍ୟବ୍ୟଞ୍ଜନରେ ପରିଣତ ହୁଏ, ତେବେ ଏହି ପ୍ରକ୍ରିୟାକୁ ତାଲବ୍ୟୀଭବନ କୁହାଯାଏ । ଉଦାହରଣ—

ସତ୍ୟ>ସଚ୍, ସାଚ୍, ତର୍ଜନ>ତଜବା, ତାଜା>ସ୍ୱଜା, ଇନ୍‌ଷ୍ଟିଟ୍ୟୁସନ୍ (Institution)>ଇନଷ୍ଟିଚ୍ୟୁସନ୍ । ବାଦ୍ୟ>ବାଜା, ତାଞ୍ଛିବା>ସ୍ୱଞ୍ଛିବା, ମଧ୍ୟମ>ମଝିଅ, ତେଜବା>ଚେଜବା, ତେଜଃ>ତେଜ, ନୃତ୍ୟ>ନାଚ, ଦଦ୍ୟ> ଦଜ ।

(୧୫) ସ୍ୱତଃ ତାଲବ୍ୟୀଭବନ (Spotnaneous Palatalization)—'ଯ୍' 'ଚ୍' ବର୍ଗର ଧ୍ୱନି (ତାଲବ୍ୟଧ୍ୱନି)ର ସଂସର୍ଗ ନଥାଇ ମଧ୍ୟ ଯେଉଁ ଦନ୍ତ୍ୟବ୍ୟଞ୍ଜନ ତାଲବ୍ୟବ୍ୟଞ୍ଜନରେ ପରିଣତ ହୁଏ; ତେବେ ଏହି ପ୍ରକ୍ରିୟାକୁ ସ୍ୱତଃ ତାଲବ୍ୟୀଭବନ କୁହାଯାଏ । ଉଦାହରଣ—ଧୂନକ>ଝୁଣା, ବାଦନ>ବାଜଣା, ଅବୋଧ>ଅବୁଝା, ଶୋଧ>ଶୁଝା, ଏଡୁକେସନ୍ (Education)>ଏଜୁକେସନ୍, ସୁଧା>ସିଝୁ । 'ସ୍' ଏକ ଦନ୍ତ୍ୟଧ୍ୱନି । ଶ୍ ଷ୍ ମଧ୍ୟ ଓଡ଼ିଆରେ ଦନ୍ତ୍ୟ ଉଚ୍ଚାରିତ ହୋଇଥାଏ । ଏହି ଧ୍ୱନିଗୁଡ଼ିକ ଓଡ଼ିଆରେ ତାଲବ୍ୟ ବ୍ୟଞ୍ଜନରେ ପରିଣତ ହୋଇଅଛି; ଯଥା - ସଜ>ଛଜ, ହଷ୍ପ>ଛଷା, ଦଷ୍ଟ>ଗ୍ରଷ୍ଟ, ସୂଚୀ>ଛୁଞ୍ଚି, ଶତ>ଛତ, ଶାବକ>ଛୁଆ, ଶକ୍ରୁ>ଛରୁ, ଷଟ୍>ଛ ।

(୧୬) ମାତ୍ରାଭେଦ—ଏଥିରେ ସ୍ୱର କେତେବେଳେ ହ୍ରସ୍ୱରୁ ଦୀର୍ଘ ଓ କେତେବେଳେ ଦୀର୍ଘରୁ ହ୍ରସ୍ୱ ହୋଇଯାଏ । ଏହା ସ୍ୱତଃ ଘଟି ନଥାଏ । ଏହା ଉପରେ ସ୍ୱରାଘାତର କିଛି ପ୍ରଭାବ ପଡ଼ିଥାଏ । ସମୀଭବନ ବ୍ୟାପାରରେ ଷସ୍ୱସ୍ୱରକସ୍ୱର ଯୋଗରେ ହ୍ରସ୍ୱ (ଅ) ଦୀର୍ଘ (ଆ) ହୋଇଥାଏ । ଉଦାହରଣ ଦୀର୍ଘରୁ ହ୍ରସ୍ୱ— ଆଷାଢ଼>ଅଷାଢ଼, ଆଳାପ>ଅଳାପ, ଆର୍ଦ୍ରକ>ଅଦା, ଆଶ୍ଚର୍ଯ୍ୟ>ଅଚ୍ଛସ୍ୱ, ବାନର>ବନ୍ଦର, ଶୂନ୍ୟ>ସୁନ, ଅଗଷ୍ଟ (August)>ଅଗଷ୍ଟ, ଆଶ୍ରମ>ଅଶ୍ରମ ।

ହ୍ରସ୍ୱରୁ ଦୀର୍ଘ—ଅଙ୍କୁଶ>ଅଙ୍କୁଶ, ଅଂଶୁ>ଅଂଶୁ, ଉଦ୍ୟ>ଅଜ, ପ୍ରିୟ>ପୀଉ (ହିନ୍ଦୀ), ଉପତ>ଅଖତ (ହିନ୍ଦୀ), ଚନ୍ଦ୍ର>ଚାନ୍ଦନା (ହିନ୍ଦୀ), ଲଜ୍ଜା>ଲାଜ, କନ୍ଧ—କାନ୍ଧ (ହିନ୍ଦୀ), ଭକ୍ତ>ଭାତ ।

(୧୭) 'ସ'କାରୀଭବନ (Assibilation)—ସ୍ପର୍ଶଧ୍ୱନି ଯଦି ଚ, ଶ ବା ଜ (z) ପରି ଉଚ୍ଚାରିତ ହୁଏ, ତାହାହେଲେ ଏହି ପ୍ରକ୍ରିୟାକୁ କୁହାଯାଏ ଚ-କାରୀଭବନ । ଉଦାହରଣ—ଗାଛତଳ>ଗାଚ୍‌ତଲ (ବଙ୍ଗଳା), ଅଛେ>ଅଚେ (ବଙ୍ଗଳା), ମେଜଦା>ମେଜ୍‌ଦା (Mezda) ।

(୧୮) 'ର'କାରୀଭବନ (Rhotacism)—'ସ' କାର ଯଦି ଘୋଷବତ୍ 'ଜ' (z)ରେ ପରିଣତ ହୋଇ ଶେଷରେ ର-କାରରେ ପରିଣତ ହୁଏ ତେବେ ତାହାକୁ ର-କାରୀଭବନ କୁହାଯାଏ । ଉଦାହରଣ—ପ୍ରାଚୀନ ଲାଟିନ୍ Ausosa>Auzoza>Aurora (ଇଂ), ପ୍ରାଚୀନ ଇଂରାଜୀ Hasa>Haza>Hare (ଇଂ), ଇଉରୋପୀୟ dusmenes>ଇଣ୍ଡୋଇରାନୀୟାନ୍ duzmenes, ସଂସ୍କୃତ ଦୁର୍ମନସ, ଇଉରୋପୀୟ ନିସଦୋ (nisdo)>ନିଜ୍‌ଦ (nizda)>ନୀଡ଼>ନୀର (ବଙ୍ଗଳା) ।

'ଦ' ଯଦି ମୂର୍ଦ୍ଧନ୍ୟଭୂତ ହୋଇ ( ଡ ହୋଇ ) ଶେଷରେ 'ର'ରେ ପରିଣତ ହୁଏ, ତେବେ ସେହି ପ୍ରକ୍ରିୟାକୁ ମଧ୍ୟ ର-କାରୀଭବନ କୁହାଯାଏ । ଉଦାହରଣ—ପଞ୍ଚଦଶ>ପନ୍ନଡ଼ହ>ପନ୍ଦର, ଏକାଦଶ>ଏଗାଡ଼ହ>ଏଗାର ।

(୧୯) ସ୍ୱରସଙ୍ଗତି (Vowelharmony)—ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ସ୍ୱରଧ୍ୱନିର ପ୍ରଭାବରେ ଦେଖିତ ଅନ୍ୟ ଏକ ସ୍ୱରଧ୍ୱନିର ପ୍ରକୃତି ଯଦି ପରିବର୍ତ୍ତିତ ହୋଇଯାଏ ଓ ଫଳରେ ସ୍ୱରଧ୍ୱନି ଦୁଇଟି ମଧ୍ୟରେ ସଙ୍ଗତି ବା ସାମଞ୍ଜସ୍ୟ ସମ୍ପାଦିତ ହୁଏ, ତେବେ ଏହି ପ୍ରକ୍ରିୟାକୁ କୁହାଯାଏ ସ୍ୱରସଙ୍ଗତି । ଉଚ୍ଚାବସ୍ଥିତ ସ୍ୱରଧ୍ୱନିର ପ୍ରଭାବରେ ନିମ୍ନାବସ୍ଥିତ ସ୍ୱରଧ୍ୱନି ଉପରେ ସୋପାନକୁ ଉନ୍ନୀତ ହୋଇଥାଏ, ଅଥବା ନିମ୍ନାବସ୍ଥିତ ସ୍ୱରଧ୍ୱନି ପ୍ରଭାବରେ ଉଚ୍ଚାବସ୍ଥିତ ସ୍ୱରଧ୍ୱନି ନିମ୍ନ ସୋପାନକୁ ଖସିଆସେ ।

ଉଚ୍ଚାବସ୍ଥିତ ସ୍ୱରଧ୍ୱନି ହେଉଛି— ଇ, ଉ, ଓ
ନିମ୍ନାବସ୍ଥିତ ସ୍ୱରଧ୍ୱନି ହେଉଛି—ଅ, ଆ, ଏ

ନିମ୍ନାବସ୍ଥାନରୁ ଉଚ୍ଚାବସ୍ଥାନକୁ ଗତି ଓ ସ୍ୱରସଂଗତି · ଲେଖ>ଲିଖ, ଦେଶୀ>ଦିଶୀ, ମୂଳ>ମୂଲେ (ବଙ୍ଗଳା), ଅଠ>ଓଠ (ବଙ୍ଗଳା), ଲକ୍ଷ୍ୟ>ଲେକ୍‌ଖ (ବଙ୍ଗଳା), ଏକ୍ଷଣି>ଇକ୍ଷୁଣି, ଗୁଦକନା>ଗୁଡ଼ିଣି, ବାଉଗଣୀ>ବାଉଗୁଣୀ, ଶେଫାଳିକା>ଶିଉଳି ।

ଉଚ୍ଚାବସ୍ଥାନରୁ ନିମ୍ନାବସ୍ଥାନକୁ ଗତ ଓ ସ୍ୱରସଂଗତ—ବିଡ଼ାଲ>ବେଡ଼ାଲ, ଲିଖନ>ଲେଖନ, ଗିଲେ>ଗେଲେ (ବଙ୍ଗଳା), ଶିଅଲ୍>ଶେୟାଲ୍ (ବଙ୍ଗଳା), ପାଠଟି (ପାଠବନ୍ତିକା)>ପେଥ୍‌ଥୀ (ବଙ୍ଗଳା), ବିଲୁ>ବେଲ ।

(୨୦) ଶ୍ୱାସାଘାତ ବା ବଳାଘାତ (Stress accent)—ଅନେକ ଭାଷାରେ ପଦ ମଧ୍ୟବର୍ତ୍ତୀ କୌଣସି ଏକ ନିର୍ଦ୍ଦିଷ୍ଟ ଅକ୍ଷର ଉଚ୍ଚାରଣବେଳେ ନିଶ୍ୱାସବାୟୁ ଅଧିକତର ବେଗରେ ବହିର୍ଗତ ହେଲେ ସେହି ଅକ୍ଷରଟି ପଦର ଅପର କୌଣସି ଅକ୍ଷର ଉପରେ ପ୍ରାଧାନ୍ୟ ବିସ୍ତାର କରେ । ଏହିପରି ଉଚ୍ଚାରଣଗତ ପ୍ରାଧାନ୍ୟକୁ ଶ୍ୱାସାଘାତ ବା ବଳାଘାତ କୁହାଯାଏ । ଉଦାହରଣ—ଅଭ୍ୟନ୍ତର>ଭିତର, ଉପକୃ>ଲଉ, ଅଧ୍ୟାପକ>ଝା ।

ଇଂରାଜୀ, ଜର୍ମାନ୍, ରୁଷ ପ୍ରଭୃତି ଭାଷାରେ ଶ୍ୱାସାଘାତ ଏକ ପ୍ରଧାନ ବିଶେଷତ୍ୱ ।

(୨୧) ସ୍ୱରାଘାତ (Pitch accent) – ଶ୍ୱାସାଘାତ ବା ବଳାଘାତ ଛଡ଼ା ଅନ୍ୟ ଗୋଟିଏ ଉପାୟରେ ପଦର ଗୋଟିଏ ବିଶେଷ ଅକ୍ଷର ଉଚ୍ଚାରଣରେ ପ୍ରାଧାନ୍ୟ ଲାଭ କରେ । ସେହି ଅକ୍ଷରରେ ସ୍ୱର ଥାଏ ଓ ସେହି ସ୍ୱରବିଶେଷ ଉଚ୍ଚାରିତ ହୁଏ । ଚୀନ୍, ସୁଇଡେନ୍, ନରୱେ ପ୍ରଭୃତି ଦେଶର କେତେକ ଭାଷାରେ ଓ ଭାରତର ପଞ୍ଜାବୀ ଭାଷାରେ ଏହା ଏକ ବିଶେଷତ୍ୱ । ପଞ୍ଜାବୀ ଭାଷାର ଉଦାହରଣ ହେଉଛି—ଭ୍ରାତ>ଭ୍ରା’ ତ, ମା>ମା’, ଘା>ଘା’, ଯାଉନ>ଯା’ ଉନ, ସେମିତ>ସେ’ ମିତ ।

(୨୨) ଶ୍ରୁତିଧ୍ୱନି (Glide)—ଭାଷା କହିଲବେଳେ ପଦ ମଧ୍ୟସ୍ଥିତ ଧ୍ୱନିଗୁଡ଼ିକ ସବୁ ସମୟରେ ଛଡ଼ାଛଡ଼ି ଭାବରେ ଉଚ୍ଚାରିତ ହୁଏନାହିଁ । କିମ୍ବା ଏକ ଧ୍ୱନିର ଉଚ୍ଚାରଣ କରିବା ପରେ ପରେ ପରବର୍ତ୍ତୀ ଧ୍ୱନିର ଉଚ୍ଚାରଣ ମଧ୍ୟ କରି ଦେଇଥାଏ । ଏହି ଦ୍ରୁତ ଉଚ୍ଚାରଣ ଫଳରେ ଅନେକ ସମୟରେ ଗୋଟିଏ ଧ୍ୱନିର ଉଚ୍ଚାରଣ ସ୍ଥାନରୁ ଅନ୍ୟ ଧ୍ୱନିର ଉଚ୍ଚାରଣ ସ୍ଥାନକୁ ଯିବାବେଳେ କିମ୍ବା ଅସତର୍କ ଭାବରେ ମଧ୍ୟବର୍ତ୍ତୀ କୌଣସି ଏକ ଧ୍ୱନି ଉଚ୍ଚାରଣ କରିପକାଏ । ଏହି ମଧ୍ୟବର୍ତ୍ତୀ ଆଗତ ଧ୍ୱନିକୁ ଶ୍ରୁତିଧ୍ୱନି କୁହାଯାଏ । ଅନେକ ଭାଷାବିତ୍ ଶ୍ରୁତିଧ୍ୱନିକୁ ମଧ୍ୟବ୍ୟଞ୍ଜନାଗମ ବୋଲି ମତ ଦେଇଥାନ୍ତି; କିନ୍ତୁ ଏହା ଭ୍ରମାତ୍ମକ । ଶ୍ରୁତିଧ୍ୱନି ବ୍ୟଞ୍ଜନ, ସ୍ୱର କିମ୍ବା ଅକ୍ଷର ହୋଇପାରେ ।

(କ) ବ୍ୟଞ୍ଜନ ଶ୍ରୁତିଧ୍ୱନି (Consonantal glide) – ‘ନ’ ଓ ‘ର’ ମଧ୍ୟରେ ଅନେକ ସମୟରେ ‘ଦ’ ବ୍ୟଞ୍ଜନଧ୍ୱନିଟି ଶ୍ରୁତିଧ୍ୱନି ଭାବରେ ଉଦ୍‌ଭୂତ ହୋଇଥାଏ । ଯଥା—ସୁନର>ସୁନ୍ଦର, ବାନର>ବାନ୍ଦର, (ପଞ୍ଚଦଶ)>ପନ୍ନରହ>ପନ୍ଦର ।

(ଖ) ସ୍ୱରଶ୍ରୁତିଧ୍ୱନି (Vowel glide)—ଶ୍ରୁତିଧ୍ୱନି ଭାବରେ ବଙ୍ଗଳା ଭାଷାରେ ୟ, ଓ, ଓୟ ଧ୍ୱନିଗୁଡ଼ିକ ପରିଲକ୍ଷିତ ହୁଏ । ଓଡ଼ିଆରେ 'ୟ' ଶ୍ରୁତିଧ୍ୱନି ଲକ୍ଷ୍ୟ କରାଯାଏ । ଯଥା:—

ଅର୍ଦ୍ଧସ୍ୱର 'ୟ' ଶ୍ରୁତିଧ୍ୱନି--ଓଡ଼ିଆ—ଅମୃତ>ଅମିଅ>ଅମିୟ, ସକଳ >ସଅଳ>ସୟଳ, କନକ>କଅଁ>କୟଁ, ମଦନ>ମଅଣ>ମୟଣ, ମୟାଣ, ରଜନୀ>ରଅଣୀ>ରୟଣୀ, ପିତରଃ>ପିଅର>ପିୟର ।

ବଙ୍ଗଳା—ଖାଇ ଏଚେଛ=ଖାଇ ୟେଚେଛ
ନ ଅର ଖାଇ—ନ ୟାର ଖାଇ
ଦେ ଏଲେ=ଦେ ୟେଲେ
ମା ଅମାର=ମା ୟାମାର୍
ବଚନ>ବଅଣ>ବୟଣ
ପିଅନୋ>ପିୟାନୋ

ବଙ୍ଗଳାରେ—ସ୍ୱର 'ଓ' ଶ୍ରୁତିଧ୍ୱନି ଓ ଅକ୍ଷର 'ଓୟ୍' ଶ୍ରୁତିଧ୍ୱନି

ଶୂକର>ଶୂଅର୍>ଶୂ'ର>ଶୂଓର୍
ଧୋ ଅ>ଧୋଓୟା
ଖାଅ>ଖାଓୟା
ନାଅ>ନାଓୟା

(୨୩) ଅପିନିହିତ (Epenthesis)—ଯଦି ଶବ୍ଦ ମଧ୍ୟରେ ସମ୍ପ୍ରକୃତର ସ୍ୱର ବା ଅର୍ଦ୍ଧସ୍ୱର (ଇ, ଉ ସ୍ୱର, ୟ, ଓ୍ୱ ଅର୍ଦ୍ଧସ୍ୱର) ଯଥା ସ୍ଥାନରେ ଥାଇ ସୁଦ୍ଧା ପୂର୍ବେ ଉଚ୍ଚାରିତ ହୁଏ, ତେବେ ସେହି ସ୍ୱରାଗମନକୁ ଅପିନିହିତ କୁହାଯାଏ । ଭାଷାବିଜ୍ଞାନରେ ଅପିନିହିତର ପ୍ରୟୋଗ ଏକାଧିକ ଅର୍ଥରେ କରାଯାଇଛି । ଗ୍ରେ ଏବଂ ସେଇ ଶ୍ରେଣୀର ବିଦ୍ୱାନ୍‌ମାନେ ଏହାକୁ କେବଳ ଅଗମ ଅର୍ଥରେ ଗ୍ରହଣ କରିଛନ୍ତି । ଗ୍ରେ ଏହାକୁ ବ୍ୟଞ୍ଜନୀୟ ଅପିନିହିତ ଓ ସ୍ୱରୀୟ ଅପିନିହିତ ଏହିପରି ଦୁଇଭାଗରେ ବିଭକ୍ତ କରିଛନ୍ତି ଓ ଏହି ଦୁଇ ବିଭାଗର ବହୁ ଉପବିଭାଗ ସୃଷ୍ଟି କରିଛନ୍ତି । ଡକ୍ଟର ଶ୍ୟାମସୁନ୍ଦର ଦାସ ଏହାକୁ ଅକ୍ଷର ଅପନିହିତ ଭାବରେ ଗ୍ରହଣ କରିଛନ୍ତି । ଭାଷାବିତ୍ ଗୁଣେ ଏହି ମତର ସମର୍ଥକ । ଡଃ, ସୁନୀତି କୁମାର ଚଟର୍ଜ୍ଜୀ ଓ ଜାଗପୋର ଓ୍ୱାଲ ଏହାକୁ ଏକ ପୂର୍ବଶ୍ରୁତି ବୋଲି ଗ୍ରହଣ କରିଛନ୍ତି ; କିନ୍ତୁ ଏମାନେ ସମସ୍ତେ ସ୍ୱୀକାର କରିଛନ୍ତି ଯେ ସମ୍ପ୍ରକୃତର କୌଣସି ସ୍ୱର ଯଥାସ୍ଥାନରେ ଥାଇ ସୁଦ୍ଧା ଅଧିକନ୍ତୁ ପୂର୍ବେ ନିହିତ ହେଲେ ଏହି ପ୍ରକ୍ରିୟାକୁ ଅପିନିହିତ କୁହାଯିବ । ଏହାର ଅନ୍ୟ ନାମ ପୂର୍ବହିତ ।

ସଂସ୍କୃତ ସହ ଅବେସ୍ତାର ତୁଳନା କଲେ ଜଣାଯାଏ ଯେ ଅପିନିହିତି ହେଉଛି ଅବେସ୍ତା ଭାଷାର ଏକ ପ୍ରଧାନ ବିଶେଷତ୍ୱ । ଯଥା—

| ସଂସ୍କୃତ | ଅବେସ୍ତା |
|---|---|
| Bhavati | Bavaiti |
| Taruna | Tauruuna |
| Arusah | Auruso |
| Aryah | Airyo |
| Risyati | Irisyeiti |
| Rinakti | Irinakti |

ବଙ୍ଗଳା ଭାଷାର ଅପିନିହିତିରୁ କେତୋଟି ଦୃଷ୍ଟାନ୍ତ—

ସାଥୁଆ>ସାଉଥୁଆ, ଭଗ୍ନା>ଭଇଗ୍ନା, ସାଧୁ>ସାଉଧୁ
ଗାଛୁଆ>ଗାଉଛୁଆ
ଇଂରାଜୀ—Goldsmith>Goldismith
ଭୋଜପୁରୀ—ସ୍ତ୍ରୀ>ଇସ୍ତ୍ରୀ
ହିନ୍ଦୀ—ସ୍ଥିତ>ଇସ୍ଥିତ ।

ଓଡ଼ିଆ—ବେଗି>ବେଇଗି, ବଣୀ>ବଇଁଣୀ, ଅଣ>ଅଇଣ, ଗଣ୍ଡିଆ> ଗଇଣ୍ଡିଆ, ଇଂଷ୍ଟ୍ରିଗ୍>ଇଷ୍ଟ୍ରିଗ୍, ସ୍କୁଲ>ଉସ୍କୁଲ ।

ସମ୍ବଲପୁରୀ ଓଡ଼ିଆ—ପାନ>ପାଇନ
ଦକ୍ଷିଣୀ ଓଡ଼ିଆ—ଏମିତ>ଏଇମିତ

ଉପରେ ଅଧିକାଂଶ କ୍ଷେତ୍ରରେ ଦେଖାଯାଉଛି ଅପିନିହିତି ହେଉଛି ଏକ ପଶ୍ଚଗାମୀ ସମସ୍ୱରାଗମ ଏବଂ ଏହି ସ୍ୱର ହେଉଛି ଇ (i), ଉ (u) ଅଥବା ଅର୍ଦ୍ଧସ୍ୱର ଯ (y), ଓ୍ୱ (v) ।

ତାରପୋରୱାଲା ଅପିନିହିତିକୁ ଏକ ପ୍ରାଗୁପଜନ ବୋଲି କହନ୍ତି । କିନ୍ତୁ ସମସ୍ତ ପ୍ରାଗୁପଜନ ଅପିନିହିତି ହୋଇପାରିବ ନାହିଁ । ଅଉ କେତେକ ବିଦ୍ୱାନ୍ ଓ (o) ଧ୍ୱନି ଯଦି ଉ (u) ପରି ଉଚ୍ଚାରିତ ହୁଏ ଓ ସେଠାରେ ଯଦି ଓ ଯଥାସ୍ଥାନରେ ଥାଇ ମଧ୍ୟ ପୂର୍ବରେ 'ଉ'ର ଆଗମ ହୁଏ, ତାହା ଅପିନିହିତି ହେବ ବୋଲି ମତ ଦେଇଛନ୍ତି । ଯଥା—

Ropayanti>Uropayanti

ଏଠାରେ ‘o’ର ଉଚ୍ଚାରଣ ‘ଉ’ ହେଉଥିବାରୁ ଅପିନିହିତ ହୋଇପାରିବ । ଅନେକେ ମଧ୍ୟସ୍ୱରାଗମକୁ ଅପିନିହିତ ରୂପେ ଗ୍ରହଣ କରିଛନ୍ତି । କିନ୍ତୁ ଅପିନିହିତ ସବୁ କ୍ଷେତ୍ରରେ ମଧ୍ୟସ୍ୱରାଗମ ନୁହେଁ ।

(୨୪) ଅଭିଶ୍ରୁତି (Umlaut ବା Vowel mutation)—ଗ୍ରୀମ୍ ଏହି ନାମ ଦେଇଥିଲେ । ଏହାର ସାଧାରଣ ଅର୍ଥ ହେଉଛି ପଦର ଅନ୍ତର୍ବର୍ତ୍ତୀ କୌଣସି ସ୍ୱରଦ୍ୱାରା ଅନ୍ୟ ସ୍ୱରର ପରିବର୍ତ୍ତନ । ପେଇଙ୍କ ମତରେ ଏହି ପ୍ରଭାବଶାଳୀ ସ୍ୱର କେବେ କେବେ ଅର୍ଦ୍ଧସ୍ୱର ବା ଅର୍ଦ୍ଧବ୍ୟଞ୍ଜନ (y,v) ମଧ୍ୟ ହୋଇପାରେ । ବ୍ଲୁମ୍‌ଫିଲ୍ଡ ଓ ଗ୍ରେଙ୍କ ମତରେ ଏହା ଏକ ପଶ୍ଚଗାମୀ ସ୍ୱରସମୀଭବନ । କିନ୍ତୁ ଏହା ସର୍ବଥା ଠିକ୍ ନୁହେଁ । ଏଥିରେ କେତେବେଳେ ଏକାସ୍ୱର ଅନ୍ୟ ସ୍ୱରର ପୂର୍ଣ୍ଣତଃ ଅନୁରୂପ ହୁଏ ଓ ଅନ୍ୟ କେତେବେଳେ ପୂର୍ଣ୍ଣତଃ ଅନୁରୂପ ନ ହୋଇ ମଧ୍ୟ ପ୍ରକୃତିରେ ନିକଟ ବା ସମୀପବର୍ତ୍ତୀ ହୁଏ । ତେବେ ସାଧାରଣତଃ ଅପିନିହିତ ଇ-କାରର ପ୍ରଭାବରେ ପୂର୍ବବର୍ତ୍ତୀ ସ୍ୱରଧ୍ୱନିର ପରିବର୍ତ୍ତନ ପ୍ରକ୍ରିୟା ହିଁ ଅଭିଶ୍ରୁତି । ଏ ପ୍ରକାର ପରିବର୍ତ୍ତନକୁ “ଅଭ୍ୟନ୍ତର ସନ୍ଧି” କୁହାଯାଇପାରେ । ଇଂରାଜୀ ଜର୍ମାନ ସୁଇଡ଼ୀସ୍ ପ୍ରଭୃତି ଭାଷାମାନଙ୍କରେ ଅଭିଶ୍ରୁତି ପରିଲକ୍ଷିତ ହୁଏ । ବଙ୍ଗଳା ଭାଷାର କଥିତ ଭାଷାରେ ଅଭିଶ୍ରୁତି ହେଉଛି ଅନ୍ୟତମ ବୈଶିଷ୍ଟ୍ୟ । ଏହି ଭାଷାରେ ଅପିନିହିତ ‘ଇ’ କାର ବା ‘ଉ’ କାର ପ୍ରଭାବରେ ପୂର୍ବବର୍ତ୍ତୀ ଅ>ଓ, ଅ> ଏ । ‘ଇ’ କାର ବା ‘ଉ’ କାରଗୁଡ଼ିକର ଲୋପ ହୁଏ । ପରିବର୍ତ୍ତନ ପରେ ପୂର୍ବବର୍ତ୍ତୀ ଓ, ଏ, ପରବର୍ତ୍ତୀ ସ୍ୱରକୁ କେତେକ କ୍ଷେତ୍ରରେ ପ୍ରଭାବିତ କରିଥାଏ । ଅର୍ଥାତ୍ ପଦାନ୍ତ ‘ଅ’, ‘ଆ’ କୁ ‘ଓ’ ବା ‘ଏ’ ରେ ପରିଣତ କରିଥାଏ ।

ଜର୍ମାନ—ମାନି (Mani)>Maini>Men.

ବଙ୍ଗଳା—ଚଳିଲ>ଚଇଲିଲ>ଚଇଲ୍ଲ>ଚଲ୍ଲ>ଚେଲ୍ଲୋ, ବଳିବ> ବଇଲିବ>ବଲ୍‌ବ>ବୋଲ୍‌ବୋ, ସାଥୁଆ>ସାଉଥୁଆ>ସେଥୋ, ମାଛୁଆ> ମାଉଛୁଆ>ମେଛୋ, ଗାଛୁଆ>ଗାଉଛୁଆ>ଗେଛୋ, ଆସିଆ>ଆଇସ୍ୟା>ଏସୋ, ଜାସିଆ>ଜାଇସ୍ୟ>ଜେସୋ, ହାଟୁଆ>ହାଉଟୁଆ>ହେଟୋ, ଚଳିଆ>ଚଇଲ୍ୟା >ଚେଲେ, ମାଧୁଆ>ମାଉଧୁଆ>ମେଧୋ (>ମାଧବ) ।

(୨୫) ଅପଶ୍ରୁତି ( Ablaut, Metraphony, apophony, vowel, gradation vocalic ablaut) ବା ସ୍ୱରକ୍ରମ—

ଏହାକୁ ଅକ୍ଷର ଶ୍ରେଣୀକ୍ରମ, ଅକ୍ଷରାବସ୍ଥାନ ପ୍ରଭୃତି କୁହାଯାଇପାରେ । ଯଦି ପଦ ମଧ୍ୟସ୍ଥ ବ୍ୟଞ୍ଜନରେ କୌଣସି ପରିବର୍ତ୍ତନ ନ ଘଟି କେବଳ ସ୍ୱର ପରିବର୍ତ୍ତନ ଘଟିବା

ଦ୍ୱାରା ଅର୍ଥର ପରିବର୍ତ୍ତନ ଘଟେ ତେବେ ସେହି ବ୍ୟାପାରକୁ ଅପଶ୍ରୁତି କୁହାଯାଏ । ଏହା ତ୍ରିବିଧ—ମାତ୍ରିକ, ଗୁଣୀୟ, ଗୁଣମାତ୍ରିକ ।

(କ) ମାତ୍ରିକ ଅପଶ୍ରୁତି—ମାତ୍ରାର ଅର୍ଥ ହ୍ରସ୍ୱ ଦୀର୍ଘ ଅଟେ । ଯେତେବେଳେ ସ୍ୱର ପ୍ରକୃତତଃ ସ୍ଥିର ରହେ; କିନ୍ତୁ କେବଳ ତାହାର ମାତ୍ରା ବଦଳିଯାଏ, ତେବେ ମାତ୍ରିକ ଅପଶ୍ରୁତି ଦେଖାଯାଏ । ଉଦାହରଣ—

ମନ>ମାନ, ଧନ>ଧାନ, ବସୁଦେବ>ବାସୁଦେବ, ଭରଦ୍ୱଜ> ଭାରଦ୍ୱାଜ, କୋଳି>ଗୁଲିବା, ମରଣ>ମାରଣ, କରଣ>କାରଣ, ଜଳିବା> ଜାଳିବା, ଟଳିବା>ଟାଳିବା, ଢଳିବା>ଢାଳିବା, ବଚନ>ବାଚନ, କରତ> କରାତ ।

(ଖ) ଗୁଣୀୟ ଅପଶ୍ରୁତି—ଏଥିରେ ସ୍ୱର ଗୁଣ ଦୃଷ୍ଟିରୁ ପରିବର୍ତ୍ତିତ ହୋଇଯାଏ । ଉଦାହରଣ—

Foot>Feet, Choose>Chose>Chosen, Sing> Sang>Sung, Sink>Sank>Sunk.

ତିଲ>ତୈଳ, ସ୍ୱେର>ସ୍ୱୈର, ବଳ>ବଳୀ, ଧନ>ଧନୀ, ବର> ବୀର ।

(ଗ) ଗୁଣମାତ୍ରିକ ଅପଶ୍ରୁତି—ଏଥିରେ ଉଭୟ ମାତ୍ରା ଓ ଗୁଣ ଦୃଷ୍ଟିରୁ ସ୍ୱର ପରିବର୍ତ୍ତିତ ହୋଇଥାଏ । ଯଥା—

ଦଶରଥ>ଦାଶରଥି, ପବନ>ପାବନ, ଜନକ>ଜାନକୀ, ଭଗୀରଥ> ଭାଗୀରଥି ।

(୨୭) ସାଦୃଶ୍ୟ (Analogy)—ଯେବେ କୌଣସି ପଦର ଗଠନ-ସାଦୃଶ୍ୟ ଅନୁଯାୟୀ ବା ଗଠନ-ପ୍ରଣାଳୀ ଅନୁକରଣରେ ଅପର ପଦ ଗଢ଼ାଯାଏ, ତାହାହେଲେ ସେହି ପ୍ରକ୍ରିୟାକୁ ସାଦୃଶ୍ୟ କୁହାଯାଏ । ଏହି ସାଦୃଶ୍ୟର କାର୍ଯ୍ୟ ତ୍ରିବିଧ, ଯଥା—

(କ) ନୂତନ ଶବ୍ଦ ବା ପଦର ସୃଷ୍ଟି—ଗୋଟିଏ ପଦର ପ୍ରତ୍ୟୟ ଅନୁକରଣରେ ଅନେକ ପଦର ସୃଷ୍ଟି କରାଯାଇଥାଏ । ଉଦାହରଣ—'ବନ୍ଧୁତା' ପଦର 'ତା' ପ୍ରତ୍ୟୟ ଅନୁକରଣରେ ଦେବତା ଓ ମମତା ପରି ପଦର ସୃଷ୍ଟି । 'ବନ୍ଧୁତା' ହେଉଛି ବନ୍ଧୁର ଭାବ । କିନ୍ତୁ 'ଦେବତା' କହିଲେ 'ଦେବଙ୍କର ଭାବ' ନୁହେଁ । ଏଠାରେ 'ତା' ପ୍ରତ୍ୟୟ ସ୍ୱାର୍ଥେ ବ୍ୟବହୃତ ହେବା ଜଣାଯାଉଛି । 'ମମ' ଏକ ଷଷ୍ଠୀ

ବିଭକ୍ତିର ପଦ, ସେଥିରେ ପ୍ରତ୍ୟୟ ଯୁକ୍ତ ହେବାର କଥା ନୁହେଁ । ଏ ଦୁଇ କ୍ଷେତ୍ରରେ 'ତା' ପ୍ରତ୍ୟୟର ବ୍ୟବହାର ସଙ୍ଗତ ନ ହେଲେ ମଧ୍ୟ 'ସାଦୃଶ୍ୟ' ବ୍ୟାପାରର ଅଧୀନ ହୋଇଛି ।

(ଖ) ଗୋଟିଏ ପଦର ରୂପ ସାଦୃଶ୍ୟରେ ଅନେକ ପଦର ରୂପ ଗଠନ—ସଂସ୍କୃତରେ ସ୍ୱରାନ୍ତ ଶବ୍ଦର ଷଷ୍ଠୀ ଏକବଚନରେ ଶବ୍ଦର ଶେଷ ସ୍ୱରଧ୍ୱନି ଅନୁସାରେ ବିଭିନ୍ନ ପ୍ରକାରର ରୂପ ହୁଏ । ଯଥା—ନର>ନରସ୍ୟ, ମୁନି>ମୁନେଃ, ସାଧୁ>ସାଧୋଃ, ପିତୃ>ପିତୁଃ ଇତ୍ୟାଦି । କିନ୍ତୁ ପ୍ରାକୃତରେ, ସଂସ୍କୃତ 'ଅ' କାରାନ୍ତ ଶବ୍ଦର ରୂପ ଅନୁଯାୟୀ ଅନେକ ଶବ୍ଦର ରୂପ ଗଠନ କରାଯାଇଅଛି । ଯଥା ନରସ୍ୟ ଅନୁକରଣରେ ନରସ୍ସ, ମୁଣିସ୍ସ, ସାହୁସ୍ସ, ପିଉସ୍ସ ଇତ୍ୟାଦି ହୋଇଅଛି ।

(ଗ) ରୂପ ସାଦୃଶ୍ୟ ନେଇ ଅର୍ଥ ପରିକଳ୍ପନା—ସଂସ୍କୃତରେ 'ରୋଦସୀ', 'କ୍ରନ୍ଦସୀ' ଶବ୍ଦର ଅର୍ଥ ଯଥାକ୍ରମେ ଅନ୍ତରୀକ୍ଷ ଓ ଦ୍ୟୋରାକାଶ ଦେବଦ୍ୱୟ । କିନ୍ତୁ ସଂସ୍କୃତ 'ଛନ୍ଦସୀ', 'ମାନସୀ', 'ପ୍ରେୟସୀ' ଆଦି ଶବ୍ଦର ରୂପ-ସାଦୃଶ୍ୟ ନେଇ କବୀନ୍ଦ୍ର, ରବୀନ୍ଦ୍ର 'ରୋଦସୀ' ଏବଂ 'କ୍ରନ୍ଦସୀ' ଶବ୍ଦ ଦୁଇଟିକୁ ବିଳାପକାରିଣୀ ଅର୍ଥରେ ବ୍ୟବହାର କରିଛନ୍ତି ।

(୨୭) ଯୋଡ଼କମଳ ଶବ୍ଦ (Portmanteau Word)—ଦୁଇଟି ଶବ୍ଦର ଘନିଷ୍ଠ ମିଶ୍ରଣରେ ଏକ ନୂତନ ଶବ୍ଦର ସୃଷ୍ଟି ହେଲେ, ସେହି ଶବ୍ଦକୁ ଯୋଡ଼କମଳ ଶବ୍ଦ କୁହାଯାଏ । ଯଥା—

ଶ୍ୟାମ+ଶ୍ୱେତ>ଶ୍ୱେତ (ବୈଦିକ), ଶ୍ୟେତ, ଶେତା (ଓଡ଼ିଆ), ଦମ୍ୟକ+ସୌମ୍ୟ>ଦମ୍ମ (ପାଲି) ଆରବିକ, ମିନ୍ନତ୍+ସ. ବିଜ୍ଞପ୍ତି>ପ୍ରାକୃତ, ବିଣ୍ଣତ୍ତି>ଓ ମିନତି, ବର+ଦ୍ୱୈନ୍ଧ>ଐଶ, ହଜାର+ବଖର>ଜଖର, ପୟୋଧର+ଖର>ପୟୋଖର, ଭାରତ+ଇଉରୋପୀୟ>ଭାରୋପୀୟ ।

(୨୮) ମିଶ୍ରଣ (Contamination)—କୌଣସି ଶବ୍ଦର ସାଦୃଶ୍ୟ ଅନୁଯାୟୀ ଅନ୍ୟ କୌଣସି ଶବ୍ଦର ଆଂଶିକ ପରିବର୍ତ୍ତନ ଘଟିଲେ, ସେହି ପ୍ରକ୍ରିୟାକୁ ମିଶ୍ରଣ କୁହାଯାଏ । ଉଦାହରଣ—ପର୍ତ୍ତୁଗୀଜ ଶବ୍ଦ ଅନାନସ୍ (ananas) ଓଡ଼ିଆ, ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ 'ଅନାରସ୍'ରେ ରୂପାନ୍ତରିତ ହୋଇଛି । ଓଡ଼ିଆ 'ରସ' ଶବ୍ଦର ସାଦୃଶ୍ୟ ଅନୁଯାୟୀ 'ଅନାନସ୍' ଶବ୍ଦର 'ନସ୍' ଶବ୍ଦଟି ରସରେ ପରିଣତ ହୋଇଛି; ଅର୍ଥାତ୍ 'ଅନାନସ୍' ଶବ୍ଦର ଆଂଶିକ ପରିବର୍ତ୍ତନ ଘଟିଅଛି । ସେହିପରି 'ନିରେଷ୍ଟକ' ଶବ୍ଦର ସାଦୃଶ୍ୟରେ ସୌଷ୍ଟିକା>ସରେଷ୍ଟକ, 'ଘର' ଶବ୍ଦର

ସାଦୃଶ୍ୟରେ ଇଣ୍ଡିଆନସ୍ଟର>ଇଣ୍ଡିଆସର, 'ପାତାଳ' ଶବ୍ଦର ସାଦୃଶ୍ୟରେ ହାସପିଟାଲ>ହାସପାତାଳ । ମିଶ୍ରଣ କ୍ଷେତ୍ରରେ ଶବ୍ଦର ଅର୍ଥରେ କୌଣସି ପରିବର୍ତ୍ତନ ଘଟେ ନାହିଁ ।

(୨୯) ଲୋକ ନିରୁକ୍ତି (Folk-Etymology Popular Etymology)—ଅନେକ ସମୟରେ ଦେଖାଯାଏ ଯେକୌଣସି ଦୃଷ୍ଟାନ୍ତି ଯେ, ବିଦେଶୀ ଶବ୍ଦ ବା ଅପରିଚିତ ଶବ୍ଦ ପରିଚିତ ଶବ୍ଦର ଅଳ୍ପ-ବହୁତ ଧ୍ୱନିସାମ୍ୟର ସୁଯୋଗ ନେଇ ପରିଚିତ ଶବ୍ଦର ଅର୍ଥ ଗ୍ରହଣ କରେ । ସାଧାରଣ ଲୋକସମାଜ ଦ୍ୱାରା ଏହିପରି ନିରୁକ୍ତ ବା ବ୍ୟୁତ୍ପତ୍ତି ଘଟିଥାଏ । ତେଣୁ ଏହାକୁ ଲୋକ ନିରୁକ୍ତ କୁହାଯାଏ । ମିଶ୍ରଣରେ ଶବ୍ଦର ଅର୍ଥ ପରିବର୍ତ୍ତନ ଘଟେ ନାହିଁ; କିନ୍ତୁ ଲୋକ ନିରୁକ୍ତରେ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇଯାଏ ।

(i) ଇଂରାଜୀ—ଆର୍ମ ଚେୟାର>ଆରାମଚେୟାର । ଇଂରାଜୀ ଶବ୍ଦଟିର ଅର୍ଥ ହେଲା ହାତ ରଖିପାରିବା ଚୌକି । କିନ୍ତୁ ଲୋକେ 'ଆର୍ମ' ଶବ୍ଦରୁ 'ଆରାମ' ଶବ୍ଦ ସହିତ ଧ୍ୱନି-ସାମ୍ୟ ଲକ୍ଷ୍ୟକରି ଭାବିନେଲେ, ଆର୍ମ ଚେୟାର ଏକ ଚୌକି ଯହିଁରେ ଆରାମରେ ବସିହେବ । ତେଣୁ ଶବ୍ଦଟି ଆରାମ ଚେୟାରରେ ପରିଣତ ହୋଇଗଲା । ଏହି ଅନୁକରଣରେ ଆରାମ ଚଉକି ମଧ୍ୟ କୁହାଗଲା । ଏଠାରେ ଆର୍ମ୍ ଶବ୍ଦ ଆରାମ ଶବ୍ଦର ଅର୍ଥ ଗ୍ରହଣ କଲା ।

(ii) ସଂ—ଊର୍ଣ୍ଣବାଭ>ଊର୍ଣ୍ଣନାଭ । 'ଊର୍ଣ୍ଣବାଭର ଅର୍ଥ ହେଲା ଯେଉଁ କୀଟ ଊର୍ଣ୍ଣ (ସୂତା) ବୟନ କରେ ।' ପରେ ବୟନାର୍ଥକ 'ବଭ୍' ଧାତୁ କ୍ରମଶଃ ଅପ୍ରଚଳିତ ହୋଇପଡ଼ିଲା । ବୁଢ଼ିଆଣୀ ତା'ର 'ନାଭି'ରୁ ଲୁଗାତନ୍ତୁ ବାହାର କରେ । ଏହି ଲୋକ-ବିଶ୍ୱାସ କ୍ରମେ ବଳବତ୍ତର ହେଲା । ତେଣୁ ଶବ୍ଦଟି 'ଊର୍ଣ୍ଣନାଭ'ରେ ପରିଣତ ହୋଇଗଲା ଓ 'ବାଭ' (ବୟନକାରୀ) ଶବ୍ଦଟି 'ନାଭ' (ନାଭିରେ ଯାହାର) ଅର୍ଥ ଗ୍ରହଣ କଲା ।

(iii) ଇଂରାଜୀ—Violin>ବାହୁଲୀନ । ଭାଓଲିନ୍‌କୁ ବାହୁରେ ଧରି ବଜାଯାଏ । 'ଭାଓ' ସହିତ 'ବାହୁ'ର ଏବଂ 'ଲିନ୍' ସହିତ 'ଲୀନ'ର ଧ୍ୱନି ସାମ୍ୟ ରହିଛି । ତେଣୁ ଶବ୍ଦଟି 'ବାହୁଲୀନ'ରେ (ବଙ୍ଗଳାରେ) ପରିଣତ ହୋଇଯାଇଛି ।

(iv) ଆରବିକ ଇନ୍ତିକାଲ୍>ହିନ୍ଦୀ ଅନ୍ତକାଲ୍ । ହିନ୍ଦୀଭାଷୀମାନେ ଭାବନ୍ତି, ବୋଧହୁଏ ଅନ୍ତ (ଶେଷ) କାଲ୍ (କାଳ ବା ସମୟ) ଭୁଲ୍‌ରେ ଆରବିକ ଭାଷାରେ ଇନ୍ତିକାଲ୍ ହୋଇଯାଇଛି । ବିସ୍ଫୋଟକ>ବିଷଫୋଡ଼ା । 'ବିସ୍' ସହିତ 'ବିଷ'ର ଧ୍ୱନି-ସାମ୍ୟ କାରଣରୁ 'ବିସ୍ଫୋଟକ' (ଫୋଟକା, ଗ୍ରେଟ ବ୍ରଣ) ଶବ୍ଦ 'ବିଷଫୋଡ଼ା'ରେ ପରିଣତ ହୋଇଅଛି । କିନ୍ତୁ ପ୍ରକୃତରେ ବିସ୍ଫୋଟକ = ବି + ସ୍ଫୋଟକ ।

(v) 'ପକ୍ଷୀରାଜ' ଶବ୍ଦର ବ୍ୟୁତ୍ପତ୍ତି—ସଂସ୍କୃତ 'ପକ୍ଷର' (ପକ୍ଷ ପର ବର୍ମ ଦ୍ୱାରା ଅପରିହୃତ) ଶବ୍ଦ ଯୁଦ୍ଧ-ଅଶ୍ୱ ବା ସୈନ୍ୟଙ୍କର ବିଶେଷଣ ରୂପେ ବ୍ୟବହୃତ ହେଉଥିଲା । କ୍ରମେ ଏହି ଅର୍ଥ ବିସ୍ମୃତ ହୋଇଗଲା ଓ ରୂପକଥାର ଅଲୌକିକ ଦ୍ରୁତଗାମୀ ଅଶ୍ୱକୁ ବୁଝାଇଲା । ପକ୍ଷୀ ଯେପରି ଅକ୍ଳେଶରେ ଉଡ଼ିପାରେ ଅଲୌକିକ ଅଶ୍ୱ ସେହିପରି ଉଡ଼ିଯାଇପାରେ, ଏହି ଲୋକବିଶ୍ୱାସରୁ 'ପକ୍ଷର' କ୍ରମେ 'ପକ୍ଷରାଜ' ଓ ଶେଷରେ 'ପକ୍ଷୀରାଜ' ଅର୍ଥ ଗ୍ରହଣ କଲା । ଲୌକିକ ବ୍ୟୁତ୍ପତ୍ତି ଓ ଲୋକ ନିରୁକ୍ତି ମଧ୍ୟରେ କେତେକ ସାମ୍ୟ ରହିଛି ।

(୩୦) ବିଷମଚ୍ଛେଦ (Metanalysis)—ଅଶିକ୍ଷିତ ବ୍ୟକ୍ତିର ମୁଖରେ ଏବଂ ସାଦୃଶ୍ୟର ପ୍ରଭାବରେ ବାକ୍ୟାଂଶର ଅଥବା ଶବ୍ଦର ବିକୃତ ବିଶ୍ଳେଷଣ ଫଳରେ ଅନେକ ସମୟରେ ଶବ୍ଦର ରୂପ ପରିବର୍ତ୍ତିତ ହୋଇଯାଏ, ଅଥବା ନୂତନ ପ୍ରତ୍ୟୟର କିମ୍ବା ଶବ୍ଦର ଉଦ୍ଭବ ହୁଏ । ଏପ୍ରକାର ଶବ୍ଦ-ବିକାରକୁ ବିଷମଚ୍ଛେଦ କୁହାଯାଏ ।

ଉଦାହରଣ—

(i) ସଂସ୍କୃତ ନବରଙ୍ଗ>ଆରବୀ ନାରଞ୍ଜ>ପ୍ରାଚୀନ ଇଂ an orange (ଗୋଟିଏ କମଳାଲେମ୍ବୁ)>ଆଧୁନିକ ଇଂ anorange । ଏହିପରି ଭାବରେ ନବରଙ୍ଗ ଶେଷରେ orangeରେ ରୂପାନ୍ତରିତ ହୋଇଅଛି ।

(ii) ଅସୁର ଏକ ମୌଳିକ ଶବ୍ଦ । ଏହାର ଆରମ୍ଭରେ ଥିବା 'ଅ' କୁ ନାସ୍ତ୍ୟର୍ଥକ ଉପସର୍ଗ ମନେକରାଯାଇ ବିଷମଚ୍ଛେଦ କରାଯିବା ଫଳରେ 'ସୁର' (ଦେବତା) ଶବ୍ଦର ସୃଷ୍ଟି ।

(iii) ବିଧବା ଶବ୍ଦକୁ ପରବର୍ତ୍ତୀ କାଳରେ ବି-ଧବା, ଏହିପରି ବିଷମଚ୍ଛେଦ କରାଯିବା ଫଳରେ ଧବ (ପତି ଅର୍ଥକ) ଶବ୍ଦର ସୃଷ୍ଟି ।

(iv) ବିଷମଚ୍ଛେଦ ଫଳରେ ଓଡ଼ିଆରେ ମେବଚ ଶବ୍ଦ (ଉଚ୍ଚତମ ସଂଖ୍ୟା ଅର୍ଥରେ) ସୃଷ୍ଟି ଲାଭ କରିଅଛି । ଗୋଟିଏ ସଂଖ୍ୟାବାଚକ ଶବ୍ଦମାଳ ଶ୍ଳୋକର ଶେଷାଂଶରେ 'ମେବଚ' ରହିଛି । ଯଥା—"...କୋଟିରର୍ବୁଦ ମେବଚ ।" ଏହାର ପଦବିଚ୍ଛେଦ କଲେ ଏହା ହେବ, 'କୋଟି+ଅର୍ବୁଦଂ+ଏବ+ଚ' । କିନ୍ତୁ ଏହି ଶ୍ଳୋକାଂଶର ବିଷମଚ୍ଛେଦ ଘଟି ମେବଚ (>ମେବଚ)ରୁ କୋଟି, ଅର୍ବୁଦଠାରୁ ଉଚ୍ଚତର ସଂଖ୍ୟା ଅର୍ଥରେ ଗ୍ରହଣ କରାଯାଇଛି । କୋଟିରର୍ବୁଦ ମେବଚ କୋଟି, ଅର୍ବୁଦ ମେବଚ ।

(v) ସଂସ୍କୃତରେ ଉ-କାରାନ୍ତ ଶବ୍ଦରେ ଯ (ଯତ୍) ପ୍ରତ୍ୟୟ ଯୁକ୍ତ ହେଲେ 'ଉ' ଓ 'ଯ'ର ମିଳନ ଘଟି 'ବ୍ୟ' ହୋଇଯାଏ । ଯଥା>ତାଲୁ+ଯ=ତାଲବ୍ୟ ;

ପଶୁ + ଯ = ପଶବ୍ୟ । ପରବର୍ତ୍ତୀ କାଳରେ ବିଷମଚ୍ଛେଦ ଦ୍ୱାରା ଏହିପରି ଶବ୍ଦଗୁଡ଼ିକରୁ 'ବ୍ୟ' ଅଂଶଟି ବିଚ୍ଛିନ୍ନ କରାଯାଇ ତାହାକୁ ନୂତନ ପ୍ରତ୍ୟୟ ରୂପେ ବ୍ୟବହାର କରାଯାଉଛି ଓ ଏହାକୁ ବ୍ୟବହାର କରି ନୂତନ ଶବ୍ଦର ସୃଷ୍ଟି କରାଯାଉଛି । ଯଥା—ପିତୃବ୍ୟ, ଭ୍ରାତୃବ୍ୟ, ମୃଗବ୍ୟ ।

(vi) ସଂସ୍କୃତ 'ବ୍ୟବହାରକ' (ଅର୍ଥାତ୍ ଭୃତ୍ୟ, କର୍ମଚାରୀ) ଶବ୍ଦ ବିଷମଚ୍ଛେଦ ଫଳରେ ଇଂରାଜୀ 'bearer' ଶବ୍ଦରେ ପରିଣତ ହୋଇ ସେଠାରୁ ଅସମ ଦେଶରେ ଭାଷାରେ ବ୍ୟବହୃତ ହେଉଅଛି । ଯଥା—ବ୍ୟାବହାରକ > ବିଅ ଅରଅ > ବିଅ ଅରଅ > ବିଅରଅ > ବିଅରର ।

(vii) ଇଂରାଜୀ napron ବିଷମଚ୍ଛେଦ ଫଳରେ apronରେ ପରିଣତ ହୋଇଅଛି, ଯଥା—a napron > an apron ।

ଏହିପରି ଭାବରେ ବିଭିନ୍ନ ଢଙ୍ଗରେ ଧ୍ୱନିର ପରିବର୍ତ୍ତନ ଘଟୁଥାଏ ଏବଂ କ୍ରମଶଃ ଭାଷାର ପରିବର୍ତ୍ତନ ଘଟୁଥାଏ । ଏହି ପରିବର୍ତ୍ତନ ଫଳରେ ନୂତନ ଭାଷାର ସୃଷ୍ଟି ପାଇଁ ଅବକାଶ ଦେଖାଯାଏ ।

## ଧ୍ୱନି-ନିୟମ (Phonetic Law)

କୌଣସି ଭାଷାରେ ଧ୍ୱନିର ପରିବର୍ତ୍ତନ ଅନେକ କ୍ଷେତ୍ରରେ କୌଣସି ନିୟମ ଦ୍ୱାରା ପରିଚାଳିତ ନୁହେଁ, କିନ୍ତୁ ଆଉ କେତେକ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ନିୟମ ଦ୍ୱାରା ନିୟନ୍ତ୍ରିତ । ଧ୍ୱନି-ପରିବର୍ତ୍ତନର ପ୍ରକୃତିରେ ବହୁ କ୍ଷେତ୍ରରେ ଏକରୂପତା ଦେଖା ଦେଲେ ତାହାକୁ ଆଧାର କରି ନିୟମ ପ୍ରଣୟନ କରାଯାଏ । କୌଣସି ନିର୍ଦ୍ଦିଷ୍ଟ ଭାଷା ବା ଭାଷା ପରିବାରର କୌଣସି ନିର୍ଦ୍ଦିଷ୍ଟ ଧ୍ୱନିମାଳାରେ କୌଣସି ନିର୍ଦ୍ଦିଷ୍ଟ କାଳ ଓ ନିର୍ଦ୍ଦିଷ୍ଟ ଅବସ୍ଥାରେ ଯେଉଁ ପ୍ରଣାଳୀରେ ପରିବର୍ତ୍ତନ ବା ବିକାର ଘଟେ, ସେହି ପ୍ରଣାଳୀକୁ ଧ୍ୱନି-ନିୟମ କୁହାଯାଏ । ଏହି ନିୟମର ସୁବିଶେଷ ଅଙ୍ଗ ହେଉଛି :(୧) ଧ୍ୱନି-ନିୟମ କୌଣସି ନିର୍ଦ୍ଦିଷ୍ଟ ଭାଷା ପାଇଁ ହିଁ ପ୍ରଯୁଜ୍ୟ, ତାହା ଅନ୍ୟ ଭାଷା ପାଇଁ ପ୍ରଯୁଜ୍ୟ ନ ହୋଇପାରେ । ଉଦାହରଣ ସ୍ୱରୂପ, ଇଂରାଜୀରେ କେତେକ ଶବ୍ଦରେ ଅନ୍ତ୍ୟ 'r' ଉଚ୍ଚାରିତ ହୁଏ ନାହିଁ । ଫାଦର୍ (father)ର ଉଚ୍ଚାରଣ ଫାଦଅ ହୁଏ; କିନ୍ତୁ ଓଡ଼ିଆ ଭାଷାରେ ଏହି ନିୟମକୁ ଲଗାଇ 'ସମର'କୁ 'ସମଅ' କରାଯାଇ ପାରିବ ନାହିଁ । (୨) ଗୋଟିଏ ଭାଷାର ସବୁ ଧ୍ୱନି ଉପରେ ଏହି ନିୟମ ଲଗୁ କରାଯାଇପାରିବ ନାହିଁ । ଯଥା—ଉପର୍ଯ୍ୟୁକ୍ତ ଉଦାହରଣରେ 'r'କୁ ଅନୁଚ୍ଚାରିତ ହେବାର ଦେଖି ଅନ୍ତିମ 'p'କୁ ଅନୁଚ୍ଚାରିତ କରାଯାଇ mapକୁ 'ମ୍ୟାଅ' ବା 'cap'କୁ 'କ୍ୟାଅ' କରାଯାଇପାରିବ ନାହିଁ । (୩) ସବୁକାଳ ପାଇଁ ଏକ ନିୟମ ଲଗୁ

ହୋଇପାରିବ ନାହିଁ । ଆଧୁନିକ ଇଂରାଜୀରେ 'ଫାଦର୍'ର r ଉଚ୍ଚାରିତ ନ ହେଲେ ହେଁ ପ୍ରାଚୀନ କାଳରେ ଉଚ୍ଚାରିତ ହେଉଥିଲା । (୪) ଏହି ନିୟମ ନିର୍ଦ୍ଦିଷ୍ଟ ଅବସ୍ଥା ଉପରେ ମଧ୍ୟ ନିର୍ଭର କରେ । ଯଥା father ର ଶେଷରେ 'r' ଉଚ୍ଚାରିତ ନ ହେଲେ ହେଁ ଶବ୍ଦର ଆରମ୍ଭରେ ବ୍ୟବହୃତ 'r' ଉଚ୍ଚାରିତ ହୋଇଥାଏ ।

## କେତୋଟି ପ୍ରସିଦ୍ଧ ଧ୍ୱନି-ନିୟମ

(କ) ଗ୍ରିମ୍‌ଙ୍କ ଧ୍ୱନି-ନିୟମ—ଇଣ୍ଡୋୟୁରୋପୀୟ ମୂଳ ଭାଷାର କେତେକ ସ୍ପର୍ଶବ୍ୟଞ୍ଜନ ଜର୍ମାନିକ୍ ଶାଖାରେ ପରିବର୍ତ୍ତିତ ହୋଇଯାଏ, ଅର୍ଥାତ୍ ଇଣ୍ଡୋୟୁରୋପୀୟ ଭାଷା ପରିବାରର ସଂସ୍କୃତ, ଗ୍ରୀକ୍, ଲାଟିନ୍ ଆଦି ଭାଷାମାନଙ୍କର କେତେକ ନିର୍ଦ୍ଦିଷ୍ଟ ବ୍ୟଞ୍ଜନ ଧ୍ୱନି ଜର୍ମାନିକ ଶାଖାର ଗଥିକ୍, ଟିଉଟନିକ୍, ଇଂରାଜୀ ଭାଷାମାନଙ୍କରେ ପରିବର୍ତ୍ତିତ ରୂପ ଧାରଣ କରେ । ଏହି ପରିବର୍ତ୍ତନର ପ୍ରଥମ ଆବିଷ୍କାରକ ହେଉଛନ୍ତି ରାସ୍‌ମସ୍ ରାସ୍କ ( ଖ୍ରୀ. ୧୭୮୭-୧୮୩୨ ), କିନ୍ତୁ ଏହି ପରିବର୍ତ୍ତନ ପାଇଁ ନିୟମ ପ୍ରଣୟନ କରିଥିଲେ ଜାକୋବ ଗ୍ରିମ୍ ( ୧୭୮୫-୧୮୬୩ ) । ତେଣୁ ନିୟମଟି ତାଙ୍କର ନାମ ଅନୁସାରେ ଗ୍ରିମ୍‌ଙ୍କ ଧ୍ୱନି-ନିୟମ ( Grim's Law ) ଭାବରେ ଅଭିହିତ । ଗ୍ରିମ୍ ଏହି ନିୟମ ପ୍ରଣୟନ କଲେ ବୋଲି ଯେ ଏହି ପରିବର୍ତ୍ତନ ତାଙ୍କ ସମୟରୁ ଦେଖା ଦେଇଥିଲା ଏପରି ନୁହେଁ, ଏହା ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ହୋଇଯାଇଥିଲା । ଏହି ପରିବର୍ତ୍ତନ ବହୁକାଳ ପୂର୍ବରୁ ହୋଇସାରିଥିବାରୁ ତାହା ପାଇଁ ଏକ ସୁନିର୍ଦ୍ଦିଷ୍ଟ ନିୟମ ପ୍ରଣୟନ କରିବା ଗ୍ରିମ୍‌ଙ୍କ ପାଇଁ କଷ୍ଟସାଧ୍ୟ ଥିଲା । ତେବେ ସେ ମୋଟାମୋଟି ଭାବରେ ଯେଉଁ ନିୟମ ପ୍ରଣୟନ କରିଛନ୍ତି, ତାହା କମ୍ ଗୌରବର ବିଷୟ ନୁହେଁ ।

ସୂତ୍ର—ଇଣ୍ଡୋୟୁରୋପୀୟ ମୂଳଭାଷାର ଚତୁର୍ଥ, ତୃତୀୟ ଏବଂ ପ୍ରଥମ ବର୍ଣ୍ଣର ଧ୍ୱନି ଜର୍ମାନିକ୍ ଶାଖାରେ ଯଥାକ୍ରମେ ତୃତୀୟ, ପ୍ରଥମ ଓ ଦ୍ୱିତୀୟ ବର୍ଣ୍ଣର ଧ୍ୱନିରେ ପରିଣତ ହୋଇଯାଏ ।

ଦୃଷ୍ଟାନ୍ତ—

| ଇଣ୍ଡୋୟୁରୋପୀୟ ମୂଳଭାଷାର ଧ୍ୱନି | | ଜର୍ମାନିକ ଶାଖାର ଧ୍ୱନି |
|---|---|---|
| (କ) ଚତୁର୍ଥ ଧ୍ୱନି (ଘୋଷ ମହାପ୍ରାଣ) | | ତୃତୀୟ ଧ୍ୱନି (ଘୋଷ ଅଳ୍ପପ୍ରାଣ) |
| (i) ଘ | > | ଗ୍ |
| ଯଥା—ଘଂସ (ହଂସ) | > | ଗୁଜ୍ (goose) |
| (ii) ଧ୍ | > | ଦ୍ |
| ଯଥା—ଧା | > | ଡୁ (do) |

| | | |
|---|---|---|
| ବିଧବା | > | ଓ୍ୱିଡୋ (widow) |
| ଧୂମ | > | ଡଷ୍ଟ (dust) |
| (iii) ଭ୍ | > | ବ୍ |
| ଯଥା—ଭ୍ରାତୃ | > | ବ୍ରଦର୍ (brother) |
| ଭୂ (ହେବା) | > | ବୀ (bee) |
| (ଖ) ତୃତୀୟ ବର୍ଣ୍ଣର ଧ୍ୱନି | > | ପ୍ରଥମ ବର୍ଣ୍ଣର ଧ୍ୱନି |
| (ଘୋଷ ଅଳ୍ପପ୍ରାଣ) | > | (ଅଘୋଷ ଅଳ୍ପପ୍ରାଣ) |
| (i) ଗ୍ | > | କ୍ |
| ଯଥା—ଗୋ | > | କାଓ (cow) |
| ଯୋଗ | > | ୟୋକ୍ (yoke) |
| (ii) ଦ୍ | > | ଟ୍ |
| ଯଥା—ଦ୍ୱି | > | ଟୁ (two) |
| ଦଶନ୍ | > | ଟେନ୍ (ten) |
| (iii) ବ୍ | > | ପ୍ |
| ଯଥା—ବୁକ୍ (buk) | > | ପୋଗ୍ (poge) |
| (ଗ) ପ୍ରଥମ ବର୍ଣ୍ଣର ଧ୍ୱନି | > | ଦ୍ୱିତୀୟ ବର୍ଣ୍ଣର ଧ୍ୱନି |
| (ଅଘୋଷ ଅଳ୍ପପ୍ରାଣ) | | (ଘର୍ଷୀ ଅଘୋଷ ମହାପ୍ରାଣ) |
| (i) କ୍ | > | ଖ୍ (ହ) |
| ଯଥା—କଃ | > | who (ଖୁ>ହୁ) |
| କତ୍ | > | what (ଖ୍ୱାଟ୍>ହ୍ୱାଟ୍) |
| (ii) ତ୍ | > | ଥ୍ |
| ଯଥା—ତ୍ରି | > | ଥ୍ରି (three) |
| ଦନ୍ତ | > | ଟୁଥ୍ (tooth) |
| ତନୁ | > | ଥିନ୍ (thin) |
| (iii) ପ୍ | > | ଫ୍ |
| ଯଥା—ପିତୃ | > | ଫାଦର୍ (father) |
| ପଶୁ | > | ଫି (fee) |
| ପାଦ | > | ଫୁଟ୍ (foot) |

ଗ୍ରୀମ୍ଙ୍କ ଧ୍ୱନି-ନିୟମକୁ ନିମ୍ନ ଚକ୍ରରେ ଉପସ୍ଥାପିତ କରାଯାଇପାରେ ।




( ଗ୍ରୀମ୍ଙ୍କ ଭାଷା ସୂତ୍ର ଚକ୍ର )

ଗ୍ରୀମ୍ ଏ ବଟରେ ଅଦ୍ଭୁତ ଅଗ୍ରହର ହୋଇ କହେ ନିମ୍ନ ଜର୍ମାନ୍ ଭାଷାର ବ୍ୟଞ୍ଜନ ଧ୍ୱନି ଉଚ୍ଚ ଜର୍ମାନ୍ ଭାଷାରେ ପରିବର୍ତ୍ତିତ ହୋଇଯାଇଛି ତାହାର ଦୃଷ୍ଟାନ୍ତ ଦେଇଛନ୍ତି । ଉଦାହରଣ—

| ନିମ୍ନ ଜର୍ମାନ୍ (ଇଂରାଜୀ) | | ଉଚ୍ଚ ଜର୍ମାନ୍ |
|---|---|---|
| (i) ପ୍ | > | ଫ୍ |
| ଯଥା—deep | > | tief |
| Sheed | > | Schaf |
| (ii) ତ୍ | > | ସ୍ସ୍ |
| ଯଥା—foot | > | fuss |
| let | > | lassen |
| (iii) କ୍ | > | ଖ୍ |
| ଯଥା—yoke | > | Joch (ଜଖ୍) |
| (iv) ଭ୍ | > | ବ୍ |
| ଯଥା—dove | > | taube |
| (v) ଦ୍ | > | ତ୍ |
| ଯଥା—deed | > | tat |
| (vi) ଥ୍ | > | ଦ୍ |
| ଯଥା—three | > | drie |

(ଖ) ଗ୍ରାସ୍‌ମ୍ୟାନଙ୍କ ଧ୍ୱନି-ନିୟମ (Grassmann's Law)—ଗ୍ରୀମ୍‌ଙ୍କ ଧ୍ୱନି-ନିୟମ ଅନୁସାରେ ମୂଳ ଇଣ୍ଡୋୟୁରୋପୀୟ ଭାଷାର ବ୍ୟଞ୍ଜନଧ୍ୱନିର ଜର୍ମାନିକ୍ ଶାଖାରେ ଯେଉଁ ପରିବର୍ତ୍ତନ ଦେଖାଇ ଦିଆଯାଇଥିଲା, ତହିଁରେ କେତେକ ସ୍ଥଳରେ ବ୍ୟତିକ୍ରମ ରହିଛି । ଗ୍ରାସ୍‌ମ୍ୟାନ୍ ଏହି ବ୍ୟତିକ୍ରମର ସନ୍ଧାନ ପାଇଥିଲେ ଏବଂ ଗ୍ରୀମ୍‌ଙ୍କ ନିୟମକୁ ସଂସ୍କାର କରି କଣ୍ଟିନ୍ ପରିବର୍ତ୍ତିତ ଏକ ନିୟମ ଦେଖାଇଥିଲେ । ଗୋଟିଏ ଦୃଷ୍ଟାନ୍ତ ନିଆଯାଉ- ମୂଳ ଇଣ୍ଡୋୟୁରୋପୀୟ ଭାଷାରେ 'ଭେନ୍‌ଧ୍' (ବାନ୍ଧିବା) ଗ୍ରୀମ୍‌ଙ୍କ ଧ୍ୱନି-ନିୟମ ଅନୁଯାୟୀ ଇଂରାଜୀରେ 'ବାଇନ୍‌ଡ୍' (bind) ହୋଇଅଛି । ଏହା ଗ୍ରୀମ୍‌ଙ୍କ ନିୟମକୁ ସମର୍ଥନ କରୁଛି । କିନ୍ତୁ ଜର୍ମାନିକ୍ ଶାଖାର ଗ୍ରୀକ୍ ଭାଷାରେ ଏହି ନିୟମ ପ୍ରଯୋଜ୍ୟ ହେଉ ନାହିଁ । ଏହି ଶାଖାର ଅନ୍ୟ ଏକ ଭାଷାରେ 'ଭେନ୍‌ଧ୍' ପେନ୍‌ଥରେ ପରିଣତ ହୋଇଅଛି । ତେଣୁ ଗ୍ରାସ୍‌ମ୍ୟାନ ଏ ଉଭୟ ପରିବର୍ତ୍ତନ ପାଇଁ ପ୍ରଯୋଜ୍ୟ ହେଲାଭଳି ଏକ ସୂତ୍ର ବାହାର କଲେ । ଏହି ସୂତ୍ରଟି ହେଲା—

"ମୂଳ ଇଣ୍ଡୋୟୁରୋପୀୟ ଭାଷାର ଶବ୍ଦରେ ରହିଥିବା ମହାପ୍ରାଣଧ୍ୱନି ଜର୍ମାନିକ୍ ଶାଖାରେ ଅଳ୍ପପ୍ରାଣଧ୍ୱନିରେ ପରିଣତ ହୋଇଯାଏ ।"

ଏହି ନିୟମର ଆଧାର ଉପରେ ସେ ପୁଣି ତାଙ୍କ ସୂତ୍ରର ଅନ୍ୟ ଏକ ବିକାଶଶୀଳ ସୂତ୍ର ବାହାର କଲେ । ସୂତ୍ରଟି ହେଉଛି—

"ମୂଳ ଇଣ୍ଡୋୟୁରୋପୀୟ ଭାଷାର କୌଣସି ପଦରେ ପାଖାପାଖି ଦୁଇଟି ଅକ୍ଷର ମହାପ୍ରାଣଧ୍ୱନିଯୁକ୍ତ ହୋଇଥିଲେ, ତନ୍ମଧ୍ୟରୁ ଗୋଟିଏ ଆର୍ଯ୍ୟଶାଖା (ସଂସ୍କୃତ ଓ ଅବେସ୍ତା)ରେ ଏବଂ ଗ୍ରୀକ୍‌ରେ ଅଳ୍ପପ୍ରାଣଧ୍ୱନିରେ ପରିଣତ ହୋଇଯାଏ ଏବଂ ଅନ୍ୟଟି ମହାପ୍ରାଣଧ୍ୱନି ହୋଇ ରହେ । ଯଥା—

ଭେନଧ୍ > ପେନଥ୍ (ଗ୍ରୀକ୍ ଶାଖା)
ଭେନଧ୍ > ବନଧ୍ (ଆର୍ଯ୍ୟଶାଖା)
ଭଭର୍ତ୍ତି > ବଭର୍ତ୍ତି

(ଗ) ଵର୍ଣ୍ଣରଙ୍କ ଧ୍ୱନି-ନିୟମ ( Verner's Law )—ଗ୍ରୀମ୍ ଧ୍ୱନି ପରିବର୍ତ୍ତନ ସମ୍ପର୍କରେ ଯେଉଁ ନିୟମ ଆବିଷ୍କାର କରିଥିଲେ, ଗ୍ରାସ୍‌ମ୍ୟାନ ତାହାର ସଂସ୍କାର କରିଥିଲେ । ଗ୍ରାସ୍‌ମ୍ୟାନ ଯେଉଁ ନିୟମ ପ୍ରଣୟନ କରିଥିଲେ ତହିଁରେ ମଧ୍ୟ କେତେକ ବ୍ୟତିକ୍ରମ ଦେଖାଦେଲା । ଵର୍ଣ୍ଣର୍ ତାହାର ସଂସ୍କାର କରିଥିଲେ । ଉଦାହରଣ ସ୍ୱରୂପ—ମୂଳ ଇଣ୍ଡୋୟୁରୋପୀୟ କ୍, ତ୍, ପ୍ ଜର୍ମାନିକ୍ ଶାଖାରେ ଖ୍, ଥ୍, ଫ ରେ ପରିଣତ ନ ହୋଇ ଅନେକ ସମୟରେ ଗ୍, ଦ୍, ବ୍ ରେ ପରିଣତ ହୋଇଅଛି । ଵର୍ଣ୍ଣର୍ ଏହାର ସମାଧାନ ସୂତ୍ର ସନ୍ଧାନ କରିଥିଲେ ।

ମୂଳ ଇଣ୍ଡୋୟୁରୋପୀୟ ଭାଷାରେ ସ୍ୱରାଘାତର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ପ୍ରାଚୀନ ସଂସ୍କୃତରେ ସ୍ୱରାଘାତ ବହୁପରିମାଣରେ ସୁରକ୍ଷିତ ରହିଛି । ବର୍ଣ୍ଣର୍ ଏହି ସ୍ୱରାଘାତର ମହତ୍ତ୍ୱ ପ୍ରତି ଧ୍ୟାନ ଦେଇ ଗ୍ରୀମ୍ ଓ ଗ୍ରାସ୍‌ମ୍ୟାନ୍‌ଙ୍କ ନିୟମର ବହୁ ବ୍ୟତିକ୍ରମ ପାଇଁ ସମସ୍ୟାର ସମାଧାନ କରିଥିଲେ । ତାଙ୍କ ମତରେ, କ୍, ତ୍, ପ୍ ଧ୍ୱନିଗୁଡ଼ିକ ମୂଳ ଇଣ୍ଡୋୟୁରୋପୀୟ ଶବ୍ଦର ଆରମ୍ଭରେ ଥିଲେ ଗ୍ରୀମ୍ ନିୟମ ନିଶ୍ଚୟ ପ୍ରଯୋଜ୍ୟ ହେବ । କ୍, ତ୍, ପ୍ ଧ୍ୱନିଗୁଡ଼ିକ ଯଦି ଶବ୍ଦର ମଧ୍ୟ ବା ଅନ୍ତରେ ଥାଏ ଏବଂ ସ୍ୱରାଘାତ ଯଦି ଏମାନଙ୍କର ଠିକ୍ ପୂର୍ବରୁ ରହେ, ତାହାହେଲେ ମଧ୍ୟ ଗ୍ରୀମ୍‌ଙ୍କ ନିୟମ ପ୍ରଯୋଜ୍ୟ ହେବ । କିନ୍ତୁ ଯଦି ସ୍ୱରାଘାତ ଏଗୁଡ଼ିକର ପରେ ରହେ, ତେବେ ଗ୍ରୀମ୍‌ଙ୍କ ନିୟମ ଅନୁଯାୟୀ ଏଗୁଡ଼ିକ ଯଥାକ୍ରମେ ଖ୍, ଥ୍, ଫ୍ ନହୋଇ ଯଥାକ୍ରମେ ଗ୍, ଦ୍, ବ୍ ହୋଇଯିବ । ଦୃଷ୍ଟାନ୍ତ—

ମୂଳ ଇଣ୍ଡୋୟୁରୋପୀୟ ଜର୍ମାନିକ

| ଧ୍ୱନି | ସଂସ୍କୃତ | ଲାଟିନ୍ | ଗ୍ରୀମ୍‌ଙ୍କ ନିୟମ ଅନୁଯାୟୀ ଆପେକ୍ଷିତ ରୂପ | ଗଥିକ୍ | ଇଂରାଜୀ |
|---|---|---|---|---|---|
| କ୍ | ଯୁବକ (Yuvaka) | ଯୁଭେକ୍ସ୍ (Yuvecus) | ଯୁଖ୍‌ସ (Jghs) | ଯୁଗ୍‌ସ (Juggs) | ୟଙ୍ଗ୍ (Young) |
| ତ୍ | ଶତମ୍ (Satam) | କେଣ୍ଟୁମ୍ (centum) | ହୁନ୍ଥ୍ (hunth) | ହୁନ୍ଦ୍ (hund) | ହଣ୍ଡ୍ରେଡ୍ (hundred) |
| ପ୍ | ସପ୍ତମ୍ (Saptam) | ସେପ୍ଟେମ (Septem) | ସିଫନ (Sifun) | ସିବୁନ୍ (Sibun) | ସେଭେନ (Seven) |

ଏଠାରେ ଉଦାତ୍ତ ସ୍ୱର 'ଯୁବକଃ'ରେ 'ବ'ର 'ଅ' ଉପରେ ଏବଂ 'ଶତମ୍' ତଥା 'ସପ୍ତମ'ରେ 'ତ'ର ଅ ଉପରେ ରହିଅଛି । ଅତଏବ ଏଠାରେ ସ୍ୱରାଘାତ (ଉଦାତ୍ତ ସ୍ୱର) କ୍, ତ୍, ପ୍, ର ପୂର୍ବରୁ ନରହି ପରେ ରହିବାରୁ ଗଥିକ ଓ ଇଂରାଜୀ ଭାଷାରେ ଏହି ଧ୍ୱନିଗୁଡ଼ିକ ଯଥାକ୍ରମେ ଗ୍, ଦ୍, ବ୍ ରେ ପରିଣତ ହୋଇଅଛି ।

କିନ୍ତୁ ଯେଉଁଠାରେ ସ୍ୱରାଘାତ କ୍, ତ୍, ପ୍ ର ଠିକ୍ ପୂର୍ବରୁ ଅଛି, ସେଠାରେ ଧ୍ୱନିଗୁଡ଼ିକ ଗ୍ରୀମ୍‌ଙ୍କ ଧ୍ୱନି-ନିୟମ ଅନୁଯାୟୀ ଯଥାକ୍ରମେ ଖ, ଥ, ଫ୍ ରେ ପରିଣତ ହୁଏ । ଗୋଟିଏ ଦୃଷ୍ଟାନ୍ତ ନିଆଯାଉ—ସଂ. ଭ୍ରାତର>ଗଥିକ୍ ବ୍ରାଥର୍ (brother) ।

ଏଠାରେ 'ଭ୍ରାତର'ରେ 'ଭ୍ରା'ର 'ଅ' ଉପରେ ଉଦାତ୍ତ ସ୍ୱର ରହିଛି, ଅର୍ଥାତ୍ ୟୁରୋପୀୟ ଭାଷାର 'ତ୍' ଗଥିକ୍ (ଜର୍ମାନ୍ ଶାଖା)ରେ 'ଥ୍'ରେ ପରିଣତ ହୋଇଅଛି ।

ତେଣୁ ବର୍ଣ୍ଣର୍‌ଙ୍କ ଧ୍ୱନି ନିୟମକୁ ସଂକ୍ଷେପରେ ପ୍ରକାଶ କରାଯାଇପାରେ—

"ମୂଳ ଇଣ୍ଡୋୟୁରୋପୀୟ ଭାଷାରେ ବ୍ୟଞ୍ଜନ ଧ୍ୱନିଟିର ଅବ୍ୟବହିତ ପୂର୍ବରୁ 'ଲ୍' ର ପରେ ନଗଣ୍ୟ ପୂର୍ବରୁ ଥିବାରୁ ଗ୍ରୀମ୍‌ଙ୍କ ନିୟମ ଅନୁଯାୟୀ ଇଣ୍ଡୋୟୁରୋପୀୟ ଟିକ୍ ପୂର୍ବରୁ ସ୍ୱରାଘାତ (Pitch accent) ନ ଥିଲେ ମୂଳଭାଷାର ପ୍ରଥମ ବ୍ୟଞ୍ଜନ ଧ୍ୱନି ଜର୍ମାନିକ୍ ଶାଖାରେ ଦ୍ୱିତୀୟ ଧ୍ୱନି ନ ହୋଇ ତୃତୀୟ ବ୍ୟଞ୍ଜନ ଧ୍ୱନିରେ ପରିଣତ ହୋଇଯାଏ।"

ଏହି ସ୍ୱରାଘାତ ଉପରେ ଦୃଷ୍ଟି ଦେଇ ବର୍ଣ୍ଣର୍ ଆଉ ଏକ ନିୟମ ବର୍ଣ୍ଣାଇ ଥିଲେ। ମୂଳ ଇଣ୍ଡୋୟୁରୋପୀୟ ଭାଷାର 'ସ' ଜର୍ମାନିକ୍ ଶାଖାରେ (z) ଓ ର୍ (r) ରେ ପରିଣତ ହୋଇଯାଏ। କିନ୍ତୁ ଆର୍ଯ୍ୟଶାଖାରେ ଏପରି ପରିବର୍ତ୍ତନ ହୁଏ ନାହିଁ।

ଯଥା—ମୂଳ ଇଣ୍ଡୋୟୁରୋପୀୟ ଘସ>ସଂସ୍କୃତ ଶଶ>ଜର୍ମାନିକ୍ ହଜ୍ (haza)>ହେୟାର (Hare) ମୂଳ ଇଣ୍ଡୋୟୁରୋପୀୟ ସ୍ନୁଷୋସ>ସଂସ୍କୃତ, ସ୍ନୁଷା>ଇଂରାଜୀ ସ୍ନୋରୁ (Snoru)।

## ଧ୍ୱନି-ସମ୍ବନ୍ଧୀୟ କେତୋଟି ଟିପ୍ପଣୀ

(୧) ଭାଷା-ଧ୍ୱନି ବା ଭାଷଣ ଧ୍ୱନି (Speech Sound)—ଧ୍ୱନିର ସାଧାରଣ ଅର୍ଥ ହେଉଛି, ଯେ କୌଣସି ପ୍ରକାରର ଶବ୍ଦ ବା ଆୱାଜ; କିନ୍ତୁ ଭାଷା ବିଜ୍ଞାନରେ ଧ୍ୱନିର ଅର୍ଥ ହେଉଛି ମନୁଷ୍ୟର ବାଗ୍‌ଯନ୍ତ୍ରରୁ ନିଃସୃତ ସାର୍ଥକ ଶବ୍ଦ ବା ଆୱାଜ। ମନୁଷ୍ୟ ନିଜ ବାଗ୍‌ଯନ୍ତ୍ରରୁ ବିବିଧ ଏବଂ ଅଗଣିତ ଧ୍ୱନି ଉତ୍ପନ୍ନ କରିପାରେ। ଏହି ଧ୍ୱନିଗୁଡ଼ିକ ପରସ୍ପରଠାରୁ ଭିନ୍ନ। ଅନେକ ବିଦ୍ୱାନ୍ ମତ ଦିଅନ୍ତି ଯେ ଏକମାତ୍ର ଧ୍ୱନିକୁ ମନୁଷ୍ୟ ଏକାଧିକବାର ଉଚ୍ଚାରଣ କଲେ ପ୍ରତ୍ୟେକ ଥରର ଧ୍ୱନି ପୂର୍ବ ଧ୍ୱନିଠାରୁ କିଛି ନା କିଛି ଭିନ୍ନ ହୋଇଥାଏ। ଏହି ପାର୍ଥକ୍ୟ ଏତେ ସୂକ୍ଷ୍ମ ଯେ ସାଧାରଣ କାନକୁ ଜଣାଯାଏ ନାହିଁ; କିନ୍ତୁ ଏଥିରେ ନିଶ୍ଚୟ ପାର୍ଥକ୍ୟ ରହିଛି। ଉଦାହରଣ ସ୍ୱରୂପ କୌଣସି ବ୍ୟକ୍ତି 'ମଦନ' ଶବ୍ଦକୁବହୁବାର କହିଲେ ପ୍ରତ୍ୟେକ ଥର ତା'ଦ୍ୱାରା ଉଚ୍ଚାରିତ 'ମ', 'ଦ', 'ନ' ଧ୍ୱନିଗୁଡ଼ିକ ସ୍ଥାନ ଏବଂ ପ୍ରଯତ୍ନ ଦୃଷ୍ଟିରୁ କିଛି ନା କିଛି ଭିନ୍ନ ହେବ। ଏହି ଧ୍ୱନିଗୁଡ଼ିକୁ କୁହାଯାଏ ଭାଷଣ ଧ୍ୱନି। ଲିଖନରେ ଯଦ୍ୟପି ଏହାର ସୂକ୍ଷ୍ମ ପାର୍ଥକ୍ୟ ଦେଖାଇବା ସମ୍ଭବ ନୁହେଁ, ତଥାପି ଉଚ୍ଚାରଣରେ ଏହି ପାର୍ଥକ୍ୟ ଉପଲବ୍ଧି କରି ହୁଏ। ଭାଷଣଧ୍ୱନି ଭାଷାରେ ପ୍ରଯୁକ୍ତ ଧ୍ୱନିର ଏକ କ୍ଷୁଦ୍ରତମ ପ୍ରତୀକ ଯାହାର ଉଚ୍ଚାରଣ ଏବଂ ଶ୍ରୋତବ୍ୟତା ଦୃଷ୍ଟିରୁ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ରହିଛି।

(୨) ସଂଧ୍ୱନି, ସଂସ୍ୱନ (Allophone)—କୌଣସି ଭାଷାରେ କୌଣସି ଧ୍ୱନିର ବିଭିନ୍ନ ରୂପକୁ କୁହାଯାଏ ସଧ୍ୱନି। ଡକ୍ଟର ଦାନିଏଲ୍ ଜୋନସ ତଥା ସୁନୀତି

କୁମାର ଚାଟର୍ଜ୍ଜି ଭାଷଧ୍ୱନିକୁ ସଧ୍ୱନି ଭାବରେ ଗ୍ରହଣ କରିଛନ୍ତି । ତେବେ ବାରମ୍ବାର ଉଚ୍ଚାରଣ ଦ୍ୱାରା ଗୋଟିଏ ଶବ୍ଦରେ ଗୋଟିଏ ଧ୍ୱନିର ସୃଷ୍ଟି ହେଉଥିବା ବିଭିନ୍ନ ରୂପକୁ ଭାଷଧ୍ୱନି ଓ ବିଭିନ୍ନ ଶବ୍ଦରେ ଗୋଟିଏ ଧ୍ୱନିର ସ୍ଥାନ-ପ୍ରୟତ୍ନ-ସାପେକ୍ଷ ବିଭିନ୍ନ ରୂପକୁ ସଧ୍ୱନି କୁହାଯାଇପାରେ । ଉଦାହରଣ ସ୍ୱରୂପ—ଜଲ୍‌ଧି, ବାଲ୍‌ଟି, କହ୍ଲାର ଶବ୍ଦ-ଗୁଡ଼ିକ ନିଆଯାଉ । ଏ ତିନୋଟି ଶବ୍ଦରେ ଗୋଟିଏ ଧ୍ୱନି ଲ୍ ରହିଛି; କିନ୍ତୁ ଜଲ୍‌ଧି ଶବ୍ଦରେ 'ଦ' ପ୍ରଭାବରେ 'ଲ୍' ଦନ୍ତ୍ୟ ହୋଇଯାଇଛି, 'ବାଲ୍‌ଟି' ଶବ୍ଦରେ 'ଟ' ପ୍ରଭାବରେ 'ଲ' ଅପେକ୍ଷାକୃତ ମୂର୍ଦ୍ଧନ୍ୟ ହୋଇଯାଇଛି ଏବଂ 'କହ୍ଲାର' ଶବ୍ଦରେ 'ହ' ଧ୍ୱନିର ସମୀପ ହେବାରୁ ଏହା 'ମହାପ୍ରାଣ' ହୋଇଯାଇଛି । ଆଉ ଗୋଟିଏ ଦୃଷ୍ଟାନ୍ତ ନିଆଯାଉ—"ନାଗପୁରରେ ଅଗ୍ନି ଲାଗିବାରୁ ଗୋଟିଏ ଗୁଡ଼ିଆ ଦୋକାନ ଜଳିଗଲା ।" ଏ ବାକ୍ୟରେ ୭ଟି 'ଗ' ରହିଛି । ଲିଖନରେ ସବୁ 'ଗ' ପାଇଁ ଗୋଟିଏ ପ୍ରତୀକ ଥିଲେ ହେଁ ସୂକ୍ଷ୍ମ ଧ୍ୱନିତାତ୍ତ୍ୱିକ ଦୃଷ୍ଟିକୋଣରୁ ଦେଖିଲେ ଏମାନଙ୍କ ଭିତରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ପ୍ରଥମ 'ଗ' ଟି ସ୍ଫୋଟହୀନ ଏବଂ ପରବର୍ତ୍ତୀ 'ପ'ର ପ୍ରଭାବରୁ 'ଅଘୋଷ' ପରି ହୋଇ 'କ' ଧ୍ୱନି ସହିତ ପ୍ରାୟ ସମାନ ହୋଇଯାଇଛି । ଅର୍ଥାତ୍ 'ନାଗପୁର' 'ନାକ୍‌ପୁର' ପରି ଶୁଣାଯାଉଛି । ଦ୍ୱିତୀୟ 'ଗ'ଟି ମଧ୍ୟ ସ୍ଫୋଟହୀନ । ତୃତୀୟ 'ଗ'ଟି 'ଇ' ଧ୍ୱନି ସଂସ୍ପର୍ଶରେ ଆସିବାରୁ କିଛିଦୂର ଆଗକୁ ଚାଲିଯାଇଛି । ଚତୁର୍ଥ ଓ ପଞ୍ଚମ 'ଗ' ଯଥାକ୍ରମେ 'ଓ' ଏବଂ 'ଉ' ର ପ୍ରଭାବ ଯୋଗୁ କିଛିଦୂର ପଛକୁ ଚାଲିଆସିଛି । ଷଷ୍ଠ 'ଗ' ସ୍ୱତନ୍ତ୍ର ରୂପରେ ଉଚ୍ଚାରିତ 'ଗ' ଠାରୁ କିଛି ଆଗେଇ ଯାଇଛି । ଏହା 'ଅ'ର ପ୍ରଭାବ । ପ୍ରତି ଭାଷାରେ ପ୍ରାୟ ସଧ୍ୱନିର ଏହିପରି ବିଭିନ୍ନ ରୂପ ଦେଖିବାକୁ ମିଳେ । ଉପର୍ଯ୍ୟୁକ୍ତ ଉଦାହରଣ ଦୁଇଟିରେ 'ଲ' ଓ 'ଗ'କୁ ଏକ ସାମୂହିକ ନାମ ଦିଆଯାଇଛି ମାତ୍ର, କିନ୍ତୁ ଏହାର ବିଭିନ୍ନ ରୂପକୁ ଲ$^{1}$, ଲ$^{2}$, ଲ$^{3}$, ଓ ଗ$^{1}$, ଗ$^{2}$, ଗ$^{3}$, ଗ$^{4}$, ଗ$^{5}$, ଗ$^{6}$, ଭାବରେ ଲେଖାଯାଇପାରେ । କୌଣସି ଭାଷାରେ ଧ୍ୱନିର ଏହି ବିଭିନ୍ନ ରୂପ ହେଉଛି ସଧ୍ୱନି ବା ସସ୍ୱନ (allophone) ।

(୩) ଧ୍ୱନିଗ୍ରାମ, ଧ୍ୱନିମ, ନମ୍ର ସ୍ୱନଗ୍ରାମ, ଫୋନିମ (Phoneme)—କଥିତ ଭାଷାକୁ ଆଲୋଚନା ବା ଅଧ୍ୟୟନ କଲାବେଳେ ତାହାକୁ ଲିପି ମାଧ୍ୟମରେ ରୂପ ଦେବା ଆବଶ୍ୟକ ହୁଏ । ପ୍ରତ୍ୟେକ ଧ୍ୱନିକୁ ରୂପ ଦେବା ପାଇଁ ସ୍ୱତନ୍ତ୍ର ସଙ୍କେତ ବା ଲିପି ବ୍ୟବହାର କରାଯାଏ । ଏହି ସ୍ୱତନ୍ତ୍ର ସଙ୍କେତ ହେଉଛି ଧ୍ୱନିଗ୍ରାମ ବା ଫୋନିମ୍ । ଏକାଧିକ ସଧ୍ୱନି ଏକ ଧ୍ୱନିଗ୍ରାମର ଅନ୍ତର୍ଭୁକ୍ତ ହୋଇପାରେ । ଧ୍ୱନିଗ୍ରାମଠାରୁ ସଧ୍ୱନିର ସଂଖ୍ୟା ବହୁଗୁଣରେ ବେଶି । ପ୍ରତ୍ୟେକ ସଧ୍ୱନି ପାଇଁ ଏକ ଏକ ସଙ୍କେତ ବ୍ୟବହାର କରାଗଲେ ଅକ୍ଷର ସଂଖ୍ୟା ଢେର୍ ବଢ଼ିଯିବ । ତେଣୁ କମ୍ ଅକ୍ଷରରେ ଲେଖାର ସୁବିଧା ପାଇଁ ସମଜାତୀୟ ସଧ୍ୱନିମାନଙ୍କ ପାଇଁ ଏକ ଧ୍ୱନିଗ୍ରାମ ବ୍ୟବହାର କରାଯାଏ । ଉଦାହରଣ ସ୍ୱରୂପ, ସଧ୍ୱନି ଲ$^{1}$, ଲ$^{2}$, ଲ$^{3}$, ପାଇଁ ଗୋଟିଏ ଧ୍ୱନିଗ୍ରାମ 'ଲ'

ଲେଖାଯାଏ । ଧ୍ୱନିବିଜ୍ଞାନରେ ସଧ୍ୱନିକୁ [ ] ଏହି ଚିହ୍ନଦ୍ୱାରା ଏବଂ ଧ୍ୱନିଗ୍ରାମକୁ // ଏହି ଚିହ୍ନ ଦ୍ୱାରା ଚିହ୍ନିତ କରାଯାଏ । ପ୍ରଥମଟି ସଧ୍ୱନି ଚିହ୍ନ ବା ଧ୍ୱନିର ଧ୍ୱନ୍ୟାତ୍ମକ (Phonetic) ଚିହ୍ନ ଓ ଦ୍ୱିତୀୟଟି ଧ୍ୱନିଗ୍ରାମୀୟ (Phonemic) ଚିହ୍ନ ।

ଜଳ୍ଦି, ଚାଲିଚି, କହ୍ଲାର ତିନୋଟି ଶବ୍ଦରେ (ଲ$^1$), (ଲ$^2$), (ଲ$^3$), ସଧ୍ୱନି ଓ ଲ ଧ୍ୱନିଗ୍ରାମ । ସେହିପରି ନାଗପୁର, ଅଗ୍ନି, ଲଗି, ଗୋଟିଏ, ଗୁଡ଼ିଆ, ଗଳା ଏହି ଶବ୍ଦମାନଙ୍କରେ (ଗ$^1$), (ଗ$^2$), (ଗ$^3$) (ଗ$^4$), (ଗ$^5$), (ଗ$^6$) ସଧ୍ୱନି ଓ ଗ ଧ୍ୱନିଗ୍ରାମ ।

ସଂସ୍କୃତ ଭାଷାରେ ଫୋନିମ୍ ପାଇଁ 'ବର୍ଣ୍ଣ' ଏବଂ 'ଅକ୍ଷର' ଶବ୍ଦର ପ୍ରୟୋଗ ରହିଛି, ମାତ୍ର ସଂସ୍କୃତରେ ବର୍ଣ୍ଣ ଓ ଅକ୍ଷର ବହୁଅର୍ଥରେ ବ୍ୟବହୃତ ହେଉଥିବାରୁ ଫୋନିମ୍ ପାଇଁ ଧ୍ୱନିଗ୍ରାମ, ଧ୍ୱନିଶ୍ରେଣୀ, ସ୍ୱନିମ, ସ୍ୱନିଗ୍ରାମ ପ୍ରଭୃତି ଶବ୍ଦ ବ୍ୟବହାର କରାଯାଇପାରେ ।

ଗୋଟିଏ ଧ୍ୱନିର ସଧ୍ୱନି ପରସ୍ପରଠାରୁ ଭିନ୍ନ ହେଲେହେଁ ଏମାନଙ୍କର ଗଠନ ପଦ୍ଧତି ଏକପ୍ରକାର । ଉଦାହରଣ ସ୍ୱରୂପ କାମ, କରଣ, କୁଶଳ ପ୍ରଭୃତି ଶବ୍ଦରେ ଆମେ ଯେଉଁ 'କ' ବ୍ୟବହାର କରୁଛୁ ସେମାନେ ପରସ୍ପରଠାରୁ ଭିନ୍ନ, କାରଣ ସେମାନଙ୍କର ଉଚ୍ଚାରଣ ସ୍ଥାନରେ ସାମାନ୍ୟ ହେଉ ପଛେ ପ୍ରଭେଦ ଅଛି । କିନ୍ତୁ ଏ ଭିନ୍ନତା ସତ୍ତ୍ୱେ ସେଗୁଡ଼ିକ ସମସ୍ତେ ଅଘୋଷ, ଅଳ୍ପପ୍ରାଣ, କଣ୍ଠ୍ୟ ସ୍ପର୍ଶଧ୍ୱନିର ଅନ୍ତର୍ଭୁକ୍ତ । ଉପର୍ଯ୍ୟୁକ୍ତ ଶବ୍ଦମାନଙ୍କରେ ସଧ୍ୱନିମାନଙ୍କର ସ୍ଥାନ ପରିବର୍ତ୍ତନ କରିଦେଲେ ଅର୍ଥାତ୍ [କ$^1$] ସ୍ଥାନରେ [କ$^2$] ବା [କ$^3$], [କ$^2$] ସ୍ଥାନରେ [କ$^1$] ବା [କ$^3$] [କ$^3$] ସ୍ଥାନରେ [କ$^1$] ବା [କ$^2$] ବ୍ୟବହାର କରାଗଲେ ଉଚ୍ଚାରଣ କାନକୁ ଅଡ଼ୁଆ ଅଡ଼ୁଆ ଶୁଣାଯିବ; କିନ୍ତୁ ଅର୍ଥରେ କୌଣସି ପରିବର୍ତ୍ତନ ଘଟିବ ନାହିଁ । ଧ୍ୱନିଗ୍ରାମ (Phoneme)କୁ ଗୋଟିଏ ବଂଶ ବା ପରିବାରରୂପେ ଗ୍ରହଣ କରାଗଲେ ସଧ୍ୱନି (Allophone)କୁ ଏକ ବ୍ୟକ୍ତି ବା ସଦସ୍ୟ ରୂପେ ଗ୍ରହଣ କରାଯିବ ।

ଧ୍ୱନିଗ୍ରାମ କୌଣସି ଐକିକ ବସ୍ତୁ ନୁହେଁ, ଏହା ଏକ ସାମୂହିକ ରୂପ ବା ଶ୍ରେଣୀ । ଗୋଟିଏ ଧ୍ୱନିଗ୍ରାମର ଏକ କିମ୍ବା ଏକାଧିକ ସଧ୍ୱନି ରହିପାରେ । ସଧ୍ୱନି ଦୁଇ ଶବ୍ଦ ମଧ୍ୟରେ ଅର୍ଥଭେଦ ଦେଖାଇପାରେ ନାହିଁ ଅର୍ଥାତ୍ ସଧ୍ୱନିର ପରି- ବର୍ତ୍ତନରେ ଅର୍ଥର ପରିବର୍ତ୍ତନ ଘଟେ ନାହିଁ, କିନ୍ତୁ ଧ୍ୱନିଗ୍ରାମର ପରିବର୍ତ୍ତନରେ ଶବ୍ଦଟିର ପରିବର୍ତ୍ତନ ହୋଇଯାଏ । ଉଦାହରଣ ସ୍ୱରୂପ 'କରଣ' ଶବ୍ଦରେ 'କ' ସ୍ଥାନରେ ସଧ୍ୱନି ଦୃଷ୍ଟିରୁ ଯେକୌଣସି 'କ୍' ରଖାଯାଇପାରେ, ଏହାଦ୍ୱାରା 'କରଣ' ଶବ୍ଦର ଅର୍ଥରେ କୌଣସି ପରିବର୍ତ୍ତନ ଘଟିବ ନାହିଁ । ମାତ୍ର 'କ୍' ଧ୍ୱନିଗ୍ରାମ ସ୍ଥାନରେ

ଯଦି 'ବ' ଧ୍ୱନିଗ୍ରାମ ରକ୍ଷିତହୋଇଯାଏ ତେବେ ଶବ୍ଦଟି ହୋଇଯିବ 'ବରଣ' ଓ ଅର୍ଥରେ ଦେଖାଦେବ ବିରାଟ ପରିବର୍ତ୍ତନ ।

ଧ୍ୱନିବିଜ୍ଞାନର ଯେଉଁ ବିଭାଗରେ ସଧ୍ୱନିର ଅଧ୍ୟୟନ କରାଯାଏ, ତାହାକୁ କୁହାଯାଏ ଫୋନେଟିକ୍ସ ଓ ଯହିଁରେ ଧ୍ୱନିଗ୍ରାମର ଅଧ୍ୟୟନ କରାଯାଏ ତାହାକୁ କୁହାଯାଏ ଫୋନେମିକ୍ସ । ଫୋନେଟିକ୍ସରେ ଯେଉଁ ଧ୍ୱନି-ଉପାଦାନ ସଂଗୃହୀତ ହୁଏ, ଫୋନେମିକ୍ସରେ ସେଗୁଡ଼ିକର ବିଶ୍ଳେଷଣ କରାଯାଇ ଯଥାର୍ଥ ଧ୍ୱନିମାନଙ୍କର ଆବିଷ୍କାର କରାଯାଏ । ଏହି ସଂଗୃହୀତ ଉପାଦାନ ଅଶୁଦ୍ଧ ହୋଇଗଲେ ଫୋନେମିକ୍ସର ସିଦ୍ଧାନ୍ତ ଅଶୁଦ୍ଧ ହୋଇଯାଏ ।

(୪) ଅକ୍ଷର (Syllable)—'ଅକ୍ଷର' ଶବ୍ଦ ସଂସ୍କୃତରେ ବହୁ ଅର୍ଥରେ ବ୍ୟବହୃତ ହୋଇଅଛି । ଏହାର ବହୁବିଧ ବ୍ୟୁତ୍ପତ୍ତି ମଧ୍ୟ ନିର୍ଣ୍ଣୟ କରାଯାଇଛି । ତହିଁରୁ ଅଧିକ ସଙ୍ଗତ ବ୍ୟୁତ୍ପତ୍ତି ହେଉଛି ଯାହା କ୍ଷର (କ୍ଷୟଶୀଳ) ନୁହେଁ ଅର୍ଥାତ୍ ଅକ୍ଷୁଣ୍ଣ, ଅକ୍ଷୟ । ପରବର୍ତ୍ତୀ କାଳରେ ଏହାର ଅର୍ଥ ହେଲା ଅଖଣ୍ଡନୀୟ । ପ୍ରଥମେ ଭାଷାକୁ ଅଖଣ୍ଡନୀୟ ବୋଲି କଳ୍ପନା କରାଯାଉଥିବାରୁ 'ଭାଷା' ବା 'ବାକ୍' ଲାଗି 'ଅକ୍ଷର' ଶବ୍ଦ ପ୍ରଯୁକ୍ତ ହୋଇଥିଲା । ଋଗ୍‌ବେଦରେ 'ଅକ୍ଷର'କୁ 'ବାକ୍' ଭାବରେ ଗ୍ରହଣ କରାଯାଇଛି । ତା'ପରେ ଏହାର ଅର୍ଥ ହୋଇଛି ଶବ୍ଦ (ଋଗ୍‌ବେଦର ପ୍ରଥମ ମଣ୍ଡଳ) ଓ ବର୍ଣ୍ଣ (Syllable) । ଋଗ୍‌ବେଦ, ଐତରେୟ, ଆରଣ୍ୟକ, କେତେକ ପ୍ରାତିଶାଖ୍ୟ, ଅନେକ ଶିକ୍ଷାଗ୍ରନ୍ଥ, ମନୁସ୍ମୃତି ତଥା ଗୀତାରେ ଏହି ଅର୍ଥରେ ଅକ୍ଷର ଶବ୍ଦ ବ୍ୟବହୃତ ପରେ ଏହା ବର୍ଣ୍ଣର ପ୍ରତୀକ (ଲିପି ଚିହ୍ନ)କୁ ବୁଝାଇଲା । 'ଅକ୍ଷର' କେତେକ ସ୍ଥଳରେ 'ସ୍ୱର' ଧ୍ୱନି ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଅଛି, ଯଥା—ସମାନାକ୍ଷର (=ମୂଳସ୍ୱର ବା ସାମାନ୍ୟ ସ୍ୱର), ସନ୍ଧ୍ୟକ୍ଷର (ସଂଯୁକ୍ତସ୍ୱର) ଇତ୍ୟାଦି । ଋଗ୍‌ବେଦ ପ୍ରାତିଶାଖ୍ୟ, ତୈତ୍ତିରୀୟ ପ୍ରାତିଶାଖ୍ୟ ତଥା ଚତୁରାଧ୍ୟାୟିକା ପ୍ରଭୃତିରେ ଅକ୍ଷର ଏହି ଅର୍ଥରେ ବ୍ୟବହୃତ । ଧ୍ୱନିବିଜ୍ଞାନରେ syllable ଅର୍ଥରେ ହିଁ ଅକ୍ଷରର ବ୍ୟବହାର ହୋଇଥାଏ । ଇଂରାଜୀ syllable ର ମୂଳ ହେଉଛି ଗ୍ରୀକ୍ syllable, ଯାହାର ଅର୍ଥ 'ଏକତ୍ର ଅବରୁଦ୍ଧ' (syn = ସାଥିରେ, ଏକତ୍ର, lambanein = ରଖିବା, ନେବା, ଅବରୁଦ୍ଧ କରିବା ) ।

(୫) ସୁର ବା ସ୍ୱର (Pitch)—ସୁର ବା ସ୍ୱର ସ୍ୱରତନ୍ତ୍ରୀ ସହିତ ସମ୍ବନ୍ଧାନ୍ୱିତ । ଯେପରି ବୀଣା, ସିତାର ପ୍ରଭୃତି ବାଦ୍ୟମାନଙ୍କର ତାରଗୁଡ଼ିକୁ ଶିଥିଳ ବା ଶକ୍ତ କରି ନୀଚ ବା ଉଚ୍ଚ ସ୍ୱରର ସୃଷ୍ଟି କରାଯାଇପାରେ ସେହିପରି ସ୍ୱରତନ୍ତ୍ରୀଗୁଡ଼ିକୁ ଶିଥିଳ ବା ଦୃଢ଼ କରି ନୀଚ ବା ଉଚ୍ଚ ସ୍ୱରର ସୃଷ୍ଟି କରାଯାଇପାରେ । ସ୍ୱରତନ୍ତ୍ରୀରେ କମ୍ପନ ଅଧିକ ଜୋରରେ ହେଲେ ଧ୍ୱନି ଉଚ୍ଚ ସ୍ୱରରେ ଓ କମ୍ପନ ଧୀର ହେଲେ ଧ୍ୱନି

ନୀଚ ସ୍ୱରରେ ଉଚ୍ଚାରିତ ହୁଏ । ସୁର ସ୍ୱରତନ୍ତ୍ରୀମାନଙ୍କର ପ୍ରତି ସେକେଣ୍ଡରେ କମ୍ପନବୃତ୍ତି (frequency of vibration) ଉପରେ ନିର୍ଭର କରେ । ସୁର କେବଳ ଘୋଷ ଧ୍ୱନିମାନଙ୍କରେ ଦେଖାଯାଏ । ଅଘୋଷଧ୍ୱନି ସହିତ ଏହାର କୌଣସି ସମ୍ବନ୍ଧ ନାହିଁ । ଉଚ୍ଚତା ନୀଚତା ଦୃଷ୍ଟିରୁ ବା ଆରୋହଣ ଅବରୋହଣ ଦୃଷ୍ଟିରୁ ସୁରକୁ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯଥା—ଉଦାତ୍ତ ( high of acuted ), ଅନୁଦାତ୍ତ ( low or unacuted ) ଓ ସ୍ୱରିତ (mid or circumflex) । ସୁର ବୈଦିକ ଭାଷାର ଏକ ବଡ଼ ବିଶେଷତ୍ୱ । ଯେଉଁ ସ୍ୱରଧ୍ୱନିରେ ପ୍ରଧାନ ସୁରପାତ ହୁଏ ତାହାର ନାମ ଉଦାତ୍ତସ୍ୱର, ତହିଁର ଅବ୍ୟବହିତ ପୂର୍ବବର୍ତ୍ତୀ ଅପ୍ରଧାନ ସୁରକୁ କୁହାଯାଏ ଅନୁଦାତ୍ତ ସ୍ୱର । ପ୍ରଧାନ ସୁରର ଅବ୍ୟବହିତ ପରବର୍ତ୍ତୀ ସ୍ୱରଧ୍ୱନିରେ ଉଚ୍ଚ ନିମ୍ନଗାମୀ ସୁରକୁ କୁହାଯାଏ ସ୍ୱରିତ । ସ୍ୱରିତ ସୁର ଅକ୍ଷର ଉପରେ କମ୍ପନ୍ତ ଉଠିଯାଇ ପୁଣି ନଇଁଯାଏ । ଉଦାହରଣ ସ୍ୱରୂପ 'ଅଲବୁ' । 'ଲ' ପାଖରେ ଦେଖାଦିଏ ଉଦାତ୍ତସ୍ୱର, 'ଅ' ଉପରେ ଅନୁଦାତ୍ତସ୍ୱର ଓ 'ବୁ' ଉପରେ ସ୍ୱରିତ ସୁର । ଫଳରେ 'ଅ' ଅପ୍ରଧାନ ହୋଇ ଲୋପପାଏ । 'ବୁ' କ୍ରମେ କ୍ରମେ କ୍ଷୀଣ ଓ ହ୍ରସ୍ୱ ହୋଇ ହ୍ରସ୍ୱ 'ଉ'ରେ ପରିଣତ ହୁଏ । ସେହିପରି 'ଅଭ୍ୟନ୍ତର' ଶବ୍ଦରେ 'ଅ' ଉପରେ ରହିଛି ଅନୁଦାତ୍ତସ୍ୱର, 'ଭ୍ୟ' ଉପରେ ଉଦାତ୍ତସ୍ୱର ଓ 'ନ୍ତ' ଉପରେ ସ୍ୱରିତ ସୁର । 'ନ୍ତ' ଉପରେ ସ୍ୱରିତ ସୁରପାତ ହେବାରୁ ଏହା 'ତ' ରେ ପରିଣତ ହେଲା । ଉଦାତ୍ତ, ଅନୁଦାତ୍ତ ଓ ସ୍ୱରିତ ସୁର ଭିତ୍ତିରେ ଅନେକ ସମୟରେ ଶବ୍ଦର ଅର୍ଥ ମଧ୍ୟ ବଦଳିଯାଏ । ଦୃଷ୍ଟାନ୍ତ ସ୍ୱରୂପ—'ବ୍ରହ୍ମନ୍' ଶବ୍ଦରେ ଆଦ୍ୟସ୍ୱର ଉଦାତ୍ତ ହେଲେ ଶବ୍ଦଟି କ୍ଲୀବଲିଙ୍ଗ ବିଶିଷ୍ଟ ହୋଇଯାଏ ଓ ଏହାର ଅର୍ଥ ହୁଏ ସ୍ତୋତ୍ର ବା ବେଦ । କିନ୍ତୁ 'ହ୍ମ' ଉପରେ ଉଦାତ୍ତ ସୁରପାତ ହେଲେ ଶବ୍ଦଟି ହୁଏ ପୁଂଲିଙ୍ଗ ଏବଂ ଅର୍ଥ ହୁଏ ସ୍ରଷ୍ଟା । ସେହିପରି 'ରାଜପୁତ୍ର' ଶବ୍ଦରେ ଆଦ୍ୟସ୍ୱର ଉଦାତ୍ତ ହେଲେ ଏହାର ଅର୍ଥ ହେବ 'ପୁତ୍ର ଯାହାର ରାଜା ସେ' (ବହୁବ୍ରୀହି ସମାସ); କିନ୍ତୁ ଅନ୍ତିମ ସୁରଟି ଉଦାତ୍ତ ହେଲେ ଅର୍ଥ ହେବ ରାଜାଙ୍କର ପୁତ୍ର (ଷଷ୍ଠୀ ତତ୍ପୁରୁଷ) ।

(୬) ତାନ (Tone)—ଯେଉଁ ସୁର ଯୋଗୁ ଶବ୍ଦର ଅର୍ଥ ବଦଳିଯାଏ ତାହାକୁ ତାନ କହନ୍ତି । ଏହି ବିଶେଷ ପ୍ରକାରର ଧ୍ୱନି ବିଶ୍ୱର କେତୋଟି ଭାଷାରେ ମିଳିଥାଏ, ଯାହାର ଆଧାର ଉପରେ 'ତାନ ଭାଷା'ମାନଙ୍କର ସୃଷ୍ଟି । ଅଫ୍ରିକାର ଏଫିକ୍, ଇବୋ, କେପ୍‌ଲେ, ଚୁଅନା, ଯାଉଣ୍ଡେ, ସୁଡ଼ାନିକ, ବାଣ୍ଟୁ, ହନଟା, ବୁଶ୍‌ମ୍ୟାନ୍ ହୁଅଲ, ଜୁଲୁ, ଯୋରୁଓ୍ୱା, ଦକ୍ଷିଣ-ଗୁଇନା ପଶ୍ଚିମାରର ଚୀନ, ବର୍ମା, ଇଣ୍ଡୋଚୀନ ତଥା ଶ୍ୟାମରେ ପ୍ରଚଳିତ ଅନେକ ଭାଷା ହେଉଛି ତାନ ଭାଷା ।

(୭) ସୁର-ଲହର (Intunation)—ଶବ୍ଦ ବା ବାକ୍ୟରେ ସୁରମାନଙ୍କର ଆରୋହ-ଅବରୋହର କ୍ରମକୁ କୁହାଯାଏ ସୁର-ଲହର । 'ସୁର' କେବଳ ଘୋଷଧ୍ୱନିରେ

ସମ୍ଭବ ହୋଇଥାଏ, କିନ୍ତୁ ଗୀତ ଗାଇଲା ବେଳେ ସୁର-ଲହରରେ ଅଘୋଷଧ୍ୱନିର ମଧ୍ୟ ପ୍ରୟୋଗ ହୋଇପାରିବ । ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଶବ୍ଦ-ସୁର-ଲହର ଓ ବାକ୍ୟ ସୁର-ଲହର । ତାନ ଭାଷାମାନଙ୍କରେ ଶବ୍ଦ-ସୁର-ଲହର ଓ ବାକ୍ୟ-ସୁର-ଲହର ଉଭୟ ସାର୍ଥକ ହୋଇପାରନ୍ତି; କିନ୍ତୁ ଅତାନ ବା ଅନ୍ୟ ଭାଷା-ମାନଙ୍କରେ କେବଳ ବାକ୍ୟ-ସୁର-ଲହରକୁ ହିଁ ପ୍ରୟୋଗ କରାଯାଇପାରେ । ସୁର-ଲହରର ମୁଖ୍ୟତଃ ଦୁଇଟି କାର୍ଯ୍ୟ ରହିଛି—(କ) ତାନ ଏବଂ ଅତାନ ଉଭୟ ପ୍ରକାରର ଭାଷାରେ ସୁର-ଲହର ଭାବୁକତା, ଦୁଃଖ, ବିବଶତା, କ୍ରୋଧ, ସହାନୁଭୂତି, ଘୃଣା, ପ୍ରଭୃତି ମାନସିକ ଅବସ୍ଥାର ସୂଚନା ଦିଏ । (ଖ) ସୁର-ଲହର ଅର୍ଥରେ ଭିନ୍ନତା ଆଣିଦିଏ ।



## ● ସପ୍ତମ ପରିଚ୍ଛେଦ ●

# ଶବ୍ଦ ବିଜ୍ଞାନ

ଶବ୍ଦ ବିଜ୍ଞାନ (Wordology)—ଭାଷାବିଜ୍ଞାନର ପାରମ୍ପରିକ ଭାବରେ ଚାରିଗୋଟି ଶାଖା ରହିଛି, ଯଥା—ଧ୍ୱନିବିଜ୍ଞାନ (phonetics), ରୂପବିଜ୍ଞାନ (Morphology), ଅର୍ଥବିଜ୍ଞାନ (Semantics) ଓ ବାକ୍ୟବିଜ୍ଞାନ (Syntax)। କିନ୍ତୁ ଏ ଚାରିଗୋଟି ଶାଖାରେ ବିମୃଷ୍ଟ ନ ହୋଇଥିବା ବହୁ ଭାଷାତାତ୍ତ୍ୱିକ ବିଷୟର ବିବେଚନ ପାଇଁ ଶବ୍ଦବିଜ୍ଞାନ (Wordology) ଶୀର୍ଷକ ଏକ ନୂତନ ଶାଖାର କଳ୍ପନା କରାଯାଇପାରେ। ରୂପ ବା ପଦର ଆଧାର ହେଉଛି ଶବ୍ଦ। ଶବ୍ଦ ସମ୍ବନ୍ଧରେ ଜ୍ଞାନ ଅର୍ଜନ ବିନା ରୂପ ସମ୍ବନ୍ଧରେ ଅଧ୍ୟୟନ ପୂର୍ଣ୍ଣତାଲାଭ କରିପାରିବ ନାହିଁ। ଶବ୍ଦ ବିଜ୍ଞାନର ଶବ୍ଦମାନଙ୍କର ବର୍ଗୀକରଣ, ଶବ୍ଦଭଣ୍ଡାର, କୋଷବିଜ୍ଞାନ, ବ୍ୟୁତ୍ପତ୍ତି, ଶବ୍ଦ ପରିବର୍ତ୍ତନ ପ୍ରଭୃତି ସମ୍ପର୍କରେ ଆଲୋଚନା କରାଯାଇଥାଏ।

ଉଚ୍ଚାରଣ ଦୃଷ୍ଟିରୁ ଭାଷାର ପ୍ରଥମ ଆଧାର ହେଉଛି ଧ୍ୱନି ଓ ଅର୍ଥ ଦୃଷ୍ଟିରୁ ପ୍ରଥମ ଆଧାର ହେଉଛି ଶବ୍ଦ। ଧ୍ୱନି ଅର୍ଥଯୁକ୍ତ ହୋଇପାରେ, ନହୋଇପାରେ। ଉଦାହରଣ ସ୍ୱରୂପ କ୍, ଚ୍ ଆଦି ଧ୍ୱନି ଅର୍ଥହୀନ; କିନ୍ତୁ 'ଅ', 'ଆ', ଧ୍ୱନି ଅର୍ଥଯୁକ୍ତ ହୋଇପାରେ। ମାତ୍ର ଧ୍ୱନିମାନଙ୍କର ସମାହାରରେ ଗଠିତ ଶବ୍ଦ ଅର୍ଥ ପ୍ରକାଶ କରିବା-ପାଇଁ ସମର୍ଥ ହୋଇଥାଏ। ଯଥା—କ (କ୍ + ଅ), କା (କ୍ + ଆ), କି (କ୍ + ଇ), ଚ (ଚ୍ + ଅ), କାଇ (କ୍ + ଆ + ଇ), କାଚଇ (କ୍ + ଆ + ଚ୍ + ଅ + ଇ) ପ୍ରଭୃତି ଶବ୍ଦ ଅର୍ଥ ପ୍ରକାଶ କରିବା ପାଇଁ ସମର୍ଥ। ତେଣୁ ଶବ୍ଦ ହେଉଛି ଅର୍ଥ ସ୍ତରରେ ଭାଷାର ପ୍ରଥମ ପ୍ରକାଶ। ଏହା ଧ୍ୱନିସ୍ତରରେ ଭାଷାର ପ୍ରଥମ ପ୍ରକାଶ ନୁହେଁ, କାରଣ ଏଥିରେ ଏକ ବା ଏକାଧିକ ଧ୍ୱନି ରହିପାରେ। ଦ୍ୱିତୀୟତଃ ଶବ୍ଦ ଅର୍ଥ ପ୍ରକାଶ କରିବାଲାଗି ତାହାର ସହାୟତାକୁ ଅପେକ୍ଷା କରେ ନାହିଁ, ସ୍ୱୟଂ ସ୍ୱତନ୍ତ୍ର ଭାବରେ ଅର୍ଥ ପ୍ରକାଶ କରିପାରେ। ଉଦାହରଣ ସ୍ୱରୂପ ଅ (ଉପସର୍ଗ) ସ୍ୱତନ୍ତ୍ର ଭାବରେ ତାହାର ଅର୍ଥ ( 'ନାହିଁ' ) ପ୍ରକାଶ କରିପାରେ ନାହିଁ, ସେହିପରି 'ତା' (ପ୍ରତ୍ୟୟ) ମଧ୍ୟ ତାହାର ଅର୍ଥ (ଭାବ, ଗୁଣ) ସ୍ୱତନ୍ତ୍ର ଭାବରେ ପ୍ରକାଶ କରିବାକୁ ଅସମର୍ଥ। ତେଣୁ 'ଅ' (ଉପସର୍ଗ) ଓ 'ତା' (ପ୍ରତ୍ୟୟ) ଶବ୍ଦ

ନୁହେଁ । କିନ୍ତୁ ଅମ୍ଳ, ଅରୁଣ, ତାପ ପ୍ରଭୃତି କୌଣସି ସହାୟତା ବିନା ମଧ୍ୟ ଏକ ଅର୍ଥ ପ୍ରକାଶ କରିବାକୁ ସମର୍ଥ । ତେଣୁ ଏଗୁଡ଼ିକ ଶବ୍ଦ ।

## ଶବ୍ଦର ବର୍ଗୀକରଣ—

ବ୍ୟାକରଣରେ କାର୍ଯ୍ୟକାରିତା ଦୃଷ୍ଟିରୁ ଶବ୍ଦମାନଙ୍କର ବିଭିନ୍ନ ବର୍ଗୀକରଣ କରାଯାଇପାରେ, ଉଦାହରଣ ସ୍ୱରୂପ ଇଂରାଜୀ ଭାଷାର ଶବ୍ଦଗୁଡ଼ିକୁ ୮ଟି ବର୍ଗ (Parts of Speech)ରେ ବିଭକ୍ତ କରାଯାଇଛି, ଯଥା—Noun, Fronoun, Adjective, Verb, Adverb, Prepcsition, Conjunction, Interjection ଓ ସଂସ୍କୃତ ଭାଷାରେ ସେହିପରି ଶବ୍ଦକୁ ନାମ, ଆଖ୍ୟାତ, ଉପସର୍ଗ, ନିପାତ ଏହିପରି ଚାରିଭାଗରେ ଅଥବା ସୁବନ୍ତ, ତିଙନ୍ତ ଏବଂ ଅବ୍ୟୟ ଏହିପରି ତିନି-ଭାଗରେ ବିଭକ୍ତ କରାଯାଇଛି ।

କାର୍ଯ୍ୟକାରିତାକୁ ଗୁରୁତ୍ୱ ଦେଲେ ଶବ୍ଦକୁ ମୁଖ୍ୟତଃ ଦୁଇବର୍ଗରେ ବିଭକ୍ତ କରାଯାଇପାରେ—ରଚନାଭିତ୍ତିକ ଓ ଇତିହାସଭିତ୍ତିକ । ରଚନା ଦୃଷ୍ଟିରୁ ଶବ୍ଦ ରୂଢ଼, ଯୌଗିକ ଓ ଯୋଗରୂଢ଼ ଏହିପରି ତିନିଭାଗରେ ବିଭକ୍ତ । ନିର୍ଦ୍ଦିଷ୍ଟ ଓ ଅପରିବର୍ତ୍ତିତ ଅର୍ଥବିଶିଷ୍ଟ ଶବ୍ଦକୁ ରୂଢ଼ଶବ୍ଦ କୁହାଯାଏ; ଯଥା ମନ, ଧନ, ଜନ । ଯୌଗିକ ଶବ୍ଦରେ ଦୁଇଟି ଶବ୍ଦର ମିଳନ ଘଟିଥାଏ, ଯଥା--ଯୋଗଭ୍ରଷ୍ଟ ଯୋଗରୂଢ଼ ଜନ୍ମ, ଶୁଦ୍ରମୁନି, ଶ୍ରେୟସ ଇତ୍ୟାଦି । ଯୋଗରୂଢ଼ ଶବ୍ଦରେ ଦୁଇଟି ଶବ୍ଦର ମିଳନ ଘଟିଥାଏ; କିନ୍ତୁ ଏ ମିଳିତ ଶବ୍ଦ ବିଶେଷ ଅର୍ଥରେ ସଙ୍କୁଚିତ ହୋଇଯାଇଥାଏ, ଯଥା—ପଙ୍କଜ, ମୂଳ ଅର୍ଥ ପଙ୍କରୁ ଜାତ ପଦାର୍ଥ ହେଲେ ହେଁ ପଙ୍କରୁ ଜାତ ଅନ୍ୟ କୌଣସି ପଦାର୍ଥକୁ ନ ବୁଝାଇ ଏହା କେବଳ 'ପଦ୍ମପୁଷ୍ପ'କୁ ବୁଝାଉଛି ।

ଇତିହାସ ଭିତ୍ତିରେ ଶବ୍ଦକୁ ଦୁଇଭାଗରେ ବର୍ଗୀକୃତ କରାଯାଇପାରେ—କାଳ-ଆଧାରିତ ଓ ଉତ୍ସ-ଆଧାରିତ । କାଳଦୃଷ୍ଟିରୁ ଶବ୍ଦକୁ ପ୍ରାଚୀନ ଯୁଗୀୟ, ମଧ୍ୟ-ଯୁଗୀୟ ଓ ଆଧୁନିକ ଯୁଗୀୟ ଇତ୍ୟାଦି ଆଖ୍ୟା ଦିଆଯାଇପାରେ । ଉତ୍ସଦୃଷ୍ଟିରୁ ଶବ୍ଦ ଚତୁର୍ବିଧ, ଯଥା—ତତ୍ସମ, ତଦ୍ଭବ, ଦେଶଜ ଓ ବିଦେଶୀ । ଭାରତୀୟ ଆର୍ଯ୍ୟଭାଷାର ବିଭିନ୍ନ ଶାଖାକୁ ଆଖିଆଗରେ ରଖି ଏହାର ବିଚାର କରାଯାଇପାରେ । (କ) ତତ୍ସମ—ସଂସ୍କୃତ ଭାଷାର ଯେଉଁ ଶବ୍ଦ ଶୁଦ୍ଧ ବା ଅବିକୃତ ଭାବରେ କୌଣସି ଭାରତୀୟ ଭାଷାରେ ବ୍ୟବହୃତ ତାହାକୁ କୁହାଯାଏ ତତ୍ସମ, ଯଥା—ଅକ୍ଷମ, ଉଚ୍ଛ୍ୱାସ, କର୍ମୀ, ଦାହକ, ନିକେତନ, ପରଜସ୍ଥ, ଦର୍ପଣ ଇତ୍ୟାଦି । (ଖ) ତଦ୍ଭବ - ସଂସ୍କୃତର ଶୁଦ୍ଧ ଶବ୍ଦରୁ ସୃଷ୍ଟି ରୂପାନ୍ତରିତ ବା ବିକୃତ ଶବ୍ଦକୁ କୁହାଯାଏ ତଦ୍ଭବ । ଏଥିରୁ ଅନେକ ପ୍ରାକୃତ ଶବ୍ଦର ଅବିକଳ ରୂପ ବା ପ୍ରାକୃତ ଶବ୍ଦର ବିକଶିତ ରୂପ, ଯଥା—କୋଇଲି, କହ୍ନାଇ, ଗଣ୍ଠି, ଘଇତା, ପଣ୍ଡା, ବେଣ୍ଟ, ଦନ୍ତ, ବିଜେ, ମୁଦ, ରୂପା, ଶକଟ, ଶଗଡ଼

ଇତ୍ୟାଦି । (ଗ) ଦେଶଜ—ଯେଉଁ ଶବ୍ଦଗୁଡ଼ିକର ସଂସ୍କୃତ ମୂଳ ବା ବିଦେଶୀ ମୂଳ ନିର୍ଣ୍ଣୟ କରାଯାଇ ପାରେନାହିଁ, ତାହାକୁ ଦେଶଜ ଶବ୍ଦର ପର୍ଯ୍ୟାୟଭୁକ୍ତ କରାଯାଇଥାଏ । ଓଡ଼ିଆ ଭାଷାରେ ମୁଖ୍ୟତଃ ଆଦିବାସୀ ଭାଷାର ଶବ୍ଦାବଳୀ ଓ କେବେ କେବେ ଦ୍ରାବିଡ଼ ଭାଷାର ଶବ୍ଦାବଳୀକୁ ଦେଶଜ ଶବ୍ଦ ରୂପେ ଗ୍ରହଣ କରାଯାଇଥାଏ । ଯଥା—ଚରୁଗୁଣୀ, ଓଳି, କୋଡ଼ିଏ, ଟୋକେଇ, ଢେଙ୍କା, ଗୋଧି, ଅଡ଼ା, ବାଙ୍ଗରା, ପୋକ, ଲେପା, ଡାହି, ଡଙ୍ଗା, ଝିଙ୍କି, ଝାମ୍ପି, ଝଟା, କୁଣ୍ଡା, ଖଡ଼ିକା, ଖୋଳ, ଖାଲ, ଟାଙ୍ଗିଆ, ବାଦୁଡ଼ି ଇତ୍ୟାଦି । (ଘ) ବିଦେଶୀ—ଭାରତବର୍ଷର ବାହାର ଦେଶମାନଙ୍କରେ ପ୍ରଚଳିତ ଭାଷାର (ପାରସିକ, ଆରବିକ, ପର୍ତ୍ତୁଗୀଜ, ଇଂରାଜୀ ଆଦି) ବହୁ ଶବ୍ଦ ଭାରତୀୟ ଭାଷାମାନଙ୍କରେ ପ୍ରଚଳିତ । ସେଗୁଡ଼ିକୁ କୁହାଯାଏ ବିଦେଶୀ ଶବ୍ଦ । କାହଲ୍, କପୁର, କଲମ, ଜାହାଜ, ଚକିଆ, ମଫସଲ, ସାବୁନ୍, ସ୍କ୍ରୁ, ସ୍କୁଲ, ଟେଲିଫୋନ୍, ବେଞ୍ଚ୍, ଗିଲାସ, ପ୍ୟାଣ୍ଟ, ସାର୍ଟ ଆଦି ହେଉଛି ବିଦେଶୀ ଶବ୍ଦ ।

ଶବ୍ଦଭଣ୍ଡାର (Vocabulary)—କୌଣସି ଭାଷାରେ ବ୍ୟବହୃତ ସମସ୍ତ ଶବ୍ଦର ସମଷ୍ଟିତାକୁ ଶବ୍ଦଭଣ୍ଡାର କୁହାଯାଏ । କୌଣସି କୌଣସି ଭାଷାର ସମ୍ପୂର୍ଣ୍ଣ ଶବ୍ଦଭଣ୍ଡାରର ଆକଳନ କରିବା ସମ୍ଭବ ନୁହେଁ । ଯେତିକି ଯେତିକି ଏ ଦିଗରେ ପ୍ରଚେଷ୍ଟା ଚାଲିଥିବ, ସେତିକି ସେତିକି ନୂତନ ଶବ୍ଦର ସନ୍ଧାନ ମିଳୁଥିବ । ଶବ୍ଦର ସନ୍ଧାନ ସାଧନା ଏକ ନିରବଚ୍ଛିନ୍ନ ବ୍ୟାପାର । ଯେଉଁ ଭାଷା ଶବ୍ଦ ଆହରଣ ଓ ବ୍ୟବହାରରେ ଯେତେ ଅଗ୍ରଣୀ, ତା'ର ଶବ୍ଦଭଣ୍ଡାର ସେତେ ସମୃଦ୍ଧ । କୌଣସି ଭାଷା ଶବ୍ଦଭଣ୍ଡାର ଦୃଷ୍ଟିରୁ ନିଜକୁ ମୌଳିକ ବୋଲି ଦାବି କରିପାରିବ ନାହିଁ । କୌଣସି ଭାଷା ଏ କ୍ଷେତ୍ରରେ ମୌଳିକ ନୁହେଁ । ବରଂ ମୌଳିକତା ଏଠି ଦୁର୍ବଳତା । ଶବ୍ଦ ନିର୍ଦ୍ଦିଷ୍ଟ କୌଣସି ବ୍ୟକ୍ତି, ଗୋଷ୍ଠୀ ବା ଜାତି ମଧ୍ୟରେ ସୀମିତ ହୋଇ ରହି-ପାରେନା । ସଂକୀର୍ଣ୍ଣତାରୁ ବ୍ୟାପ୍ତି ଆଡ଼କୁ ତାହାର ସଞ୍ଚରଣ । ଶବ୍ଦ ଆହରଣ, ପ୍ରୟୋଗ ଓ ନିଜସ୍ୱୀକରଣ ଦିଗରେ ଇଂରାଜୀ ଭାଷା ଅଧିକ ଅଗ୍ରଣୀ । ତେଣୁ ତା'ର ଶବ୍ଦଭଣ୍ଡାର ସବୁଠାରୁ ଅଧିକ ସମୃଦ୍ଧ । ଓ୍ୱେବଷ୍ଟରଙ୍କ ଇଂରାଜୀ ଅଭିଧାନର ୧୯୩୪ ସଂସ୍କରଣ ଅନୁଯାୟୀ ଇଂରାଜୀ ଶବ୍ଦଭଣ୍ଡାରରେ ସାଢ଼େ ପାଞ୍ଚଲକ୍ଷରୁ କିଛି ଅଧିକ ଶବ୍ଦ ଥିବାର ପ୍ରମାଣ ମିଳେ ।

ଶବ୍ଦଭଣ୍ଡାର ପରିବର୍ତ୍ତନର ବିଭିନ୍ନ କାରଣ—ଗୋଟିଏ ଭାଷାର ପ୍ରଚଳିତ ଶବ୍ଦଭଣ୍ଡାର ଦୀର୍ଘକାଳ ଧରି ସ୍ଥିର ବା ସମାନ ରହିପାରେ ନାହିଁ । କେତେକ ଶବ୍ଦର ଅପ୍ରଚଳନ ଓ କେତେକ ନୂତନ ଶବ୍ଦର ପ୍ରଚଳନ ଫଳରେ ଶବ୍ଦଭଣ୍ଡାରର ହ୍ରାସ-ବୃଦ୍ଧି ଧୀର ମନ୍ଥର ଗତିରେ ଚାଲିଥାଏ । ଶବ୍ଦଭଣ୍ଡାରର ଏହି ପରିବର୍ତ୍ତନ ମୁଖ୍ୟତଃ କେତୋଟି କାରଣ ଉପରେ ନିର୍ଭର କରେ —

(୧) ପ୍ରାଚୀନ ଶବ୍ଦର ଲୋପ—(କ) ସମାଜରେ କେତେ ରୀତି-ନୀତି, କ୍ରିୟାକଳାପ ହ୍ରାସ ବା ଲୋପ ପାଇଲେ ତା ସଙ୍ଗରେ ସମ୍ପୃକ୍ତ ଶବ୍ଦମାନଙ୍କର ଲୋପ ଘଟେ । ଉଦାହରଣ ସ୍ୱରୂପ ଭାରତବର୍ଷରେ ଯଜ୍ଞ କାର୍ଯ୍ୟ ବହୁପରିମାଣରେ ହ୍ରାସ ପାଇବା ଫଳରେ ଯଜ୍ଞ ସହିତ ସମ୍ବନ୍ଧାନ୍ୱିତ ସୁବ୍ରହ୍ମଣ୍ୟା, ନ୍ୟୁଙ୍ଖ, ଯଜ୍ୱା, ଯାଯଜୂକ, ଛୁଣ୍ଡ୍ରିଲ, ଅବହଥକ, ଉଦ୍ଘାନ, ଅଭିପ୍ଲବ, ସଂସୃର୍ଯ୍ୟ, ସୁତ୍ୟା, ଅନାଦ୍ୟ ପ୍ରଭୃତି ଶବ୍ଦ ସଂସ୍କୃତ ଭାଷାରେ ଲୋପ ପାଇଛି । (ଖ) ଖାଦ୍ୟପେୟ, ବେଶଭୂଷା ପ୍ରଭୃତିର ପରିବର୍ତ୍ତନ ଘଟିଲେ ତତ୍ସହିତ ସମ୍ପୃକ୍ତ ଶବ୍ଦ ଅପ୍ରଚଳିତ ହୋଇଯାଏ । ପ୍ରାଚୀନ କାଳରେ ବ୍ୟବହୃତ ଅଭ୍ୟୂଷ, ଅପୂପ ପ୍ରଭୃତି ଖାଦ୍ୟସୂଚକ ଶବ୍ଦ, କୁମ୍ବର (ମସ୍ତକ ଆଭୂଷଣ), ହିରଣ୍ୟବର୍ତ୍ତିନୀ (କଟିଭୂଷଣା), ଅନବଟ (ଶୀତକାଳୀନ) ପ୍ରଭୃତି ଅଙ୍ଗଭୂଷଣ ଶବ୍ଦ କାଳକ୍ରମେ ଲୋପ ପାଇଛି । (ଗ) ଅଶ୍ଲୀଳତା ପରିହାର ପାଇଁ ମଧ୍ୟ କେତେକ ଶବ୍ଦର ଲୋପ ଘଟିଛି । (ଘ) କେତେକ ଶବ୍ଦର ଅତିଶୀଘ୍ର ଭାବରେ ଧ୍ୱନି ପରିବର୍ତ୍ତନ ଘଟିବା ଫଳରେ ଶବ୍ଦର ଏତେ କ୍ଷୟ ଘଟିଛି ଯେ ତା ସ୍ଥାନରେ ମୂଳ ଶବ୍ଦର ବ୍ୟବହାର ସମୀଚୀନ ମନେହୋଇଛି । ତେଣୁ ପ୍ରାକୃତ ଭାଷାରେ ସଂସ୍କୃତଜ ବହୁ ଶବ୍ଦର ଲୋପ ଘଟି ସଂସ୍କୃତ ଶବ୍ଦର ପୁନଃ ସଂସ୍ଥାନ ହୋଇଅଛି, ଯଥା—ଅଇ (>ଅତି), ଇଇ (>ଇତି), ଉଅଅ (>ଉଦର), ଉଊ(>ଋତୁ), ଉଇଅ(>ଉଚିତ), ଏଅ(>ଏକ), ଅଣ (>ଋଣ) ଇତ୍ୟାଦି । (ଙ) ଅନ୍ଧବିଶ୍ୱାସ ଯୋଗୁଁ କେତେକ ଶବ୍ଦ (ପୂଜ୍ୟବ୍ୟକ୍ତିଙ୍କ ନାମ) ଉଚ୍ଚାରଣ କରିବା ନିଷିଦ୍ଧ ମନେକରାଯିବା ଫଳରେ କାଳକ୍ରମେ ଅପ୍ରଚଳିତ ହୋଇଯାଇଛି । (ଚ) ବିକଳ୍ପ ପ୍ରତିଶବ୍ଦର ବହୁଳ ପ୍ରଚଳନ ଫଳରେ ଏକ ଶବ୍ଦ କ୍ରମେ କ୍ରମେ ଅପ୍ରଚଳିତ ହୋଇଯାଏ । ଯାବନିକ 'ହଜାର' ଶବ୍ଦର ବହୁଳ ପ୍ରଚଳନ ଫଳରେ କ୍ରମେ ଓଡ଼ିଆ ଭାଷାରୁ 'ସହସ୍ର' ଶବ୍ଦର ହ୍ରାସ ଘଟିଛି ।

(୨) ନବୀନ ଶବ୍ଦର ଆଗମନ—(କ) ସଭ୍ୟତାର ବିକାଶ ଫଳରେ କେତେ ନୂଆ ନୂଆ ଶବ୍ଦର ପ୍ରଚଳନ ଭାଷାରେ ଅନବରତ ଚାଲିଥାଏ । ବୈଜ୍ଞାନିକ ପ୍ରଗତି ଯୋଗୁ କେତେ ବ୍ୟୋମଯାନ, ଅସ୍ତ୍ରଶସ୍ତ୍ର, ଔଷଧ ପ୍ରଭୃତିର ନାମ ସହିତ ସମ୍ପୃକ୍ତ ଶବ୍ଦ ଭାଷାରେ ଅନୁପ୍ରବେଶ ଲାଭ କରୁଛି । (ଖ) ରାଜନୀତିକ, ଦାର୍ଶନିକ ଓ ସାଂସ୍କୃତିକ ଆଦି ଚେତନାର ନବଜାଗରଣ ଫଳରେ ନୂତନ ନୂତନ ଚିନ୍ତାଧାରା ବାହକ ବହୁ ଶବ୍ଦର ଆଗମନ ଭାଷାରେ ଲକ୍ଷ୍ୟ କରାଯାଏ । (ଗ) ଭିନ୍ନ ଭାଷାଭାଷୀଙ୍କ ସଂସ୍ପର୍ଶରେ ଆସିବା ଫଳରେ ସେମାନଙ୍କର ଭାଷାର ଶବ୍ଦ ସଂଗୃହୀତ ହୋଇଥାଏ । ଏହିପରି ଭାବରେ ଭାରତୀୟ ଭାଷାମାନଙ୍କରେ ହଜାର ହଜାର ଯାବନିକ ଓ ଇଂରାଜୀ ଶବ୍ଦର ପ୍ରଚଳନ ଘଟିଅଛି । ଜର୍ମାନ୍ ଭାଷାରେ ବିଦେଶୀ ଶବ୍ଦର ସଂଖ୍ୟା ପ୍ରାୟ ୧୦,୦୦୦ । ଇଂରାଜୀ ଭାଷାରେ ଗୃହୀତ ଭାରତୀୟ ଶବ୍ଦର ସଂଖ୍ୟା ପ୍ରାୟ ୨୫୦୦ । (ଘ) କୌଣସି ବସ୍ତୁର ଦୃଶ୍ୟ ମନରେ ଯେଉଁ ଅନୁଭୂତି ଆଣିଦିଏ ତହିଁରୁ ମଧ୍ୟ କେତେକ ନୂତନ ଶବ୍ଦର ଅଭିବ୍ୟକ୍ତି

ଘଟେ, ଯଥା—ଜକଜକ, ଝିକିଝିକି, ଚକଚକ, ଟକଟକ, ଫକଫକ । (ଙ) କୌଣସି ବସ୍ତୁର ଧ୍ୱନି ବା ନିକ୍ୱଣ ନୂତନ ଶବ୍ଦ ଆଗମନର କାରଣ ହୋଇଥାଏ, ଯଥା—ମର୍ମର, କଳକଳ, କୁଳୁକୁଳୁ, ସୁଲୁସୁଲୁ, ଝନଝନ, କଙ୍କଣ, କିଙ୍କିଣି, ଛନଛନ, ଖଳଖଳ, ଘଡ଼ଘଡ଼ ଇତ୍ୟାଦି ।

(୩) ନବୀନ ଶବ୍ଦର ନିର୍ମାଣ—(କ) ଏକାଧିକ ଶବ୍ଦର ସଂଯୋଗରେ ନୂତନ ଶବ୍ଦ ଗଠନ କରାଯାଇପାରେ । ଏଥିରେ ଦେଶୀ ଓ ବିଦେଶୀ ଶବ୍ଦର ମଧ୍ୟ ମିଳନ ଘଟିପାରେ । ଯଥା—ରେଳଗାଡ଼ି, ମଟରଗାଡ଼ି, ଡାକ୍ତରଖାନା, ଚଢ଼େଇଖାନା, ଷ୍ଟେସନଘର, ପାଉଁରୁଟି, ଅକଲମନ୍ଦ, ଅର୍ଗାନବସ୍ତ୍ର, ହାଟବଜାର, ଶାକସବ୍‌ଜି, ଦୋକାନଘର, କ୍ଲବଘର, କାଗଜପତ୍ର ଇତ୍ୟାଦି । (ଖ) ବ୍ୟକ୍ତିବାଚକ ବା ସ୍ଥାନବାଚକ ବିଶେଷ୍ୟର ବିଶେଷତ୍ୱ ବା ଗୁଣ ଭିତ୍ତିରେ ଶବ୍ଦ ଗଠନ କରାଯାଇପାରେ । ଯଥା—ଶିଖିମନାଇ (ଦେଶଦ୍ରୋହୀ), ସାବିତ୍ରୀ (ପତିବ୍ରତା), ପୁରୀ (ପୁରୀର ନଗରରୁ ଆନୀତ ଭାଗ୍ୟ ପରୀକ୍ଷାମୂଳକ ଖେଳ), ଚିନି ( ଚୀନ୍‌ରୁ ଆନୀତ ଖାଦ୍ୟପଦାର୍ଥ ବିଶେଷ ), ମିଶ୍ରି ( ମିଶରରୁ ଆନୀତ ଏକ ଖାଦ୍ୟ ) ଆଦି । (ଗ) ଦୀର୍ଘ ବା ଏକାଧିକ ଶବ୍ଦକୁ ସଂକ୍ଷିପ୍ତ ରୂପ ଦେବା ଫଳରେ ଏକ ନୂତନ ଶବ୍ଦର ସୃଷ୍ଟି ହୁଏ, ଯଥା—United States of America>USA., Patiala East Punjab States Union>Pepsu, ଭାରତ ସୁପ୍ରେସିଦ୍ଧ>ଭାରେସିଦ୍ଧ । (ଘ) ବ୍ୟାକରଣ ନିୟମ ପ୍ରୟୋଗ କରି ଅର୍ଥାତ୍ ପୂର୍ବସର୍ଗ ଯୋଡ଼ି ବା ପଦ ପରିବର୍ତ୍ତନ କରି ନୂଆ ନୂଆ ଶବ୍ଦର ନିର୍ମାଣ କରାଯାଇପାରେ । ବିଦେଶୀ ଶବ୍ଦରେ ମଧ୍ୟ ନିଜ ଭାଷାର ବ୍ୟାକରଣ ନିୟମ ଲଗାଇ ଅନେକ ନୂଆ ନୂଆ ଶବ୍ଦ ନିର୍ମାଣ କରିଥାନ୍ତି ।

କୋଷବିଜ୍ଞାନ (Lexicology)—କୋଷବିଜ୍ଞାନ ହେଉଛି ଶବ୍ଦ ବିଜ୍ଞାନର ଏକ ଶାଖା ଯହିଁରେ କୋଷ (ଅଭିଧାନ) ନିର୍ମାଣ କଳା ଶିକ୍ଷା ଦିଆଯାଏ । ଏହାର ଅନ୍ୟନାମ କୋଷକଳା (Lexicography) । ଅବଶ୍ୟ କୋଷବିଜ୍ଞାନ ସିଦ୍ଧାନ୍ତ ସହିତ ଓ କୋଷକଳା ହେଉଛି କଳା ଓ ପ୍ରୟୋଗ ସହିତ ଅଧିକ ସମ୍ବନ୍ଧାନ୍ୱିତ । ସିଦ୍ଧାନ୍ତ ଭିତ୍ତିରେ କୋଷ ନିର୍ମାଣ ହୁଏ ।

ସର୍ବପ୍ରଥମେ ଭାରତବର୍ଷରେ ହିଁ କୋଷ ନିର୍ମାଣ କାର୍ଯ୍ୟର ଆରମ୍ଭ ହୋଇଥିଲା । ଖ୍ରୀ. ପୂ. ପ୍ରାୟ ୧୦୦୦ ବର୍ଷ ତଳେ ଯାସ୍କଙ୍କର ନିଘଣ୍ଟୁ ରଚିତ ହୋଇଥିଲା । ୟୁରୋପରେ ଖ୍ରୀଷ୍ଟୀୟ ୧୦୦୦ ବର୍ଷ ପୂର୍ବରୁ କୋଷ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇପାରିନାହିଁ ।

କୋଷ ମୁଖ୍ୟତଃ ତିନି ପ୍ରକାରର; ବ୍ୟକ୍ତିକୋଷ, ପୁସ୍ତକକୋଷ ଓ ଭାଷାକୋଷ । କୌଣସି ବ୍ୟକ୍ତିବିଶେଷଙ୍କର ରଚନାମାନଙ୍କରେ ବ୍ୟବହୃତ ଶବ୍ଦଗୁଡ଼ିକୁ ନେଇ ଯେଉଁ କୋଷ ପ୍ରସ୍ତୁତ ହୁଏ ତାହାକୁ ବ୍ୟକ୍ତିକୋଷ କୁହାଯାଏ । ଗୋଟିଏ ଗ୍ରନ୍ଥର

ଶବ୍ଦମାନଙ୍କୁ ନେଇ ପ୍ରସ୍ତୁତ କୋଷ ହେଉଛି ପୁସ୍ତକକୋଷ । ଭାଷା ବା ଭାଷାମାନଙ୍କର ଶବ୍ଦକୁ ନେଇ ଗଠିତ କୋଷ ହେଉଛି ଭାଷାକୋଷ ବା ଅଭିଧାନ ।

ଭାଷାକୋଷ ବହୁବିଧ— ବର୍ଣ୍ଣନାତ୍ମକ, ଐତିହାସିକ, ପାରିଭାଷିକ, ପର୍ଯ୍ୟାୟ, ଲୋକୋକ୍ତି ଓ ବହୁଭାଷା ଇତ୍ୟାଦି । (କ) **ବର୍ଣ୍ଣନାତ୍ମକ ଭାଷାକୋଷ**— ଏଥିରେ ଶବ୍ଦଗୁଡ଼ିକୁ ଅର୍ଥର ପ୍ରଚଳନ ବହୁଳତା ଭିତ୍ତିରେ କ୍ରମାନୁସାରେ ସଜାଯାଏ । ଯେଉଁ ଅର୍ଥ ବେଶୀ ପ୍ରଚଳିତ ତାହାକୁ ସର୍ବପ୍ରଥମେ ଓ ଯାହା ସବୁଠାରୁ କମ୍ ପ୍ରଚଳିତ ତାହାକୁ ସର୍ବଶେଷରେ ସ୍ଥାନ ଦିଆଯାଏ । ଏହି କ୍ରମରେ ଶବ୍ଦ ସଜ୍ଜିତ ହୋଇଥାଏ । (ଖ) **ଐତିହାସିକ କୋଷ**—ଏଥିରେ ଅର୍ଥର ପ୍ରଚଳନ-କାଳ-କ୍ରମ ଅନୁଯାୟୀ ଶବ୍ଦଗୁଡ଼ିକୁ ସଜାଯାଏ । ଉଦାହରଣ ସ୍ୱରୂପ, କୌଣସି ଭାଷାର ଏକ ଶବ୍ଦର ପାଞ୍ଚଗୋଟି ଅର୍ଥ ଅଛି—କ, ଖ, ଗ, ଘ, ଙ । 'କ' ଅର୍ଥଟି ୧୧ଶ ଶତାବ୍ଦୀରେ, 'ଖ' ଅର୍ଥଟି ୧୮ଶ ଶତାବ୍ଦୀରେ, 'ଗ' ଅର୍ଥଟି ୧୩ଶ ଶତାବ୍ଦୀରେ, 'ଘ' ଅର୍ଥଟି ୧୬ଶ ଶତାବ୍ଦୀରେ ଓ 'ଙ' ଅର୍ଥଟି ୧୫ଶ ଶତାବ୍ଦୀରେ ପ୍ରଚଳିତ ଥିଲା । ତେବେ ଶବ୍ଦଗୁଡ଼ିକୁ କ, ଗ, ଙ, ଘ, ଖ ଅର୍ଥକ୍ରମରେ ସଜାଇବାକୁ ପଡ଼ିବ । ଏଥିପାଇଁ ବିଭିନ୍ନ କାଳର ସାହିତ୍ୟ ଅଧ୍ୟୟନ କରି ତହିଁରେ ପ୍ରଯୁକ୍ତ ହୋଇ ଶବ୍ଦଟିର ଅର୍ଥ ନିର୍ଣ୍ଣୟ କରିବାକୁ ହୋଇଥାଏ ଏବଂ ବିଭିନ୍ନ ରଚନାର ନିର୍ଦ୍ଦିଷ୍ଟ କାଳ ନିର୍ଣ୍ଣୟ କରିବାକୁ ପଡ଼ିଥାଏ । (ଗ) **ପାରିଭାଷିକ କୋଷ**—କୌଣସି ଭାଷାର ବିଭିନ୍ନ ବିଷୟ ବା ଜ୍ଞାନର ଶାଖାମାନଙ୍କରେ ବ୍ୟବହୃତ ପାରିଭାଷିକ (technical) ଶବ୍ଦସମୂହର କୋଷକୁ କୁହାଯାଏ ପାରିଭାଷିକ କୋଷ । (ଘ) **ପର୍ଯ୍ୟାୟ କୋଷ**—ଏଥିରେ ସମାର୍ଥବାଚୀ ଶବ୍ଦଗୁଡ଼ିକୁ ଏକତ୍ର ସଜାଯାଇଥାଏ । ଏହା ସାଥିରେ ବିପରୀତାର୍ଥବୋଧକ ଶବ୍ଦ ମଧ୍ୟ କେବେ କେବେ ପ୍ରଦତ୍ତ ହୋଇଥାଏ । ସାହିତ୍ୟ ରଚନା ପାଇଁ ସାହିତ୍ୟିକମାନଙ୍କ ପକ୍ଷରେ ଏହା ଉପଯୋଗୀ । (ଙ) **ଲୋକୋକ୍ତି କୋଷ**— ଢଗଢମାଳି, ପ୍ରବଚନ, ଲୋକଗୀତ ଆଦି ଏ ପ୍ରକାର କୋଷରେ ବର୍ଣ୍ଣ କ୍ରମରେ ସଜ୍ଜିତ ହୋଇଥାଏ । (ଚ) **ବହୁଭାଷା କୋଷ**—ଏଥିରେ ଗୋଟିଏ ଭାଷାର ଶବ୍ଦର ଅର୍ଥ ସେହି ଭାଷାରେ ବୁଝାଇବା ସଙ୍ଗେ ସଙ୍ଗେ ଅନ୍ୟ ଭାଷାମାନଙ୍କରେ ମଧ୍ୟ ବୁଝାଇ ଦିଆଯାଇଥାଏ ବା ସେହି ଶବ୍ଦମାନଙ୍କର ଅର୍ଥ ଏକାଧିକ ବିଭିନ୍ନ ଭାଷାରେ ପ୍ରଦାନ କରାଯାଇଥାଏ ।

**ବ୍ୟୁତ୍ପତ୍ତି ବିଜ୍ଞାନ** (Etymology)—'ବ୍ୟୁତ୍ପତ୍ତି'ର ଅର୍ଥ ହେଉଛି 'ବିଶେଷ ଭାବରେ ଉତ୍ପତ୍ତି' । ତେଣୁ 'ବ୍ୟୁତ୍ପତ୍ତି ବିଜ୍ଞାନ'ର ଅର୍ଥ ହେଉଛି 'ବିଶେଷ ଭାବରେ ଉତ୍ପତ୍ତି ନିର୍ଣ୍ଣୟ କରିବାର ବିଜ୍ଞାନ' । ଏହାର ଇଂରାଜୀ ପ୍ରତିଶବ୍ଦ 'Etymology'ରେ ଦୁଇଟି ୟୁନାନୀ ଶବ୍ଦ ରହିଛି, 'Etymos' 'Logos'—ଏ ଦୁଇଟି ଶବ୍ଦରୁ ମଧ୍ୟ ଏହିପରି ଏକ ଅର୍ଥ ପ୍ରତିପାଦିତ ହୋଇଥାଏ । ବ୍ୟୁତ୍ପତ୍ତି ବିଜ୍ଞାନ ପ୍ରଥମେ

ଭାଷାବିଜ୍ଞାନର ଏକ ଶାଖା ନ ହୋଇ ବ୍ୟୁତ୍ପତ୍ତି ଶାସ୍ତ୍ର ଭାବରେ ଦର୍ଶନ ଶାସ୍ତ୍ରର ଏକ ଶାଖାଥିଲା । ଗ୍ରୀକ ଦାର୍ଶନିକମାନେ ଚିନ୍ତାଧାରାର ପ୍ରକୃତ ସ୍ୱରୂପ ନିରୂପଣ ଲାଗି ଚିନ୍ତାଧାରାର ବାହକ ଶବ୍ଦର ମୂଳ ରୂପ ଓ ମୂଳ ଅର୍ଥ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିଥିଲେ । ପ୍ରାଚୀନ ଭାରତରେ ଯାସ୍କଙ୍କ 'ନିରୁକ୍ତ' ହେଉଛି ପୃଥିବୀର ସର୍ବପ୍ରଥମ ବ୍ୟୁତ୍ପତ୍ତି ବିଜ୍ଞାନ ଗ୍ରନ୍ଥ । ଏଥିରେ ସମୁଦାୟ ୧୨୯୮ଟି ବ୍ୟୁତ୍ପତ୍ତି ଦିଆଯାଇଛି ଓ ୨୨୪ଟି ବ୍ୟୁତ୍ପତ୍ତି ଯୁକ୍ତିସଙ୍ଗତ ବୋଲି ଆଧୁନିକ ଭାଷାବିତ୍‌ମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଅଛି । ଯାସ୍କ ଗୋଟିଏ ଗୋଟିଏ ଶବ୍ଦର ବହୁ ବ୍ୟୁତ୍ପତ୍ତି ଦର୍ଶାଇଛନ୍ତି । ପ୍ରକୃତ ମୂଳ ନିର୍ଣ୍ଣୟ କରିବାଲାଗି ପ୍ରକୃତ ପ୍ରମାଣ ଅଭାବରୁ ଯାସ୍କ ବିଭିନ୍ନ ଅନୁମାନ ଉପରେ ବୁଦ୍ଧି ପ୍ରୟୋଗ କରିଛନ୍ତି ଓ ବୁଦ୍ଧି ଯେଉଁଯାଏଁ ଅଗ୍ରଗତି କରିଛି, ସେ ସେତିକିଯାଏ ଆଗେଇ ଯାଇଛନ୍ତି ।

ପ୍ଲେଟୋଙ୍କ ସମୟରେ ଗୋଟିଏ ଭ୍ରାନ୍ତଧାରଣା ଥିଲା ଯେ କୌଣସି ଶବ୍ଦର ଧ୍ୱନି ଓ ତାହାର ବାଚ୍ୟ ଅର୍ଥ ମଧ୍ୟରେ କିଛି ସମ୍ବନ୍ଧ ରହିଛି । ତେଣୁ ବିଭିନ୍ନ ଭାଷାରେ ବିଭିନ୍ନ ଅର୍ଥ ପ୍ରକାଶ କରୁଥିବା ସମଧ୍ୱନିକୁ ଅନେକ ଭାଷାବିତ୍ ସମାର୍ଥବାଚକ ବୋଲି ଗ୍ରହଣ କରିନେଇଥିଲେ । ଫଳରେ ଭାଷାବିଜ୍ଞାନ ରାଜ୍ୟରେ ବିରାଟ ଭ୍ରମ ବହୁଦିନ-ଯାଏ ବ୍ୟାପିରହିଥିଲା । ଏହି ଭ୍ରମ ଯୋଗୁଁ ଗ୍ରୀକ୍ ଓ ଇଂରାଜୀ ସହିତ ହିବ୍ରୁ ଭାଷାର ସମ୍ପର୍କ ସ୍ଥାପିତ ହୋଇଥିଲା ।

ଧ୍ୱନି ସାମ୍ୟ ଯୋଗୁ ଶବ୍ଦକୁ ଅନ୍ୟ ଅର୍ଥରେ ଗ୍ରହଣ କରିନେବା ପ୍ରକ୍ରିୟାକୁ କୁହାଯାଏ ଭ୍ରାମକ ବ୍ୟୁତ୍ପତ୍ତି ବା ଲୌକିକ ବ୍ୟୁତ୍ପତ୍ତି (Papular Etymology) । ଲୌକିକ ବ୍ୟୁତ୍ପତ୍ତି ସମ୍ପର୍କରେ ଧ୍ୱନିବିଜ୍ଞାନ ଅଧ୍ୟୟନରେ ଧ୍ୱନିପରିବର୍ତ୍ତନର ବିଭିନ୍ନ ଦିଗ ବିଷୟର ବେଳେ ଆଲୋଚନା କରାଯାଇଅଛି ।



## ● ଅଷ୍ଟମ ପରିଚ୍ଛେଦ ●

# ରୂପ ବିଜ୍ଞାନ ( Morphology )

ଧ୍ୱନିମାଳା ଏକତ୍ର ସଂଗଠିତ ହୋଇ କୌଣସି ଅର୍ଥ ପ୍ରକାଶ କଲେ ତାହା 'ଶବ୍ଦ' ନାମରେ ଅଭିହିତ ହୁଏ । ଶବ୍ଦ ବାକ୍ୟରେ ବ୍ୟବହୃତ ହେଲେ, ପଦରେ ପରିଣତ ହୁଏ । ପଦ ହେଉଛି ବାକ୍ୟର ଆଧାର । ଶବ୍ଦଦ୍ୱାରା ବାକ୍ୟ ଗଠିତ ହୋଇ-ପାରିବ ନାହିଁ; ପଦଦ୍ୱାରା ହିଁ ବାକ୍ୟ ଗଠିତ ହୁଏ । ବାହ୍ୟ ଦୃଷ୍ଟିରେ ଶବ୍ଦ ଓ ପଦ ଅଭିନ୍ନ ମନେହେଲେହେଁ ଶବ୍ଦ ଓ ପଦ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ରହିଛି । ଅର୍ଥଯୁକ୍ତ ହୋଇଗଲେ ଶବ୍ଦର ଯେ ପ୍ରୟୋଗ-ଯୋଗ୍ୟତା ଆସିଯାଏ, ଏପରି ନୁହେଁ । ଏଥିପାଇଁ ତା'ଠାରେ କେତେକ ପରିବର୍ତ୍ତନ ଆବଶ୍ୟକ ହୁଏ । ଏ ପରିବର୍ତ୍ତନ ପ୍ରତ୍ୟୟ ଯୋଗୁ ସମ୍ଭବ ହୋଇଥାଏ । ବେ ଶବ୍ଦ ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠିତ ନହେଲେ ବାକ୍ୟ ଗଠିତ ହୋଇପାରିବ ନାହିଁ । ସଂସ୍କୃତରେ 'ଶବ୍ଦ'ର ମୂଳ ରୂପକୁ କୁହାଯାଏ 'ପ୍ରକୃତି' ବା ପ୍ରାତିପାଦିକ ଓ ସମ୍ବନ୍ଧ ସ୍ଥାପନ ପାଇଁ ଯୋଗ କରାଯାଉଥିବା ତତ୍ତ୍ୱକୁ କୁହାଯାଏ 'ପ୍ରତ୍ୟୟ' । ମହାଭାଷ୍ୟକାର ପତଞ୍ଜଳିଙ୍କ ଭାଷାରେ, "ନାପି କେବଳ ପ୍ରକୃତିଃ ପ୍ରୟୋକ୍ତବ୍ୟା ନାପି କେବଳ ପ୍ରତ୍ୟୟଃ ।" ବାକ୍ୟରେ କେବଳ ପ୍ରକୃତି ବା କେବଳ ପ୍ରତ୍ୟୟର ପ୍ରୟୋଗ ହୁଏ ନାହିଁ ଉଭୟ ସମ୍ମିଳିତ ଭାବରେ ପ୍ରଯୁକ୍ତ ହୋଇଥାନ୍ତି, ଉଭୟଙ୍କ ମିଳନରେ ସୃଷ୍ଟି ଲାଭ କରେ ପଦ ବା ରୂପ । ପାଣିନି ପଦର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଛନ୍ତି—'ସୁପ୍ତିଙନ୍ତଂ ପଦଂ ।' ଅର୍ଥାତ୍ ଯାହାର ଶେଷରେ ସୁପ୍ ଏବଂ ତିଙ୍ ଥାଏ ତାହାକୁ ପଦ କହନ୍ତି । ଏହି ସୁପ୍ ଓ ତିଙ୍ ହେଉଛି ପ୍ରତ୍ୟୟ ବା ବିଭକ୍ତି । ତେଣୁ ଶବ୍ଦ ହେଉଛି ବିଭକ୍ତି ରହିତ ଓ ପଦ ହେଉଛି ବିଭକ୍ତି ସହିତ । ଉଦାହରଣ ସ୍ୱରୂପ 'ରାମ' ଶବ୍ଦକୁ ନିଆଯାଉ । ଏହା କେବଳ ମୂଳ ରୂପରେ ବାକ୍ୟରେ ବ୍ୟବହୃତ ହୋଇପାରିବ ନାହିଁ । ବାକ୍ୟରେ ବ୍ୟବହାର ପାଇଁ ତହିଁରେ କୁ, ଦ୍ୱାରା, ରୁ, ଠାରୁ ର, ଠାରେ ଆଦି ପ୍ରତ୍ୟୟ ଯୋଗ କରିବା ଆବଶ୍ୟକ ।

ସ୍ଥାନ-ପ୍ରଧାନ ବା ଅଯୋଗାତ୍ମକ ଭାଷାମାନଙ୍କରେ ( ଯଥା ଚୀନା ଭାଷା ) ଶବ୍ଦ ଓ ପଦ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରାଯାଏ ନାହିଁ । କାରଣ ଏହି ଭାଷାର

ଶବ୍ଦମାନ ମଧ୍ୟରେ ସମ୍ବନ୍ଧ ଦେଖାଇବା ପାଇଁ କୌଣସି ସମ୍ବନ୍ଧତତ୍ତ୍ୱ (ବିଭକ୍ତି ଆଦି) ଯୋଗ କରିବା ଆବଶ୍ୟକ ହୁଏ ନାହିଁ। ଶବ୍ଦକୁ ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରୟୋଗ କଲେ ନିର୍ଦ୍ଦିଷ୍ଟ ସମ୍ବନ୍ଧତତ୍ତ୍ୱ ଜଣାପଡ଼ିଯାଏ।

**ସମ୍ବନ୍ଧତତ୍ତ୍ୱ**—ବାକ୍ୟରେ ଦୁଇଟି ତତ୍ତ୍ୱ ଥାଏ—ସମ୍ବନ୍ଧତତ୍ତ୍ୱ ଓ ଅର୍ଥତତ୍ତ୍ୱ। ଦୁଇଟି ମଧ୍ୟରେ ଅର୍ଥତତ୍ତ୍ୱ ପ୍ରଧାନ। ତେବେ ସମ୍ବନ୍ଧତତ୍ତ୍ୱର ଭୂମିକା ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ। ବିଭିନ୍ନ ଅର୍ଥତତ୍ତ୍ୱ ମଧ୍ୟରେ ଥିବା ପାରସ୍ପରିକ ସମ୍ପର୍କ ସମ୍ବନ୍ଧତତ୍ତ୍ୱ ଦ୍ୱାରା ହିଁ ନିର୍ଣ୍ଣୀତ ହୋଇଥାଏ। ଉଦାହରଣ ସ୍ୱରୂପ ଗୋଟିଏ ବାକ୍ୟ ନିଆଯାଉ— "ହରି ସନ୍ଧ୍ୟାବେଳେ ସଡ଼କରେ ବୁଲି ବୁଲି ମନ୍ଦିରକୁ ଯାଇଥିଲି।"—ଏଠାରେ 'ହରି' ପଦରେ ସମ୍ବନ୍ଧତତ୍ତ୍ୱ (କର୍ତ୍ତୃକାରକ) ଊହ୍ୟ ରହିଛି। 'ସନ୍ଧ୍ୟାବେଳେ' ପଦରେ 'ସନ୍ଧ୍ୟାବେଳେ' ଶବ୍ଦରେ 'ଏ' ସମ୍ବନ୍ଧତତ୍ତ୍ୱ ଯୁକ୍ତ ହୋଇଅଛି। 'ସଡ଼କ' ଶବ୍ଦରେ 'ରେ' ସମ୍ବନ୍ଧତତ୍ତ୍ୱ, 'ବୁଲ୍' ଶବ୍ଦରେ 'ଇ' ସମ୍ବନ୍ଧତତ୍ତ୍ୱ, 'ମନ୍ଦିର' ଶବ୍ଦରେ 'କୁ' ସମ୍ବନ୍ଧତତ୍ତ୍ୱ, 'ଯା' ଶବ୍ଦରେ 'ଇଥିଲି' ସମ୍ବନ୍ଧତତ୍ତ୍ୱ ଯୁକ୍ତ ହେବା ଫଳରେ ଯଥାକ୍ରମେ 'ସଡ଼କରେ' 'ବୁଲି' 'ମନ୍ଦିରକୁ' ଯାଇଥିଲି ପଦମାନଙ୍କର ସୃଷ୍ଟି। ଏଥିରୁ ସ୍ପଷ୍ଟ ହେଉଛି ଯେ 'ଶବ୍ଦ' ସଙ୍ଗରେ ସମ୍ବନ୍ଧତତ୍ତ୍ୱ ଯୁକ୍ତହେଲେ ପଦର ସୃଷ୍ଟି ହୁଏ। ଶବ୍ଦରୁ ପଦ-ଗଠନ କରିବା ଲାଗି ୪ଟି ପଦ୍ଧତି ଦୃଷ୍ଟିଗୋଚର ହୋଇଥାଏ। ଯଥା—

(କ) ଅଯୋଗାତ୍ମକ—କେତେ ପୂର୍ଣ୍ଣାଙ୍ଗପଦ ବିଭକ୍ତିଯୁକ୍ତ ନ ହୋଇ ମଧ୍ୟ ସମ୍ବନ୍ଧତତ୍ତ୍ୱ ସୂଚିତ କରିପାରେ। ଏମାନେ ଅଯୋଗାତ୍ମକ। ଯଥା - ନର, ଲତା, ମୁନି, ସାଧୁ, ମତି ପ୍ରଭୃତି ବିଶେଷ୍ୟପଦ ଓ ପଠ, ବଦ, ହସ ପ୍ରଭୃତି କ୍ରିୟା। ସମ୍ବନ୍ଧତତ୍ତ୍ୱ ବିଶ୍ଳେଷଣ ବେଳେ ପ୍ରଦତ୍ତ 'ହରି' ପଦଟି ହେଉଛି ଅଯୋଗାତ୍ମକ।

(ଖ) ଅଶ୍ଳିଷ୍ଟ ଯୋଗାତ୍ମକ--ଜନ + ତା = ଜନତା।
ଉଦାର + ତା = ଉଦାରତା।

(ଗ) ଶ୍ଳିଷ୍ଟ ଯୋଗାତ୍ମକ - ଦେବ + ଅ = ଦୈବ, ନୀତି + ଇକ = ନୈତିକ,
ଭୂତ + ଇକ = ଭୌତିକ, ପବନ + ଇ = ପାବନି,
ଜନକ + ଈ = ଜାନକୀ, ବାସୁଦେବ + ଅ = ବାସୁଦେବ

(ଘ) ପ୍ରଶ୍ଳିଷ୍ଟ ଯୋଗାତ୍ମକ—ପିପଠିଷତି, ଏହା ଗୋଟିଏ ଶବ୍ଦ ହେଲେହେଁ ଅର୍ଥ ଦୃଷ୍ଟିରୁ ଗୋଟିଏ ବାକ୍ୟ। 'ପିପଠିଷତି'ର ଅର୍ଥ ହେଉଛି 'ସେ ପଢ଼ିବା ପାଇଁ ଇଚ୍ଛା କରୁଅଛି।'

**ସମ୍ବନ୍ଧତତ୍ତ୍ୱର ପ୍ରକାର** - ବିଭିନ୍ନ ପ୍ରକାରରେ ସମ୍ବନ୍ଧତତ୍ତ୍ୱର ପ୍ରୟୋଗ ବା ପ୍ରକାଶ କରାଯାଇପାରେ।

(କ) ଶବ୍ଦସ୍ଥାନ—ଶବ୍ଦପ୍ରୟୋଗର ସ୍ଥାନ ଅନେକ ସମୟରେ ସମ୍ବନ୍ଧତତ୍ତ୍ୱର କାମ କରିଥାଏ । ସଂସ୍କୃତ ଭାଷାର ସମାସମାନଙ୍କରେ ଏହାର ଦୃଷ୍ଟାନ୍ତ ମିଳିଯିବ । ଯଥା—ରାଜଧର୍ମ୍ମ (ରାଜାଙ୍କର ଧର୍ମ୍ମ), ଧର୍ମ୍ମରାଜ (ଧର୍ମ୍ମମାନଙ୍କର ରାଜା ଅର୍ଥାତ୍ ଶ୍ରେଷ୍ଠ ଧର୍ମ୍ମ), ଗ୍ରାମଗୋପାଳ (ଗାଁର ଗଉଡ଼), ଗୋପାଳ-ଗ୍ରାମ (ଗଉଡ଼ମାନଙ୍କର ଗାଁ), ଧର୍ମପତ୍ନୀ (ଭାର୍ଯ୍ୟା), ପତ୍ନୀଧର୍ମ (ପତ୍ନୀର କର୍ତ୍ତବ୍ୟ) । ଏସବୁ କ୍ଷେତ୍ରରେ ଶବ୍ଦର ସ୍ଥାନ ବଦଳିଯିବାରୁ ସମ୍ବନ୍ଧତତ୍ତ୍ୱ ବଦଳିଯାଉଛି । ରାଜମହଲ, ଡାକଘର, ମାଲଗୋଦାମ ପ୍ରଭୃତି ଶବ୍ଦରେ ରାଜ, ଡାକ, ମାଲ ପ୍ରଭୃତି ବିଶେଷ୍ୟଗୁଡ଼ିକ ବିଶେଷଣ ଭାବରେ ବ୍ୟବହୃତ । ତେଣୁ ସମ୍ବନ୍ଧତତ୍ତ୍ୱ ପରିବର୍ତ୍ତିତ । ଚୀନା ଭାଷାରେ ଶବ୍ଦର ସ୍ଥାନ ଭେଦରେ ସମ୍ବନ୍ଧତତ୍ତ୍ୱର ଭିନ୍ନତା ଦେଖାଯାଏ । ଯଥା—

ନ୍‌ଗୋ ତ ନି = ମୁଁ ତୁମକୁ ମାରେ ।
ନି ତ ନ୍‌ଗୋ = ତୁମେ ମୋତେ ମାର ।

ଇଂରାଜୀ ଭାଷାରେ ମଧ୍ୟ ଏହିପରି ଦୃଷ୍ଟାନ୍ତ ଦିଆଯାଇପାରେ । ଯଥା—
Madan killed Mohan = ମଦନ ମୋହନକୁ ହତ୍ୟା କଲା ।
Mohan killed Madan = ମୋହନ ମଦନକୁ ହତ୍ୟା କଲା ।

(ଖ) ଶବ୍ଦ ଯଥା ତଥା ଛାଡ଼ିଦେବା ବା ଶୂନ୍ୟ ସମ୍ବନ୍ଧତତ୍ତ୍ୱ ଯୋଗକରିବା—ସମ୍ବନ୍ଧତତ୍ତ୍ୱ ଯୋଗ ନକରି (ଦେଖୁ ଯେମିତି ସେମିତି ଛାଡ଼ିଦେଇ) ମଧ୍ୟ ସମ୍ବନ୍ଧତତ୍ତ୍ୱ ସୂଚିତ କରାଯାଇଥାଏ । ଯଥା—ଇଂରାଜୀ I go, we go, you go, they go ପ୍ରଭୃତି କ୍ରିୟାରେ କୌଣସି ସମ୍ବନ୍ଧତତ୍ତ୍ୱ ଯୋଡ଼ା ନଯାଇ ଯଥାକ୍ରମେ ପ୍ରଥମପୁରୁଷ ଏକବଚନ, ପ୍ରଥମପୁରୁଷ ବହୁବଚନ, ଦ୍ୱିତୀୟପୁରୁଷ ଏକବଚନ ଓ ବହୁବଚନ, ତୃତୀୟପୁରୁଷ ବହୁବଚନରେ ସମ୍ବନ୍ଧ ସୂଚିତ କରାଯାଇଅଛି । ଇଂରାଜୀରେ Sheepର ବହୁବଚନ ମଧ୍ୟ Sheep, ସଂସ୍କୃତରେ ନର, ଲତା, ମୁନି, ସାଧୁ, ମଧୁ, ନଦୀ, ପିତୃ, ବଧୂ ଆଦି ଶବ୍ଦ ସମ୍ବନ୍ଧତତ୍ତ୍ୱ ବିନା ମଧ୍ୟ ଅବିକୃତ ରୂପରେ ପ୍ରଥମା ବିଭକ୍ତି ଏକବଚନର ବୋଧକ ହୋଇଅଛି ।

(ଗ) ସ୍ୱତନ୍ତ୍ର ଶବ୍ଦ—ପୃଥିବୀର ବହୁଭାଷାରେ ସ୍ୱତନ୍ତ୍ର ଶବ୍ଦ ସାହାଯ୍ୟରେ ସମ୍ବନ୍ଧତତ୍ତ୍ୱ ପ୍ରକାଶ କରାଯାଇଥାଏ । ଓଡ଼ିଆ ଭାଷାରେ ସମସ୍ତ ପରସର୍ଗ (ପ୍ରତ୍ୟୟ) ବା କାରକ ଚିହ୍ନ କୁ, ଙ୍କୁ, ମାନଙ୍କୁ, ଙ୍କି, ରେ, ଦ୍ୱାରା, ରୁ, ଠାରୁ, ର, ଙ୍କର, ରେ, ଠାରେ, ଇତ୍ୟାଦି, ଇଂରାଜୀ to from, into, on, ସଂସ୍କୃତ ସହ, ଅନ୍ତ, ଇତି, ଏବ, ଚ, ଅପି, ଆଦ, ଏବଂ, ଚୀନା ଭାଷାର ତ୍ସି (= ର), ୟୁ (କୁ), ତ୍ସୁଙ୍ଗ (ରୁ), ଲି (ରେ) ଏହି ଶ୍ରେଣୀର ସ୍ୱତନ୍ତ୍ର ଶବ୍ଦ । କେବେ କେବେ ଦୁଇଟି ସ୍ୱତନ୍ତ୍ର ଶବ୍ଦ ସମ୍ବନ୍ଧତତ୍ତ୍ୱ ପ୍ରକାଶ ପାଇଁ ବ୍ୟବହୃତ ହୋଇଥାଏ, ଯଥା—either···or,

neither···nor, if···then, ଯେମନ···ସେପରି, ଯଦ୍ୟପି ··ତଥାପି, ଯଦି··· ତେବେ ପ୍ରଭୃତି ।

(ଘ) ଧ୍ୱନି ପ୍ରତିସ୍ଥାପନ (Replacing)—ଏହା ତିନିଧ—ସ୍ୱର ପ୍ରତିସ୍ଥାପନ, ବ୍ୟଞ୍ଜନ ପ୍ରତିସ୍ଥାପନ ଓ ସ୍ୱରବ୍ୟଞ୍ଜନ ପ୍ରତିସ୍ଥାପନ । (କ) ସ୍ୱରଧ୍ୱନିର ପରିବର୍ତ୍ତନ ବା ପ୍ରତିସ୍ଥାପନରେ ବିଭିନ୍ନ ସମ୍ବନ୍ଧତତ୍ତ୍ୱ ଦେଖାଇ ଦିଆଯାଇପାରେ । ଯଥା— Sing-sang sung, tooth-teeth, find-found, foot-feet, goose-geese, ଦଶରଥ-ଦାଶରଥି, ଧନ-ଧନୀ । (ଖ) ବ୍ୟଞ୍ଜନ ପଦ send-sent, advice-advise, (ଗ) ସ୍ୱର ବ୍ୟଞ୍ଜନ ପ୍ରତିସ୍ଥାପନ—ଯିବା-ଗଲା, go-went, be-am is ଇତ୍ୟାଦି ।

(ଙ) ଧ୍ୱନି ଦ୍ୱିରାବୃତ୍ତି (Ruduplicating)—କେତେକ ଧ୍ୱନି ଦ୍ୱିରାବୃତ୍ତି ଦ୍ୱାରା ଅନେକ ସମୟରେ ସମ୍ବନ୍ଧତତ୍ତ୍ୱର କାର୍ଯ୍ୟ ସମ୍ପାଦନ କରାଯାଏ । ଏହି ଦ୍ୱିରାବୃତ୍ତି ମୂଳ ଶବ୍ଦର ଆଦ୍ୟ, ମଧ୍ୟ ଓ ପ୍ରାନ୍ତରେ ଦେଖାଦେଇପାରେ । ଲଙ୍କାର ଏକ ଉପଭାଷାରେ 'manao'ର ଅର୍ଥ ଗୃହବା; କିନ୍ତୁ 'manaonso'ର ଅର୍ଥ ସେମାନେ ଗୃହାନ୍ତି; ଅଫ୍ରିକାର ଏକ ଭାଷାରେ 'irik'ର ଅର୍ଥ ଗୃହିବା; କିନ୍ତୁ 'irikrik'ର ଅର୍ଥ ସେ ଗୃହିଲେ ।

(ଚ) କେବେ କେବେ କେତେକ ଧ୍ୱନିକୁ ବାଦ୍ ଦେଇ ସମ୍ବନ୍ଧତତ୍ତ୍ୱ ପ୍ରକାଶ କରାଯାଇଥାଏ । ଫରାସୀ ଭାଷାରୁ କେତୋଟି ଉଦାହରଣ ଦିଆଯାଇପାରେ—

Soule>soul, Petite>petit.

(ଛ) ଯୋଗ—ଶବ୍ଦରେ କିଛି ଯୋଗକରି ପଦ ଗଠନ କରିବା ପଦ୍ଧତି ବହୁ ବ୍ୟାପକ । ଏହି ଯୋଗ ଶବ୍ଦର ଆଦି, ମଧ୍ୟ ବା ଶେଷରେ ହୋଇପାରେ । ଆଦିଯୋଗକୁ ଉପସର୍ଗ, ମଧ୍ୟଯୋଗକୁ ବିବରଣ ଓ ପ୍ରାନ୍ତଯୋଗକୁ ପ୍ରତ୍ୟୟ କୁହାଯାଏ । ଉପସର୍ଗ ଯୋଗର ଉଦାହରଣ ହେଉଛି, 'ହାର' ଶବ୍ଦ ଭିତ୍ତିରେ ପ୍ରହାର, ବିହାର, ଆହାର, ସଂହାର, ଉପହାର, ପରିହାର, ବ୍ୟବହାର, 'କାର' ଶବ୍ଦ ଭିତ୍ତିରେ ସତ୍କାର, ପ୍ରକାର, ଆକାର, ବିକାର, ପୁରସ୍କାର, ବହିଷ୍କାର, ଇତ୍ୟାଦି । ଇଂରାଜୀରେ ମଧ୍ୟ ଉପସର୍ଗ ଯୋଗର ପ୍ରଚୁର ଦୃଷ୍ଟାନ୍ତ ରହିଛି, ଯଥା— prefer, refer, defer, confer, receive, deceive, perceive ଓ conceive ଇତ୍ୟାଦି । ବିଭିନ୍ନ ଉପସର୍ଗ ଯୋଗ ଦ୍ୱାରା କ୍ରିୟାର ଅର୍ଥ ବଦଳିଯାଏ । ବିଭିନ୍ନ ପ୍ରତ୍ୟୟ ଯୋଗରେ ଧାତୁରୁ ନିଷ୍ପନ୍ନ ପଦର ଅର୍ଥ ମଧ୍ୟ ବଦଳିଯାଏ, ଯଥା—ଭକ୍ତ, ଭଜନ, ଭାଗ ଇତ୍ୟାଦି । ଶବ୍ଦ ଆଦି, ମଧ୍ୟ ଓ ପ୍ରାନ୍ତରେ କିପରି ଭିନ୍ନ ଭିନ୍ନ ପ୍ରତ୍ୟୟ ଯୋଗ ଦ୍ୱାରା ଧାତୁର ଅର୍ଥ ପରିବର୍ତ୍ତିତ ହୁଏ, ତାହାର ଉଦାହରଣ ଦିଆଯାଇପାରେ ।

**ଆଦ୍ୟଯୋଗ**—ଅଭବତ୍, ଅପଠତ୍ ପ୍ରଭୃତିରେ 'ଅ'ର ଯୋଗ ଅତୀତକାଳର ସୂଚନା ଦିଏ ।

**ମଧ୍ୟଯୋଗ**—ଭୂୟତେ, ପଠ୍ୟତେ, ହସ୍ୟତେରେ 'ଯ' ଭାବବାଚ୍ୟ ବା କର୍ମବାଚ୍ୟର ଦ୍ୟୋତକ । ସେହିପରି 'ଭାବୟତି', 'ପାଠୟତି', 'ହାସୟତି'ରେ 'ଅୟ୍' ହେଉଛି ପ୍ରେରଣାର୍ଥକ । ଚିକୀର୍ଷତି, ଜିହ୍ୱାସତି ଓ ପିପଠିଷତି ପ୍ରଭୃତିରେ 'ଷ' ଇଚ୍ଛାର ଦ୍ୟୋତକ ।

**ଅନ୍ତଯୋଗ**—ଉପର୍ଯ୍ୟୁକ୍ତ ଉଦାହରଣମାନଙ୍କରେ ତ୍ (ଅଭବତ୍), ତେ (ଭୂୟତେ), ତି (ଚିକୀର୍ଷତି) ପ୍ରଭୃତି ଅନ୍ତଯୋଗର ଉଦାହରଣ ।

(ଜ) ଧ୍ୱନିଗୁଣ ( ବଳାଘାତ, ସୁର )—ବଳାଘାତ ତଥା ସୁର ମଧ୍ୟ ସମ୍ବନ୍ଧତତ୍ତ୍ୱର କାର୍ଯ୍ୟ କରିଥାଏ । ଅଫ୍ରିକାର ଫୁଲ୍ ଭାଷାରୁ ଏକ ଉଦାହରଣ ନିଆଯାଇପାରେ; 'ମିବରତି' ଶବ୍ଦରେ 'ର'ର ସୁର ଉଚ୍ଚ ହେଲେ ଏହାର ଅର୍ଥ ହୁଏ "ମୁଁ ମାରି ଦେବି", 'ତି'ର ସୁର ଉଚ୍ଚ ହେଲେ ଅର୍ଥ ହେବ "ମୁଁ ମରିବି ନାହିଁ ।" ଗ୍ରୀକ୍ ଶବ୍ଦ 'ପ୍ୟାଟ୍ରୋକ୍ଟୋନୋସ୍'ର 'ଟ୍ରୋ'ରେ ଥିବା 'ଓ' ଉପରେ ସ୍ୱରାଘାତ ହେଲେ ଏହାର ଅର୍ଥ ହେବ 'ପିତାଙ୍କ ଦ୍ୱାରା ମରାଗଲା' । ଯଦି 'କ୍ଟୋ'ର 'ଓ' ଉପରେ ସ୍ୱରାଘାତ ହୁଏ, ତେବେ ଅର୍ଥ ହେବ 'ପିତାଙ୍କୁ ମାରିଥିବା ବ୍ୟକ୍ତି' । ଇଂରାଜୀ 'Conduct'ର 'କ' (co) ଉପରେ ସ୍ୱରାଘାତ ହେଲେ ଅର୍ଥ ହେବ ପରିଚାଳନ (ବିଶେଷ୍ୟପଦ), 'ଡ' (du) ଉପରେ ସ୍ୱରାଘାତ ହେଲେ ଅର୍ଥ ହେବ ପରିଚାଳନା କରିବା (କ୍ରିୟାପଦ), Present ଶବ୍ଦରେ 'ର' ଉପରେ ବଳାଘାତ ହେଲେ ଅର୍ଥ ଉପସ୍ଥିତ ହେବା (କ୍ରିୟା), Morning ଶବ୍ଦରେ 'ମ' ଉପରେ ବଳାଘାତ ହେଲେ ଅର୍ଥ ହେବ ସ୍ୱାଗତ ବା ସୁପ୍ରଭାତ, 'ଣି' ଉପରେ ବଳାଘାତ ହେଲେ ଅର୍ଥ ହେବ ବିଦାୟ ବା ସନ୍ଧ୍ୟା ।

**ସମ୍ବନ୍ଧତତ୍ତ୍ୱର କାର୍ଯ୍ୟ**—ଭାଷାର ସମ୍ବନ୍ଧତତ୍ତ୍ୱ ଦ୍ୱାରା ମୁଖ୍ୟତଃ କାଳ, ଲିଙ୍ଗ, ପୁରୁଷ, ବଚନ ଏବଂ କାରକ ପ୍ରଭୃତିର ଅଭିବ୍ୟକ୍ତ ହୋଇଥାଏ ।

(କ) କାଳ—କାଳ ଭିତ୍ତିରେ କ୍ରିୟାକୁ ୩ ଭାଗରେ ବିଭକ୍ତ କରାଯାଇଥାଏ, ଯଥା—ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ । ପୁଣି ଏହି କାଳଗୁଡ଼ିକର କ୍ରିୟାମାନଙ୍କର ପୂର୍ଣ୍ଣତା-ଅପୂର୍ଣ୍ଣତା ଏବଂ ଭାବ (mood) ଦୃଷ୍ଟିରୁ କ୍ରିୟାକୁ 'ସାମାନ୍ୟ ବର୍ତ୍ତମାନ', 'ଅପୂର୍ଣ୍ଣ ବର୍ତ୍ତମାନ' ଆଦି ବହୁ ଉପବିଭାଗରେ ବିଭକ୍ତ କରାଯାଇପାରେ । ମୂଳ କ୍ରିୟାରେ ବିଭିନ୍ନ ପ୍ରକାରର ସମ୍ବନ୍ଧତତ୍ତ୍ୱ ଯୋଗକରିବା ଦ୍ୱାରା ହିଁ କ୍ରିୟାର ଏହି ବିଭିନ୍ନ କାଳ ଓ ଭାବ ସୂଚିତ ହୋଇଥାଏ । ଉଦାହରଣ ସ୍ୱରୂପ 'ଖା' ଧାତୁ (ମୂଳକ୍ରିୟା)କୁ ନିଆଯାଉ ।

| ଧାତୁ + ସମ୍ବନ୍ଧତତ୍ତ୍ୱ | କ୍ରିୟା | କ୍ରିୟାର କାଳ ବା ଭାବ |
|---|---|---|
| ଖା + ଏ | = ଖାଏ | ସାମାନ୍ୟ ବା ନିତ୍ୟପ୍ରବୃତ୍ତ ବର୍ତ୍ତମାନ |
| ଖା + ଉଅଛି | = ଖାଉଅଛି | ଅସମ୍ପୂର୍ଣ୍ଣ ବର୍ତ୍ତମାନ |
| ଖା + ଇଅଛି | = ଖାଇଅଛି | ସମ୍ପୂର୍ଣ୍ଣ ବର୍ତ୍ତମାନ |
| ଖା + ଇଲା | = ଖାଇଲା | ସାମାନ୍ୟ ଅତୀତ |
| ଖା + ଉଥିଲା | = ଖାଉଥିଲା | ଅସମ୍ପୂର୍ଣ୍ଣ ଅତୀତ |
| ଖା + ଇଥିଲା | = ଖାଇଥିଲା | ସମ୍ପୂର୍ଣ୍ଣ ଅତୀତ |
| ଖା + ଇବ | = ଖାଇବ | ସାମାନ୍ୟ ଭବିଷ୍ୟତ |
| ଖା + ଉଥିବ | = ଖାଉଥିବ | ଅସମ୍ପୂର୍ଣ୍ଣ ଭବିଷ୍ୟତ |
| ଖା + ଇଥିବ | = ଖାଇଥିବ | ସମ୍ପୂର୍ଣ୍ଣ ଭବିଷ୍ୟତ |
| ଖା + ଆନ୍ତୁ | = ଖାଆନ୍ତୁ | ସମ୍ଭାବ୍ୟ |

(ଖ) ଲିଙ୍ଗ—ପ୍ରାକୃତିକ ଲିଙ୍ଗ ଦୁଇଟି—ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ । ନିର୍ଜୀବ ପଦାର୍ଥକୁ କ୍ଳୀବଲିଙ୍ଗରେ ଅନ୍ତର୍ଭୁକ୍ତ କରାଯାଇଥାଏ । କେତେକ ଭାଷାରେ ନିର୍ଜୀବ ବସ୍ତୁ ବା ପ୍ରାଣୀକୁ ମଧ୍ୟ କ୍ଳୀବଲିଙ୍ଗ ବୋଲି ଧରାଯାଇଥାଏ ଓ ଅନେକ କ୍ଷେତ୍ରରେ 'ସ୍ତ୍ରୀଲିଙ୍ଗ' ବାଚକ ଶବ୍ଦକୁ ପୁଂଲିଙ୍ଗ ବୋଲି ଧରାଯାଇଥାଏ । ସଂସ୍କୃତରେ 'କଳତ୍ର' (ସ୍ତ୍ରୀ) ପ୍ରାକୃତିକ ରୂପରେ ସ୍ତ୍ରୀଲିଙ୍ଗ ହେଲେହେଁ ଏହି ଭାଷାରେ ଏହା କ୍ଳୀବଲିଙ୍ଗ ଭାବରେ ଗୃହୀତ ଓ 'ଦାର' (ସ୍ତ୍ରୀ) ପ୍ରାକୃତିକ ରୂପରେ ସ୍ତ୍ରୀଲିଙ୍ଗ ହେଲେ ହେଁ ପୁଂଲିଙ୍ଗ ଭାବରେ ପରିଗଣିତ । ହିନ୍ଦୀରେ 'କିତାବ' ପ୍ରାକୃତିକ ରୂପରେ କ୍ଳୀବଲିଙ୍ଗ ହେଲେହେଁ ସ୍ତ୍ରୀଲିଙ୍ଗ ରୂପେ ଏବଂ 'ଗ୍ରନ୍ଥ' ପ୍ରାକୃତିକ ରୂପରେ କ୍ଳୀବଲିଙ୍ଗ ହେଲେହେଁ ପୁଂଲିଙ୍ଗ ଭାବରେ ଗୃହୀତ । ଏହିପରି ଲିଙ୍ଗ ଧାରଣା ବିଭିନ୍ନ ଭାଷାରେ ସ୍ପଷ୍ଟ ନୁହେଁ । ତଥାପି ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ଧାରଣା ବା ଭାବକୁ ବ୍ୟକ୍ତ କରିବା ପାଇଁ ବହୁ ଭାଷାରେ ସମ୍ବନ୍ଧତତ୍ତ୍ୱର ସାହାଯ୍ୟ ନିଆଯାଇଛି । ଯଥା—

୧ । ପ୍ରତ୍ୟୟ ଯୋଗ କରି—ସୁନ୍ଦର + ଈ = ସୁନ୍ଦରୀ (ସଂସ୍କୃତ), ବ୍ରାହ୍ମଣ + ଇଆଣୀ = ବ୍ରାହ୍ମଣିଆଣୀ (ଓଡ଼ିଆ), ତନ୍ତୀ + ଅଣୀ = ତନ୍ତୀଅଣୀ (ଓ), ପାଟର + ଣୀ = ପାଟରଣୀ (ଓ), ମେହେନ୍ତର + ଅଣୀ = ମେହେନ୍ତରଣୀ, Prince + ss = Princess (ଇଂ) Mister + ess = Mistress (ଇଂ), ବାଳ + ଇକା = ବାଳିକା (ସଂ), ମାଧବ + ଇକା = ମାଧବିକା ।

୨ । ଅନ୍ୟ ଶବ୍ଦର ସାହାଯ୍ୟ ନେଇ—bride-bridegroom, He goat-She goat, ଅଣ୍ଡିରାଛେଳି-ମାଇଛେଳି, ଅଣ୍ଡିରା-କୁଲ୍ (ବାଘ)-ଏଣ୍ଡା-କୁଲ୍ (ବାଘୁଣୀ) ।

୩। ସ୍ୱତନ୍ତ୍ର ଶବ୍ଦ ସୃଷ୍ଟି କରି—ସ୍ତ୍ରୀ-ପୁରୁଷ, ବର-ବଧୂ, ମାତା-ପିତା, ରଜା-ରାଣୀ, ଭାଇ-ଭଉଣୀ, boy-girl, king-queen.

**(ଗ) ପୁରୁଷ**—ପୁରୁଷ ଭେଦରେ କ୍ରିୟାର ରୂପ ପରିବର୍ତ୍ତିତ ହୋଇଯାଏ। ପୁରୁଷ ଭିତ୍ତିରେ କ୍ରିୟାର ରୂପ କିପରି ବଦଳିଯାଏ ଓ ସେଥିପାଇଁ ସମ୍ବନ୍ଧତତ୍ତ୍ୱ କିପରି ବଦଳିଯାଏ, ତା'ର କେତୋଟି ଉଦାହରଣ ଲକ୍ଷ୍ୟ କରାଯାଉ—

ମୁଁ ଖାଏ (ଖା+ଏ), ତୁ ଖାଉ (ଖା+ଉ), ତୁମେ ଖାଅ (ଖା+ଅ), ସେମାନେ ଖାଆନ୍ତି (ଖା+ଅନ୍ତି), ଅହଂ ପଠାମି (ପଠ+ଅମି), ସଃ ପଠତି (ପଠ୍+ଅତି), ତ୍ୱଂ ପଠସି (ପଠ+ଅସି), I am eating, You are eating, He is eating, I go, He goes (go+es), I eat, He eats (eat+s).

**(ଘ) ବଚନ**—ବଚନ ମୁଖ୍ୟତଃ ଦୁଇଟି—ଏକବଚନ ଓ ବହୁବଚନ। କିନ୍ତୁ ସଂସ୍କୃତ ଓ ଲିଥୁଆନିଆ ପ୍ରଭୃତି ଅଳ୍ପ କେତେକ ଭାଷାରେ ଦ୍ୱିବଚନ ଓ କେତେକ ଅଫ୍ରିକୀୟ ଭାଷାରେ ତ୍ରିବଚନର ପ୍ରୟୋଗ ରହିଛି। ବିଶେଷ, ସର୍ବନାମ, କ୍ରିୟା ଓ ବିଶେଷଣ ଏହି ବଚନ ଭିତ୍ତିରେ ଅନେକ ସମୟରେ ପରିବର୍ତ୍ତିତ ହୋଇଥାଏ। ବଚନ ପରିବର୍ତ୍ତନ କ୍ଷେତ୍ରରେ ମଧ୍ୟ ସମ୍ବନ୍ଧତତ୍ତ୍ୱର ସାହାଯ୍ୟ ନିଆଯାଇଥାଏ। ଯଥା—boy-boys, potato-potatoes, ox-oxen, foot-feet, ନରଃ-ନରୌ-ନରାଃ, ପିଲା-ପିଲାମାନେ, ଘର-ଘରଗୁଡ଼ିକ ଇତ୍ୟାଦି।

## ରୂପର ପରିବର୍ତ୍ତନ (Morphological Change)

ସାଧାରଣ ଦୃଷ୍ଟିରୁ ଧ୍ୱନି ପରିବର୍ତ୍ତନ ଓ ରୂପ ପରିବର୍ତ୍ତନ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ନ ହେଉଥିଲେହେଁ ବାସ୍ତବତଃ ଦୁଇଟି ମଧ୍ୟରେ ପାର୍ଥକ୍ୟ ରହିଛି। କେବେ କେବେ ଦୁଇଟି ମଧ୍ୟରେ ଏତେ ସାମଞ୍ଜସ୍ୟ ଓ ସମୀପ୍ୟ ରହିଛି ଯେ ଦୁଇଟିକୁ ଅଲଗା କରିଦେଖାଇବା କଷ୍ଟସାଧ୍ୟ, କିନ୍ତୁ ଏହା ଅସମ୍ଭବ କାର୍ଯ୍ୟ ନୁହେଁ। ଧ୍ୱନି ପରିବର୍ତ୍ତନ କ୍ଷେତ୍ରରେ ଦେଖାଯାଏ, କୌଣସି ଭାଷାର ବିଶିଷ୍ଟ ଧ୍ୱନି ଗୋଟିଏ ଶବ୍ଦରେ ଯେଉଁ ପଦ୍ଧତିରେ ପରିବର୍ତ୍ତିତ ହୋଇଅଛି, ସେହି ପଦ୍ଧତିରେ ପର୍ଯ୍ୟାପ୍ତ ଶବ୍ଦରେ ସେହି ଧ୍ୱନି ସେହି ପଦ୍ଧତିରେ ପରିବର୍ତ୍ତିତ ହୋଇଅଛି। ପରିବର୍ତ୍ତନ ପଦ୍ଧତି ସମାନ ରହିବା ଫଳରେ ଧ୍ୱନି-ନିୟମମାନ ପ୍ରଣୀତ ହୋଇଅଛି। ଧ୍ୱନି ପରିବର୍ତ୍ତନ ଏହିପରି ଭାବରେ ବ୍ୟାପକ କ୍ଷେତ୍ରରେ ପ୍ରଭାବ ବିସ୍ତାର କରେ, କିନ୍ତୁ ରୂପ ପରିବର୍ତ୍ତନର କ୍ଷେତ୍ର ଯଥେଷ୍ଟ ସୀମିତ। ଏହା ଗୋଟିଏ ଶବ୍ଦରେ ଯେଉଁ ପଦ୍ଧତିରେ ଦେଖାଦେଇଥାଏ, ଅନ୍ୟ ଶବ୍ଦମାନଙ୍କରେ ସେହି ପଦ୍ଧତିରେ ଦେଖାଯାଏ ନାହିଁ। ତେଣୁ ସ୍ଥୂଳତଃ କହିବାକୁ ଗଲେ—ଧ୍ୱନି ପରିବର୍ତ୍ତନର ପରିସର ବ୍ୟାପକ ଓ ରୂପ ପରିବର୍ତ୍ତନର ପରିସର ସୀମିତ ଓ ସଙ୍କୁଚିତ।

## ରୂପ ପରିବର୍ତ୍ତନର ବିଭିନ୍ନ କାରଣ

**(୧) ସରଳତା ସୌକର୍ଯ୍ୟ**—ଯେଉଁ ସରଳତା ଓ ସୌକର୍ଯ୍ୟ ପ୍ରବୃତ୍ତି ଯୋଗୁ ଧ୍ୱନିର ପରିବର୍ତ୍ତନ ହୋଇଥାଏ, ସେହି ପ୍ରବୃତ୍ତି ଯୋଗୁ ରୂପର ମଧ୍ୟ ପରିବର୍ତ୍ତନ ହୋଇଥାଏ । ହରି, କରିନ୍, ମୁନି, ସାଧୁ ପ୍ରଭୃତି ଶବ୍ଦମାନଙ୍କର ତୃତୀୟା । ଏକବଚନରେ ହରିଣା, କରିଣା, ମୁନିନା ଏବଂ ସାଧୁନା ପ୍ରଭୃତି ରୂପରେ ସର୍ବତ୍ର 'ନା' (ଣା)ର ପ୍ରୟୋଗ ଏହି ସରଳତା-ଆଗ୍ରହର ଫଳ । ସାଧାରଣତଃ ପ୍ରଥମପଦକ୍ତ ଶବ୍ଦମାନଙ୍କର ଅନ୍ତିମ ଧ୍ୱନିରେ ପାର୍ଥକ୍ୟ ଥିବା କାରଣରୁ (ହରି-ହ୍ରସ୍ୱ 'ଇ' କାରାନ୍ତ, କରିନ୍-ନ୍ କାରାନ୍ତ, ମୁନି-ହ୍ରସ୍ୱ 'ଇ' କାରାନ୍ତ, ସାଧୁ-ହ୍ରସ୍ୱ 'ଉ' କାରାନ୍ତ) ଏଗୁଡ଼ିକର ରୂପରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ ହେବାର କଥା । କିନ୍ତୁ ସରଳତା ପ୍ରବୃତ୍ତି ଯୋଗୁ ଏଗୁଡ଼ିକର ଏକରୂପତା ଦେଖାଦେଇଛି ।

**(୨) ସାଦୃଶ୍ୟ**—ସାଦୃଶ୍ୟ ଯେପରି ଧ୍ୱନି ପରିବର୍ତ୍ତନରେ ପ୍ରଭାବ ବିସ୍ତାର କରେ, ରୂପ ପରିବର୍ତ୍ତନରେ ମଧ୍ୟ ସେହିପରି ନ୍ୟୂନାଧିକ ପ୍ରଭାବ ବିସ୍ତାର କରେ । ଉଦାହରଣ ସ୍ୱରୂପ, ହିନ୍ଦୀ ଭାଷାରେ ସମ୍ବନ୍ଧ କାରକର କଥିତ ଭାଷାରେ ପ୍ରଚଳିତ ରୂପ ମେରେ କୋ, ମେରେ ସେ, ମେରେ ପର, ମେରେ ମେଂ, ତେରେ କୋ, ତେରେ ସେ, ତେରେ ପର, ତେରେ ମେଂ ପ୍ରଭୃତି ମୁଝକୋ, ମୁଝସେ, ମୁଝପର ପ୍ରଭୃତି ସ୍ଥାନରେ ବିକାଶ ଲାଭ କରିଛି । ସେହିପରି 'ଇନୋ' ସାଦୃଶ୍ୟରେ 'ଦୋନୋଁ' ରୂପ ଦେଖାଦେଇଛି । 'ତିନ୍'ରେ 'ନ୍' ଥିବାରୁ 'ତିନୋଁ' ହୋଇଅଛି, କିନ୍ତୁ 'ଦୋ'ରେ 'ନ୍' ନାହିଁ । ସେହିପରି ଓଡ଼ିଆରେ 'ନିର୍ବୋଧକ' ସାଦୃଶ୍ୟରେ 'ସର୍ବୋଧକ' ଶବ୍ଦର ସୃଷ୍ଟି ହୋଇଅଛି ।

**(୩) ଅଜ୍ଞତା**—ଅଜ୍ଞତା ହେତୁ ରୂପ ସମ୍ବନ୍ଧୀୟ ଅନେକ ପରିବର୍ତ୍ତନ ଦେଖାଯାଏ । ଯଥା ଉପରୋକ୍ତ (ଉପର୍ଯ୍ୟୁକ୍ତ ହେବାର କଥା), ସକ୍ଷମ (କ୍ଷମ ହେବାର କଥା), ସାପେକ୍ଷି (ସାପେକ୍ଷ ବା ଆପେକ୍ଷିକ ହେବାର କଥା) ଇତ୍ୟାଦି ।

**(୪) ନବନତା-ଆଗ୍ରହ**—ମନୁଷ୍ୟ ଏକ ଦିଗରେ ଯେପରି ପରମ୍ପରା ପ୍ରେମୀ, ଅନ୍ୟ ଦିଗରେ ସେହିପରି ନବୀନତା ପ୍ରେମୀ । ଏହି ନବୀନତା ପ୍ରେମ ଯୋଗୁ ଭାଷାରେ ଗୋଟିଏ ଗୋଟିଏ ଶବ୍ଦର ରୂପ ରୂପାନ୍ତର ଘଟିଥାଏ । ଉପସର୍ଗ ପ୍ରତ୍ୟୟ ଯୋଗରେ ଶବ୍ଦର ରୂପ ପରିବର୍ତ୍ତିତ କରି ଦିଆଯାଏ, ଯଥା—ପ୍ରୟୋଗରୁ ସୁପ୍ରୟୋଗ, କଳ୍ପନାରୁ ସୁକଳ୍ପନା, ପରିକଳ୍ପନା, ବିକଳ୍ପନା, କଳ୍ପନାରୁ କଳ୍ପନୀୟ, ପ୍ରୟୋଗରୁ ପ୍ରାୟୋଗିକ, ପ୍ରୟୋଗାତ୍ମକ ଇତ୍ୟାଦି, ହ୍ରାସରୁ ଅବହ୍ରାସ, ମୂଲ୍ୟାୟନରୁ ଅବମୂଲ୍ୟାୟନ । ନବୀନତା ଅବାଞ୍ଛନୀୟ ନୁହେଁ, କିନ୍ତୁ ବ୍ୟାକରଣର ନିୟମକୁ ଲଙ୍ଘନ କରିଗଲେ ଓ କଳ୍ପିତ ଅର୍ଥର ସହିତ ସୃଷ୍ଟ ଶବ୍ଦର ପ୍ରକୃତ ଅର୍ଥ-ଅନର୍ଥ-ସଙ୍ଗତି ନରହିଲେ ଭାଷାରେ ଅରାଜକତା ସୃଷ୍ଟି ହେବ ।

(୫) ବଳ—ବଳଦାନ ସ୍ୱରନାରୁ ଯେପରି ଧ୍ୱନିର ପରିବର୍ତ୍ତନ ଦେଖାଦିଏ, ରୂପର ମଧ୍ୟ ସେହିପରି ପରିବର୍ତ୍ତନ ଦେଖାଦିଏ । 'ଶ୍ରେଷ୍ଠ' ଶବ୍ଦକୁ ଲଘୁ ସ୍ୱରରେ ନେଇ ବଳଦାନ ଲକ୍ଷ୍ୟରେ 'ଶ୍ରେଷ୍ଠତମ', 'ସର୍ବଶ୍ରେଷ୍ଠ' ଶବ୍ଦର ସୃଷ୍ଟି କରାଯାଉଛି । କିନ୍ତୁ 'ଶ୍ରେଷ୍ଠ' ଶବ୍ଦରେ ଏହି ଲକ୍ଷ୍ୟ ସାଧିତ ହୋଇସାରିଛି । ଇଂରାଜୀରେ ଏହାକୁ 'double superlative' କହନ୍ତି, ଯଥା—Most nearest. 'ସ୍ୱାଦୁ' ଶବ୍ଦରେ ବଳ ଦେବା ପାଇଁ ସେହି ସ୍ୱାଦୁ ଅର୍ଥରେ ଅନେକେ 'ସ୍ୱାଦିଷ୍ଟ' ଶବ୍ଦ ବ୍ୟବହାର କରିଥାନ୍ତି ଯଦ୍ୟପି ଏହା ହେଉଅଛି ଅତିଶୟ ବାଚକ ବା ଶ୍ରେଷ୍ଠ ବାଚକ । ସେହିପରି ଅନେକ ଅନାବଶ୍ୟକ ରୂପର ସୃଷ୍ଟି ବଳଦାନ କାରଣରୁ ଘଟିଥାଏ, ଯଥା—ଆବଶ୍ୟକ> ଆବଶ୍ୟକୀୟ, ପ୍ରତ୍ୟେକ>ପ୍ରତ୍ୟେକଟି, ଅଧୀନ>ଅଧୀନସ୍ଥ, ଆଜଣୁ>ଆଜଣୁ ପର୍ଯ୍ୟନ୍ତ, ଉହାଳି>ଆହାଳିରୁ, ଉଜ୍ଜ୍ୱଳ>ଉଜ୍ଜ୍ୱଳମୟ, ଅବ୍ୟବହିତ ପୂର୍ବେ>ଠିକ୍ ଅବ୍ୟବହିତ ପୂର୍ବେ ଇତ୍ୟାଦି ।

ଧ୍ୱନି-ପରିବର୍ତ୍ତନ ପରି ରୂପ-ପରିବର୍ତ୍ତନ ମଧ୍ୟ ଭାଷା-ପରିବର୍ତ୍ତନରେ ସହାୟକ ହୋଇଥାଏ । ତେବେ ଧ୍ୱନି ପରିବର୍ତ୍ତନ ହେଲେ ପୁରାତନ ଅବଶେଷ କମ୍ ରହିଥାଏ, କିନ୍ତୁ ରୂପ-ପରିବର୍ତ୍ତନ ହେଲେ ବହୁ ପୁରାତନ ରୂପ ମଧ୍ୟ ଦେଖିବାକୁ ମିଳେ । ନୂତନ ରୂପ ସଙ୍ଗରେ ପୁରାତନ ରୂପ ମଧ୍ୟ ପ୍ରଚଳିତ ହେଉଥାଏ । ତେଣୁ ଗୋଟିଏ ଗୋଟିଏ ପଦର ବହୁ ରୂପ ପରିଲକ୍ଷିତ ହୋଇଥାଏ ।



## ● ନବମ ପରିଚ୍ଛେଦ ●

# ଅର୍ଥ ବିଜ୍ଞାନ

ଶବ୍ଦ ହେଉଛି ଭାଷାର ଶରୀର, କିନ୍ତୁ ଅର୍ଥ ହେଉଛି ଭାଷାର ଆତ୍ମା । ଅର୍ଥ ବିନା ଭାଷାର କୌଣସି ମହତ୍ତ୍ୱ ନାହିଁ । ଅର୍ଥର ମହତ୍ତ୍ୱ ବହୁ ପ୍ରାଚୀନ କାଳରୁ ସ୍ୱୀକୃତ ହୋଇଆସିଛି । ଯାସ୍କଙ୍କ ମତରେ ବିନା ଅଗ୍ନିରେ ଯେପରି ଶୁଷ୍କ ଇନ୍ଧନ ପ୍ରଜ୍ୱଳିତ ହୋଇପାରିବ ନାହିଁ, ସେହିପରି ବିନା ଅର୍ଥରେ ଧ୍ୱନି ଅଭିପ୍ସିତ ବିଷୟକୁ ପ୍ରକାଶିତ କରି ପାରିବ ନାହିଁ—

"ଯଦ୍ ଗୃହୀତମ୍‌ବିଜ୍ଞାତଂ ନିଗଦେନୈବ ଶବ୍ଦ୍ୟତେ
ଅନାଗ୍ନାବିବ ଶୁଷ୍କୈଧୋ ନ ତଜ୍ଜ୍ୱଳତି କର୍ହିଚିତ୍ ।"—ନିରୁକ୍ତ ୧, ୮

ଏ ପ୍ରସଙ୍ଗରେ ସେ ପୁଣି କହିଛନ୍ତି, "ଅର୍ଥ ନ ଜାଣି ଯେ ବେଦାଧ୍ୟୟନ କରେ, ସେ କେବଳ ଭାର ବହନ କରେ । ଅର୍ଥ ଜାଣିଥିବା ବ୍ୟକ୍ତି ସମସ୍ତ ଶୁଭର ଭାଗୀ ହୋଇଥାଏ ଏବଂ ଜ୍ଞାନ-ଜ୍ୟୋତି ଦ୍ୱାରା ସକଳ ଦୋଷକୁ ଦୂର କରି ବ୍ରହ୍ମତ୍ୱ ଲାଭକରେ ।"

ଶବ୍ଦ ହେଉଛି ଅର୍ଥ ଅଭିବ୍ୟକ୍ତିର ମାଧ୍ୟମ । ଶବ୍ଦ ଅମୂର୍ତ୍ତ ଅର୍ଥର ମୂର୍ତ୍ତି ରୂପ । ଶବ୍ଦବୋଧକ, ଅର୍ଥବୋଧ । ଅର୍ଥ ନ ହେଲେ ଶବ୍ଦର ଅସ୍ତିତ୍ୱ ନାହିଁ । ତେଣୁ ଅର୍ଥ ହେଉଛି ଗୋଟିଏ ସାର୍ଥକ ଶବ୍ଦର ପ୍ରକୃତ ପ୍ରାଣ ।

ଧ୍ୱନି ଓ ରୂପର ପରିବର୍ତ୍ତନ ପରି ଅର୍ଥରେ ମଧ୍ୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଅର୍ଥ ପରିବର୍ତ୍ତନକୁ ଅର୍ଥ ବିକାଶ ମଧ୍ୟ କୁହାଯାଏ । ଅର୍ଥର ପରିବର୍ତ୍ତନ ବିଭିନ୍ନ କାରଣରୁ ଓ ବିଭିନ୍ନ ଢଙ୍ଗରେ ସଂଘଟିତ ହୋଇଥାଏ । ଅର୍ଥ ପରିବର୍ତ୍ତନ ଭାଷାବିଜ୍ଞାନରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ବୋଲି ଭାଷାବିତ୍ ଗ୍ରେଓ ବ୍ଲୁମ୍ ଫିଲ୍ଡ ମତ ଦେଇଛନ୍ତି । ଧ୍ୱନି ପରିବର୍ତ୍ତନ ଦ୍ୱାରା ଶବ୍ଦର ହୁଏ ଅଙ୍ଗିକ ପରିବର୍ତ୍ତନ ବା ବାହ୍ୟ ପରିବର୍ତ୍ତନ; କିନ୍ତୁ ଅର୍ଥ

ପରିବର୍ତ୍ତନ ଦ୍ୱାରା ତା'ର ହୁଏ ଆତ୍ମିକ ପରିବର୍ତ୍ତନ ବା ଆନ୍ତରିକ ପରିବର୍ତ୍ତନ । ଅର୍ଥ ପରିବର୍ତ୍ତନ ବେଳେ କୌଣସି କୌଣସି କ୍ଷେତ୍ରରେ ବାହ୍ୟ ପରିବର୍ତ୍ତନ ମଧ୍ୟ ଦେଖା-ଦେଇପାରେ; କିନ୍ତୁ ଏହି ପରିବର୍ତ୍ତନ ଗୌଣ, ମୁଖ୍ୟ ହେଉଛି ତା'ର ଆଭ୍ୟନ୍ତରୀଣ ପରିବର୍ତ୍ତନ । ଅର୍ଥ ପରିବର୍ତ୍ତନ ଶବ୍ଦର ଜୀବନରେ ବିସ୍ତୃତ ଅଥବା ସୀମିତ ହୋଇପାରେ; କିନ୍ତୁ ଏହା ସ୍ୱାଭାବିକ ଅନିବାର୍ଯ୍ୟ । କାରଣ ଶବ୍ଦ ହେଉଛି ଅର୍ଥାତ୍ମକ । ଶବ୍ଦ ବ୍ୟକ୍ତିରୁ ବ୍ୟକ୍ତିକୁ, ସମାଜରୁ ସମାଜକୁ, ଦେଶରୁ ଦେଶକୁ ଗତି କରେ । ଏହି ଗତି ତା'ର ଆଭ୍ୟନ୍ତରୀଣ ଜୀବନରେ ପରିବର୍ତ୍ତନ ଆଣେ ଅର୍ଥାତ୍ ଅର୍ଥରେ ପରିବର୍ତ୍ତନ ଆଣେ ।

## ଅର୍ଥ ପରିବର୍ତ୍ତନର ବିଭିନ୍ନ କାରଣ

ଧ୍ୱନି ଓ ରୂପ ପରିବର୍ତ୍ତନର ପରିସର ଅପେକ୍ଷା ଅର୍ଥ ପରିବର୍ତ୍ତନର ପରିସର ଯଥେଷ୍ଟ ବ୍ୟାପକ, କାରଣ ଅର୍ଥ ପରିବର୍ତ୍ତନ ଭୂଗୋଳ, ଇତିହାସ ପରି ବାହ୍ୟ ଜଗତଠାରୁ ଆରମ୍ଭ କରି ମାନସିକ ସୁଖ-ଦୁଃଖ ପର୍ଯ୍ୟନ୍ତ ବହୁ ବ୍ୟାପକ ଦିଗ ଉପରେ ନିର୍ଭର କରେ । ତେଣୁ ଅର୍ଥ ପରିବର୍ତ୍ତନର କାରଣ ସୀମିତ ନୁହେଁ । ଶବ୍ଦକୁ ପ୍ରୟୋଗ କରିବାର ଅଧିକାର ପ୍ରତ୍ୟେକ ମଣିଷର ରହିଛି । ଗୋଟିଏ ନିର୍ଦ୍ଦିଷ୍ଟ ସମାଜ ଭିତରେ, ନିର୍ଦ୍ଦିଷ୍ଟ କାଳ ମଧ୍ୟରେ, ନିର୍ଦ୍ଦିଷ୍ଟ ପାତ୍ର ମଧ୍ୟରେ ଜଣେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦର ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରିବା ଦିଗରେ ସାଧାରଣତଃ ଅଭ୍ୟସ୍ତ ହେଲେହେଁ ପ୍ରତ୍ୟେକ ଶବ୍ଦର ପ୍ରୟୋଗ ବେଳେ ପ୍ରତ୍ୟେକ ମଣିଷ ମନର କାଳ୍ପନିକ ବିଳାସ କାର୍ଯ୍ୟ କରୁଥାଏ । ଶବ୍ଦର ସଙ୍କେତକୁ ସୀମା ଭିତରେ ଆବଦ୍ଧ କରିବା ପାଇଁ ସେ ପସନ୍ଦ କରେନାହିଁ । ସୃଷ୍ଟି ଭିତରେ ସଙ୍କେତ ଅସୀମ । ତେଣୁ ସେ ଶବ୍ଦକୁ ବ୍ୟାପକ ସଙ୍କେତ ଭିତରେ ପ୍ରକାଶ କରିବା ପାଇଁ ଅଭିଳାଷ କରେ । ତେଣୁ ଶବ୍ଦ ସମ୍ଭବତ ପ୍ରଥମେ ଗୋଟିଏ ଅର୍ଥ ସଂଶ୍ଳିଷ୍ଟ ଥିଲେହେଁ କାଳକ୍ରମେ ଏହି ଶବ୍ଦର ବହୁ ସଙ୍କେତ ବା ବହୁ ଅର୍ଥ ଉଦ୍ଭାବିତ ହୁଏ । ସଂସ୍କୃତ ସାହିତ୍ୟ ଏ ଦିଗରେ ଅତ୍ୟନ୍ତ ସମୃଦ୍ଧ । ଗୋଟିଏ ଗୋଟିଏ ସଂସ୍କୃତ ଶବ୍ଦର ଶତାଧିକ ଅର୍ଥ ଲକ୍ଷ୍ୟ କରିବାକୁ ମିଳେ । ଅର୍ଥକୁ ପରିବର୍ତ୍ତନ କରିବା ଦିଗରେ ସଂସ୍କୃତ ବିଦ୍ୱାନ୍‌ମାନେ ଅଧିକ ବିଳାସୀ ଥିବାରୁ ବ୍ୟଞ୍ଜନା, ଲକ୍ଷଣା ଆଦିର କଳ୍ପନା କରିଛନ୍ତି । ଅର୍ଥ ପରିବର୍ତ୍ତନର ପରିସୀମା ପରିବ୍ୟାପକ ଥିବାରୁ ଏହାର କାରଣ ପର୍ଯ୍ୟାପ୍ତ ହୋଇପାରେ । ଏଠାରେ କେତେକ ଦୃଷ୍ଟି ଆକର୍ଷଣକାରୀ ଉଦାହରଣ ଦିଆଯାଇପାରେ ।

(୧) **ଶବ୍ଦର ବହୁଳ ପ୍ରୟୋଗ**—ଶବ୍ଦର ବହୁଳ ପ୍ରୟୋଗ ଫଳରେ ତାହାର ଅର୍ଥ କ୍ରମେ ଅତି ସାଧାରଣ ହୋଇଯାଏ । ତାହାର ଶକ୍ତି ଓ ମହତ୍ତ୍ୱ ନଷ୍ଟ ହୋଇଯାଏ । ଯଥା —

**ଶାସ୍ତ୍ରୀ**—ପ୍ରଥମେ ଶାସ୍ତ୍ରୀ ଶବ୍ଦ ଅତୀବ ସମ୍ମାନଜନକ ଉପାଧିର ଦ୍ୟୋତକ ଥିଲା । ଷଡ୍‌ଦର୍ଶନ, ବ୍ୟାକରଣ, ବେଦବେଦାଙ୍ଗ ପ୍ରଭୃତି ଶାସ୍ତ୍ରରେ ଯେଉଁମାନଙ୍କର ପ୍ରବେଶ ଥିଲା ସେମାନଙ୍କୁ କୁହାଯାଉଥିଲା ଶାସ୍ତ୍ରୀ । କ୍ରମେ ପାଣ୍ଡିତ୍ୟ ପ୍ରତିଯୋଗିତାରେ ବିଜୟୀମାନଙ୍କୁ କୁହାଗଲା ଶାସ୍ତ୍ରୀ । ତା'ପରେ ଶିକ୍ଷକମାନେ ଶାସ୍ତ୍ରୀ ଭାବରେ ପରିଚିତ ହେଲେ । ଶେଷରେ ଏକ ବ୍ରାହ୍ମଣ ଜାତି ସଂଜ୍ଞା ଗ୍ରହଣ କଲେ । ଏହିପରି ଭାବରେ 'ଶାସ୍ତ୍ରୀ' ଶବ୍ଦ ତା'ର ଗୁରୁତ୍ୱପୂର୍ଣ୍ଣ ଅର୍ଥ ହରାଇ ଶେଷରେ ଏକ ସାଧାରଣ ପାରିବାରିକ ସଂଜ୍ଞାରେ ପରିଣତ ହୋଇଗଲା ।

**ପଣ୍ଡିତ**—ପ୍ରଥମେ ପଣ୍ଡିତ ଶବ୍ଦ ଶାସ୍ତ୍ରଦ୍ରଷ୍ଟା, ଶାସ୍ତ୍ରସ୍ରଷ୍ଟା ଓ ଶାସ୍ତ୍ର-ଆଲୋଚକଙ୍କ ପାଇଁ ପ୍ରଯୁକ୍ତ ଥିଲା । କ୍ରମେ ସଂସ୍କୃତ ସାହିତ୍ୟରେ କିଛି ଜ୍ଞାନଥିବା ବ୍ୟକ୍ତିଙ୍କୁ ପଣ୍ଡିତ କୁହାଗଲା । ତା'ପରେ ସଂସ୍କୃତ ପଢ଼ାଉଥିବା ଶିକ୍ଷକ ପଣ୍ଡିତ ଭାବରେ ଅଭିହିତ ହେଲେ । ଶେଷରେ ଯେ କୌଣସି ବିଷୟରେ କିଛି ଜ୍ଞାନଥିବା ବ୍ୟକ୍ତିଙ୍କୁ କୁହାଗଲା ପଣ୍ଡିତ ।

**ଶ୍ରୀମାନ**—ପ୍ରଥମେ ଏହାର ଅର୍ଥ ଥିଲା ଧନବାନ୍, ପରେ ଅର୍ଥ ହେଲା ଅଗ୍ରଣୀ । ଶେଷରେ ଯେ କୌଣସି ବ୍ୟକ୍ତିଙ୍କୁ ଟିକିଏ ସ୍ନେହର ସହିତ ସମ୍ବୋଧନ କଲାବେଳେ 'ଶ୍ରୀମାନ୍' ଶବ୍ଦର ପ୍ରୟୋଗ ହେବାକୁ ଲାଗିଲା ।

**(୨) ଅଳଙ୍କାର ପ୍ରୟୋଗ**—ଅଦୃଶ୍ୟକୁ ଦୃଶ୍ୟ, ଅରୂପକୁ ରୂପ ଦେଇ ତୋଳିବା ସାହିତ୍ୟିକର ଧର୍ମ । ଏହି ବ୍ୟାପାର ହେଉଛି ଅଳଙ୍କାର । ସ୍ୱରସାମ୍ୟ, ଧର୍ମସାମ୍ୟ ପ୍ରଭୃତି କାରଣରୁ ଅଳଙ୍କାରର ପ୍ରୟୋଗ ହୋଇଥାଏ । ଏହା ଫଳରେ ଶବ୍ଦର ଅର୍ଥ ବଦଳିଯାଏ । ଉପମା ରୂପକ ଆଦି ଅଳଙ୍କାରରେ ଭାବ ପ୍ରକାଶର ଚମତ୍କାରିତା ପ୍ରକାଶିତ ହୁଏ । ଅର୍ଥର ଏପରି ପରିବର୍ତ୍ତନ ଭାଷା ରାଜ୍ୟରେ ଉତ୍କର୍ଷ ଓ ବୈଚିତ୍ର୍ୟପୂର୍ଣ୍ଣ । ଅଳଙ୍କାରର ପ୍ରୟୋଗ ଫଳରେ ଅର୍ଥ ପରିବର୍ତ୍ତନର କେତୋଟି ଦୃଷ୍ଟାନ୍ତ ହେଉଛି—ନାଗସାପ (>ଭୟଙ୍କର ବ୍ୟକ୍ତି), ଗଧ (>ଅଳସୁଆ, ମୂର୍ଖ), ଛେଳି (>ଡରକୁଳା), ଉଲୁ (ଉଲ୍ଲୁକ ଶବ୍ଦଜ>ନିର୍ବୋଧ), ଷଣ୍ଢା (>ପ୍ରତିବନ୍ଧକ), ବଳଦ (>ବୋକାଭାବରେ ପରର କାର୍ଯ୍ୟକରୁଥିବା ବ୍ୟକ୍ତି), କୁଟୁମକାଠ (କୃପଣ), ପଥର (>କଠୋର, ହୃଦୟହୀନ), ଲୁହା (>ଟାଣ), ବିଲୁଆ (>ଧୂର୍ତ୍ତ), କୁକୁର (>ହୀନମାନ, ନିର୍ଲଜ୍ଜ), ଗୁନ୍ଦ (>ଗେଲବସର), ମହୁମାଛି (>ମିତବ୍ୟୟୀ, ସଞ୍ଚୟକାରୀ), ଫୁଲ (>ସୁନ୍ଦର), ରତ୍ନ (>ଶ୍ରେଷ୍ଠ), ଗୁଳାମୁହାଁ କାଙ୍କ (>ଠକ), ବଗଡ଼-ବୈଷ୍ଣବ (>ଠକ) ପ୍ରଭୃତି ।

**(୩) ପରିଚିତ ପଦାର୍ଥର ଗୁଣସାମ୍ୟ ବା ସନ୍ନିଧି**—କୌଣସି ଜିନିଷର ଆକାର, ଆକୃତି, ଦୃଶ୍ୟ, ରୂପ, ଗୁଣ ଆଦିର ସାଦୃଶ୍ୟ ଥିଲେ ବା ତାହାର ସନ୍ନିଧିରେ

ଥିଲେ ଅନ୍ୟ ଜନପଦ ସଦୃଶ୍ୟ ଜନପଦର ନାମ ଧାରଣ କରିଥାଏ । ଫଳରେ ଗୋଟିଏ ଶବ୍ଦର ଅଧିକ ଅର୍ଥ ଦେଖାଦିଏ । ଯଥା—

ସିନ୍ଧୁ — ସିନ୍ଧୁ ଅର୍ଥ ସମୁଦ୍ର । କିନ୍ତୁ ଉତ୍ତର ପଶ୍ଚିମ ଭାରତରେ ପ୍ରବାହିତ ବିରାଟ ନଦୀଟି ସମୁଦ୍ର ପରି ବିଶାଳ ଦେଖାଯାଉଥିବାରୁ ତାହାର ନାମ ସିନ୍ଧୁ । ସିନ୍ଧୁ-ନଦୀର ସନ୍ନିଧିରେ ଥିବାରୁ ଏହି ଅଞ୍ଚଳ ନାମ ସିନ୍ଧୁ (=ସିନ୍ଧୁ ପ୍ରଦେଶ) ।

ଲଜକୁଳୀ—ଗୁଣସାମ୍ୟ ହେତୁ ସ୍ପର୍ଶକାତର ଲତାଟିର ନାମ ଲଜକୁଳି ।

(୪) ପ୍ରୟୋଗରେ ଅସାବଧାନତା—ଅସାବଧାନ ବା ଭ୍ରମାତ୍ମକ ପ୍ରୟୋଗ ମଧ୍ୟ ଶବ୍ଦର ଅର୍ଥରେ ପରିବର୍ତ୍ତନ ଆଣେ । ଯଥା—

ସଂସୃଷ୍ଟି—ସଂସୃଷ୍ଟିର ପ୍ରକୃତ ଅର୍ଥ ହେଉଛି ସମ୍ୟକ୍ ମିଶ୍ରଣ । ଅବଶ୍ୟ ଏ ମିଶ୍ରଣରେ ଉଭୟ ମିଶ୍ରିତ ପଦାର୍ଥ ସ୍ୱାତନ୍ତ୍ର୍ୟ ରକ୍ଷା କରିଥାନ୍ତି । କିନ୍ତୁ ଅସାବଧାନତା ଫଳରେ ଅନେକ ସମୟରେ 'ସଂସୃଷ୍ଟି' ଶବ୍ଦଟି ସମ୍ୟକ୍ ସୃଷ୍ଟି ଅର୍ଥରେ ବ୍ୟବହୃତ ହୋଇଥାଏ ।

ଅନୁପୂରକ—ଗୋଟିଏ ପୂର୍ଣ୍ଣ ପଦାର୍ଥକୁ ଦୁଇଭାଗ କରିଦେଲେ ଏବଂ ପରେ ପରେ ଉଭୟ ଅଂଶକୁ ଏକତ୍ର ଖଞ୍ଜିଲେ ପ୍ରତ୍ୟେକ ଅଂଶ ଅନ୍ୟଟିର ଅନୁପୂରକ ହେବ, କିନ୍ତୁ ଅନେକ ସମୟରେ ଅସାବଧାନତା ହେତୁ ଅନୁପୂରକ ଶବ୍ଦ ପରିପୂରକ (ଅଭାବ ପୂରଣକାରୀ) ଅର୍ଥରେ ବ୍ୟବହୃତ ହୋଇଯାଏ ।

ନିର୍ଲିପ୍ତ—'ନିର୍ଲିପ୍ତ'ର ଅର୍ଥ ହେଲା ଅନାସକ୍ତ । କିନ୍ତୁ କେତେକ ଓଡ଼ିଆ ଔପନ୍ୟାସିକ ଏହାକୁ 'ବିଶେଷ ଭାବରେ ଲିପ୍ତ' ଅର୍ଥରେ ବ୍ୟବହାର କରିଛନ୍ତି ।

ନିଶ୍ଚୁପ୍—'ନିଶ୍ଚୁପ୍'ର ଅର୍ଥ ହେଲା 'ଚୁପ୍ ନହେବା' ଅର୍ଥାତ୍ ପ୍ରଗଲ୍ଭ । କିନ୍ତୁ କେହି କେହି ଏହାକୁ 'ପୂରାପୂରି ଚୁପ' ଅର୍ଥରେ ବ୍ୟବହାର କରିଥାନ୍ତି ।

(୫) ଅଜ୍ଞାନ ଦୋଷ—ଶବ୍ଦର ଠିକ୍ ଅର୍ଥ ନଜାଣି ତାହାର ବ୍ୟବହାର କରିଗଲେ ଶବ୍ଦର ଅର୍ଥ ବଦଳିଯାଏ । ଯଥା—

ଶାଠକ—'ଶାଠକ'ର ମୂଳ ଶବ୍ଦ ସଂସ୍କୃତ ଶାକ୍ତ । (ଶାକ୍ତ>ଶାକତ> ଶାତଟ>ଶାଢଠ>ଶାଠକ) । ତା'ର ପ୍ରକୃତ ଅର୍ଥ ହେଉଛି ଶକ୍ତି ଉପାସକ । କିନ୍ତୁ କେତେକ ଏହାକୁ ଶଠ ଅର୍ଥରେ ବ୍ୟବହାର କରିଥାନ୍ତି (ହିନ୍ଦୀ ଭାଷାରେ) ।

ପାଷଣ୍ଡ—ଏହାର ପ୍ରକୃତ ଅର୍ଥ ହେଉଛି ବୌଦ୍ଧଧର୍ମାବଲମ୍ବୀ ସନ୍ନ୍ୟାସୀ । କିନ୍ତୁ ଅଜ୍ଞତା କାରଣରୁ ଜନତା ଦ୍ୱାରା ଏହାର ଅର୍ଥ ବଦଳିଯାଏ । କାଳକ୍ରମେ ବିଧର୍ମୀ, ଅଧର୍ମୀ, ଦୁଷ୍ଟ, ଦୁରାଚାର ଅର୍ଥରେ ବ୍ୟବହୃତ ହୋଇଅଛି ।

(୬) ଅନ୍ଧବିଶ୍ୱାସ—ଅନେକ ଘରଣୀ ସେମାନଙ୍କ ସ୍ୱାମୀ, ଶ୍ୱଶୁର, ଶାଶୁ, ଦେଢ଼ଶୁର ଇତ୍ୟାଦି ଗୁରୁଜନମାନଙ୍କର ନାମ ଉଚ୍ଚାରଣ କରିବା ପାପ ବୋଲି ବିଶ୍ୱାସ କରନ୍ତି । ସେମାନଙ୍କ ନାମ ସହିତ ଧ୍ୱନି ସାମ୍ୟଥିବା ପଦାର୍ଥର ନାମକୁ ମଧ୍ୟ ଉଚ୍ଚାରଣ କରନ୍ତି ନାହିଁ; ସେହି ପଦାର୍ଥର ସାଙ୍କେତିକ ଏକ ଶବ୍ଦ ବ୍ୟବହାର କରନ୍ତି । ଫଳରେ ସେହି ସାଙ୍କେତିକ ଶବ୍ଦର ଅର୍ଥ ବଦଳିଯାଏ । ଉଦାହରଣ ସ୍ୱରୂପ— କୌଣସି ସ୍ତ୍ରୀ'ର ସ୍ୱାମୀ ନାମ 'କାଳିଆ' । ତା'ର ଗୋଟିଏ କଳା ଶାଢ଼ୀ ଦରକାର । ତା' ପୁଅକୁ ସେ କହେ, "ମୋ ପାଇଁ ତୋ ବାପା ରଙ୍ଗ ଶାଢ଼ୀ ଆଣିବୁ ।" ଏଠାରେ 'ତୋ ବାପା'ର ଅର୍ଥ 'ତୁମ୍ଭର ପିତା' '(your father)' ନ ହୋଇ 'କଳା' (black) ହୋଇଅଛି । 'ତୋ ବାପା ରଙ୍ଗ' କହିଲେ 'ତୁମ୍ଭ ପିତାଙ୍କ ବର୍ଣ୍ଣ' (Colour of your father) ବୁଝାଏ ନାହିଁ, 'କଳାରଙ୍ଗ' (କୃଷ୍ଣବର୍ଣ୍ଣ)କୁ ବୁଝାଏ । ସେହିପରି ଗୋଟିଏ ବୋହୂର ସ୍ୱାମୀ ନାମ ଲଡ଼ୁକେଶ୍ୱର, ସେ ତା' ଶ୍ୱଶୁରକୁ କହେ, "ତୁମ ନାତି ପାଇଁ ତମ ପୁଅ ମିଠେଇ ଆଣିବ ।" ଏଠାରେ 'ତମ ପୁଅ'ର ଅର୍ଥ 'your son' ନହୋଇ 'ଲଡ଼ୁ' । ଅନେକ ସ୍ତ୍ରୀ ନିଜର ସ୍ୱାମୀଙ୍କ ନାମ ନଧରି ଅନ୍ୟ ଆଗରେ 'ଅମୁକ ସେ', 'ଅମୁକର ବାପା' ଇତ୍ୟାଦି କହିଥାନ୍ତି ।

(୭) ଭୌଗୋଳିକ ବାତାବରଣର ପରିବର୍ତ୍ତନ—ପ୍ରାଚୀନ କାଳରେ ଭାରତ ବର୍ଷରେ ମଇଁଷିକୁ ବୁଝାଯାଉଥିଲା ଉଷ୍ଟ୍ର । ମଇଁଷି ଭାରବହନ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିଲା, ଯାହାବି ମରୁଭୂମିରେ ଭାରବାହୀ ପଶୁକୁ ଦେଖି ଭାରତୀୟମାନେ କହିଲେ ଉଷ୍ଟ୍ର । ସେଠାରେ ଦୀର୍ଘଗ୍ରୀବା ବିଶିଷ୍ଟ ଓ କୁବ୍ଜପୃଷ୍ଠ ବିଶିଷ୍ଟ ପଶୁ camel ଭାରବହନ କରୁଥିବାରୁ ତା'ର ନାମ ହେଲା ଉଷ୍ଟ୍ର । ତେଣୁ ଭୌଗୋଳିକ ବାତାବରଣ ପରିବର୍ତ୍ତନରେ 'ଉଷ୍ଟ୍ର' ଶବ୍ଦ 'ମଇଁଷି' ଅର୍ଥ ତ୍ୟାଗକରି camel ଅର୍ଥ ବହନ କରୁଛି ।

(୮) ସାମାଜିକ ବାତାବରଣ ପରିବର୍ତ୍ତନ—'ଭାଇ'ର ଅର୍ଥ ସହୋଦର ବା ବଂଶୀୟ ଅଗ୍ରଜ ଅଥବା ଅନୁଜ । କିନ୍ତୁ ସମ୍ପ୍ରତିରେ ଭାଇର ଅର୍ଥ କୁଲି । ବନ୍ଧୁସମିତିରେ 'ଭାଇ' ସମ୍ବୋଧନରେ ଭାଇର ଅର୍ଥ 'ମିତ୍ର' । ରବିବାରରେ ଅଫିସ ଛୁଟି ଥିଲେ ସ୍ୱାମୀ ଯଦି ସକାଳେ ଉଠିବାରେ ବିଳମ୍ବ କରେ, ପତ୍ନୀ କହି ଦେଇଥାନ୍ତି, 'ହେ ଭାଇ ଉଠ ।' ଏଠାରେ ଭାଇର ଅର୍ଥ ବେଶ୍ ସ୍ପଷ୍ଟ । ଇଂରାଜୀ 'sister' ଶବ୍ଦର ଅର୍ଥ 'ଭଗ୍ନୀ' କିନ୍ତୁ ଡାକ୍ତରଖାନାରେ ଉଚ୍ଚାରିତ 'sister' ଶବ୍ଦର ଅର୍ଥ ଧାଈ । ପଞ୍ଜାବରେ 'ବହୁ' ଶବ୍ଦର ଅର୍ଥ ଭଉଣୀ, ଉତ୍ତରପ୍ରଦେଶରେ ଏହାର ଅର୍ଥ ପତ୍ନୀ । 'ମା' ଶବ୍ଦର ଅର୍ଥ 'ଜନନୀ' । କିନ୍ତୁ ଅନେକ ସମୟରେ ପିତା ତାଙ୍କର କନ୍ୟାକୁ ଓ ଗୁରୁ ତାଙ୍କର ଛାତ୍ରୀକୁ 'ମା' ବୋଲି ସମ୍ବୋଧନ କରିଥାନ୍ତି । ଏ କ୍ଷେତ୍ରରେ ମା'ର ଅର୍ଥ କନ୍ୟା ଓ ଛାତ୍ରୀ ।

(୯) ଶିଷ୍ଟତା—'ଶ୍ରୀମାନ୍' ଅର୍ଥ ଧନବାନ୍। କିନ୍ତୁ ଶିଷ୍ଟାଚାର ହେତୁ ଏହାର ଅର୍ଥ ସମ୍ବୋଧନ ବିଶେଷ ହୋଇଅଛି। 'ହଜୁର' ଶବ୍ଦର ଅର୍ଥ 'ସମ୍ମୁଖ', କିନ୍ତୁ ଶିଷ୍ଟାଚାର ପ୍ରଦର୍ଶନ ଲକ୍ଷ୍ୟରେ ଏହାର ଅର୍ଥ ହୋଇଅଛି, 'ପାତ୍ର', 'ମହିମା' ଇତ୍ୟାଦି।

(୧୦) ଘୃଣାସୂଚକ ଅପ୍ରିୟ ପ୍ରୟୋଗ ସ୍ଥାନରେ ପ୍ରିୟ ପ୍ରୟୋଗ—ତାହାର ମନରେ ଆଘାତ ନଦେଇ ବରଂ ମନରେ ସନ୍ତୋଷ ଦେବା ମଣିଷର ଧର୍ମ। ଏହି ଧାରଣା ଯୋଗୁ ଅନେକ ଲୋକ ସ୍ଥାନେ ସ୍ଥାନେ ସନ୍ତୋଷ-ଦାୟକ ପ୍ରିୟ ଶବ୍ଦ ପ୍ରୟୋଗ କରିଥାନ୍ତି, ଯଥା—ମଇଳା ସଫା କରୁଥିବା ବ୍ୟକ୍ତି ପାଇଁ 'ମେହେନ୍ତର' ଶବ୍ଦ (ମହତ୍ତର ଶବ୍ଦଜ), ଦରଜି ପାଇଁ ଖଲିଫା ଶବ୍ଦ ଓ ରୋଷେଇ କରୁଥିବା ଲୋକ ପାଇଁ ଠାକୁର (ବଙ୍ଗଳା ଭାଷାରେ)।

(୧୧) ମୃତ୍ୟୁସୂଚକ ଅଶୁଭ ଶବ୍ଦ ପାଇଁ ଶୁଭ ଶବ୍ଦ—ମୃତ୍ୟୁ ଜୀବନରେ ସବୁଠାରୁ ବଳି ଭୟଙ୍କର, ଅଶୁଭଙ୍କର, ଅନାପେକ୍ଷିତ ବିଷୟ। ତେଣୁ ଏହାକୁ ସିଧାସଳଖ କୁହା ନ ଯାଇ ବଙ୍କେଇ କୁହାଯାଏ। ଏହାକୁ କୁହାଯାଏ ବହୁଭାଷିତ (Circumlocutory) ବଚନ। ଉଦାହରଣ ସ୍ୱରୂପ :—ମୃତ୍ୟୁ> ମହାପ୍ରସ୍ଥାନ, ଇହଲୀଳା ସମ୍ବରଣ, ଗଙ୍ଗାପ୍ରାପ୍ତି, ସ୍ୱର୍ଗବାସ, ଦେହାନ୍ତ, ଦେହରକ୍ଷା, ପଞ୍ଚତ୍ୱପ୍ରାପ୍ତି, ଅସାର ସଂସାର ତ୍ୟାଗ, ଚାଲିଯିବା, ମାଣ ପୂରିବା, ମୁକ୍ତିଲାଭ, ଗୋଲୋକ ଗମନ, ବୈକୁଣ୍ଠ ଲାଭ, ବିଧବା ହେବା>ସିନ୍ଦୂର ଲିଭିଯିବା, ଚୂଡ଼ି ଭାଙ୍ଗିଯିବା, ସୋହାଗ ତୁଟିଯିବା, ଖଡ଼ୁ ଶୀତଳେଇବା। ମୃତ୍ୟୁ>to give up the ghost (ଇଂରାଜୀ) ଇତ୍ୟାଦି।

(୧୨) ରୋଗସୂଚକ କଟୁ ଓ ଭୟଙ୍କର ଶବ୍ଦର ପରିହାର—ମୃତ୍ୟୁପରି ରୋଗ କଷ୍ଟ ଓ ଭୟଙ୍କର, ତେଣୁ ମନୁଷ୍ୟ କଷ୍ଟତା ଭୟଙ୍କରତାସୂଚକ ଶବ୍ଦକୁ ପରିହାର କରିବାକୁ ଚେଷ୍ଟା କରେ, ଯଥା—ବସନ୍ତ ରୋଗକୁ ମା, ବୁଢ଼ୀମା, ହଇଜା ରୋଗକୁ ବାଡ଼, ଠାକୁରାଣୀ ଇତ୍ୟାଦି କହେ, ପର୍ତ୍ତୁଗୀଜ ଭାଷାରେ କର୍କଟ ରୋଗକୁ କୁହାଯାଏ Obicho salvo seja (the little beast God forbid). ସେହିପରି କମଜର>ଭଲ, ଉପଦଂଶ>ଗରମ ବେମାର, ଯକ୍ଷ୍ମା>ରାଜବ୍ୟାଧି, ବଥ>ମଙ୍ଗଳ ପୀଡ଼ା।

(୧୩) ପ୍ରାଣଘାତୀ ଜୀବଜନ୍ତୁଙ୍କର ନାମୋଲ୍ଲେଖ ପରିହାର-- ପ୍ରାଣଘାତୀ ଭୟଙ୍କର ସରୀସୃପ ଓ ଶ୍ୱାପଦମାନଙ୍କର ନାମ ଉଚ୍ଚାରଣ ନ କରି ଅନ୍ୟ ଶବ୍ଦ ବ୍ୟବହାର କରାଯାଏ। ଫଳରେ ବ୍ୟବହୃତ ଅନ୍ୟ ଶବ୍ଦଟି ଅର୍ଥ ପରିବର୍ତ୍ତନ କରେ। ଯଥା—ବାଘ>ମାମୁଁ, ସାପ>ଲମ୍ବଜନ୍ତୁ, ସର୍ପଦଂଶନ>କାଟିଛୁଇଁବା, କାଠି ଲାଗିବା।

(୧୪) ଅଶ୍ଳୀଳ ପରିବର୍ତ୍ତେ ଶ୍ଳୀଳ-ଶବ୍ଦ—ଅନେକ ବ୍ୟକ୍ତି ସମାଜ ଦୃଷ୍ଟିରେ ଅଶ୍ଳୀଳ ବିବେଚିତ ବିଷୟକୁ ଆବରଣ ଭିତରେ ରଖି ବ୍ୟଞ୍ଜନାରେ ଭାବ ପ୍ରକାଶ କରିବାକୁ ଇଚ୍ଛା କରିଥାନ୍ତି । ଫଳରେ ଏହି ଉଦ୍ଦେଶ୍ୟରେ ବ୍ୟବହୃତ ଶବ୍ଦ ତା'ର ସାଧାରଣ ଅର୍ଥ ଗ୍ରହଣ ମାର୍ମିକ ଅର୍ଥ ବହନ କରେ । ଯଥା – ଗର୍ଭିଣୀ ହେବା> ପାଦ ଭାରି ହେବା, ଅନ୍ତଃସତ୍ତ୍ୱା ହେବା, ମା ହେବା, ପେଟ ଫୁଲିବା, to be in family way, to be in advanced stage ଇତ୍ୟାଦି ।

(୧୫) କୁତ୍ସିତ ଶବ୍ଦର ଅପସାରଣ—ଏଭଳି କେତେକ ଶବ୍ଦ ରହିଛି ଯାହାର ଉଚ୍ଚାରଣ ଶ୍ରବଣରେ ଘୃଣା ଜାତ ହୁଏ । ତାହା ସ୍ଥାନରେ ଶାଳୀନ ଶବ୍ଦ ପ୍ରୟୋଗ କରାଯାଏ । ଯଥା – ହଗିଯିବା>ପୋଖରୀଆଡ଼େ ଯିବା, ମୈଦାନ ଯିବା, ଡାକର ଶୁଣିବା, ଦୁଇ ନମ୍ବର, ଦୁଇଯିବା, ବଡ଼ପାଣି, ଗୁରୁଶଙ୍କା, ବାହାରଆଡ଼େ ଯିବା, ଡହିଯିବା, to attend the call of nature ଇତ୍ୟାଦି । ମୂତ୍ର ତ୍ୟାଗ ଅର୍ଥରେ ଏକନମ୍ବର, ଏକଯିବା, ଲ୍ରେଟପାଣି, ଲଘୁଶଙ୍କା, ଘର ପଛଆଡ଼େ ଯିବା ଇତ୍ୟାଦି ।

ଦଶମ କାରଣ ଠାରୁ ପଞ୍ଚଦଶ କାରଣ ପର୍ଯ୍ୟନ୍ତ ଯାହାସବୁ ଆଲୋଚନା କରାଗଲା ସେ ସମସ୍ତ ସୁଭାଷଣ ( Euphemism )ର ଅନ୍ତର୍ଭୁକ୍ତ । ଇଂରାଜୀ Euphemismର ମୂଳ ହେଉଛି ଗ୍ରୀକ୍ Eupheim Zejn Eu=ସୁ (ଉତ୍ତମ) phemism=ଭାଷଣ ।

(୧୬) ସମାସ-ଅର୍ଥକ ଶବ୍ଦମାନଙ୍କରେ ଅର୍ଥଭେଦ—ଖାଇବା ଓ ଭୁଞ୍ଜିବା ଶବ୍ଦ ଦୁଇଟିର ଅର୍ଥ ସମାନ । କିନ୍ତୁ ସାଧାରଣତଃ 'ଖାଇବା' ଶବ୍ଦ ସ୍ନେହାସ୍ପଦମାନଙ୍କ ପାଇଁ ଓ 'ଭୁଞ୍ଜିବା' ଶବ୍ଦ ସମ୍ମାନାସ୍ପଦଙ୍କ ପାଇଁ ବ୍ୟବହୃତ ହୋଇଥାଏ ।

(୧୭) ବ୍ୟଙ୍ଗ—ବ୍ୟଙ୍ଗ କଲାବେଳେ କେତେକ ଶବ୍ଦର ଅର୍ଥ ବଦଳିଯାଏ । ଯଥା—ପଣ୍ଡିତଟାଏ ତ>ମୂର୍ଖଟାଏ, ବଢ଼ିଆ ପିଲା>ଖରାପ ପିଲା, କନ୍ଦର୍ପଟାଏ> ଅସୁନ୍ଦରଟାଏ, ଧର୍ମାବତାର>ଅଧର୍ମୀ, ଯୁଧିଷ୍ଠିର ଅବତାର>ମିଥ୍ୟାବାଦୀ, ଅକଲ ସୁନ୍ଦରିଆ>ବୁଦ୍ଧିହୀନ, ଲକ୍ଷ୍ମୀଙ୍କ ପଦ>ନିର୍ଦ୍ଧନ ଇତ୍ୟାଦି ।

(୧୮) ଆବେଗ—ଆବେଗରେ ବହୁ ଶବ୍ଦ ପ୍ରୟୋଗରେ ଆମେମାନେ ଅସାବଧାନ ହୋଇପଡ଼ୁ ଓ ଫଳରେ ତାହା ବିପରୀତ ଅର୍ଥ ବହନ କରେ । ସ୍ନେହାତି- ଶଯ୍ୟରେ ପିତା, ଗୁରୁ ପ୍ରଭୃତି ପୁତ୍ରକନ୍ୟା, ଛାତ୍ରଛାତ୍ରୀମାନଙ୍କୁ କହିପକାନ୍ତି—ପାଗଳଟାଏ, ବାୟାଣୀଟାଏ, ପାଜିଟାଏ, ଉଲୁଟାଏ । ବନ୍ଧୁ ବନ୍ଧୁକୁ ସ୍ନେହାତିଶଯ୍ୟରେ ଗାଳିଦିଏ—

ବଦମାସ, ଶଳା, ସଇତାନ ଇତ୍ୟାଦି । ଘୃଣାଭାବାବେଶରୁ 'ରାମ ରାମ' ପରି ପବିତ୍ର ଶବ୍ଦର ଅର୍ଥ ହୋଇଥାଏ ଛି, ଛି ।

(୧୯) ଅନ୍ୟ ଭାଷାରୁ ଆହରଣ—ପାରସିକ ଭାଷାରେ 'ଦରିଆ' ଶବ୍ଦର ଅର୍ଥ 'ନଦୀ'; କିନ୍ତୁ ଓଡ଼ିଆ ଭାଷାରେ 'ସମୁଦ୍ର' । 'ବାଟିକା' ଶବ୍ଦର ଅର୍ଥ ସଂସ୍କୃତରେ ଗୃହ ସମ୍ମୁଖସ୍ଥ ଫୁଲ ବଗିଚା; କିନ୍ତୁ ବଙ୍ଗଳା ଭାଷାରେ ଏହାର ତଦ୍‌ଭବ ରୂପ 'ବାଡ଼ି'ର ଅର୍ଥ ଗୃହ, ଓଡ଼ିଆରେ ଏହାର ଅର୍ଥ ଘର ପଛପାଖ ଓ ଘର ପଛରେ ଥିବା ଉଦ୍ୟାନ ।

(୨୦) ପ୍ରସଙ୍ଗ ଭେଦ—ଏକ ଶବ୍ଦ ଅନୁଯାୟୀ ଭିନ୍ନ ଭିନ୍ନ ଅର୍ଥବହନ କରିଥାଏ । ଯଥା—'କର' ଶବ୍ଦ ।

କର = ହସ୍ତ, ବିଷ୍ଣୁଙ୍କ କରରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭାପାଏ ।

କର = କିରଣ, 'ନବ ରବି କର ପରଶେ ହସେ କମଳବନ ।'

କର = ଖଜଣା, ଔରଙ୍ଗଜେବ ହିନ୍ଦୁଧର୍ମୀ ଯାତ୍ରୀମାନଙ୍କ ଉପରେ ଜିଜିୟାକର ବସାଇଥିଲେ ।

କର = ପାଇବା ପାଇଁ ଆଦେଶାତ୍ମକ କ୍ରିୟା, ପରୀକ୍ଷା ପାଖେଇ ଆସିଲାଣି, ମନଦେଇ ପଢ଼ାପଢ଼ି କର ।

କର = ସଂଜ୍ଞା ବିଶେଷ, ବିରୂପାକ୍ଷ କର ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ଥିଲେ ।

(୨୧) ଆଧାର ପରିବର୍ତ୍ତନ—ଆଧାର ବା ପୀଠିର ପରିବର୍ତ୍ତନ ଘଟିଲେ ନୂତନ ଆଧାର ପ୍ରାଚୀନ ଆଧାରର ନାମରେ ନାମିତ ହୁଏ, ଫଳରେ ପ୍ରାଚୀନ ଆଧାର-ସୂଚକ ଶବ୍ଦର ଅର୍ଥରେ ପରିବର୍ତ୍ତନ ଘଟେ । ଉଦାହରଣସ୍ୱରୂପ 'ପତ୍ର' ଶବ୍ଦକୁ ଗ୍ରହଣ କରାଯାଉ । ପ୍ରଥମେ 'ପତ୍ର' ଶବ୍ଦର ଅର୍ଥ ଥିଲା ବୃକ୍ଷର ପଲ୍ଲବ । ଏହି ପତ୍ର ଉପରେ ଆଦିମ ମାନବ କଣ୍ଟା ସାହାଯ୍ୟରେ ଲିଖନ କାର୍ଯ୍ୟ କରୁଥିଲା । ଫଳରେ 'ପତ୍ର'ର ଅର୍ଥ ହୋଇଗଲା 'ଯାହା ଉପରେ ଲେଖାଯାଏ ।' ପରବର୍ତ୍ତୀ କାଳରେ ଭୂର୍ଜ-ବଲ୍କଳ ଉପରେ ଲିଖନ କାର୍ଯ୍ୟ ହେଲା, ସେତେବେଳେ ଭୂର୍ଜ-ବଲ୍କଳକୁ କୁହାଗଲା ଭୂର୍ଜପତ୍ର । ତେଣୁ 'ପତ୍ର' ତା'ର ଏକ ନୂତନ ଅର୍ଥ (ବଲ୍କଳ) ଗ୍ରହଣ କଲା । ପରେ କାଗଜରେ ଲିଖନ କାର୍ଯ୍ୟ ହେଲା । ତେଣୁ କାଗଜକୁ କୁହାଗଲା ପତ୍ର । 'ପତ୍ର' ତେଣୁ ଆଉ ଏକ ଅର୍ଥ (କାଗଜ) ଗ୍ରହଣ କଲା । ପତ୍ର ଦେହରେ ଆଦିମ ମଣିଷ ଚିଠି ପ୍ରେରଣ କରୁଥିଲା । ତେଣୁ ପରବର୍ତ୍ତୀ କାଳରେ କାଗଜରେ ଯେଉଁ ଚିଠି ଲେଖାଗଲା, ତାହାକୁ ମଧ୍ୟ କୁହାଗଲା ପତ୍ର । ତେଣୁ 'ପତ୍ର'ର ଆଉ ଏକ ଅର୍ଥ ହେଲା 'ଚିଠି' । ଏହି ପତ୍ର କ୍ରମେ

କ୍ରମେ ଅହୁରି ଅନେକ ଅର୍ଥ (ପରୀକ୍ଷା ଖାତା, ପ୍ରଶ୍ନ କାଗଜ, ଦୁଇ ପୃଷ୍ଠା ସମ୍ବଳିତ ଗୋଟିଏ କାଗଜ ଖଣ୍ଡ ଇତ୍ୟାଦି) ଗ୍ରହଣ କରିଛି ।

(୨୨) ଶବ୍ଦରେ ବଳାଘାତର ପରିବର୍ତ୍ତନ—ଉଚ୍ଚାରଣରେ ବେଳେ ବେଳେ ଶବ୍ଦର କୌଣସି ଅଂଶ ଉପରେ ଆବଶ୍ୟକ ବା ଅନାବଶ୍ୟକ ବଳାଘାତ ପଡ଼େ ଓ ଅନ୍ୟ ଅଂଶରୁ ବଳ ହ୍ରାସପ୍ରାପ୍ତ ହୁଏ । ଏହି ବଳାଘାତର ସ୍ଥାନ-ପରିବର୍ତ୍ତନ ଘଟିଲେ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇଯାଏ । ଯଥା—ହେଇଟି = ଏଠାରେ, ହେ'ଇଟି = ସେଠାରେ ('ହ' ଉପରେ ବଳାଘାତ) ଅନ୍ୟତମ ଦୃଷ୍ଟାନ୍ତ ରୂପେ ଜୁଗୁପ୍‌ସା ଶବ୍ଦକୁ ଗ୍ରହଣ କରାଯାଉ । ପ୍ରଥମେ 'ଜୁ' ଉପରେ ବଳାଘାତ ପଡ଼ୁଥିଲା ଓ ଏହାର ଅର୍ଥ ଥିଲା 'ଗୋପାଳନ କରିବାର ଇଚ୍ଛା' । 'ଜୁ' ଉପରୁ ବଳାଘାତ ହଟିଯାଇ 'ଗୁ' ଉପରେ ପଡ଼ିବାରୁ 'ଗୁପ୍' ଶବ୍ଦ ବଳବତ୍ତର ହୋଇଗଲା । ତେଣୁ ଅର୍ଥ ହେଲା 'ଗୋପନ କରିବାର ଇଚ୍ଛା' । ଗୋପନ ରଖିବା ଏକ ଘୃଣ୍ୟ କାର୍ଯ୍ୟରୂପେ ବିବେଚିତ ହେଉଥିବାରୁ ଶବ୍ଦଟିର ଅର୍ଥ ହୋଇଗଲା 'ଘୃଣ୍ୟ' ।

(୨୩) ପରମ୍ପରାର ଅବଶେଷ—ଲୌକିକ ପନ୍ଥା ଓ ରୀତି କାଳକ୍ରମେ ବଦଳିଯାଏ । ତଥାପି କେତେକ ଶବ୍ଦ ପରବର୍ତ୍ତୀ ଯୁଗରେ ରହିଯାଏ, ଏହି ଶବ୍ଦ ତା'ର ପୂର୍ବ ଅର୍ଥ ଅବିକଳ ରଖି ନଥାଏ, କେତେକ ପରିବର୍ତ୍ତନ ସ୍ୱୀକାର କରିଥାଏ । ଯଥା—'ବର' ଶବ୍ଦ । ଏହାର ଅର୍ଥ ହେଉଛି 'ଯାହାକୁ ବରଣ କରାଯାଏ' । ପୂର୍ବେ ସ୍ୱୟମ୍ବର ପ୍ରଥା ଥିଲାବେଳେ କୁମାରୀମାନେ ସ୍ୱୀୟ ପତିଙ୍କୁ ସ୍ୱୟଂ ବରଣ କରୁଥିଲେ । ତେଣୁ 'ବର'ର ଅର୍ଥ ହେଲା ବରଣୀୟ ପତି । ସ୍ୱୟମ୍ବର ପ୍ରଥା ଆଜି ନାହିଁ ତଥାପି 'ବର' ଶବ୍ଦ ରହିଯାଇଛି । ସମ୍ପ୍ରତି ଏହାର ଅର୍ଥ କୁମାରୀ ଦ୍ୱାରା 'ସ୍ୱୟମ୍ବରିତ ପତି' ନୁହେଁ, ପିତାମାତା ଆଦି ଗୁରୁଜନମାନଙ୍କ ଦ୍ୱାରା ନିର୍ବାଚିତ 'ଜାମାତା' । ସେହିପରି 'ଯଜମାନ' ଶବ୍ଦର ଅର୍ଥ 'ଯଜ୍ଞକର୍ତ୍ତା'ରୁ ପୁରୋହିତଙ୍କ ପ୍ରଜା ବା 'ବ୍ୟକ୍ତି'କୁ ପରିବର୍ତ୍ତିତ ହୋଇଯାଇଛି ।

(୨୪) ନମ୍ରତା ପ୍ରଦର୍ଶନ—ଶିଷ୍ଟାଚାର ବା ନମ୍ରତା ପ୍ରଦର୍ଶନ କରି ଜଣେ ବ୍ୟକ୍ତି ଯେଉଁ ଶବ୍ଦ ବ୍ୟବହାର କରନ୍ତି, ତାହାର ବ୍ୟଙ୍ଗ ଅର୍ଥ ସୂଚିତ ହୋଇଥାଏ । ଯଥା--

ଗରିବ ଘର—ଜଣେ ଧନୀ ବ୍ୟକ୍ତି କାହାରିକୁ ନିମନ୍ତ୍ରଣ କଲେ କହନ୍ତି, "ଟିକିଏ ଗରିବ ଘରେ ପାଦଧୂଳି ପକାଇବେ ।" ଏଠାରେ 'ଗରିବ ଘର' କହିଲେ 'ଧନୀ ବ୍ୟକ୍ତିର ସୌଧ'କୁ ହିଁ ବୁଝାଏ ।

ଅନ୍ନଦାତା—ଯେ ଅନ୍ନ ବା ଖାଦ୍ୟ ପ୍ରଦାନ କରେ ସେ ଅନ୍ନଦାତା । କିନ୍ତୁ ତଳିଆ କର୍ମଚାରୀମାନେ ଉପରେ ହାକିମଙ୍କୁ 'ଅନ୍ନଦାତା' କହିଥାନ୍ତି । ଏଠାରେ 'ଅନ୍ନ' ଅର୍ଥ 'ଚାକିରି' ।

(୨୫) ଏକ ଭାଷାଭାଷୀ ଲୋକମାନଙ୍କର ଇତସ୍ତତଃ ବିକାଶ—ଯଦି ଏକ ଭାଷାଭାଷୀ ବ୍ୟକ୍ତିମାନଙ୍କର ବିଭିନ୍ନ ଗୋଷ୍ଠୀରେ ବିଭାଜନ ବା ବିଚ୍ଛୁରଣ ଘଟେ, ତେବେ କାଳକ୍ରମେ ମୂଳଗୋଷ୍ଠୀର ଭାଷାର ଗୋଟିଏ ଶବ୍ଦ ବିଭକ୍ତ ଗୋଷ୍ଠୀମାନଙ୍କର ବିଭିନ୍ନ ଭାଷାରେ ବିଭିନ୍ନ ଅର୍ଥ ବହନ କରେ । ଉଦାହରଣ ସ୍ୱରୂପ ଇଂରାଜୀ 'fee' (ଦେୟ) ଏବଂ ସଂସ୍କୃତ 'ପଶୁ' (animal, beast) ମୂଳତଃ ଇଣ୍ଡୋୟୁରୋପୀୟ ଭାଷାର ଏକ ଶବ୍ଦ ଥିଲେହେଁ ଏହି କାରଣରୁ ବିଭିନ୍ନ ରୂପ ଓ ବିଭିନ୍ନ ଅର୍ଥ ଗ୍ରହଣ କରିଛନ୍ତି । ସେହିପରି ସଂସ୍କୃତ 'ଯୁଗ' (ଦୁଇ) ଓ ଇଂରାଜୀ 'voke' (ଯୁଆଳି), ସଂସ୍କୃତରେ 'ମୃଗ' (ଜନ୍ତୁ, ପଶୁ) ଓ ପାରସିକ 'ମୃଗ' (ପକ୍ଷୀ) ମୂଳତଃ ଏକ ।

(୨୬) ନବୀନ ବସ୍ତୁମାନଙ୍କର ନିର୍ମାଣ ତଥା ପ୍ରଚଳନ—ନବୀନ ବସ୍ତୁର ନିର୍ମାଣ ହେଲେ ନାମକରଣ ସମସ୍ୟା ଦେଖାଯାଏ । ଅନେକ ସମୟରେ ଯେଉଁ ବସ୍ତୁରୁ ନବୀନ ବସ୍ତୁର ନିର୍ମାଣ ହୋଇଥାଏ, ସେହି ନାମ ନବୀନ ବସ୍ତୁକୁ ଅର୍ପଣ କରାଯାଇଥାଏ । ଫଳରେ ମୂଳ ଶବ୍ଦରେ ଏକ ନୂତନ ଅର୍ଥ ପ୍ରବେଶ କରେ । ଉଦାହରଣ ସ୍ୱରୂପ, ଭାରତବର୍ଷରେ ପ୍ରଥମେ ପିଇବା ପାତ୍ର ଶିଶାରୁ ତିଆରି ହେଉଥିଲା । ଶିଶାକୁ ଇଂରାଜୀରେ କୁହାଯାଏ ଗ୍ଲାସ (glass) । ଏଥିରୁ ତିଆରି ବୋଲି ପିଇବା ପାତ୍ରକୁ କୁହାଗଲା ଗ୍ଲାସ (ଗିଲାସ) । ଇଂରାଜୀ 'Pen' ଶବ୍ଦ ଆଉ ଏକ ଦୃଷ୍ଟାନ୍ତ । ପ୍ରଥମେ କଲମ ପକ୍ଷୀର ପର (ପକ୍ଷ)ରୁ ତିଆରି ହେଉଥିଲା । ପକ୍ଷୀର ପରକୁ କୁହାଯାଉଥିଲା Pinna । ତେଣୁ କଲମ ନାମ ହେଲା Pen.

(୨୭) ନିର୍ମାଣ ପ୍ରଣାଳୀ—ନିର୍ମାଣ ପ୍ରଣାଳୀ ଅନୁଯାୟୀ କେତେକ ବସ୍ତୁର ନାମକରଣ ହୋଇଥାଏ । ପୁସ୍ତକକୁ ଗ୍ରନ୍ଥନ କରି (ଗୁନ୍ଥି) ତିଆରି କରାଯାଏ, ତେଣୁ ପୁସ୍ତକକୁ କୁହାଯାଏ 'ଗ୍ରନ୍ଥ' । ଏଠାରେ ଗ୍ରନ୍ଥ 'ଗୁନ୍ଥା ଯାଇଥିବା' ଅର୍ଥ ପରିହାର କରି ପୁସ୍ତକ ଅର୍ଥ ବହନ କଲା ।

(୨୮) କାର୍ଯ୍ୟ-ପଦ୍ଧତି—କାର୍ଯ୍ୟ-ପଦ୍ଧତିକୁ ଭିତ୍ତିକରି କେତେକ ଶବ୍ଦ ସୃଷ୍ଟି କରାଯାଇଥାଏ । ଫଳରେ କାର୍ଯ୍ୟପଦ୍ଧତି ସହିତ ସଂପୃକ୍ତ ଶବ୍ଦ ନୂତନ ଅର୍ଥ ଗ୍ରହଣ କରେ । ଉଦାହରଣ ସ୍ୱରୂପ—'ଦଣ୍ଡ' ଶବ୍ଦ । 'ଦଣ୍ଡ' ଶବ୍ଦର ଅର୍ଥ ହେଉଛି ବାଡ଼ି ବା ଠେଙ୍ଗା । ଆଗେ ଏହି ବାଡ଼ି ବା ଠେଙ୍ଗାରେ ଅପରାଧୀକୁ ଶାସ୍ତି ଦିଆଯାଉଥିଲା । କାଳକ୍ରମେ ଅର୍ଥ ଜୋରିମାନା ଦ୍ୱାରା ଶାସ୍ତି ଦିଆଯାଉଛି । ପୂର୍ବ ପଦ୍ଧତି ଅନୁଯାୟୀ 'ଦଣ୍ଡ'ର ଅର୍ଥ ହୋଇଛି ଜୋରିମାନା । କପି (ନକଲ) କାର୍ଯ୍ୟ ପ୍ରଣାଳୀକୁ ଭିତ୍ତିକରି 'କପି'ର ଅର୍ଥ ମଧ୍ୟ ହୋଇଛି 'ନକଲ ପାଇଁ ବ୍ୟବହୃତ ବର୍ତ୍ତିଲ କାଗଜ' (Carbon Paper).

(୨୯) ସାଦୃଶ୍ୟ (Analogy)—ସାଦୃଶ୍ୟ କାରଣରୁ ମଧ୍ୟ ଅନେକ ସମୟରେ ଅର୍ଥର ପରିବର୍ତ୍ତନ ଘଟିଥାଏ, କିନ୍ତୁ ଏପରି ଦୃଷ୍ଟାନ୍ତ ସ୍ୱଳ୍ପ । ଉଦାହରଣ ସ୍ୱରୂପ—

ଟିକସ—ଟିକସ ଶବ୍ଦର ଇଂରାଜୀ ରୂପ ଟ୍ୟାକ୍ସ (tax) ଏହାର ଅର୍ଥ କର, ଖଜଣା ବା ଶୁଳ୍କ । କିନ୍ତୁ ଏହା କ୍ରମେ ରେଲ ବା ଡାକ ବିଭାଗର ରସିଦ ଅର୍ଥରେ ବ୍ୟବହୃତ ହୋଇଯାଇଛି । ରେଲ ଯାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ 'ticket'ର ଓଡ଼ିଆ ରୂପ ଟିକେଟ କ୍ରମ ବଦଳି 'ଟିକଟ' ହୋଇଅଛି । ଶୁଳ୍କ ଅର୍ଥରେ ବ୍ୟବହୃତ 'tax' କ୍ରମେ ଓଡ଼ିଆରେ 'ଟିକସ' ରୂପ ଧାରଣ କରିଛି । 'ଟିକଟ' 'ଟିକସ' ମଧ୍ୟରେ ସାଦୃଶ୍ୟ ରହିଛି । ତେଣୁ ଅନେକ ରେଳଯାତ୍ରୀ 'ଟିକଟ' ସ୍ଥାନରେ ସେହି ଅର୍ଥରେ 'ଟିକସ' ଶବ୍ଦ ବ୍ୟବହାର କରି ଦେଇଥାନ୍ତି । ଫଳରେ 'ଟିକସ' ଶବ୍ଦ 'ଶୁଳ୍କ' ଅର୍ଥ ପରିବର୍ତ୍ତେ 'ରସିଦ' (ଟିକେଟ୍) ଅର୍ଥ ଗ୍ରହଣ କରିଅଛି ।

ସଂସ୍କୃତରେ 'ପ୍ରଶ୍ରୟ' ଶବ୍ଦର ଅର୍ଥ ବିନୟ, ଶିଷ୍ଟତା, ନମ୍ରତା, । କିନ୍ତୁ 'ଆଶ୍ରୟ' ଶବ୍ଦର ଅର୍ଥ ସାହାଯ୍ୟ, ଶରଣ ଇତ୍ୟାଦି । ଆଶ୍ରୟ ଶବ୍ଦର ସାଦୃଶ୍ୟରେ 'ପ୍ରଶ୍ରୟ' ଶବ୍ଦ ସାହାଯ୍ୟ ବା ଶରଣ ଅର୍ଥରେ ବ୍ୟବହୃତ ହୋଇଥାଏ । ସେହିପରି ଉଦ୍‌ଭ୍ରାନ୍ତ ମୂଳ ଅର୍ଥ (ମୃତ୍ୟୁ ବା ଉଚ୍ଛୁଳିବା) ଶବ୍ଦ ଭ୍ରାନ୍ତ (ଉନ୍ମତ୍ତ, ପ୍ରମତ୍ତ) ଅର୍ଥରେ, ଉତ୍କ୍ରୋଶ (ମୂଳ ଅର୍ଥ ପକ୍ଷୀବିଶେଷ) ଶବ୍ଦ ଆକ୍ରୋଶ (କ୍ରୋଧ, ପ୍ରତିହିଂସା ଭାବ) ଅର୍ଥରେ କନେକ୍‌ସନ (Connection, ମୂଳ ଅର୍ଥ ସଂଯୋଗ, ସମ୍ପର୍କ) ଶବ୍ଦ କନ୍‌ସେସନ୍ (Concession) ଅର୍ଥ 'ଛାଡ଼' ଅର୍ଥରେ ବ୍ୟବହୃତ ହୋଇଥାଏ । 'ଅଭିଜ୍ଞ' ଓ 'ଅବିଜ୍ଞ' ମଧ୍ୟରେ ସାଦୃଶ୍ୟ କାରଣରୁ କେତେକ 'ବିଜ୍ଞ' ଅର୍ଥରେ 'ଭିଜ୍ଞ' ଶବ୍ଦ ଏବଂ 'ଅବିଜ୍ଞ' ଅର୍ଥରେ 'ଅଭିଜ୍ଞ' ଶବ୍ଦ ବ୍ୟବହାର କରିଦେଇଥାନ୍ତି । 'ପତଙ୍ଗ' ଶବ୍ଦର ଅର୍ଥ ହେଉଛି 'ପଡ଼ିଉଠି ଯେ ଗମନ କରେ ବା ଉଡ଼ିଯାଏ' । ସୂର୍ଯ୍ୟ ସକାଳେ ତଳେ ଥାନ୍ତି, ମଧ୍ୟାହ୍ନରେ ଉପରକୁ ଉଠିଯା'ନ୍ତି ଓ ଅପରାହ୍ଣରେ ପୁଣି ତଳକୁ ଖସିଯାଆନ୍ତି । ଏହି ସାଦୃଶ୍ୟ ନେଇ କେତେକ 'ପତଙ୍ଗ' ଶବ୍ଦ 'ସୂର୍ଯ୍ୟ' ଅର୍ଥରେ ବ୍ୟବହାର କରିଥାନ୍ତି ।

(୩୦) ସ୍ଥାନ ବ୍ୟବଧାନ—ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ସ୍ଥାନ ବା ଅଞ୍ଚଳରେ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରେ । ଯଥା—ଚିଲଅ (ଗଞ୍ଜାମ ଅଞ୍ଚଳରେ ବାଦାମଫଳ, ଢେଙ୍କାନାଳରେ ଏକ ବିଷାକ୍ତ ଜଙ୍ଗଲି ଫଳ ), ଛେନା ( ପୂର୍ବ ଓଡ଼ିଶାରେ ଏକ ଦୁଗ୍ଧଜାତ ପଦାର୍ଥ, ପଶ୍ଚିମ ଓଡ଼ିଶାରେ ଦହି, ମାଣ୍ଡି, ଗଞ୍ଜାମରେ ଚଳଅ, ସାକ୍ଷୀଗୋପାଳରେ ଶେଢ଼ା ବା ବାଙ୍ଗର ), ଗଣ୍ଠା (ଓଡ଼ିଶାରେ ଏକ ପ୍ରକାର ପିଠା, ବିହାରର ଟାଟା ଅଞ୍ଚଳରେ ଷଣ୍ଢ, ସୁଜି ( ପୂର୍ବ, ଉତ୍ତର, ଦକ୍ଷିଣ ଓଡ଼ିଶାରେ ଯବଜାତୀୟ ଖାଦ୍ୟ ଚୂର୍ଣ୍ଣ ବିଶେଷ, ପଶ୍ଚିମ ଓଡ଼ିଶାରେ ଛୁଞ୍ଚ ), ରୁଢ଼

( ପୂର୍ବ, ଉତ୍ତର, ଦକ୍ଷିଣ ଓଡ଼ିଶାରେ ପୁଷ୍ପଯୁକ୍ତ କାଗଜ-ନିର୍ମିତ ଖେଳନା ବିଶେଷ, ପଶ୍ଚିମ ଓଡ଼ିଶାରେ ଦେଉଳ) ।

(୩୧) କାଳ ବ୍ୟବଧାନ—ଏକ ଶବ୍ଦ ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରିଥାଏ । ଯଥା—ଅହି ( ବୈଦିକ ଯୁଗରେ ମେଘ, ବର୍ତ୍ତମାନ ଯୁଗରେ ସର୍ପ), ବିପ୍ର (ବୈଦିକ ଯୁଗରେ ବିଶେଷଜ୍ଞ, ବିଜ୍ଞ, ବର୍ତ୍ତମାନ ଯୁଗରେ ବ୍ରାହ୍ମଣ), ବନ୍ୟା (ବୈଦିକ ଯୁଗରେ କାନନମାଳା, ବର୍ତ୍ତମାନ ଯୁଗରେ ନଈବଢ଼ି), ସମସ୍ୟା (ସାରଳା ଦାସଙ୍କ ସମୟରେ 'ଉତ୍ତର', ଅଧୁନିକ ଓଡ଼ିଆ ସାହିତ୍ୟରେ 'ଜଟିଳ ବିଷୟ' ବା ଅବସ୍ଥା ), ମୂରତି (ସାରଳାଦାସଙ୍କ ସମୟରେ ବେଶ, ବର୍ତ୍ତମାନ ମୂର୍ତ୍ତି, ରୂପ, ପ୍ରତିକୃତି), Garage (ପ୍ରାଚୀନ କାଳରେ ଗୋଦାମ ଘର, ଏବେ ମଟରଗାଡ଼ି ରଖିବା ସ୍ଥାନ), Silly (ପୂର୍ବେ ନିସ୍ପୃହ, ଏବେ ନିର୍ବୋଧ) ।

[ ଦୃଷ୍ଟାନ୍ତଗୁଡ଼ିକ ଗୋଲୋକବିହାରୀ ଧଳଙ୍କର ଭାଷାଶାସ୍ତ୍ର ପରିଚୟ ଗ୍ରନ୍ଥ ପୃ-୫୯-୭୦ରୁ ଗୃହୀତ । ]

(୩୨) ସଭ୍ୟତା ଓ ସଂସ୍କୃତିର ଭେଦ—ସଭ୍ୟତା ଓ ସଂସ୍କୃତିର ପରିବର୍ତ୍ତନରେ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇଯାଏ । ଯଥା—dance (ପ୍ରାଚ୍ୟ ସଭ୍ୟତାରେ ନୃତ୍ୟ, ପାଶ୍ଚାତ୍ୟ ସଭ୍ୟତାରେ ସ୍ତ୍ରୀ-ପୁରୁଷଙ୍କ ଯୁଗ୍ମ ନାଚ ଅର୍ଥାତ୍ ବଲଡ୍ୟାନ୍ସ), Date (ପ୍ରାଚ୍ୟ ସଭ୍ୟତାରେ ସାଧାରଣ ଭାବରେ ତାରିଖ, ପାଶ୍ଚାତ୍ୟ ସଭ୍ୟତାରେ ଅଭିସାର ପାଇଁ ନିର୍ଦ୍ଦିଷ୍ଟ ତାରିଖ ) ।

[ ଦ୍ରଷ୍ଟବ୍ୟ—ଗୋଲୋକବିହାରୀ ଧଳଙ୍କ ଭାଷାଶାସ୍ତ୍ର ପରିଚୟ, ପୃ-୭୦ ]

(୩୩) ଇତିହାସର ପରିବର୍ତ୍ତନ—ଇତିହାସର ପରିବର୍ତ୍ତନରେ ଅର୍ଥର ପରିବର୍ତ୍ତନ ସଂଘଟିତ ହୁଏ । 'ରାଜା', 'ମନ୍ତ୍ରୀ', 'ମନ୍ତ୍ରଣାଳୟ', 'ସାହେବ', 'ବାବୁ', ପ୍ରଭୃତିର ଅର୍ଥ ପୂର୍ବେ ଯେପରି ଥିଲା, ଏବେ ସେପରି ନାହିଁ ।

(୩୪) ପ୍ରସିଦ୍ଧିର ସ୍ମୃତିଲୋପ—କୌଣସି ଜିନିଷ ଅତ୍ୟଧିକ ପ୍ରସିଦ୍ଧି ଲାଭ କରି ଲୁପ୍ତ ବା ସ୍ଥାନାନ୍ତରିତ ହେଲେ ଉକ୍ତ ଜିନିଷର ନାମ ରହିଯାଏ; କିନ୍ତୁ ତାହା ପୂର୍ବ ଅର୍ଥ ରକ୍ଷା କରିନଥାଏ । ତା'ର ସ୍ମୃତିଲୋପ ପାଇଯାଇଥାଏ । ଦୃଷ୍ଟାନ୍ତ ସ୍ୱରୂପ 'ମାଷ୍ଟର କାଣ୍ଟିନ' । ଭୁବନେଶ୍ୱରରେ ରେଲୱେ ଷ୍ଟେସନ୍ ପାଖରେ ଗୋଟିଏ ପ୍ରସିଦ୍ଧ ହୋଟେଲ ଥିଲା, ନାମ ତା'ର ମାଷ୍ଟର କାଣ୍ଟିନ । ବର୍ତ୍ତମାନ ସେଠାରେ କାଣ୍ଟିନଟି ନାହିଁ । କିନ୍ତୁ ସେହି ହୋଟେଲ ନିକଟସ୍ଥ ଛକ ଓ ଅଞ୍ଚଳର ନାମ 'ମାଷ୍ଟର କାଣ୍ଟିନ' ପୂର୍ବପରି ଅକ୍ଷୁଣ୍ଣ ରହିଛି । ପୂର୍ବେ 'ମାଷ୍ଟର କାଣ୍ଟିନ'ର ଅର୍ଥ ଥିଲା ସେହି ନାମରେ ହୋଟେଲ, ବର୍ତ୍ତମାନ ଅର୍ଥ ହେଉଛି 'ଷ୍ଟେସନ ପାଖ ଛକ' । ସେହିପରି ଶହୀଦନଗର ଛକ ପାଖରେ ପୂର୍ବେ ରୂପାଲି ନାମକ ଏକ ହୋଟେଲ ଥିଲା । ତାହା

ସ୍ଥାନାନ୍ତରିତ ବା ଲୁପ୍ତ ହୋଇଯାଇଛୁ । କିନ୍ତୁ ଛକର ନାମ ରହିଯାଇଛୁ 'ରୂପାଲି' । ତେଣୁ 'ରୂପାଲି' ଶବ୍ଦଟି ସେହି ହୋଟେଲ ଅର୍ଥ ତ୍ୟାଗକରି 'ଶାହିଦନଗର ଛକ' ଅର୍ଥ ଗ୍ରହଣ କରୁଛୁ ।

**(୩୫) ରୂପ ପରିବର୍ତ୍ତନ**—ଶବ୍ଦରେ ପୂର୍ବସର୍ଗ (ଉପସର୍ଗ) ଓ ପରସର୍ଗ (ପ୍ରତ୍ୟୟ) ଯୋଗ କରି ନୂଆ ଶବ୍ଦ ଗଠନ କଲେ ଶବ୍ଦର ମୂଳ ଅର୍ଥ ପରିବର୍ତ୍ତିତ ହୋଇଯାଏ । ଯଥା—

'ନାମ' ଶବ୍ଦରେ 'ସୁ' ଉପସର୍ଗ ଲଗାଇଲେ 'ସୁନାମ' ହୁଏ ଓ ଏହାର ଅର୍ଥ ହୁଏ ଯଶ, 'ଦୁଃ' ଉପସର୍ଗ ଲଗାଇ 'ଦୁର୍ନାମ' କଲେ ଅର୍ଥ ହୁଏ ଅପଯଶ । ସେହିପରି 'କର୍ମ' ଶବ୍ଦରେ 'ଅପ', 'ଦୁଃ' ଇତ୍ୟାଦି ଉପସର୍ଗ ଲଗାଇଲେ ଶବ୍ଦର ମୌଳିକ ଅର୍ଥ ବଦଳିଯାଏ । 'ହୃତ' ଶବ୍ଦରେ ଆ, ଉ, ସମ, ବି ଉପସର୍ଗ ଲଗାଇ ଶବ୍ଦ ଗଢ଼ିଲେ ନୂଆ ଶବ୍ଦ ମୂଳଶବ୍ଦର ଅର୍ଥ ପରିହାର କରି ନୂଆ ଅର୍ଥ ଗ୍ରହଣ କରେ । 'ସତ୍ୟ' ପୂର୍ବରୁ 'ଅ' ଲଗାଇଦେଲେ ଅର୍ଥ ଓଲଟିଯାଏ ।

'ବାଳୀ' ଶବ୍ଦର ଅର୍ଥ ନାରୀ, କିନ୍ତୁ 'କା' ପ୍ରତ୍ୟୟଯୁକ୍ତ 'ବାଳିକା'ର ଅର୍ଥ ଅପ୍ରାପ୍ତବୟସ୍କା କୁମାରୀ କନ୍ୟା । 'ବାଳ' ଶବ୍ଦର ଅର୍ଥ ବାଳକ, 'ଈ' ପ୍ରତ୍ୟୟ ଯୁକ୍ତ 'ବାଳୀ' ଶବ୍ଦର ଅର୍ଥ ନାରୀ । 'ଧନ' ଶବ୍ଦର ଅର୍ଥ ସମ୍ପତ୍ତି, ଧନୀ (ଧନ + ଈ)ର ଅର୍ଥ ସମ୍ପତ୍ତିବାନ୍ । 'ଥାଳ'ର ଅର୍ଥ ବଡ଼ ଭୋଜନପାତ୍ର, 'ଥାଳିଆ' (ଥାଳ + ଆ)ର ଅର୍ଥ ଶ୍ରେଷ୍ଠ ଭୋଜନପାତ୍ର । 'ଚଇତ'ର ଅର୍ଥ ଏକ ମାସ । 'ଚଇତାଳି (ଚଇତ + ଆଳି)ର ଅର୍ଥ ମଳୟ ପବନ । 'book'ର ଅର୍ଥ ବହି, 'book-let'ର ଅର୍ଥ ଶ୍ରେଷ୍ଠ ବହି । ରୁଷ ଭାଷାରେ 'ଲିସ୍ତ' ଅର୍ଥ ପତ୍ର, 'ଲିସ୍ତିକ୍' ଅର୍ଥ ଶ୍ରେଷ୍ଠ ପତ୍ର । 'ଭାତ'ର ମାନେ 'ଅନ୍ନ', 'ଭାତୁଡ଼ି' (ଭାତ + ଉଡ଼ି)ର ଅର୍ଥ ତୃଣବିଶେଷ । 'ମିଛ'ର ଅର୍ଥ ମିଥ୍ୟା, 'ମିଛୁଆ' ( ମିଛ + ଉଆ ) ଅର୍ଥ ଯେ ମିଛ କହେ । ତେଲ, ଅର୍ଥ ତୈଳ 'ତେଲି' ଅର୍ଥ ତେଲ ବ୍ୟବସାୟୀ । 'ଖେଳ' ଅର୍ଥ କ୍ରୀଡ଼ା, 'ଖେଳାଳି' ଅର୍ଥ ଯେ ଖେଳେ ।

ଏହିପରି ଶବ୍ଦର ପୂର୍ବରୁ ଓ ପରେ 'ସର୍ଗ' ସଂଯୋଗ କଲେ ଶବ୍ଦର ମୂଳ ଅର୍ଥ ବଦଳିଯାଏ ।

**(୩୬) ଅନ୍ୟ ଶବ୍ଦ ସହ ମିଳନ**—ଶବ୍ଦ ଅନ୍ୟ ଶବ୍ଦ ସହ ମିଳିତ ହେଲେ ତା'ର ଅର୍ଥ ବଦଳିଯାଏ । ସାଥି ଶବ୍ଦଟିର ଅର୍ଥ ମଧ୍ୟ ବଦଳିଯାଇପାରେ । ଦୁହେଁ ମିଶି ଏକ ନୂତନ ଅର୍ଥ ବା ରୂଢ଼ ଅର୍ଥ ମଧ୍ୟ ବହନ କରିପାରନ୍ତି । ଯଥା—'ଅରଣ୍ୟ ରୋଦନ' । 'ଅରଣ୍ୟ' ଅର୍ଥ ଜଙ୍ଗଲ; କିନ୍ତୁ ଏଠାରେ 'ରୋଦନ' ଶବ୍ଦ ସଙ୍ଗରେ ମିଳନ ହେତୁ 'ଅରଣ୍ୟର ଅର୍ଥ ବ୍ୟର୍ଥ' । ଦୁହେଁ ମିଶି ଏକ ରୂଢ଼ ଅର୍ଥ (ବୃଥା ଗୁହାରି) ପ୍ରକାଶ କରୁଛନ୍ତି । ସେହିପରି କୁମ୍ଭୀର କାନ୍ଦଣା—ଛଳନାପୂର୍ଣ୍ଣ ସହାନୁଭୂତି;

ଘରଭାଙ୍ଗିବା ଷଡ଼ ସାଧନ କରିବା, ଚୁଲି ଭଠା—ବାକେ କଥା ପ୍ରସଙ୍ଗରେ କୁମ୍ଭୀର, ଘର, ଚୁଲି ନିଜ ନିଜ ମୂଳ ଅର୍ଥ ପରିହାର କରିଛନ୍ତି ।

(୩୭) ପ୍ରଯତ୍ନ ଲାଘବ—କଷ୍ଟକୁ କିଛିଟା ଲଘୁ କରିବା ପାଇଁ ଲୋକମାନେ ଅନେକ ସମୟରେ ଏକାଧିକ ଶବ୍ଦରୁ ଏକମାତ୍ର ଶବ୍ଦ ରଖି ଅନ୍ୟ ଶବ୍ଦ ପରିହାର କରିଥାନ୍ତି, ଫଳରେ ଏହି ଏକମାତ୍ର ଶବ୍ଦ ତା'ର ମୂଳ ଅର୍ଥକୁ ତ୍ୟାଗକରି ସମୂହ ଶବ୍ଦର ଅର୍ଥକୁ ବହନ କରେ । ଯଥା—(i) ରେଳଗାଡ଼ି—ରେଳ । ଏଠାରେ ରେଳ ତା'ର ମୂଳ ଅର୍ଥ 'ଲୁହା ପଟି ବା ଧାରଣା'କୁ ତ୍ୟାଗକରି ଲୁହା ପଟି ଉପରେ ଗ୍ଭଲୁଥିବା ଗାଡ଼ି ବା ଟ୍ରେନକୁ ବୁଝାଉଛି । (ii) ମୋଟରଗାଡ଼ି—ମୋଟର । ମୋଟର ଅର୍ଥ ହେଉଛି ଗତିଶୀଳ, ତେଣୁ ମୋଟରଗାଡ଼ି ଅର୍ଥ ଗତିଶୀଳ ଯାନ । କିନ୍ତୁ 'ମୋଟର' ତା'ର ମୂଳ ଅର୍ଥ ତ୍ୟାଗକରି 'ଗତିଶୀଳ ଯାନ' ଅର୍ଥକୁ ବହନ କରିଅଛି । (iii) ପ୍ରିନ୍ସିପାଲ ଟିଚର୍ > ପ୍ରିନ୍ସିପାଲ । 'ପ୍ରିନ୍ସିପାଲ୍' ତା'ର ମୂଳ ଅର୍ଥ 'ମୁଖ୍ୟ'କୁ ତ୍ୟାଗକରି 'ପ୍ରଧାନ ଅଧ୍ୟାପକ' ବା 'ଅଧ୍ୟାପକମାନଙ୍କର ମୁଖ୍ୟ' ଅର୍ଥ ଗ୍ରହଣ କରିଅଛି । ସେହିପରି Capital (Capital City), Rickshaw (Cycle rickshaw), Tie (Neck tie), Stamp (Postal Stamp), ଟିଣ (ଟିଣ ଧାତୁରେ ନିର୍ମିତ ଡବା), Cycle (Bicycle), Sweet (Sweet food) ଇତ୍ୟାଦିର ଦୃଷ୍ଟାନ୍ତ ଦିଆଯାଇପାରେ ।

(୩୮) ଜ୍ଞାତସାରରେ ନୂତନ ଅର୍ଥ ପ୍ରୟୋଗ—ଅନେକେ କେତେକ ଦବା ଶବ୍ଦଗୁଡ଼ିକୁ ଜାଣି ଜାଣି ନୂତନ ଅର୍ଥରେ ବ୍ୟବହାର କରିଥାନ୍ତି । ଏହିଭଳି ପ୍ରୟାସରୁ 'ଆକାଶବାଣୀ' ଶବ୍ଦ ରେଡ଼ିଓ ଅର୍ଥରେ, 'ସୂଚନା' ଶବ୍ଦ ଦୂରଦର୍ଶନ ଅର୍ଥରେ, 'ସଦଦ' ( ଉତ୍ତମ ବାଦଗୃହ ) ଶବ୍ଦ ସସ୍ତା ଅର୍ଥରେ, 'କୁଅଶା' (ଖରାପ ଅଣା) ଶବ୍ଦ କୁହୁଡ଼ି ଅର୍ଥରେ, 'ନେଇ' ଶବ୍ଦ ଯୋଗୁ ଓ ସାହାଯ୍ୟରେ ଅର୍ଥରେ, 'ଭଲ ବାସିବା' ( ଉତ୍ତମ ଗନ୍ଧ ହେବା ) ଶବ୍ଦ ସୁଖପାଇବା ଅର୍ଥରେ (ବଙ୍ଗଳା ଭାଷାର ପ୍ରଭାବରୁ), 'ଭୂଇଁ ଫୋଡ଼' ଶବ୍ଦ ହଠାତ୍ ବଡ଼ଲୋକ ହେବା ଅର୍ଥରେ ବ୍ୟବହୃତ ।

(୩୯) ଏକ ଶବ୍ଦର ଏକାଧିକ ରୂପ—ଗୋଟିଏ ଶବ୍ଦର ଏକାଧିକ ରୂପ ଦେଖାଦେଲେ କେବେ କେବେ ଅର୍ଥ ବଦଳିଯାଏ । ଯଥା—ସାଧୁ (ସଚ୍ଚୋଟ, ସନ୍ଥ), ସାହୁ (ମହାଜନ, ମାଲିକ, ବଣିଆ, ସଜ୍ଞାବିଶେଷ), ସ୍ତନ (ନାରୀର ବକ୍ଷୋଜ), ଥନ (ପଶୁମାନଙ୍କର ଥର), ଗର୍ଭିଣୀ (ସ୍ତ୍ରୀ ପାଇଁ ପ୍ରଯୁଜ୍ୟ), ଗାଭିନ୍ (ଗାଈ, ମଇଁଷି ପାଇଁ ପ୍ରଯୁଜ୍ୟ, ବ୍ରାହ୍ମଣ (ଶିକ୍ଷିତ ଦ୍ୱିଜ), ବାମ୍ଭଣ (ଅଶିକ୍ଷିତ ଦ୍ୱିଜ), ତିଳକ (ପୁରୁଷ ସ୍ଥଳରେ ବ୍ୟବହୃତ ଚନ୍ଦନ ଶବ୍ଦ), ଟିକିଲି ( ସ୍ତ୍ରୀମାନଙ୍କ ସ୍ଥଳରେ ବ୍ୟବହୃତ ଶବ୍ଦ),

ସୌଭାଗ୍ୟ (ଉତ୍ତମ ଭାଗ୍ୟ), ସୋହାଗ (ସଭାଗ), ସୁଅର (ଶୁକର), ପଶ (ପକ୍ଷୀ), ପଶୁ (ଦଶୁ)।

(୪୦) **ପୁନରୁକ୍ତି ଦୋଷ**—ଏକାର୍ଥବୋଧକ ଦୁଇଟି ଶବ୍ଦ ଏକତ୍ର ଏକ ଅର୍ଥରେ ବ୍ୟବହୃତ ହେଲେ ଅର୍ଥ ବିଜ୍ଞାନରେ ତାହାକୁ ପୁନରୁକ୍ତି ଦୋଷ କୁହାଯିବ। ଏହା ଫଳରେ ଗୋଟିଏ ଶବ୍ଦ ଯେଉଁ ଶବ୍ଦରେ ମିଶେ ତାହା ସହିତ ମିଳିତ ଭାବରେ ତାହାର ଅର୍ଥ ଗ୍ରହଣ କରେ, ଅର୍ଥାତ୍ ବସ୍ତୁତଃ ତାହାର ଅର୍ଥ ଲୋପପାଏ। ମିଳିତ ଶବ୍ଦ ସମସ୍ତ ଶବ୍ଦର ଅର୍ଥକୁ ତ୍ୟାଗ କରି ଗୋଟିଏ ସୀମିତ ଅର୍ଥ ଗ୍ରହଣ କରେ। ଉଦାହରଣ ସ୍ୱରୂପ 'ହିମାଳୟ ପର୍ବତ'। ଏଠାରେ ଅଚଳ ଓ ପର୍ବତ ଶବ୍ଦ ଦୁଇଟି ଏକାର୍ଥବୋଧକ। ଅଚଳ ଶବ୍ଦ ହିମ ସହିତ ମିଶି ମିଳିତ ଭାବରେ 'ହିମ' ଅର୍ଥ ଗ୍ରହଣ କରିଛି। 'ହିମାଚଳ' ଯୁଗ୍ମ ଶବ୍ଦର ଅର୍ଥ ହିମ ପର୍ବତ ହେଲେ ହେଁ, 'ହିମାଚଳ' ଶବ୍ଦ ନିଜ ଅର୍ଥ ତ୍ୟାଗକରି କେବଳ 'ହିମ' ଅର୍ଥ ଗ୍ରହଣ କରିଛି। ସେହିପରି ବିନ୍ଧ୍ୟାଚଳ ଗିରି, ହାଇରୋଡ଼ ରାସ୍ତା, ସେପଟ ସାଇଡ଼, ପାଉଁରୁଟି, (ପର୍ତ୍ତୁଗୀଜ ଭାଷାରେ ପାଉଁ ଶବ୍ଦର ଅର୍ଥ ରୁଟି) ଫେର୍ ପୁଣି, ଆହୁରି ପୁଣି, ଆହୁରି ଫେର୍, ସଜ୍ଜନ ବ୍ୟକ୍ତି, ମାର୍କେଟ ବଜାର, ହାଟ ବଜାର, ଇତ୍ୟାଦିର ଦୃଷ୍ଟାନ୍ତ ଦିଆଯାଇପାରେ।

(୪୧) **ଶବ୍ଦରେ ଅର୍ଥର ଅନିଶ୍ଚୟ**—କେତେକ ଶବ୍ଦ ରହିଛି ଯେଉଁମାନଙ୍କର ନିର୍ଦ୍ଦିଷ୍ଟ ଅର୍ଥ ନାହିଁ। ହିଂସା ଶବ୍ଦକୁ ନିଆଯାଉ। ଏହା କେତେବେଳେ ହତ୍ୟା, କେତେବେଳେ ଅହଂକାର, ଈର୍ଷା, ରାଗ (କ୍ରୋଧ) ଅର୍ଥ ଗ୍ରହଣ କରେ ତା'ର ନିଶ୍ଚୟ ନାହିଁ। ଯଥା—

(କ) ସିଂହ ଅନ୍ୟ ବନ୍ୟଜନ୍ତୁମାନଙ୍କୁ ହିଂସା କରେ। (=ହତ୍ୟା)

(ଖ) ହାତରେ ଦି'ପଇସା ଅଛି ବୋଲି ତା'ର କ'ଣ କମ୍ ହିଂସା! (=ଅହଙ୍କାର)

(ଗ) ମୋ ପୁଅ ଦି'ପଇସା ରୋଜଗାର କଲା ବୋଲି ସେ ହିଂସାରେ ଜଳି ଯାଉଛି। (=ଈର୍ଷ୍ୟା)

(ଘ) ତୁମ ଉପରେ ସେ ହିଂସା ରଖିଛି, ବାଡ଼େଇବ, ତା' ପାଖକୁ ଯାଅ ନାହିଁ। (ରାଗ)

ଏ କ୍ଷେତ୍ରରେ ପ୍ରସଙ୍ଗ ଭେଦ ଯୋଗୁ ଅର୍ଥ ଭେଦ ହେଉଥିବା ମନେହୋଇପାରେ। କିନ୍ତୁ ପ୍ରସଙ୍ଗ ଭେଦ କ୍ଷେତ୍ରରେ ବିଭିନ୍ନ ଅର୍ଥ ମଧ୍ୟରେ କୌଣସି ପ୍ରକାର ସମ୍ପୃକ୍ତି ନଥିବା ସ୍ଥଳେ ଏ କ୍ଷେତ୍ରରେ ବିଭିନ୍ନ ଅର୍ଥ ମଧ୍ୟରେ କେତେକ ସମ୍ପୃକ୍ତି ବା ସାମଞ୍ଜସ୍ୟ ରହିଛି।

(୪୨) ପାତ୍ର ଭେଦ ବା ବ୍ୟକ୍ତି ଭେଦ—ବ୍ୟକ୍ତି ଭେଦରେ ମଧ୍ୟ ଶବ୍ଦର ଅର୍ଥରେ ଅନ୍ତର୍ଦ୍ୱନ୍ଦ୍ୱ ଘଟିପାରେ । ଗୋ ହତ୍ୟା କରିବା ହିନ୍ଦୁମାନଙ୍କ ପାଖରେ 'ହିଂସା' ବୋଲି ମନେହୋଇପାରେ, କାରଣ 'ଗୋ' (ଗାଈ) ହେଉଛି ହିନ୍ଦୁମାନଙ୍କ ଦୃଷ୍ଟିରେ ମାତା । କିନ୍ତୁ ଏଭଳି କାର୍ଯ୍ୟ ମୁସଲମାନମାନଙ୍କ ଦୃଷ୍ଟିରେ ଠିକ୍ ସେପରି ଅର୍ଥ ବହନ କରେ ନାହିଁ । ଧାର୍ମିକ ଓ ବ୍ୟକ୍ତିଗତ ଦୃଷ୍ଟିକୋଣରୁ ଅର୍ଘ୍ୟ, ବ୍ରାହ୍ମଣ, ପଠାଣ, ଶୈବ, ସାଧୁ, ପାପ, ପୁଣ୍ୟ, gentleman ପ୍ରଭୃତି ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରେ ।

(୪୩) ବର୍ଗର ଏକ ବସ୍ତୁର ନାମ ସମଗ୍ର ବସ୍ତୁକୁ ପ୍ରଦାନ କରିବା —ବର୍ଗର କୌଣସି ଏକ ବସ୍ତୁ ବହୁତ ଅଧିକ ପରିଚିତ ହୋଇଗଲେ ଆମ୍ଭେମାନେ ତାହାର ନାମରେ ସମୁଦାୟ ବର୍ଗକୁ ଅଭିହିତ କରିଥାଉ । ଯଥା—

ସବ୍‌ଜି—ସବ୍‌ଜି ଶବ୍ଦ ସବ୍‌ଜ ଶବ୍ଦରୁ ଉତ୍ପନ୍ନ । ସବ୍‌ଜ ଶବ୍ଦର ଅର୍ଥ ଶାଗୁଆ । ତେଣୁ ସବ୍‌ଜି ଶବ୍ଦର ଅର୍ଥ ଥିଲା ଶାଗୁଆ ପନିପରିବା । ପ୍ରଥମେ 'ଶାଗ' ପାଇଁ 'ସବ୍‌ଜି' ଶବ୍ଦ ବ୍ୟବହୃତ ହେଉଥିଲା; କିନ୍ତୁ କାଳକ୍ରମେ ସବୁ ରଙ୍ଗର ପନିପରିବା ପିଆଜ (ନାଲି), ରସୁଣ (ଧଳା), ଟମାଟୋ (ନାଲି, ହଳଦିଆ), ମୂଳା (ଧଳା), ଆଳୁ (ହଳଦିଆ), ମିଷ୍ଟିଆଳୁ (କଳା), ଅମୃତଭଣ୍ଡା (ଶାଗୁଆ) ପ୍ରଭୃତିକୁ 'ସବ୍‌ଜି' ଆଖ୍ୟା ଦିଆଯାଇଛି ।

ସ୍ୟାହି—'ସ୍ୟାହି' ଶବ୍ଦ 'ସ୍ୟାହ' ଶବ୍ଦରୁ ଉତ୍ପନ୍ନ । 'ସ୍ୟାହ'ର ଅର୍ଥ ହେଉଛି କଳା । ତେଣୁ 'ସ୍ୟାହି'ର ଅର୍ଥ ଥିଲା କାଳି (କଳା ରଙ୍ଗର ତରଳ ପଦାର୍ଥ) ଯାହା ସାହାଯ୍ୟରେ ଅକ୍ଷର ଲେଖାଯାଏ ଓ ଚିତ୍ର କରାଯାଏ । କିନ୍ତୁ କାଳକ୍ରମେ ନୀଳ, ନୀଳ-କୃଷ୍ଣ, କଳା, ସବୁଜ, ନାଲି, ବାଇଗଣୀ ପ୍ରଭୃତି ରଙ୍ଗର କାଳିକୁ ମଧ୍ୟ କୁହାଗଲା ସ୍ୟାହି ।

ଶାଗ—'ଶାକ' ଶବ୍ଦଜ 'ଶାଗ'ର ପ୍ରଥମ ଅର୍ଥ ଥିଲା ସବୁଜ ବର୍ଣ୍ଣର ପତ୍ର ବା ତୃଣ ଯାହା ତରକାରି ଆଦିରେ ବ୍ୟବହୃତ ହୁଏ । କିନ୍ତୁ କାଳକ୍ରମେ ଶାଗ ଶବ୍ଦର ଅର୍ଥ ହୋଇଯାଇଛି ତରକାରି । ଯଥା—ଶାଗ ଭାତ ଖାଇ ସେ ସୁଖରେ ଅଛି ।

ସେହିପରି 'ପଇସା' ପୂର୍ବରୁ—୧/୪ ଅଣା ବା ୩ ପାହୁଲି ବା ବର୍ତ୍ତମାନ ୧/୧୦୦ ଟଙ୍କା ଅର୍ଥ କେବଳ ନୁହେଁ 'ଧନ', 'ସମ୍ପଦ' ଅର୍ଥକୁ ମଧ୍ୟ ବହନ କରୁଛି । ଯଥା—ସେ ଜଣେ ପଇସାବାଲା ।

(୪୪) ଏକ ବର୍ଗର ଏକ ଶବ୍ଦରେ ଅର୍ଥ-ପରିବର୍ତ୍ତନ—ଯଦି ବର୍ଗର କୌଣସି ଏକ ଶବ୍ଦର ଅର୍ଥରେ ପରିବର୍ତ୍ତନ ଘଟେ, ତେବେ ବର୍ଗର ଅନ୍ୟ ଶବ୍ଦମାନଙ୍କ ଉପରେ ତାହାର ପ୍ରଭାବ ପଡ଼େ । ଯଥା—

ଏକ ଧାତୁରୁ ସୃଷ୍ଟି ସମସ୍ତ ଶବ୍ଦ ବ୍ୟାକରଣ ଦୃଷ୍ଟିରୁ ଏକ ବର୍ଗର ଅନ୍ତର୍ଭୁକ୍ତ । ଏଥିରୁ ଗୋଟିକର ଅର୍ଥରେ ପରିବର୍ତ୍ତନ ହେଲେ ଅନ୍ୟଗୁଡ଼ିକର ମଧ୍ୟ ପରିବର୍ତ୍ତନ ଦେଖାଦିଏ । 'ଚଲ' ଧାତୁର ଅର୍ଥ ଚାଲିବା, ଗତି କରିବା (to walk) । ଯଦି 'ଚଲ୍' ଧାତୁରୁ ଉତ୍ପନ୍ନ ଶବ୍ଦ 'ଚଳନ'ର ଅର୍ଥ ବଦଳି 'ରାଗିବା', ଅସ୍ଥିର ହେବା, 'ଅଧୀର ହେବା', 'ବ୍ୟସ୍ତ ହେବା' ପ୍ରଭୃତି ହୋଇଯାଏ ତେବେ ତଦନୁଯାୟୀ, ଚଳିତ, ଚାଲିତ ବିଚଳିତ, ଚଳିବା, ଚଳେଇବା, ଚାଲିବା, ଚାଲେଇବା ଇତ୍ୟାଦି ଶବ୍ଦଗୁଡ଼ିକ ଉପରେ ଏହି ଅର୍ଥ ପରିବର୍ତ୍ତନର ପ୍ରଭାବ ପଡ଼େ ।

'ଦୁହିତା' ଶବ୍ଦର ମୂଳ ଅର୍ଥ 'ଗୋଦୋହନକାରିଣୀ' । ପରେ ଏହାର ଅର୍ଥ ବଦଳି 'ଝିଅ' ହୋଇଯିବାରୁ ଏଥିରୁ ସୃଷ୍ଟ ଦୌହିତ୍ର, ଦୌହିତ୍ରୀ, ଦୌହିତ୍ରାୟଣ ପ୍ରଭୃତି ଶବ୍ଦ ଉପରେ ଏ ପରିବର୍ତ୍ତନର ପ୍ରଭାବ ପଡ଼ିଅଛି । ସେହିପରି ଦୁର୍ଲଭ (ଦୁଷ୍ପ୍ରାପ୍ୟ)ରୁ ସୃଷ୍ଟି ହିନ୍ଦୀ ଶବ୍ଦ 'ଦୁଲ୍‌ହା'ର ଅର୍ଥ ବଦଳି 'ବର' ହୋଇଯିବାରୁ ଦୁଲ୍‌ହି ଓ ଦୁଲ୍‌ହିନ୍‌ର ଅର୍ଥ 'ବଧୂ' ହୋଇଅଛି ।

(୪୫) କୌଣସି ରାଷ୍ଟ୍ର, ଜାତି, ସଂପ୍ରଦାୟ ବା ଶ୍ରେଣୀ ପ୍ରତି ସାଧାରଣ ମନୋଭାବ—ଯେତେବେଳେ ରାଷ୍ଟ୍ର, ଜାତି, ସମ୍ପ୍ରଦାୟ ବା ଶ୍ରେଣୀ ପ୍ରତି ଭାବନା ବଦଳିଯାଏ, ତେବେ ସେସବୁର ଭାଷାର ଶବ୍ଦଗୁଡ଼ିକର ଅର୍ଥ ଉପରେ ଏହାର ପ୍ରଭାବ ପଡ଼େ । ଏପରିକି ଅନେକ ସମୟରେ ଅର୍ଥ ସମ୍ପୂର୍ଣ୍ଣ ବିପରୀତ ହୋଇଯାଏ । ଯଥା—

'ଅସୁର' ଶବ୍ଦଟି ଇରାନୀ ଭାଷାର 'ଅହୁର' ଶବ୍ଦରୁ ଉତ୍ପନ୍ନ ଏବଂ ଏହାର ଅର୍ଥ ଦେବତା । କ୍ରମେ ଇରାନୀ ଜାତି ସହିତ ଭାରତୀୟ ଜାତିର ମନୋମାଳିନ୍ୟ ଘଟିବା ଫଳରେ ଭାରତୀୟମାନେ ଶବ୍ଦଟିକୁ 'ରାକ୍ଷସ' ଅର୍ଥରେ ଗ୍ରହଣ କଲେ । ଭାରତୀୟ ଭାଷାର 'ଦେବ' ଶବ୍ଦର ଅର୍ଥ ଦେବତା ହେଲେହେଁ ଇରାନୀ ଭାଷାରେ ଏହାର ଅର୍ଥ ପରବର୍ତ୍ତୀ କାଳରେ ହୋଇଯାଇଛି 'ରାକ୍ଷସ' । ସାମ୍ପ୍ରଦାୟିକ ଦଙ୍ଗାହଙ୍ଗାମା ପରେ ଭାରତବର୍ଷରେ ହିନ୍ଦୁମାନଙ୍କ ଭାଷାରେ ମୁସଲମାନ, ପଠାଣ ଆଦି ଶବ୍ଦ ଓ ପାକିସ୍ଥାନରେ ଇସଲାମମାନଙ୍କ ଭାଷାରେ 'ହିନ୍ଦୁ' ଶବ୍ଦର ଅର୍ଥ ଖରାପ ଦିଗକୁ ଗତି କରିଛି । ପାରସିକ ଭାଷାରେ ଏହି କାରଣରୁ ବହୁକାଳର 'ହିନ୍ଦୁ' ଶବ୍ଦର ଅର୍ଥ ହୋଇଅଛି 'ଗୋଲାମ' 'କାଫେର' ଓ 'ନାପାକ' ଇତ୍ୟାଦି ।

ଧନୀ-ନିର୍ଦ୍ଧନ ଶ୍ରେଣୀ ସଂଘର୍ଷ (Class struggle) ଫଳରେ ବୁର୍ଜୁଆ, ପୁଞ୍ଜିବାଦୀ ସାମନ୍ତ, ରାଜା, ଜମିଦାର, ଗୁମାସ୍ତା, ତାଲୁକଦାର, ଇଜାରାଦାର ପ୍ରଭୃତି ଶବ୍ଦର ଅର୍ଥରେ ପରିବର୍ତ୍ତନ ଘଟିଅଛି ।

(୪୬) ପ୍ରତୀକ ବା ସଙ୍କେତ—କୌଣସି ବିଶେଷତ୍ୱ ବା ପ୍ରାଧାନ୍ୟ ଯୋଗୁ ଯେଉଁ କୌଣସି ବସ୍ତୁ ବର୍ଗର ପ୍ରତୀକ ରୂପେ ବ୍ୟବହୃତ ହୁଏ, ତେବେ ବସ୍ତୁସୂଚକ ଶବ୍ଦଟି ବସ୍ତୁକୁ ନ ବୁଝାଇ ବର୍ଗର ଅର୍ଥକୁ ଗ୍ରହଣ କରେ । ଯଥା—ଲାଲଝଣ୍ଡା> କମ୍ୟୁନିଷ୍ଟ, ଗାନ୍ଧିଟୋପି> କଂଗ୍ରେସ୍, ଲାଲ୍ ପଗଡ଼ି> ପୋଲିସ, ସଫେଦ ପଗଡ଼ି> ପାର୍ଶୀ ପୁରୋହିତ, ପଇତା> ବ୍ରାହ୍ମଣ, ଜଟା> ବାବାଜୀ, ଦାଢ଼ି> ବାବାଜୀ, ଲୁଙ୍ଗି> ମୁସଲମାନ ଇତ୍ୟାଦି ।

(୪୭) ବ୍ୟକ୍ତିଗତ ରୁଚି—ବ୍ୟକ୍ତିଗତ ରୁଚି ଅନୁଯାୟୀ ଶବ୍ଦର ଅର୍ଥ ଭିନ୍ନ ହୋଇଥାଏ । ଦୁଇଟି ମସ୍ତିଷ୍କରେ ଗୋଟିଏ ଶବ୍ଦ ସମାନ ପ୍ରତିକ୍ରିୟା ସୃଷ୍ଟି କରିପାରେ ନାହିଁ । ଭିନ୍ନ ଭିନ୍ନ ପ୍ରତିକ୍ରିୟା ଯୋଗୁ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରେ । ଉଦାହରଣ ସ୍ୱରୂପ, 'ପରକୀୟା ପ୍ରୀତି' ଜଣେ ଗୌଡ଼ୀୟ ବୈଷ୍ଣବ ମନରେ ଯେଉଁ ଅର୍ଥଦ୍ୟୋତନା ଆଣିଦିଏ; ଅନ୍ୟ ଧର୍ମ ସଂପ୍ରଦାୟର ଜଣେ ବ୍ୟକ୍ତି ମନରେ ସେହି ଅର୍ଥଦ୍ୟୋତନା ଆଣେ ନାହିଁ । ଈଶ୍ୱର, ଧର୍ମ, ପାପ, ପୁଣ୍ୟ, ପୂଜାପାଠ, ଜପ, ତପ, ଚୁମ୍ବନ, ଆଲିଙ୍ଗନ, ପ୍ରେମ, ପ୍ରୀତି, ସ୍ତନ ଇତ୍ୟାଦି ଶବ୍ଦ ବ୍ୟକ୍ତିଗତ ଦୃଷ୍ଟିକୋଣ ଭେଦରେ ଭିନ୍ନ ଭିନ୍ନ ଅର୍ଥଦ୍ୟୋତନା ଗ୍ରହଣ କରେ ।

(୪୮) ଲାକ୍ଷଣିକ ପ୍ରୟୋଗ—କେବେ କେବେ ସ୍ଥୂଳ ବା ପ୍ରତ୍ୟକ୍ଷ ବସ୍ତୁମାନଙ୍କର ଅବୟବର ଚିତ୍ର ସ୍ପଷ୍ଟ କରିବାଲାଗି ମାନବର ଅଙ୍ଗପ୍ରତ୍ୟଙ୍ଗ ଜାତୀୟ ପଦାର୍ଥ ସହିତ ବ୍ୟବହୃତ ହୁଏ । ତେଣୁ ଅବୟବ ଅର୍ଥର ଲାକ୍ଷଣିକ ପ୍ରୟୋଗ କରାଯାଏ । ଯଥା—ସୂଚିର ବେକ, ଚଣାର ନାକ, କଳସ ମୁହଁ, ପାନିଆ ଦାନ୍ତ, ନଡ଼ିଆ ଜଟା, ଅଙ୍ଗୁର ଆଖି, ଚଉକି ଗୋଡ଼, ଛନ୍ଦର ପଦ ଓ ପାଦ, ବୀଣାର ଭୁଜ, ନଈ ମୁହଁ, ନଦୀ ଗର୍ଭ, ସମୁଦ୍ର ବକ୍ଷ, ନୌକାର କଣ୍ଠ, କାଗଜର ପୃଷ୍ଠ, ଘରର ମୁହଁ, ହାଣ୍ଡିର ପେଟ । ସେହିପରି ବୃକ୍ଷର ଅବୟବକୁ ନେଇ ବୃକ୍ଷ ସହିତ ଅସଂପୃକ୍ତ ଅନ୍ୟ ପ୍ରସଙ୍ଗରେ ପ୍ରୟୋଗ କରାଯାଏ । ଯଥା—କଥାର ଅଗ ମୂଳ, ଗଣ୍ଡଗୋଳର ମୂଳ, କଥାର କଳି, ଗଳ୍ପ-ଡାଖୁଡ଼ା ।

(୪୯) ରୂଢ଼ି ପ୍ରୟୋଗ—ରୂଢ଼ି ପ୍ରୟୋଗ ଦ୍ୱାରା ବ୍ୟବହୃତ ଶବ୍ଦଗୁଚ୍ଛ ମଧ୍ୟରୁ କୌଣସି ଗୋଟିଏ ଶବ୍ଦର ଅର୍ଥ ସ୍ୱତନ୍ତ୍ର ଭାବରେ ପ୍ରତିପାଦିତ ହୁଏ ନାହିଁ । ସମସ୍ତ ଶବ୍ଦର ଅନ୍ୟ ଏକ ଧ୍ୱନିତ ଅର୍ଥ ପ୍ରକାଶ ପାଏ । ଯଥା—ଜିଭରୁ ଶିର କାଢ଼ିବା (ପ୍ରତି କଥାକୁ ଅଯଥା ଟିକିନିଖି ଭାବରେ ସମାଲୋଚନା କରିବା), ଆଖିରେ ଧୂଳି ପକାଇବା (ଠକି ଦେବା), ଟେଡା କାଟି ଦେବା (ଠକି ଦେବା), ହାତବାରିସି ହେବା (ସହାୟକ ହେବା) ଇତ୍ୟାଦି ।

(୫୦) ଲକ୍ଷଣାଶକ୍ତି—ଯେଉଁ ଶକ୍ତିଦ୍ୱାରା ଶବ୍ଦ ମୁଖ୍ୟ ଅର୍ଥରୁ ଭିନ୍ନ କିନ୍ତୁ ମୁଖ୍ୟାର୍ଥ ସହିତ ସମ୍ବନ୍ଧ ରଖୁଥିବା ଏକ ଅର୍ଥ ପ୍ରକାଶ କରେ ତାହାକୁ ଲକ୍ଷଣାଶକ୍ତି କୁହାଯାଏ । ଏହାଦ୍ୱାରା ଅର୍ଥର ପରିବର୍ତ୍ତନ ଘଟେ । ଯଥା—'ମହାତ୍ମାଗାନ୍ଧିଙ୍କ ଅହ୍ୱାନରେ ସ୍ୱାଧୀନତା ସଂଗ୍ରାମ ପାଇଁ ଭାରତବର୍ଷ ଜାଗି ଉଠିଲା ।'—ଏଠାରେ 'ଭାରତବର୍ଷ' କହିଲେ 'ଭାରତବର୍ଷର ଅଧିବାସୀ'ମାନଙ୍କୁ ବୁଝାଉଛି ।

(୫୧) ସଂକୀର୍ଣ୍ଣତା ଭିତରେ ବ୍ୟାପକତାର ଅବଛିକରଣ—ଏକ ବ୍ୟାପକ ବସ୍ତୁକୁ ସଂକୀର୍ଣ୍ଣ ବସ୍ତୁ ଭିତରେ ସୀମିତ କରିବା ଫଳରେ ଅର୍ଥରେ ପରିବର୍ତ୍ତନ ଘଟେ । ଯଥା—"ମୋ ସଂସାର ସରି ଯାଇଛି, ଏଣିକି ବାନପ୍ରସ୍ଥ ।" ଏଠାରେ 'ସଂସାର'ର ଅର୍ଥ ଗୃହସ୍ଥ ଜୀବନ । "ସେ ଘର ସଂସାର କଲାଣି ।" ଏଠାରେ 'ସଂସାର' ଅର୍ଥ କେବଳ 'ଜୀବନ' । 'ଘରସଂସାର'ର ଅର୍ଥ ଗୃହସ୍ଥ ଜୀବନ । "ଚୋରମାନେ ମୋ ସଂସାର ସାଫ କରିଦେଇଛନ୍ତି ।" ଏଠାରେ ସଂସାରର ଅର୍ଥ ସମ୍ପତ୍ତି ।

(୫୨) ଧ୍ୱନି ପରିବର୍ତ୍ତନ—ଧ୍ୱନିର ପରିବର୍ତ୍ତନ ଘଟିଲେ ଅର୍ଥର ପରିବର୍ତ୍ତନ ଘଟେ । ଯଥା—drink, drank, drunk, feet, foot, ଧନ, ଧାନ, ଦିନ, ଦୀନ, ବିଷ, ବିସ, ଭିଷ, ଜାତ, ଯାତ, ଚଳିବା, ଚୁଲିବା, ମନ, ମୁନ, ମାନ, ମୀନ, ମୌନ, ମନୁ, ମନେ ଇତ୍ୟାଦି ।

(୫୩) କାକୁକ୍ତି—କଣ୍ଠସ୍ୱରର ପରିବର୍ତ୍ତନ ହୋଇଗଲେ ଅର୍ଥର ପରିବର୍ତ୍ତନ ହୋଇଯାଏ । ଯଥା—

'ନାହିଁ ଏ ଭାରତେ ଶୌର୍ଯ୍ୟର ବିଳାସ' । (ନାସ୍ତି ଅର୍ଥରେ)
'ନାହିଁ ଏ ଭାରତେ ଶୌର୍ଯ୍ୟର ବିଳାସ' ? (ନିଶ୍ଚୟ ଅର୍ଥରେ)

(୫୪) ସଭଙ୍ଗ ଶ୍ଳେଷ—ସଭଙ୍ଗ ଶ୍ଳେଷରେ ଗୋଟିଏ ପଦ (word) ଏକାଧିକ ଅଂଶରେ ବିଭକ୍ତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ । ଯଥା—'ବିହାର କାନନ କର ଅଲିଙ୍ଗନକୁ ।'—ଏଠାରେ 'କାନନ' ଶବ୍ଦରେ ଥିବା ବର୍ଣ୍ଣଗୁଡ଼ିକ ଏକାଠି ରହିଲେ 'ବନ' ଅର୍ଥକୁ ପ୍ରକାଶ କରେ । କିନ୍ତୁ 'କାନ' ଓ 'ନ' ଅଲଗା ଅଲଗା ରହିଲେ ଅର୍ଥ ଅଲଗା ହୋଇଯାଏ ଏବଂ ଉକ୍ତିର ଅର୍ଥ ହୁଏ, 'କାନ ଛେଦନ କର, ଅଲିଙ୍ଗନ କର ନାହିଁ' ।

(୫୫) ଗୋଲକଧନ୍ଦା ବା ପ୍ରହେଳିକା—ପ୍ରହେଳିକା ସୃଷ୍ଟି କରିବା ଲାଗି ଗୋଟିଏ ଗୋଟିଏ ଶବ୍ଦ ମଧ୍ୟରେ ପ୍ରକୃତ ଅର୍ଥକୁ ରହସ୍ୟାଚ୍ଛନ୍ନ କରି ରଖାଯାଇଥାଏ । ଯଥା—'ଘରଯାକ ଗୋଟେ ଗାଈ, ଘର ପାହିଲକୁ ଗୋଟେ ନାହିଁ' । ଏଠାରେ ଗାଈ

ଅର୍ଥ ତାହା । ଏହା ପ୍ରତୀକ ବା ସଙ୍କେତ ପରି ମନେହେଉଥିଲେ ହେଁ ପ୍ରତୀକ ବା ସଙ୍କେତ ନୁହେଁ । ପ୍ରତୀକ ବା ସଙ୍କେତରେ ବର୍ଗର ନିର୍ଦ୍ଦିଷ୍ଟ ସଙ୍କେତ, ସ୍ୱାତନ୍ତ୍ର୍ୟ ବା ବିଶେଷତ୍ୱ ଥାଏ । ଏ କ୍ଷେତ୍ରରେ ସେହିପରି ଦେଖାଯାଏ ନାହିଁ ।

ଅର୍ଥ ପରିବର୍ତ୍ତନର ଅସଂଖ୍ୟ କାରଣ ନିର୍ଣ୍ଣୟ କରାଯାଇପାରେ । ଏଠାରେ ମୁଷ୍ଟିମେୟ କାରଣ ଉପରେ ସଂକ୍ଷେପରେ ଆଲୋଚନା କରାଯାଇଛି ମାତ୍ର ।

## ଅର୍ଥ ପରିବର୍ତ୍ତନର ବିଭିନ୍ନ ଭେଦ ବା ଦିଗ

ଅର୍ଥ ପରିବର୍ତ୍ତନର ବିଭିନ୍ନ କାରଣ ପରି ଅର୍ଥ ପରିବର୍ତ୍ତନର ବିଭିନ୍ନ ଦିଗ ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ ଓ ଚିତ୍ତାକର୍ଷକ । ଗୋଟିଏ ଅର୍ଥ କେତେବେଳେ ଅନେକ ଅର୍ଥରେ ଓ ଅନେକ ଅର୍ଥ କେତେବେଳେ ଗୋଟିଏ ଅର୍ଥରେ ପରିଣତ ହୋଇଯାଏ । କେତେବେଳେ ଉତ୍କୃଷ୍ଟ ଅର୍ଥ ନିକୃଷ୍ଟ ଅର୍ଥ ଗ୍ରହଣ କରେ ତ କେତେବେଳେ ନିକୃଷ୍ଟ ଅର୍ଥ ଉତ୍କୃଷ୍ଟ ଅର୍ଥ ଗ୍ରହଣ କରେ । ପୁଣି କେତେବେଳେ ଗୋଟିଏ ଅର୍ଥ ପରିବର୍ତ୍ତେ ଅନ୍ୟ ଏକ ନୂତନ ଅର୍ଥର ଆଗମ ହୋଇଯାଏ । ଅର୍ଥ ପରିବର୍ତ୍ତନର ଏହି ବିଭିନ୍ନ ବୈଚିତ୍ର୍ୟ (variety) ସହିତ ସାମାଜିକ, ସାଂସ୍କୃତିକ, ରାଜନୈତିକ ଆଦି ବହୁ କାରଣ ନିହିତ । ଅର୍ଥ ପରିବର୍ତ୍ତନର ବିଭିନ୍ନ ଦିଗ ସମ୍ପର୍କରେ ଅଧ୍ୟୟନ ବାସ୍ତବରେ କୌତୁହଳପ୍ରଦ ।

ଅର୍ଥବିଜ୍ଞାନବିତ୍ ବ୍ରିଲ୍ (Breal) ଅର୍ଥ ପରିବର୍ତ୍ତନର ତିନିଗୋଟି ଦିଗ ନିର୍ଦ୍ଦେଶ କରିଛନ୍ତି —

(୧) ଅର୍ଥ ବିସ୍ତାର ବା ଅର୍ଥ ସମ୍ପ୍ରସାରଣ (Expansion or Widening of Meaning)

(୨) ଅର୍ଥ ସଂକୋଚନ (Contrcation or Narrowing of Meaning)

(୩) ଅର୍ଥାଦେଶ ଓ ଅର୍ଥାଗମ (Transference of Meaning)

କେତେକ ବିଦ୍ୱାନ୍ ଏହି ତିନୋଟି ବ୍ୟତୀତ ଆହୁରି ଅନେକ ଦିଗ ଅବତାରଣା କରିଛନ୍ତି । ବ୍ଲୁମ୍ ଫିଲ୍ଡ (Bloomfield) ସମୁଦାୟ ନଅଟି ଦିଗ ବାହାର କରିଛନ୍ତି । କିନ୍ତୁ ଏହିସବୁ ଦିଗ ଏହି ତିନୋଟି ଦିଗର ଅନ୍ତର୍ଭୁକ୍ତ ହୋଇପାରେ । ଏହି ତିନୋଟି ଦିଗ ଛଡ଼ା ଆଉ ତିନୋଟି ଉଲ୍ଲେଖଯୋଗ୍ୟ ଦିଗ ସମ୍ପର୍କରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରାଯାଇପାରେ ।

(୪) ଅର୍ଥୋତ୍କର୍ଷ ବା ଅର୍ଥର ଉନ୍ନୟନ ( Elevation of Meaning ) or Promtion in Meaning)

(୫) ଅର୍ଥାପକର୍ଷ ବା ଅର୍ଥର ଅବନୟନ (Deterioration or Degeneration of Meaning)

(୬) ଅର୍ଥ ବିଭାଜନ (Division of Meaning)

ଏହିପରି ଭାବରେ ଅର୍ଥ ପରିବର୍ତ୍ତନର ଛଅଗୋଟି ମୁଖ୍ୟ ଦିଗ ଲକ୍ଷ୍ୟ କରା-ଯାଇପାରେ :—

(୧) ଅର୍ଥବିସ୍ତାର—ଯେଉଁଠାରେ ପୂର୍ବରୁ ସୀମିତ ଅର୍ଥରେ ବ୍ୟବହୃତ ଶବ୍ଦ ପରେ ବିସ୍ତୃତ ବା ବ୍ୟାପକ ଅର୍ଥରେ ବ୍ୟବହୃତ ହୁଏ, ସେଠାରେ ଅର୍ଥ ବିସ୍ତାର ଦେଖାଯାଏ ।

(କ) କୁଶଳ—ପ୍ରଥମେ ଏହାର ଅର୍ଥ ଥିଲା 'କୁଶ' ସଂଗ୍ରହ କରୁଥିବା ବ୍ୟକ୍ତି, 'କୁଶଂ ଲାତି' । କୁଶ ଉପାଡ଼ିବା ଏକ କଷ୍ଟସାଧ୍ୟ କାର୍ଯ୍ୟ । ଉପାଡ଼ୁ ଉପାଡ଼ୁ ହାତ ବି କଟିଯାଏ । ଏହି ଅର୍ଥକୁ ଅତିକ୍ରମ କରି କାଳକ୍ରମେ ଲୋକମାନେ 'କୁଶଳ' କହିଲେ ବୁଝିଲେ ଯେ 'କୌଣସି କଷ୍ଟକର କାର୍ଯ୍ୟରେ ସଫଳତା ହାସଲ କରିବା ଦିଗରେ ଚତୁର ବ୍ୟକ୍ତି ।'

(ଖ) ଅଧର—ପ୍ରଥମେ 'ଅଧର'ର ଅର୍ଥ ଥିଲା 'ତଳ ଓଠ' । କିନ୍ତୁ କାଳକ୍ରମେ ଏହା ତଳ, ଉପର ଦୁଇ ଓଠକୁ ବୁଝାଉଛି ।

(ଗ) ପ୍ରବୀଣ—ପ୍ରଥମେ ଏହାର ଅର୍ଥ ଥିଲା ବୀଣାବାଦନରେ ସିଦ୍ଧହସ୍ତ ବ୍ୟକ୍ତି । କାଳକ୍ରମେ ଏହାର ଅର୍ଥ ହେଲା ଯେକୌଣସି କାର୍ଯ୍ୟରେ ସିଦ୍ଧହସ୍ତ ବ୍ୟକ୍ତି ।

(ଘ) ଗବେଷଣା—ପୂର୍ବରୁ ଏହାର ଅର୍ଥ ଥିଲା 'ଗାଈ ଖୋଜିବାର ଇଚ୍ଛା' (ଗା + ଏଷଣା) କାଳକ୍ରମେ ଯେ କୌଣସି ପ୍ରାଣୀ ବା ପଦାର୍ଥ ଖୋଜିବାର ଇଚ୍ଛାକୁ ବୁଝାଗଲା 'ଗବେଷଣା' । ବର୍ତ୍ତମାନ କାଳରେ ଏହା ଯେ କୌଣସି ଜ୍ଞାନକୁ ଖୋଜିବା ଅର୍ଥ ଗ୍ରହଣ କରିଛି ।

(ଙ) ତେଲ—ପ୍ରଥମେ 'ତିଳ'ରୁ ଉତ୍ପନ୍ନ ତରଳ ପଦାର୍ଥକୁ ବୁଝାଯାଉଥିଲା 'ତେଲ' (ତୈଳ ଶବ୍ଦ) । କିନ୍ତୁ କାଳକ୍ରମେ ସୋରିଷ, ଅଳସୀ, ଚନ୍ଦନ, ଚିନାବାଦାମ, ଜଡ଼ା, ନଡ଼ିଆ, ପେଣ୍ଡି, ଟୋଲ, କରଞ୍ଜ ପ୍ରଭୃତିରୁ ଉତ୍ପନ୍ନ ତରଳ ପଦାର୍ଥକୁ ବୁଝାଗଲା ତେଲ । କେବଳ ସେତିକି ନୁହେଁ ମାଟିରୁ ଉତ୍ପନ୍ନ ତରଳ ପଦାର୍ଥକୁ ମଧ୍ୟ ବୁଝାଗଲା ତେଲ, ଯଥା—ମାଟିତେଲ (କିରୋସିନ) ।

(ଚ) କାଲି—'କାଲି' ଶବ୍ଦ ସଂସ୍କୃତରେ 'କଲ୍ୟ' ଶବ୍ଦରୁ ଉତ୍ପନ୍ନ ହୋଇଥିବାରୁ ଆଗେ ଏହାର ଅର୍ଥ ଥିଲା 'ଗତପୂର୍ବ ଦିନ' । କିନ୍ତୁ କାଳକ୍ରମେ ଏହା 'ଗତପୂର୍ବ ଦିନ' ଓ 'ଆଗାମୀ ପରଦିନ' ଉଭୟ ଅର୍ଥରେ ବ୍ୟବହୃତ ହୋଇଅଛି ।

(ଛ) ନିପୁଣ—'ନିପୁଣ' ଶବ୍ଦର ମୌଳିକ ଅର୍ଥ ଥିଲା 'ପୁଣ୍ୟରତ' । ପରେ ତା'ର ଅର୍ଥ ହେଲା ସଫଳ ଭାବରେ ପୁଣ୍ୟରତ ବ୍ୟକ୍ତି ବା ସଫଳ ଉଦ୍ଯମ ବ୍ୟକ୍ତି । ପରବର୍ତ୍ତୀ କାଳରେ ଏହା 'ଯେ କୌଣସି କାର୍ଯ୍ୟରେ (ଭଲ ଓ ମନ୍ଦ) ଦକ୍ଷତା ଅର୍ଜନ କରିଥିବା ବ୍ୟକ୍ତି' ଅର୍ଥରେ ବ୍ୟବହୃତ ହୋଇଅଛି ।

(ଜ) କାଳି—ପ୍ରଥମେ ଏହାର ଅର୍ଥ ଥିଲା କଳାରଙ୍ଗର ତରଳ ପଦାର୍ଥ ଯହିଁରେ ଲିପି ଲେଖାଯାଇପାରେ ଅର୍ଥାତ୍ କଳା ସ୍ୟାହି । କିନ୍ତୁ କାଳକ୍ରମେ ଏହା ନାଲି, ସବୁଜ, ନୀଳ, କୃଷ୍ଣନୀଳ, (blueblack), ବାଇଗଣୀ, ସ୍ଥାୟୀକୃଷ୍ଣ (Permanent Black) ଇତ୍ୟାଦି ସବୁ ରଙ୍ଗର ସ୍ୟାହି ପାଇଁ ବ୍ୟବହୃତ ହୋଇଅଛି ।

(ଝ) ସ୍ୟାହି—'ସ୍ୟାହି'ର ଅର୍ଥ କଳା । ଆରମ୍ଭରେ ଲୋକମାନେ କଳା-ରଙ୍ଗର ତରଳ ପଦାର୍ଥରେ ଲେଖୁଥିଲେ, ତେଣୁ ଏହାର ନାମ ଥିଲା 'ସ୍ୟାହି'; କିନ୍ତୁ ଆଜି ନାଲି, ସବୁଜ, ନୀଳ, କୃଷ୍ଣନୀଳ, ସ୍ଥାୟୀକୃଷ୍ଣ ଇତ୍ୟାଦି ସବୁ ରଙ୍ଗର କାଳି 'ସ୍ୟାହି' ନାମରେ ଅଭିହିତ ।

(ଞ) ଅଭ୍ୟାସ—'ଅଭ୍ୟାସ' ଶବ୍ଦର ପ୍ରୟୋଗ ପ୍ରଥମେ କେବଳ 'ବାରମ୍ବାର ବାଣ ପ୍ରୟୋଗ' ଅର୍ଥରେ ହୋଇଥିଲା । କିନ୍ତୁ ଏହା ପରେ 'ଭଲ ମନ୍ଦ ଉଭୟ କାର୍ଯ୍ୟରେ ବାରମ୍ବାର ଅନୁନିୟୋଗ' ଅର୍ଥରେ ବ୍ୟବହୃତ ହୋଇଅଛି ।

(ଟ) ସବ୍‌ଜି—'ସବ୍‌ଜ' ସବ୍‌ଜ (ସବଜ୍) ଭିତ୍ତିରେ ପ୍ରଥମେ ସବଦ୍ ବର୍ଣ୍ଣର ପନିପରିବାମାନଙ୍କର ପର୍ଯ୍ୟାୟଭୁକ୍ତ ଥିଲା; କିନ୍ତୁ ଏବେ ନୀଳ, ହଳଦିଆ, ଧଳା ସବୁ ରଙ୍ଗର ପନିପରିବା 'ସବ୍‌ଜ' ନାମରେ ଅଭିହିତ ।

(ଠ) ଗୋଷ୍ଠ—'ଗୋଷ୍ଠ' (ଗୋ + ସ୍ଥ) ଶବ୍ଦର ମୂଳ ଅର୍ଥ ଥିଲା 'ଗାଈମାନଙ୍କର ସ୍ଥାନ' ଅର୍ଥାତ୍ ଗୁହାଳ ବା ବାଡ଼ା । କାଳକ୍ରମେ ଲୋକେ ଏହାର ମୂଳ ଅର୍ଥ ଭୁଲିଯାଇ ଯେକୌଣସି ପଶୁ ବାନ୍ଧିବାର ସ୍ଥାନ ଅର୍ଥରେ ଏହାର ବ୍ୟବହାର କଲେ । ପରେ 'ବାନ୍ଧିବା ସ୍ଥାନ' ଅର୍ଥ ଭୁଲି 'ଏକତ୍ର ଥିବା ପଶୁପଲ' ଅର୍ଥରେ ପ୍ରୟୋଗ କଲେ । କ୍ରମେ କ୍ରମେ 'ପଶୁପଲ' ବା 'ପଶୁ ସମୂହ' ଅର୍ଥ ଅଧିକ ବିସ୍ତାର ଲାଭକରି କେବଳ 'ସମୂହ' ବା 'ସମାଜ' ଅର୍ଥରେ ପରିଣତ ହେଲା । ଫଳରେ 'କବିଗୋଷ୍ଠୀ', 'ସାହିତ୍ୟିକ ଗୋଷ୍ଠୀ' 'ଗୋଗୋଷ୍ଠ' (ଗାଈ ଗୋଠ), 'ଅଜ ଗୋଷ୍ଠ, (ଛେଳି ଗୋଠ) ପ୍ରଭୃତି ଶବ୍ଦର ପ୍ରଚଳିତ ହୋଇଅଛି ।

କୃଷ—'କୃଷ'ର ପ୍ରଥମେ ଅର୍ଥ ଥିଲା ଲଙ୍ଗଳ ଦ୍ଵାରା ଭୂମିକର୍ଷଣ । କ୍ରମେ କର୍ଷଣ ନ ଥାଇ ମଧ୍ୟ କୃଷ ଶବ୍ଦ ବ୍ୟବହୃତ ହେଉଅଛି । ଯଥା—କୁକୁଡ଼ା କୃଷ, ମହୁ କୃଷ, ମାଛ କୃଷ, କଲମ କୃଷ, ଫାଇଲ୍ କୃଷ ଇତ୍ୟାଦି ।

(ଢ) ବାକ୍ସ—ଏହାର ମୂଳ ଥିଲା 'ବକ୍ସ ଉଡ଼୍'ରୁ ନିର୍ମିତ ପେଡ଼ି । ଏବେ ଯେକୌଣସି ପଦାର୍ଥ (କାଠ, ଚମଡ଼ା, ଟିଣ, କନା, କାଗଜ, ଲୁହା, ଦସ୍ତା)ରେ ତିଆରି ପେଡ଼ିକୁ ବାକ୍ସ କୁହାଯାଉଛି ।

(ଣ) ସାର୍—ଅତି ଉଚ୍ଚ ପଦବୀ ବା ସମ୍ମାନଧାରୀ ବ୍ୟକ୍ତିଙ୍କୁ 'ସାର୍' କୁହାଯାଉଥିଲା । ବର୍ତ୍ତମାନ ଅପେକ୍ଷାକୃତ ଉଚ୍ଚତର ସ୍ଥାନରେ ଥିବା ଯେ କୌଣସି ବ୍ୟକ୍ତିଙ୍କୁ 'ସାର୍' କୁହାଯାଉଛି ।

(ତ) ଖାଇବା—'ଖାଇବା' ଶବ୍ଦର ମୂଳ ଅର୍ଥ 'ଭୋଜନ କରିବା' (ଖାଦ୍ୟ ଭୋଜନ କରିବା), କିନ୍ତୁ କାଳକ୍ରମେ, 'ମାଡ଼ ଖାଇବା', 'ଗାଳି ଖାଇବା', 'ଜୋତା ଖାଇବା', 'ଭୟ ଖାଇବା', 'ପାଣି ଖାଇବା', 'ମଦ ଖାଇବା' ପ୍ରଭୃତି ଶବ୍ଦରେ 'ଖାଇବା' ଶବ୍ଦର ଅର୍ଥ ବିସ୍ତାର ଘଟିଅଛି ।

(ଥ) ଖଦି—'ଖଦି'ର ମୂଳ ହେଉଛି ସଂସ୍କୃତ 'ଯୁଦ୍ର' ଶବ୍ଦ, ତେଣୁ ଏହାର ମୂଳ ଅର୍ଥ ଥିଲା 'କ୍ଷୁଦ୍ର' ବସ୍ତ୍ର । ମାତ୍ର ଏହା ଗୁଜରାଟୀ ଭାଷାର ଶବ୍ଦର (ଦେଶଜ) ଶବ୍ଦ, ସହିତ ସଂପୃକ୍ତ ହୋଇ ଅସହଯୋଗ ଆନ୍ଦୋଳନ ସମୟରେ ଓଡ଼ିଆରେ ପ୍ରଚଳିତ ହୋଇଥିଲା ଓ ଯେ କୌଣସି ହାତକଟା ସୂତାରେ ତିଆରି ଲୁଗା ଅର୍ଥରେ ପ୍ରଯୁକ୍ତ ହୋଇଥିଲା ।

(ଦ) 'ଫୁଲ'—ଶବ୍ଦର ମୂଳ ଅର୍ଥ 'କୁସୁମ' । କିନ୍ତୁ କାଳକ୍ରମେ ଏହା 'ଗାଈର ଫୁଲ ପଡ଼ିବା', 'ବାଆ ଫୁଲ ଫୁଟିବା', 'କାନ ଫୁଲ' ପ୍ରଭୃତି ଶବ୍ଦଗୁଚ୍ଛରେ ସମ୍ପ୍ରସାରିତ ଅର୍ଥ ନେଇ ବ୍ୟବହୃତ ହେଉଅଛି ।

(ଧ) ବାର—ପ୍ରଥମେ 'ଦ୍ଵାଦଶ' ସଂଖ୍ୟା ଅର୍ଥରେ ବ୍ୟବହୃତ 'ବାର' ପରକାଳରେ ନାନା ଅର୍ଥରେ ବ୍ୟବହୃତ ହୋଇଅଛି, ଯଥା—ବାରଦୁଆର, ବାର ଭାଇ ଆଖଡ଼ା, ବାର ସ୍ଵାନସ୍ତା ଇତ୍ୟାଦି ।

ଏହାଛଡ଼ା କେତେକ ବ୍ୟକ୍ତିବାଚକ ବା ସ୍ଥାନବାଚକ ବିଶେଷ୍ୟର ଅର୍ଥ ବିସ୍ତାର ଘଟି ଗୁଣସୂଚକ ସାଧାରଣ ଅର୍ଥର ବାଚକ ହୋଇଯାଇଅଛି, ଯଥା—ସତ୍ୟବାଦୀ ଅର୍ଥରେ 'ହରିଶ୍ଚନ୍ଦ୍ର', ଉତ୍କୃଷ୍ଟ କୂଟନୀତିଜ୍ଞ ଅର୍ଥରେ 'ଚାଣକ୍ୟ', ଜାତିଦ୍ରୋହୀ ଅର୍ଥରେ ଓଡ଼ିଆ ଭାଷାରେ 'ଶିଖି ମନାଇ', କଳି ଲଗାଇଦେବା ବ୍ୟକ୍ତି ଅର୍ଥରେ ନାରଦ, ମହାନ୍ କବି ବା ସାହିତ୍ୟିକ ଅର୍ଥରେ 'ସେକ୍ସପିୟର', 'କାଳିଦାସ' ଆଦି,

ଦେଶଦ୍ରୋହୀ ଅର୍ଥରେ 'ଜୟଚାନ୍ଦ', ପ୍ରାକୃତିକ ସୌନ୍ଦର୍ଯ୍ୟ-ସମୃଦ୍ଧ ସ୍ଥାନ ଅର୍ଥରେ 'ନନ୍ଦନକାନନ', 'ସ୍ୱର୍ଗ', 'କାଶ୍ମୀର', ସୁଖକର ସ୍ଥାନ ଅର୍ଥରେ 'ବୈକୁଣ୍ଠଭୁବନ', 'ଅମରାବତୀ', 'ଅପ୍ସରା ଭୁବନ' ଇତ୍ୟାଦି ।

(୨) ଅର୍ଥ ସଙ୍କୋଚନ—ପୂର୍ବେ ବ୍ୟାପକ ଅର୍ଥରେ ବ୍ୟବହୃତ ଶବ୍ଦ ପରେ ସୀମିତ ଅର୍ଥରେ ବ୍ୟବହୃତ ହେଲେ ସେହି ବ୍ୟାପାରକୁ କୁହାଯାଏ ଅର୍ଥ ସଙ୍କୋଚନ । ଅନେକ ବିଦ୍ୱାନଙ୍କର ମତ ହେଉଛି, ଶବ୍ଦ ପ୍ରଥମେ ବ୍ୟାପକ ଓ ବିସ୍ତୃତ ଅର୍ଥର ଦ୍ୟୋତକ ଥିଲା, କିନ୍ତୁ କାଳକ୍ରମେ ସେଗୁଡ଼ିକର ଅର୍ଥ ସୀମିତ ହୋଇଯାଇଛି । ଭାଷାବିତ୍ ଗ୍ରେଙ୍କର ମତ ହେଉଛି, ଶବ୍ଦ ପ୍ରଥମେ ସାଧାରଣ ଓ ଅସ୍ପଷ୍ଟ ଅର୍ଥର ଦ୍ୟୋତକ ଥିଲା, କିନ୍ତୁ କାଳକ୍ରମେ ଅଧିକରୁ ଅଧିକ ବିଶିଷ୍ଟାର୍ଥବାଚକ ହେବାକୁ ଲାଗିଲା । ଅନେକ ବିଦ୍ୱାନ୍ ମତ ଦିଅନ୍ତି, ଭାଷାରେ ଶବ୍ଦର ଅର୍ଥ ସଙ୍କୋଚନ ସମ୍ପୃକ୍ତ ଜାତିର ସାଂସ୍କୃତିକ ତଥା ମାନସିକ ବିକାଶର ପରିଚାୟକ, କାରଣ ଉନ୍ନତ ମସ୍ତିଷ୍କ ବସ୍ତୁମାନଙ୍କ ପରିଚୟକୁ ନିର୍ଦ୍ଦିଷ୍ଟ କରିବା ପାଇଁ ଇଚ୍ଛା କରିଥାଏ, ତେଣୁ ଅର୍ଥ ନିର୍ଦ୍ଦିଷ୍ଟ ଓ ବିଶିଷ୍ଟ ହୋଇଯାଏ, କିନ୍ତୁ ଏହା ସବୁ କ୍ଷେତ୍ରରେ ସମୀଚୀନ ନୁହେଁ । ବହୁ ଅସଭ୍ୟ ଜାତିର ଅନୁନ୍ନତ ମସ୍ତିଷ୍କ ମଧ୍ୟ ବସ୍ତୁରେ ସୂକ୍ଷ୍ମଭେଦ ନିର୍ଦ୍ଦିଷ୍ଟ କରିବା ପାଇଁ ଚେଷ୍ଟା କରିଥିବାର ପ୍ରମାଣ ରହିଛି । ତେଣୁ ଅର୍ଥ ସଙ୍କୋଚନ ମୂଳରେ ଉନ୍ନତ ମସ୍ତିଷ୍କ କେବଳ ନୁହେଁ, ଅନ୍ୟାନ୍ୟ ବହୁ ପରିସ୍ଥିତି ରହିଛି । ଉଦାହରଣ ସ୍ୱରୂପ ଆମ ଦେଶରେ ନାନା ଜାତିର ପଙ୍କଜ ବହୁସଂଖ୍ୟାରେ ଦେଖାଯାଏ, ସେଗୁଡ଼ିକର ସୂକ୍ଷ୍ମଭେଦ ନିର୍ଦ୍ଦିଷ୍ଟ କରିବା ପାଇଁ ପଦ୍ମ, କମଳ, ଅରବିନ୍ଦ, ଇନ୍ଦୀବର, ଶତପତ୍ର, କୁଶେଶୟ ପ୍ରଭୃତି ବିବିଧ ଶବ୍ଦର ପ୍ରଚଳନ ସଂସ୍କୃତ ଭାଷାରେ ଦେଖିବାକୁ ମିଳେ । କାଳକ୍ରମେ ପ୍ରକୃତି ସହିତ ମଣିଷର ସମ୍ପର୍କ ହ୍ରାସପାଇବା ଫଳରେ ସେମାନେ ଏ ସୂକ୍ଷ୍ମଭେଦକୁ ଭୁଲିଗଲେ ଓ ସମସ୍ତ ଶବ୍ଦ କେବଳ କମଳବାଚୀ ହୋଇଗଲେ । ବଙ୍ଗଳାର ଲୋକମାନେ ସାଧାରଣତଃ ମତ୍ସ୍ୟପ୍ରିୟ । ଏଠାରେ ବହୁସଂଖ୍ୟାରେ ଜଳାଶୟ ଓ ନଦୀ ରହିଛି ଯହିଁରେ ବିଭିନ୍ନ ପ୍ରକାରର ମାଛ ଉତ୍ପନ୍ନ ହୋଇଥାନ୍ତି । ତେଣୁ ବଙ୍ଗଳା ଭାଷାରେ ବିଭିନ୍ନ ମତ୍ସ୍ୟ ଭିତରେ ଭେଦ ସୂଚାଇବା ପାଇଁ ଅନେକ ଶବ୍ଦର ପ୍ରଚଳନ ରହିଛି ଯାହାର ପ୍ରତିଶବ୍ଦ ହିନ୍ଦୀଭାଷାରେ ଦେଖିବାକୁ ମିଳେ ନାହିଁ, କାରଣ ହିନ୍ଦୀ-ଭାଷୀମାନଙ୍କର ମତ୍ସ୍ୟ ସହିତ ସମ୍ପର୍କ ଏତେ ଘନିଷ୍ଠ ନୁହେଁ । ଉତ୍କଳୀୟମାନେ ନୌବାଣିଜ୍ୟରେ ଅସାମାନ୍ୟ ଅଗ୍ରଗତି କରିଥିବାରୁ ତତ୍କାଳରେ ଉତ୍କଳରେ ନାନା ପ୍ରକାରର ନୌକା ବ୍ୟବହୃତ ହେଉଥିଲା ଓ ସେଗୁଡ଼ିକ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ଦର୍ଶାଇବା ପାଇଁ ନୌକାର ବିଭିନ୍ନ ପ୍ରତିଶବ୍ଦ ପ୍ରଚଳିତ ଥିଲା । ତେଣୁ ବିଭିନ୍ନ ପରିସ୍ଥିତିରେ ବସ୍ତୁକୁ ନିର୍ଦ୍ଦିଷ୍ଟ ପରିଚୟ ଦେବା ପାଇଁ ଶବ୍ଦ ସୀମିତ ଅର୍ଥରେ ବ୍ୟବହୃତ ହେଉଅଛି । ଅନେକ ଶବ୍ଦ ପୂର୍ବେ ଯେଉଁସବୁ ଅର୍ଥରେ ବ୍ୟବହୃତ ହେଉଥିଲା,

କାଳକ୍ରମେ ସେହିସବୁ ଶବ୍ଦ ବ୍ୟାପକ ଅର୍ଥରେ ବ୍ୟବହୃତ ନ ହୋଇ ସୀମିତ ଅର୍ଥରେ ବ୍ୟବହୃତ ହେଉଅଛି । ଯଥା—

(କ) ସର୍ପ—'ସର୍ପ' ଶବ୍ଦର ପ୍ରଥମ ଅର୍ଥ ଥିଲା 'ସରୀସୃପ' ଅର୍ଥାତ୍ ଯେଉଁ ଜୀବ ଗ୍ରାଉଣ୍ଡରେ ଘୋଷାରି ହୋଇ ଚାଲେ । ଜୋକ, କୁମ୍ଭୀର, ଝିଟିପିଟି, ବିଛା, ବେଙ୍ଗ, ସାପ ଇତ୍ୟାଦି ଜୀବ ଅର୍ଥରେ ସର୍ପ ଶବ୍ଦ ବ୍ୟବହୃତ ହେଉଥିଲା । କିନ୍ତୁ କାଳକ୍ରମେ ଏହାର ଅର୍ଥ ସୀମିତ ହୋଇଯାଇ କେବଳ 'ସାପ' ଅର୍ଥ ରହିଅଛି ।

(ଖ) ମୃଗ—ପ୍ରଥମେ ମୃଗ ଶବ୍ଦର ଅର୍ଥ ଥିଲା ପଶୁ । କ୍ରମେ ଏହା ନିର୍ଦ୍ଦିଷ୍ଟ ପଶୁ 'ହରିଣ'କୁ ବୁଝାଉଛି ।

(ଗ) ଘୃଣା—ଘୃଣା ଶବ୍ଦର ଅର୍ଥ ଜୁଗୁପ୍‌ସା ଓ ଦୟା । କାଳକ୍ରମେ ଦୟା ଅର୍ଥ ଲୁପ୍ତ ହୋଇ ଜୁଗୁପ୍‌ସା ଅର୍ଥ ରହିଅଛି ।

(ଘ) ଭାର୍ଯ୍ୟା—ଭାର୍ଯ୍ୟାର ଅର୍ଥ ପ୍ରଥମେ ଥିଲା 'ଯେଉଁ ନାରୀର ଭରଣ (ପୋଷଣ) କରାଯିବା ଉଚିତ' ଅର୍ଥାତ୍ ପୋଷ୍ୟ । ଜନନୀ, ଭଗ୍ନୀ, କନ୍ୟା, ପତ୍ନୀ ଏ ସମସ୍ତେ ଭାର୍ଯ୍ୟା ପର୍ଯ୍ୟାୟଭୁକ୍ତ ଥିଲେ । କିନ୍ତୁ କାଳକ୍ରମେ ଅନ୍ୟ ସମସ୍ତ ସଙ୍କୁଚିତ ହୋଇ କେବଳ 'ପତ୍ନୀ' ଅର୍ଥ ରହିଅଛି ।

(ଙ) ଶ୍ରାଦ୍ଧ—ଏହାର ମୂଳ ଅର୍ଥ ଥିଲା 'ଯେଉଁସବୁ କାର୍ଯ୍ୟକୁ ଶ୍ରଦ୍ଧାର ସହିତ କରାଯାଏ ।' କାଳକ୍ରମେ ଏହାର ଅର୍ଥ ସୀମିତ ହୋଇଗଲା ଓ ମୃତବ୍ୟକ୍ତି ପାଇଁ କରାଯାଉଥିବା ସଂସ୍କାରକୁ ବୁଝାଇଲା ।

(ଚ) ନେତ୍ର—'ନେତ୍ର' ଶବ୍ଦର ଅର୍ଥ ଥିଲା ନେତୃତ୍ୱ ନେଇ ପଥପ୍ରଦର୍ଶନ ଦେଉଥିବା ବ୍ୟକ୍ତି ବା ବାଟ ଦେଖାଇ ଦେଉଥିବା ପଦାର୍ଥ । ଏହାର ଅର୍ଥ ସଙ୍କୁଚିତ ହୋଇ ଶେଷରେ ବାଟ ଦେଖାଇଦେଉଥିବା ନିର୍ଦ୍ଦିଷ୍ଟ ଇନ୍ଦ୍ରିୟ 'ଅକ୍ଷି'କୁ ବୁଝାଉଛି ।

(ଛ) ପଞ୍ଜାବ—ପଞ୍ଜାବ ଶବ୍ଦର ଅର୍ଥ ଥିଲା ପାଞ୍ଚୋଟି ଜଳଧାର ଦ୍ୱାରା ପରିବେଷ୍ଟିତ ଅଞ୍ଚଳ । ଫଳରେ ଉତ୍ତର-ପଶ୍ଚିମ ଭାରତର ଶତଦ୍ରୁ, ବିପାଶା, ଇରାବତୀ, ଚନ୍ଦ୍ରଭାଗା, ବିତସ୍ତା (ଝେଲମ, ଚନାବ, ରାବି, ବ୍ୟାସ, ସତଲେଜ) ଏହି ପାଞ୍ଚୋଟି ନଦୀ ଦ୍ୱାରା ପରିବେଷ୍ଟିତ ଅଞ୍ଚଳ ଓ ଦକ୍ଷିଣ-ପୂର୍ବ ଭାରତର ମହାନଦୀ, ନର୍ମଦା, ଗୋଦାବରୀ, କୃଷ୍ଣା, କାବେରୀ ଏହି ପାଞ୍ଚୋଟି ନଦୀ ଦ୍ୱାରା ପରିବେଷ୍ଟିତ ଅଞ୍ଚଳ । ଉଭୟକୁ ବୁଝାଯାଉଥିଲା ପଞ୍ଜାବ । କିନ୍ତୁ କାଳକ୍ରମେ ଏହାର ଅର୍ଥ ସଙ୍କୋଚନ ଘଟି କେବଳ ପ୍ରଥମ ଅର୍ଥଟି ହିଁ ରହିଅଛି ।

(କ) ଗୋ—ପ୍ରଥମେ ଯେଉଁ ପ୍ରାଣୀ ଗମନ କରିବା ପାଇଁ ସମର୍ଥ ତାହାକୁ ବୁଝାଯାଉଥିଲା 'ଗୋ'। କିନ୍ତୁ କାଳକ୍ରମେ ଅର୍ଥ ସଙ୍କୋଚନ ଘଟିବା ଦ୍ୱାରା ଏହା କେବଳ 'ଗୋରୁ'କୁ ବୁଝାଉଛି।

(ଖ) ଧେନୁ—ଦୁଧ ଦେଉଥିବା ଯେ କୌଣସି ପଶୁ ପ୍ରଥମେ 'ଧେନୁ' ଭାବରେ ପରିଚିତ ଥିଲା। କିନ୍ତୁ ଏହା କ୍ରମେ କେବଳ 'ଗାଈ' ଅର୍ଥରେ ହିଁ ସୀମିତ ହୋଇଯାଇଅଛି।

(ଗ) ବେଦନା—'ବେଦନା' ଶବ୍ଦ 'ବିଦ୍' ଧାତୁରୁ ଉତ୍ପନ୍ନ। ଏହାର ଅର୍ଥ ଜ୍ଞାନ ବା ଅନୁଭବ। ସୁଖ, ଦୁଃଖ, କ୍ରୋଧ, କରୁଣା, କାରୁଣ୍ୟ, ଅଶା, ନୈରାଶ୍ୟ, ପ୍ରେମ, ଭୟ ପ୍ରଭୃତି ସକଳ ପ୍ରକାର ଅନୁଭବ। କିନ୍ତୁ ଶେଷରେ ଏହାର ଗୋଟିଏ ମାତ୍ର ଅର୍ଥ 'ଦୁଃଖ' ରହିଗଲା।

(ଘ) ଗନ୍ଧ—ପ୍ରଥମେ ସୁଗନ୍ଧ ଦୁର୍ଗନ୍ଧ ସବୁ ପ୍ରକାରର ବାସନାକୁ ବୁଝାଯାଉଥିଲା ଗନ୍ଧ। କିନ୍ତୁ କ୍ରମେ ଏହାର ଅର୍ଥ ହୋଇଛି କେବଳ ଦୁର୍ଗନ୍ଧ।

(ଙ) ଘୃତ—'ଘୃତ' (ଘୃ+କ୍ତ)ର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି 'ସେଚିତ' ବା 'ସେଚନୀୟ'। ଜଳ, ମଧୁ, ଦୁଗ୍ଧ, ତୈଳ, ଘିଅ ସବୁ ସେଚନୀୟ ତରଳ ପଦାର୍ଥକୁ ବୁଝାଯାଉଥିଲା 'ଘୃତ'। କିନ୍ତୁ ବର୍ତ୍ତମାନ ଘୃତ କହିଲେ କେବଳ 'ଘିଅ'କୁ ବୁଝାଏ।

(ଚ) ଧର୍ମ—ପୂର୍ବେ ଏହାର ଅର୍ଥ ଥିଲା ଯଜ୍ଞ, ଶ୍ରୀଷ୍ଟ ଦେବବିଶ୍ୱାସ, ପୁଣ୍ୟକାର୍ଯ୍ୟ ଇତ୍ୟାଦି। କିନ୍ତୁ କାଳକ୍ରମେ ଏହା 'ନିର୍ଦ୍ଦିଷ୍ଟ ଦେବତାଙ୍କ ପ୍ରତି ବିଶ୍ୱାସ' ଓ 'ପୁଣ୍ୟକାର୍ଯ୍ୟ' ଅର୍ଥରେ ସୀମିତ ହୋଇଯାଇଛି।

(ଛ) ଅନ୍ନ—ଅନ୍ନ (ଅଦ୍+କ୍ତ)ର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ଯେ କୌଣସି ଖାଦ୍ୟ। ଯଥା ମିଷ୍ଟାନ୍ନ, ଭୋଜ୍ୟାନ୍ନ, ଘୃତାନ୍ନ, ଫଳାନ୍ନ, ଶାକାନ୍ନ ପ୍ରଭୃତି। କିନ୍ତୁ ବର୍ତ୍ତମାନ ଏହା କେବଳ ଗୋଟିଏ ଖାଦ୍ୟ 'ଭାତ'କୁ ବୁଝାଉଛି।

(ଜ) ମୁର୍ଗ—ପାରସିକ ଭାଷାରେ 'ମୁର୍ଗ'ର ଅର୍ଥ ପ୍ରଥମେ ଥିଲା ଯେ କୌଣସି ପକ୍ଷୀ; ଯଥା—ଶାହମୁର୍ଗ (ପକ୍ଷୀରାଜ), ଶୁତୁରମୁର୍ଗ (ପକ୍ଷୀରାଜ), ମୁର୍ଗାବୀ (ଜଳପକ୍ଷୀ) ଇତ୍ୟାଦି। କିନ୍ତୁ କାଳକ୍ରମେ ଏହା ନିର୍ଦ୍ଦିଷ୍ଟ ପକ୍ଷୀ (କୁକ୍କୁଡ଼ା)କୁ ନିର୍ଦ୍ଦେଶ କରୁଛି।

(ଝ) ଧରା—ସଂସ୍କୃତରେ ଧରାର ଅର୍ଥ ଯୋନି, ଗର୍ଭାଶୟ, ଶିରା, ପୃଥିବୀ ଇତ୍ୟାଦି। କିନ୍ତୁ ଓଡ଼ିଆରେ ଏହାର ଅର୍ଥ ସୀମିତ ହୋଇଯାଇ କେବଳ 'ପୃଥିବୀ' ହୋଇଯାଇଛି।

(ଠ) ଆଦିତ୍ୟ—'ଅଦିତି'ର ଅର୍ଥ 'ଅଦିତିଙ୍କର ପୁତ୍ର' (ଅର୍ଥାତ୍ ସମସ୍ତ ଦେବତା), କିନ୍ତୁ ବର୍ତ୍ତମାନ 'ଆଦିତ୍ୟ' ଶବ୍ଦର ବ୍ୟବହାର କେବଳ 'ସୂର୍ଯ୍ୟ' ଅର୍ଥରେ ସୀମିତ ହୋଇଯାଇଛି ।

(ଡ) ରୁଦ୍ର—'ରୁଦ୍ର' ଶବ୍ଦ ବେଦରେ ଅଗ୍ନି, ମିତ୍ର (ସୂର୍ଯ୍ୟ), ବରୁଣ, ଅନିଲ, ଅନାମ, ଶିବ ପ୍ରଭୃତି ଅର୍ଥରେ ବ୍ୟବହୃତ । କିନ୍ତୁ କାଳକ୍ରମେ ଏହା କେବଳ 'ଶିବ' ଅର୍ଥରେ ସୀମିତ ।

(ଧ) ବୃଷଭ—ଏହା 'ବୃଷ' (ସିଞ୍ଚିବା ବର୍ଷା ଶବ୍ଦର ଉତ୍ପତ୍ତି) ଧାତୁରୁ ଉତ୍ପନ୍ନ ଓ ଏହାର ଅର୍ଥ 'ବର୍ଷଣକାରୀ' ତଥା 'ଅତ୍ୟଧିକ ପ୍ରଜନନଶକ୍ତିଶାଳୀ' । ବୈଦିକ ସଂସ୍କୃତରେ ଏହି ଶବ୍ଦର ପ୍ରୟୋଗ 'ରୁଦ୍ର'ଙ୍କ ପାଇଁ ହୋଇଅଛି, କାରଣ ରୁଦ୍ର ବର୍ଷାଦ୍ୱାରା ଉର୍ବରତାର କାରଣ ହୋଇଥାନ୍ତି । ଏହା 'ଷଣ୍ଢ' ଅର୍ଥରେ ମଧ୍ୟ ବ୍ୟବହୃତ ହେଉଥିଲା, କାରଣ ଏହା ଅତ୍ୟଧିକ ପ୍ରଜନନ ଶକ୍ତିଶାଳୀ । କିନ୍ତୁ ପରବର୍ତ୍ତୀ କାଳରେ 'ବୃଷଭ' କେବଳ 'ଷଣ୍ଢ' ଅର୍ଥରେ ସୀମିତ ରହିଗଲା ।

(ନ) ରଦନ—ପ୍ରଥମେ ଏହାର ଅର୍ଥ ଥିଲା ବିଦୀର୍ଣ୍ଣକାରୀ ଯେ କୌଣସି ପ୍ରାଣୀ ବା ପଦାର୍ଥ । ଶେଷରେ ଏହାର ଅର୍ଥ ହୋଇଛି କେବଳ 'ଦାନ୍ତ' ।

(ପ) ଧାନ୍ୟ—ସଂସ୍କୃତ 'ଧାନ୍ୟ' ଶବ୍ଦ ମୂଳତଃ 'ସମସ୍ତ ପ୍ରକାର ଧନ' ଅର୍ଥ ବହନ କରୁଥିଲା । କିନ୍ତୁ କାଳକ୍ରମେ ଏହା ନିର୍ଦ୍ଦିଷ୍ଟ ଧନ 'ଖାଦ୍ୟଶସ୍ୟ' ଓ 'ଧାନକୁ' ବୁଝାଇଲା ।

(ଫ) ଦୁହିତା—'ଦୁହିତା' ଶବ୍ଦର ଅର୍ଥ 'ଦୁଗ୍ଧ-ଦୋହନ-କାରିଣୀ' । ପ୍ରାଚୀନ କାଳରେ ଦୁଗ୍ଧ ଦୋହନ କରିବା ଝିଅମାନଙ୍କର କାର୍ଯ୍ୟ ଥିବାରୁ କାଳକ୍ରମେ ଶବ୍ଦଟିର ଅର୍ଥ ସୀମିତ ହୋଇ କେବଳ 'ଝିଅ' ହୋଇଅଛି ।

(ବ) ନଡ଼ା—ଓଡ଼ିଆରେ 'ନଡ଼ା' ଶବ୍ଦ ସଂସ୍କୃତ 'ନଳ' ଶବ୍ଦରୁ ଉତ୍ପନ୍ନ । ଏହାର ମୂଳ ଅର୍ଥ ଯେକୌଣସି ପ୍ରକାରର ତୃଣ, କିନ୍ତୁ ବର୍ତ୍ତମାନ ଏହା କେବଳ 'ଧାନର ଶୁଖିଲା କଟା କାଣ୍ଡ' ଅର୍ଥରେ ବ୍ୟବହୃତ ।

(ଭ) ବିଲାତ—'ବିଲାତ'ର ମୌଳିକ ଅର୍ଥ 'ବାଦଶାହାଙ୍କ ନିଜ ଦେଶ' । 'ବାଦଶାହ ବିଦେଶର ବ୍ୟକ୍ତି ହୋଇଥିବାରୁ ଓଡ଼ିଆ ଭାଷାରେ ପ୍ରଥମେ ବିଲାତର ଅର୍ଥ ଥିଲା ବିଦେଶ, ଯଥା—ବିଲାତିବାଇଗଣ, ବିଲାତିଅଳୁ, ବିଲାତିକୁକୁର ଇତ୍ୟାଦି । କିନ୍ତୁ କାଳକ୍ରମେ ଏହା ଓଡ଼ିଆ ଭାଷାରେ ନିର୍ଦ୍ଦିଷ୍ଟ ବିଦେଶ 'ଇଂଲଣ୍ଡ' ଅର୍ଥରେ ବ୍ୟବହୃତ, ଯଥା—ବିଲାତର ରାଣୀ ଭିକ୍ଟୋରିଆ, ବିଲାତର ସମ୍ରାଟ, ବିଲାତ ଫେରନ୍ତା (ଇଂଲଣ୍ଡ ବା ଲଣ୍ଡନ ଫେରନ୍ତା) ଇତ୍ୟାଦି ।

(ମ) ଛିଟ—ଓଡ଼ିଆ ‘ଛିଟ’ ଶବ୍ଦ ସଂସ୍କୃତ ‘ଚିତ୍ର’ ଶବ୍ଦରୁ ଉତ୍ପନ୍ନ । ମାତ୍ର ବର୍ତ୍ତମାନ ‘ଛିଟ’ କହିଲେ ଏକ ବିଶେଷ ପ୍ରକାରର ଚିତ୍ରିତ ଲୁଗାକୁ ବୁଝାଇଥାଏ ।

(ଯ) Meat—ଇଂରାଜୀ ‘meat’ ଶବ୍ଦ ପ୍ରଥମେ ଯେ କୌଣସି ଭୋଜ୍ୟ ପଦାର୍ଥ ଅର୍ଥରେ ବ୍ୟବହୃତ ହେଉଥିଲା । ଯଥା—‘meat and drink’ (ଖାଦ୍ୟ-ପେୟ ପଦାର୍ଥ), ‘sweet meat’ (ମିଷ୍ଟାନ୍ନ), ‘fleshmeat’ (ମାଂସରୁ ପ୍ରସ୍ତୁତ ଖାଦ୍ୟପଦାର୍ଥ) ଇତ୍ୟାଦି । କିନ୍ତୁ ଏହା ବର୍ତ୍ତମାନ କେବଳ ମାଂସ ଅର୍ଥରେ ବ୍ୟବହୃତ ହେଉଅଛି ।

(ର) Deer—ଇଂରାଜୀ ‘deer’ ଶବ୍ଦ ମୂଳତଃ ‘ପଶୁ’ ଅର୍ଥରେ ବ୍ୟବହୃତ ଥିଲା । ଏହାର ସଗୋତ୍ରୀ ଜର୍ମାନ୍ ଶବ୍ଦ ‘tier’ର ଅର୍ଥ ଏବେ ବି ‘ପଶୁ’ ରହିଛି । ସେକ୍ସପିଅର ‘mice and rats and such small deer’ ଶବ୍ଦଗୁଚ୍ଛରେ ‘deer’ ଶବ୍ଦକୁ ଜୀବ ଅର୍ଥରେ ବ୍ୟବହାର କରିଛନ୍ତି । କିନ୍ତୁ ବର୍ତ୍ତମାନ କାଳରେ ‘deer’ର ଅର୍ଥ କେବଳ ‘ମୃଗ’ (ଏକ ନିର୍ଦ୍ଦିଷ୍ଟ ପଶୁ ବା ଜୀବ) ।

(ଲ) Corn—ଜର୍ମାନିକ୍ ଭାଷାମାନଙ୍କରେ ପ୍ରଚଳିତ ଏକ ପ୍ରାଚୀନ ଶବ୍ଦ ‘Corn’ର ପ୍ରଥମ ଅର୍ଥ ଥିଲା ‘ଖାଦ୍ୟଶସ୍ୟ’ । କିନ୍ତୁ ଇଂରେଜମାନେ ଏହାକୁ କେବଳ ‘ଗହମ’, ସ୍କଟଲାଣ୍ଡବାସୀମାନେ ଏହାକୁ ଜବ (oat) ଓ ଆମେରିକାନ୍‌ମାନେ ଏହାକୁ ମକା (maize) ଭାବରେ ଗ୍ରହଣ କରିଛନ୍ତି, କାରଣ ଏସବୁ ହେଉଛି ସେମାନଙ୍କର ନିଜ ନିଜ ପ୍ରଧାନ ଖାଦ୍ୟଶସ୍ୟ ।

(ଵ) ପେଣ୍ଡାଟ୍‌ଟି—ତାମିଲ ଭାଷାରେ ‘ପେଣ୍ଡାଟ୍ଟି’ ଶବ୍ଦଟି ମୂଳତଃ ‘ନାରୀ’ ଅର୍ଥର ଦ୍ୟୋତକ ଥିଲା । କିନ୍ତୁ ବର୍ତ୍ତମାନ ଏହାର ଅର୍ଥ କେବଳ ‘ପତ୍ନୀ’ ।

(୩) ଅର୍ଥାଦେଶ—ଯେଉଁଠି ଶବ୍ଦ ନିଜର ମୌଳିକ ଅର୍ଥ ତ୍ୟାଗ କରେ ଏବଂ ତାହାର ସ୍ଥାନରେ ଅନ୍ୟ ଅର୍ଥ ଗ୍ରହଣ କରେ, ସେଠାରେ ଅର୍ଥାଦେଶ ଘଟେ । କେବେ କେବେ ଅବଶିଷ୍ଟ ଅର୍ଥ ପରିହୃତ ଅର୍ଥ ସହିତ କିଛିଟା ପରିମାଣରେ ସମ୍ପର୍କ ସ୍ଥାପନ କରିଥାଏ, କେବେ କେବେ କୌଣସି ସମ୍ପର୍କ ରଖି ନଥାଏ ।

(କ) ବାଡ଼—ସଂସ୍କୃତ ‘ବାଟିକା’ ଶବ୍ଦରୁ ଉତ୍ପନ୍ନ ‘ବାଡ଼’ର ମୌଳିକ ଅର୍ଥ ହେଉଛି ଉଦ୍ୟାନ । କିନ୍ତୁ କାଳକ୍ରମେ ଓଡ଼ିଆରେ ଏହାର ଅର୍ଥ ହେଉଛି ଘରର ପଛପାଖ, ଘର ପଛପାଖରେ ଓ ସାମ୍ନାରେ ଥିବା ବଗିଚା, ଜମି ଏବଂ ବଙ୍ଗଳା ଭାଷାରେ ଏହାର ଅର୍ଥ ହେଉଛି ଘର ।

(ଖ) ମାଈ—'ମାଇ' (ମାତୃ)ର ମୂଳ ଅର୍ଥ ମାଆ, କିନ୍ତୁ କାଳକ୍ରମେ ଏହାର ଅର୍ଥ ମହିଳା ବା ବାଳିକା । ବଙ୍ଗଳା 'ମେୟେ' ଶବ୍ଦ ମଧ୍ୟ ସଂସ୍କୃତ 'ମାତୃ' ଶବ୍ଦରୁ ଉତ୍ପନ୍ନ ହୋଇଥିଲେହେଁ ମୂଳ ଅର୍ଥ 'ମାଆ'କୁ ତ୍ୟାଗ କରି 'ମହିଳା' ଓ 'ଝିଅ' ଅର୍ଥକୁ ଗ୍ରହଣ କରିଅଛି ।

(ଗ) ମୌନ—ପ୍ରଥମେ 'ମୌନ' ଶବ୍ଦର ଅର୍ଥ ଥିଲା 'ମୁନିର କର୍ମ' ଅର୍ଥାତ୍ 'ତପସ୍ୟା' । କିନ୍ତୁ ପରବର୍ତ୍ତୀ କାଳରେ ଏହାର ଅର୍ଥ ହୋଇଛି ନୀରବତା ।

(ଘ) ଆଈ—ସଂସ୍କୃତ 'ଆର୍ଯ୍ୟା' (ଆର୍ଯ୍ୟ ଶବ୍ଦର ସ୍ତ୍ରୀଲିଙ୍ଗ ବାଚକ ଶବ୍ଦ) ଶବ୍ଦରୁ ଉତ୍ପନ୍ନ 'ଆଈ'ର ମୂଳ ଅର୍ଥ ସମ୍ମାନନୀୟା, ଭଦ୍ରା ଇତ୍ୟାଦି; କିନ୍ତୁ ଓଡ଼ିଆରେ ଏହା 'ମାତାମହୀ' ଅର୍ଥରେ ବ୍ୟବହୃତ । କେବେ କେବେ ପ୍ରାଚୀନ ସାହିତ୍ୟରେ ଏହା 'ମାଆ' ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଅଛି ।

(ଙ) ଦେହକାନୀ—ପାରସିକ ଓ ଗୁଜୁରାଟୀ ଭାଷାରେ ବ୍ୟବହୃତ 'ଦେହକାନୀ' ଶବ୍ଦର ମୂଳ ହେଉଛି ଇରାନୀ ଶବ୍ଦ 'ଦହକାନ୍' ଏବଂ ଏହାର ମୂଳ ଅର୍ଥ ହେଉଛି, 'ଗ୍ରାମାଞ୍ଚଳର ବଡ଼ ତାଲୁକଦାର', କିନ୍ତୁ ପାରସିକ ଓ ଗୁଜୁରାଟୀ ଭାଷାରେ ଏହି ଶବ୍ଦ 'ମୂର୍ଖ' ଅର୍ଥରେ ପ୍ରଚଳିତ ହେଉଛି ।

(ଚ) ଦୁଲ୍ଲା—ଏହାର ମୂଳ ହେଉଛି ସଂସ୍କୃତ ଶବ୍ଦ 'ଦୁର୍ଲଭ', ତେଣୁ ଏହାର ମୂଳ ଅର୍ଥ 'ଦୁଷ୍ପ୍ରାପ୍ୟ' । କିନ୍ତୁ ହିନ୍ଦୀରେ ଏହା 'ବର' (ଦୁଲ୍ହା) ଅର୍ଥରେ ଏବଂ ଓଡ଼ିଆରେ ଏହା (ଦୁଲ୍ଲା) 'ଅଲିଅଳି' ଅର୍ଥରେ ପ୍ରଚଳିତ ।

(ଛ) ଉଧାର—ଏହି ଶବ୍ଦ ସଂସ୍କୃତ 'ଉଦ୍ଧାର'ରୁ ଉତ୍ପତ୍ତି ଲାଭ କରିଥିବାରୁ 'ମୁକ୍ତ ହେବା' ବା 'ମୁକ୍ତ ଦେବା' ଅର୍ଥ ବହନ କରୁଅଛି । କିନ୍ତୁ ଓଡ଼ିଆରେ ଏହା ଧାର ବା ଋଣ (loan debt) ଅର୍ଥରେ ବ୍ୟବହୃତ ହେଉଅଛି ।

(ଜ) ମହୁର—'ମହୁର' (ସଂ. ମଧୁର) ମୂଳ ଅର୍ଥ 'ମିଠା' । କିନ୍ତୁ ଓଡ଼ିଆରେ ଏହା ଏକ ପ୍ରକାରର ତରକାରିକୁ ବୁଝାଇଥାଏ ।

(ଝ) ମହୁରୀ—'ମହୁରୀ' ଶବ୍ଦର ଅର୍ଥ 'ମଧୁର ଖାଦ୍ୟ' । କିନ୍ତୁ ଓଡ଼ିଆରେ ଏହା ଏକ ପ୍ରକାର ବିଷ ଅର୍ଥରେ ବ୍ୟବହୃତ ।

(ଞ) ଉଷ୍ଟ୍ର—ମୂଳ ଅର୍ଥ ଥିଲା 'ମହିଷ' । ଆର୍ଯ୍ୟମାନେ ପ୍ରଥମେ ଜଙ୍ଗଲମୟ ଅଞ୍ଚଳରେ ବାସ କରିଥିଲାବେଳେ 'ମହିଷ' ପାଳନ କରିଥିଲେ ଓ ତାହାର ପୃଷ୍ଠରେ ଭାର ବହନ କରୁଥିଲେ । ସେମାନେ ଯେତେବେଳେ ମରୁଭୂମି ଅଞ୍ଚଳକୁ ଆସିଲେ ସେଠାରେ

'ମହତ୍ତ୍ୱ' ଦେଖିବାକୁ ପାଇଲେ ନାହିଁ । ଏକ ଦୀର୍ଘଗ୍ରୀବା ଓ କୁବ୍‌ଜପୃଷ୍ଠ ବିଶିଷ୍ଟ ପଶୁକୁ ସେମାନେ ଭାର ବହନ ପାଇଁ ବ୍ୟବହାର କଲେ । ପୂର୍ବସ୍ମୃତିକୁ ସଜୀବିତ କରିବା ପାଇଁ ତାହାର ନାମ ରଖିଲେ 'ଉଷ୍ଟ୍ର' । କାଳକ୍ରମେ 'ଉଷ୍ଟ୍ର' ଶବ୍ଦର 'ମହତ୍ତ୍ୱ' ଅର୍ଥ ଲୋପ ପାଇ ଓଟ (camel) ଅର୍ଥ ପ୍ରଚଳିତ ହୋଇଗଲା ।

(ଟ) ସାଧୁ—'ସାଧୁ' (ସ. ସାଧୁ) ଶବ୍ଦର ମୂଳ ଅର୍ଥ ଥିଲା ସଚ୍ଚୋଟ (honest); କିନ୍ତୁ ଓଡ଼ିଆରେ ଏହା କେତେକ ଜାତିର ସଞ୍ଜ୍ଞା, ମହାଜନ, ମାଲିକ ବିଶେଷତଃ ଠକ, ମହାଜନ ଅର୍ଥରେ ବ୍ୟବହୃତ ହେଉଛି ।

(ଠ) ସତ, ଅସତ୍—ସଂସ୍କୃତ 'ସତ୍' ଓ 'ଅସତ୍' ଶବ୍ଦ ଯଥାକ୍ରମେ 'ବିଦ୍ୟମାନ' ଓ 'ଅବିଦ୍ୟମାନ' ଅର୍ଥରେ ବ୍ୟବହୃତ ହେଉଥିଲା, କିନ୍ତୁ ପରବର୍ତ୍ତୀ କାଳରେ ଯଥାକ୍ରମେ 'ଭଲ' ଓ 'ମନ୍ଦ' ଅର୍ଥରେ ଏହାର ବ୍ୟବହାର ହୋଇଅଛି ।

(ଡ) ତ୍ର୍ୟମ୍ବକ—'ତ୍ର୍ୟମ୍ବକ' ଶବ୍ଦର ମୂଳ ଅର୍ଥ ଯାହାଙ୍କର ପିତା ସଂଖ୍ୟା ତିନି, (ଅମ୍ବ=ପିତା, ଅମ୍ବା=ମାତା) । ଅଗ୍ନି ତିନୋଟି (ପୃଥ୍ୱୀ, ଅନ୍ତରୀକ୍ଷ, ଦ୍ୟୁଲୋକ) ଉତ୍ସରୁ ଜାତ ହୋଇଥିବାରୁ ବୈଦିକ ସାହିତ୍ୟରେ 'ତ୍ର୍ୟମ୍ବକ' ଭାବରେ ଅଭିହିତ । ପରେ ଅଗ୍ନି ଓ ରୁଦ୍ରଙ୍କ ମଧ୍ୟରେ ତାଦାତ୍ମ୍ୟ କଳ୍ପନା କରିଯିବାରୁ ରୁଦ୍ରଙ୍କୁ ମଧ୍ୟ କୁହାଗଲା 'ତ୍ର୍ୟମ୍ବକ' । କାଳକ୍ରମେ ଲୋକେ 'ଅମ୍ବକ' ଶବ୍ଦର 'ପିତା' ଅର୍ଥ ଭୁଲିଯାଇ 'ନେତ୍ର' ଅର୍ଥ କଳ୍ପନା କଲେ । ସେମାନେ ଭୁଲରେ ଭାବିନେଲେ ଯେ ରୁଦ୍ର ବା ଶିବ 'ତ୍ରିନେତ୍ର' ହୋଇଥିବାରୁ ବୋଧହୁଏ 'ତ୍ର୍ୟମ୍ବକ' ଓ ତେଣୁ 'ଅମ୍ବକ' ଅର୍ଥ ହେଉଛି 'ନେତ୍ର' । ଏହିପରି ଭାବରେ 'ଅମ୍ବକ' ଶବ୍ଦରେ 'ପିତା' ଅର୍ଥ ସ୍ଥାନରେ 'ନେତ୍ର' ଅର୍ଥର ଆଦେଶ ହୋଇଅଛି ।

(ଢ) ଦସ୍ୟୁ—'ଦସ୍ୟୁ' ଶବ୍ଦର ପ୍ରଥମେ ଅର୍ଥ ଥିଲା 'ଉତ୍ତର-ପୂର୍ବ ଇରାନ୍‌ରେ ବାସ କରୁଥିବା ଜାତିବିଶେଷ' କିନ୍ତୁ କାଳକ୍ରମେ ଏହା 'ଡକାୟତ' ଅର୍ଥରେ ବ୍ୟବହୃତ ହେଉଅଛି ।

(ଣ) Infant --ଏହାର ମୂଳ ଅର୍ଥ ଥିଲା 'ମୂକ', ବର୍ତ୍ତମାନ ଏହାର ଅର୍ଥ 'ଶିଶୁ' ।

(ତ) Rival—'Rival'ର ପ୍ରକୃତ ଅର୍ଥ ହେଉଛି 'ନଦୀତଟ ସମ୍ବନ୍ଧୀୟ' (rivalର ବିଶେଷଣ) । ବର୍ତ୍ତମାନ ତାହାର ଅର୍ଥ ପ୍ରତିଦ୍ୱନ୍ଦ୍ୱୀ । ବୋଧହୁଏ ନଦୀକୂଳ ଜମିରେ ପାଣି ମଡ଼ାଇବା ଅଧିକାର ନେଇ ଜମିଦାରମାନଙ୍କ ମଧ୍ୟରେ ଲାଗୁଥିବା କଳିରୁ ଭିତ୍ତିକରି ଏପରି ଅର୍ଥର ସୃଷ୍ଟି ହୋଇଅଛି ।

(ଠ) Comrade—ପ୍ରଥମେ 'Comrade' ଅର୍ଥ ଥିଲା 'ଏକ କୋଠରୀରେ ସଙ୍ଗରେ ରହୁଥିବା ବ୍ୟକ୍ତି', ବର୍ତ୍ତମାନ ଏହାର ଅର୍ଥ 'ସାଥୀ'।

(ଡ) Companion—ଏହି ଶବ୍ଦର ମୂଳ ଅର୍ଥ ଥିଲା 'ସଙ୍ଗରେ ରୁଟି ଖାଇବା ଲୋକ', କିନ୍ତୁ ଏହାର ଅର୍ଥ ବଦଳି ହୋଇଯାଇଛି 'ସାଥି'।

(ଧ) Gate—ମଧ୍ୟକାଳୀନ ଇଂରାଜୀ (Middle English) ଭାଷାରେ ଏହାର ଅର୍ଥ ଥିଲା, 'ମାର୍ଗ' 'ସଡ଼କ' ବା 'ରାସ୍ତା', ବର୍ତ୍ତମାନ ଏହାର ଅର୍ଥ ହୋଇଯାଇଛି 'ଫାଟକ'।

(ନ) Bestia—ଲାଟିନ୍ ଶବ୍ଦ 'Bestia' (>ଇଂ beast=ପଶୁ) ପର୍ତ୍ତୁଗୀଜ ଭାଷାରେ bicho (କୀଟ), ଇଟାଲୀ ଭାଷାରେ biscia (ସର୍ପ), ଫରାସୀ ଭାଷାରେ biche (ହରିଣୀ) ଓ ଇଂରାଜୀ ଭାଷାରେ bitch (କୁତ୍ତୀ)ରେ ପରିଣତ ହୋଇଅଛି।

(ପ) Constable—ଶବ୍ଦଟିର ମୂଳ ଅର୍ଥ 'ଘୋଡ଼ାଶାଳର ସହାୟକ' ( Con-stable=stable-Companion) ମଧ୍ୟଯୁଗରେ ଏହାର ଅର୍ଥ ହେଲା 'ଉଚ୍ଚପଦସ୍ଥ କର୍ମଚାରୀ' (Connetable) କିନ୍ତୁ ବର୍ତ୍ତମାନ ଏହାର ଅର୍ଥ ହୋଇଛି 'ସିପାହୀ'।

(ଫ) Sky—ଏହାର ଅର୍ଥ ଥିଲା ବାଦଲ। ଡେନିଶ ଭାଷାରେ ଏବେ ବି ଶବ୍ଦଟି ଏହି ଅର୍ଥରେ ବ୍ୟବହୃତ ହୋଇଥାଏ। କିନ୍ତୁ କାଳକ୍ରମେ ଏହା 'ଆକାଶ' ଅର୍ଥ ବହନ କରୁଛି।

(ବ) ଚୂମ୍ବକ—ସଂସ୍କୃତ ଭାଷାରେ ଶବ୍ଦଟିର ଅର୍ଥ ଥିଲା 'ବହୁ ଶାସ୍ତ୍ର ଅଧ୍ୟେତା', କିନ୍ତୁ ଓଡ଼ିଆରେ ଏହା 'ଆକର୍ଷକ' ଅର୍ଥରେ ବ୍ୟବହୃତ।

(ଭ) ଅର୍ବାଚୀନ—'ଅର୍ବାଚୀନ' ଶବ୍ଦ ସଂସ୍କୃତରେ 'ନୂତନ' ଅର୍ଥରେ ବ୍ୟବହୃତ; କିନ୍ତୁ ଓଡ଼ିଆରେ ଏହାର ଅର୍ଥ 'ଅବୋଧ'।

(ମ) ଭଗ୍ନ—ଏହାର ମୂଳ ଅର୍ଥ 'ଦେଶ'। ଓଡ଼ିଆରେ ଏହା 'ପ୍ରଶସ୍ତ' 'ଖୋଲଖୋଲ' ଅର୍ଥରେ ମଧ୍ୟ ବ୍ୟବହୃତ ହେଉଅଛି।

(ଯ) ସେନାନୀ—ସଂସ୍କୃତରେ ଏହାର ଅର୍ଥ ସେନାପତି। ଓଡ଼ିଆରେ ଏହା ଅନେକତଃ 'ସୈନ୍ୟମାନେ' ଅର୍ଥରେ ବ୍ୟବହୃତ ହୋଇଅଛି।

(ର) ଅଭ୍ୟନ୍ତର—ସଂସ୍କୃତରେ ଏହାର ଅର୍ଥ 'ଭିତର'। ଓଡ଼ିଆରେ ଏହା ଅନେକତଃ 'କପଟତା', 'ରହସ୍ୟ' ପ୍ରଭୃତି ଅର୍ଥରେ ବ୍ୟବହୃତ।

(ଜ) ଦାଣ୍ଡରୁ—ଦାରୁ ନିର୍ମିତ>ନିଷ୍ଠୁର

(ଝ) ମଥା—ମୁଣ୍ଡ>ବୁଦ୍ଧି

(ଞ) କଳାପ—ମୟୂରର ବିସ୍ତୃତ ପୁଚ୍ଛ>ସମୂହ (ଯଥା—କୀର୍ତ୍ତିକଳାପ)

(ଟ) ଉଦ୍‌ବେଳ—ବେଳାଭୂମି ଅତିକ୍ରମକାରୀ>ବ୍ୟାକୁଳ

(ଠ) ସନ୍ଦେଶ—ସମ୍ବାଦ>ମିଠେଇ

(ଡ) ସହସା—ବଳେ>ହଠାତ୍, ଅକସ୍ମାତ୍

(୪) ଅର୍ଥୋତ୍କର୍ଷ—ଶବ୍ଦ ଯଦି ନିକୃଷ୍ଟ ଅର୍ଥ ପରିହାର କରି ଉତ୍କୃଷ୍ଟ ଅର୍ଥ ଗ୍ରହଣ କରେ, ତେବେ ସେହି ବ୍ୟାପାରକୁ ଅର୍ଥୋତ୍କର୍ଷ କୁହାଯାଏ । ଯଥା—

(କ) କପଡ଼ା—ପ୍ରଥମେ 'କପଡ଼ା' (ସଂ. କର୍ପଟକ) 'ଚିରକନା' ଅର୍ଥରେ ବ୍ୟବହୃତ ହେଉଥିଲା, କିନ୍ତୁ କାଳକ୍ରମେ ଏହା ଉତ୍ତମ କନା ବା ବସ୍ତ୍ର ଅର୍ଥରେ ପ୍ରଚଳିତ ହେଉଅଛି ।

(ଖ) ଫିରିଙ୍ଗି—ପ୍ରଥମେ ଏହାର ଅର୍ଥ ଥିଲା 'ପର୍ତ୍ତୁଗୀଜ ଦସ୍ୟୁ', କିନ୍ତୁ ପରେ ଏହାର ଅର୍ଥ ହୋଇଛି ଇଂରେଜ ଜାତି ବା ୟୁରୋପୀୟ ଜାତି ।

(ଗ) ବିଦଗ୍ଧ—ପ୍ରଥମେ ଏହିଟିର ଅର୍ଥ ଥିଲା 'ବିଶେଷ ଭାବରେ ଜଳି ଯାଇଥିବା', କିନ୍ତୁ ପରେ ଏହାର ଅର୍ଥ ହୋଇଛି ବିଦ୍ୱାନ୍, ରସିକ, ପଣ୍ଡିତ ଇତ୍ୟାଦି ।

(ଘ) ମୁଗ୍ଧ—ମୂଳ ଅର୍ଥ ଥିଲା 'ମୂଢ଼' । ପରେ ଅର୍ଥ ହୋଇଛି 'ବିମୋହିତ' ବା 'ଅତ୍ୟଧିକ ଅଭିଭୂତ' ।

(ଙ) ସାହସ—ପ୍ରଥମେ ଏହାର ଅର୍ଥ ଥିଲା ହତ୍ୟା, ଲୁଣ୍ଠନ ଓ ବ୍ୟଭିଚାର । ପରେ ଏହାର ଅର୍ଥ ହୋଇଛି 'ଉତ୍ତମ କାର୍ଯ୍ୟରେ ଉତ୍ସାହ' ।

(ଚ) ବନ୍ଦୀ—ପ୍ରଥମେ 'ବନ୍ଦୀ' ଶବ୍ଦ ମନ ମଧ୍ୟରେ ଖରାପ ଧାରଣା ଆଣୁଥିଲା, କାରଣ ଚୋର, ଡକାୟତ ଓ ଅନ୍ୟ ସାମାଜିକ ଅପରାଧୀମାନେ ଜେଲ ଯାଉଥିଲେ । କିନ୍ତୁ ରାଷ୍ଟ୍ର ନେତାମାନଙ୍କର ଜେଲଯିବା ମୂଳରେ ମହତ୍ କାର୍ଯ୍ୟ ନିହିତ ଥିବାରୁ ଶବ୍ଦଟି ମହତ୍ତ୍ୱ 'କଏଦୀ' ଅର୍ଥରେ ବୁଝାଯାଉଛି ।

(ଛ) ହରିଜନ—ପ୍ରଥମେ ଲୋକମାନେ 'ହରିଜନ' କହିଲେ 'ଅସ୍ପୃଶ୍ୟ ଜାତି'କୁ ବୁଝୁଥିଲେ । କାଳକ୍ରମେ ସମାଜରେ ପୂର୍ବର ଅସ୍ପୃଶ୍ୟ ଜାତିମାନେ ସମାନ ସ୍ଥାନ ଲାଭ କରିବା ଫଳରେ 'ହରିଜନ' ଶବ୍ଦର ଅର୍ଥରେ ଉତ୍କର୍ଷ ଦେଖାଦେଇଛି । ଏଥିରେ ରହିଛି ଦେଶବାସୀମାନଙ୍କର ମନୋବିଜ୍ଞାନର ସୁନ୍ଦର ପ୍ରତିବିମ୍ବ ।

(ଜ) ସମ୍ଭ୍ରାନ୍ତ—ପ୍ରଥମେ ଶବ୍ଦଟିର ଅର୍ଥ ଥିଲା 'ଭୟପ୍ରାପ୍ତ' ଓ 'ଭ୍ରମଯୁକ୍ତ'। ପରେ ଏହାର ଅର୍ଥ ହୋଇଛି 'ମାନ୍ୟ', 'ଅଭିଜାତ', 'କୁଳୀନ' ଇତ୍ୟାଦି।

(ଝ) ମନ୍ଦିର—ପ୍ରଥମେ ଏହାର ଅର୍ଥ ଥିଲା 'ଗୃହ'। ବର୍ତ୍ତମାନ ଏହାର ଅର୍ଥ 'ଦେବାଳୟ'।

(ଞ) ଷଣ୍ଢ—ପ୍ରଥମେ ଏହାର ଅର୍ଥ ଥିଲା 'ନପୁଂସକ, ଶକ୍ତିହୀନ'। କିନ୍ତୁ ପରେ ଏହାର ଅର୍ଥ ହୋଇଛି 'ଷଣ୍ଢ ପରି ଶକ୍ତିଶାଳୀ, ବୃହଦାକାର ଓ ହୃଷ୍ଟପୁଷ୍ଟ ବ୍ୟକ୍ତି।'

(ଟ) ଇତିକଥା—ସଂସ୍କୃତରେ ଏହାର ଅର୍ଥ ଥିଲା 'ଅଳୀକ କଥା', କିନ୍ତୁ ଓଡ଼ିଆରେ ଏହା 'ଇତିହାସ' ଓ 'ସତ୍ୟବର୍ଣ୍ଣନା' ଅର୍ଥରେ ସୂଚିତ।

(ଠ) ଅପରୂପ—ସଂସ୍କୃତରେ ଏହା 'କୁତ୍ସିତ' ଅର୍ଥରେ ବ୍ୟବହୃତ ହେଉଥିଲା। କିନ୍ତୁ ଓଡ଼ିଆରେ ଏହା ସୁନ୍ଦର, ବିସ୍ମୟକର ଆଦି ଅର୍ଥରେ ବ୍ୟବହୃତ ହେଉଅଛି। 'ଅପୂର୍ବ' ସହିତ ଏହାର ସାଦୃଶ୍ୟ ଥିବାରୁ ଏପରି ଅର୍ଥ ବିକାର ଘଟିଥିବାର ଅନୁମାନ କରାଯାଇପାରେ।

(ଡ) Brave—ଏହି ଶବ୍ଦଟି ଯେଉଁ ଧାତୁରୁ ସୃଷ୍ଟି, ଇଂରାଜୀ 'depraved' ଶବ୍ଦ (ଦୁରାଗ୍ରହୀ, ଦୁଷ୍ଟ) ଓ ଲାଟିନ୍ 'pravus' (କୁଟିଳ, Crooked) ଶବ୍ଦ ସେହି ଧାତୁରୁ ସୃଷ୍ଟି ଏବଂ ଏହାର ଅର୍ଥ 'ବଦମାସ'। କିନ୍ତୁ ବର୍ତ୍ତମାନ ଏହା 'ସାହସୀ' ଓ 'ବୀର' ଅର୍ଥରେ ବ୍ୟବହୃତ।

(୪) ଅର୍ଥାପକର୍ଷ—ଯେଉଁଠାରେ କୌଣସି ଶବ୍ଦ ଉତ୍କୃଷ୍ଟ ଅର୍ଥ ତ୍ୟାଗକରି ନିକୃଷ୍ଟ ଅର୍ଥକୁ ଗ୍ରହଣ କରେ, ସେଠାରେ ଅର୍ଥାପକର୍ଷ ଦେଖାଯାଏ। ଯଥା :

(କ) ମହାଜନ—ପ୍ରଥମେ 'ମହାଜନ'ର ଅର୍ଥ ଥିଲା ଉତ୍ତମ ବ୍ୟକ୍ତି ବା ଶ୍ରେଷ୍ଠ ନର। କିନ୍ତୁ କାଳକ୍ରମେ ଏହାର ଅର୍ଥ ହୋଇଛି ବ୍ୟବସାୟୀ।

(ଖ) ଲିଙ୍ଗ—ପ୍ରଥମେ ଏହାର ଅର୍ଥ ଥିଲା 'ଲକ୍ଷଣ' ବା 'ଚିହ୍ନ'। ପରବର୍ତ୍ତୀ କାଳରେ ଏହାର ଅର୍ଥ ହେଲା 'ଶିବଲିଙ୍ଗ'। କିନ୍ତୁ ବର୍ତ୍ତମାନ କାଳରେ ଏହା 'ଗୁହ୍ୟାଙ୍ଗ' ଅର୍ଥରେ ଅନେକତ୍ର ବ୍ୟବହୃତ।

(ଗ) ଅମାନୁଷୀ—ପ୍ରଥମେ ଏହାର ଅର୍ଥ ଥିଲା 'ମନୁଷ୍ୟୋତ୍ତର '(Super human), 'ଅଲୌକିକ', 'ଅସାଧାରଣ'। ପରେ ଅର୍ଥ ହୋଇଅଛି 'ଅମାନୁଷିକ' (ଯାହା ମନୁଷ୍ୟୋଚିତ ନୁହେଁ), ପାଶବିକ (Inhuman)।

(ଘ) ନଗ୍ନ—ପ୍ରଥମେ ଏହାର ଅର୍ଥ 'ମୁକ୍ତ' ବା 'ପ୍ରକାଶ୍ୟ'। କିନ୍ତୁ ପରେ ଅର୍ଥ ହୋଇଛି 'ଲଙ୍ଗଳା'।

(ଙ) ମହାରାଜ—ପ୍ରଥମେ ଏହାର ଅର୍ଥ ଥିଲା 'ସମ୍ରାଟ' । କିନ୍ତୁ ପରେ ଏହା 'ଉପହାସ୍ୟ ବ୍ୟକ୍ତି ପ୍ରତି ଉପହାସପୂର୍ଣ୍ଣ ଏକ ସମ୍ବୋଧନ' ଅର୍ଥରେ ବ୍ୟବହୃତ ହୋଇଆସୁଅଛି ।

(ଚ) ଫାଜିଲ—ଆରବିକ ଭାଷାରେ ପ୍ରଥମେ ଏହା 'ବିଦ୍ୱାନ୍' ଅର୍ଥରେ ବ୍ୟବହୃତ ହେଉଥିଲା, କିନ୍ତୁ ପରବର୍ତ୍ତୀ କାଳରେ ଏହା 'ସ୍ୱେଚ୍ଛାଚାରୀ' ଅର୍ଥରେ ବ୍ୟବହୃତ ହୋଇଅଛି ।

(ଛ) ମହାପାତ୍ର—ପ୍ରଥମେ ମହାପାତ୍ର କହିଲେ ବୁଝାଯାଉଥିଲା 'ଶ୍ରେଷ୍ଠ ପାରିଷଦ' । କାଳକ୍ରମେ ଏହା ଏକ ସାଧାରଣ ସଂଜ୍ଞା ଅର୍ଥରେ ବ୍ୟବହୃତ ହେଉଅଛି ।

(ଜ) ପାଷଣ୍ଡ—ପ୍ରଥମେ 'ପାଷଣ୍ଡ' ଶବ୍ଦର ଅର୍ଥ ଥିଲା 'ନୈଷ୍ଠିକ ବୌଦ୍ଧ ସନ୍ନ୍ୟାସୀ' । ଅଶୋକଙ୍କ ସମୟରେ 'ପାଷଣ୍ଡ' ଭାବରେ ସମ୍ବୋଧନ କରି ସମ୍ମାନ ପ୍ରଦର୍ଶନ କରାଯାଉଥିଲା । ପରବର୍ତ୍ତୀ କାଳରେ ଯେତେବେଳେ ହିନ୍ଦୁଧର୍ମ ପ୍ରାଧାନ୍ୟ ବିସ୍ତାର କଲା, ସେତେବେଳେ ହିନ୍ଦୁମାନଙ୍କ ପାଖରେ 'ପାଷଣ୍ଡ' ଶବ୍ଦର ଅର୍ଥ ହେଲା 'ଅନ୍ୟ ଧର୍ମର ସନ୍ନ୍ୟାସୀ' । କାଳକ୍ରମେ ତାହାର ଅର୍ଥ ହେଲା ବିଧର୍ମୀ, ଅଧର୍ମୀ, ଦୁରାଚାର ଇତ୍ୟାଦି ।

(ଝ) ଅସୁର—ଋଗ୍‌ବେଦରେ 'ଅସୁର' ଶବ୍ଦର ଅର୍ଥ ଥିଲା 'ଦେବତା' । ଇରାନୀ ଭାଷାରେ ଅହୁର ଅସୁର ଶବ୍ଦର ଅର୍ଥ ମଧ୍ୟ ଦେବତା । କିନ୍ତୁ କାଳକ୍ରମେ ତାହାର ଅର୍ଥ ହୋଇଛି ଦୈତ୍ୟ ବା ରାକ୍ଷସ ।

(ଞ) ଅଭିଯୁକ୍ତ—ଏହି ଶବ୍ଦର ପ୍ରାଚୀନ ଅର୍ଥ ଥିଲା 'ପ୍ରାମାଣିକ ପୁରୁଷ' । କିନ୍ତୁ ପରେ ଏହା 'ଅପରାଧୀ' ଅର୍ଥକୁ ପ୍ରକାଶ କଲା ।

(ଟ) ଶାଳୀନ—ପ୍ରଥମେ ଏହାର ଅର୍ଥ ଥିଲା 'ଶୋଭନୀୟ' ( ଯଃ ଶାଲତେ ବା ଶୋଭତେ), 'ଶାଳୀନ' । ପରେ ଏହା ଏକ ଅଶୋଭନୀୟ ଗର୍ହିତ ଅର୍ଥ ଗ୍ରହଣ କରିଅଛି ।

(ଠ) ଶୋଧିବା—ପ୍ରଥମେ ଏହାର ଅର୍ଥ ଥିଲା 'ସଂଶୋଧନ' କରିବା । ପରେ ଏହା 'ଗାଳି କରିବା' ବା 'ତିରସ୍କାର କରିବା' ଅର୍ଥରେ ବ୍ୟବହୃତ ହୋଇଛି ।

(ଡ) ଚୁଡ଼ା—ଏହାର ପ୍ରକୃତ ଅର୍ଥ 'ଧାନରୁ ତିଆରି ଏକ ଖାଦ୍ୟପଦାର୍ଥ' । କିନ୍ତୁ ଆଧୁନିକ ଯୁଗରେ ସହରିଆ ଓ ସ୍କୁଲ କଲେଜ ଛାତ୍ରମାନେ ଏହାକୁ ମଫସଲିଆ, ପୁରୁଣାକାଳିଆ, ଅନୁନ୍ନତ, ବୋକା ଇତ୍ୟାଦି ଅର୍ଥରେ ବ୍ୟବହାର କରୁଛନ୍ତି ।

(ଢ) ମହାବ୍ରାହ୍ମଣ—"ମହାବ୍ରାହ୍ମଣ' ଶବ୍ଦର ପ୍ରକୃତ ଅର୍ଥ 'ଶ୍ରେଷ୍ଠ ବ୍ରାହ୍ମଣ'। କିନ୍ତୁ କାଳକ୍ରମେ ଏହା ଓଡ଼ିଆରେ 'ଚଣ୍ଡାଳ' ଅର୍ଥରେ ବ୍ୟବହୃତ ହେଉଅଛି।

(ଣ) ପିଲା—ତାମିଲରେ 'ପିଲ୍ଲେ' ଶବ୍ଦ ଶିଶୁ, ଶାବକ, ପୁତ୍ର, ଯୁବକ ପ୍ରଭୃତି ଅର୍ଥରେ ପ୍ରଯୁଜ୍ୟ ହୋଇଥାଏ। କିନ୍ତୁ ଏଥିରୁ ସୃଷ୍ଟି 'ପିଲ' ଶବ୍ଦ ହିନ୍ଦୀରେ 'କୁକୁରଛୁଆ' ଅର୍ଥରେ ବ୍ୟବହୃତ।

(ତ) Knave—ପ୍ରାଚୀନ ଇଂରାଜୀରେ ଏହାର ଅର୍ଥ ଥିଲା 'ବାଳକ'। ବର୍ତ୍ତମାନ ଏହାର ଅର୍ଥ ଦୁର୍ବୃତ୍ତ, ଦୁଷ୍ଟ, ବଦମାସ।

(ଥ) ଗନ୍ଧ—ପ୍ରଥମେ ଏହାର ଅର୍ଥ ଥିଲା 'ସୁଗନ୍ଧ', କାଳକ୍ରମେ ଏହା 'ଦୁର୍ଗନ୍ଧ' ଅର୍ଥକୁ ବୁଝାଉଛି।

(ଦ) ଦେବତା—ସଂସ୍କୃତ 'ଦେବତା' (God) ଶବ୍ଦ ଇରାନୀ ଭାଷାରେ 'ରାକ୍ଷସ' ଅର୍ଥରେ ପ୍ରଚଳିତ।

(ଧ) ନାଟମ୍—ଏହା ଏକ ତାମିଲ ଶବ୍ଦ ଓ ଏହାର ମୂଳ ଅର୍ଥ ଥିଲା 'ସୁଗନ୍ଧ'। କିନ୍ତୁ ଏବେ 'ଦୁର୍ଗନ୍ଧ' ଅର୍ଥରେ ବ୍ୟବହୃତ ହେଉଅଛି।

(ନ) ବୂ—ଏହା ଏକ ପାରସିକ ଶବ୍ଦ ଓ ଏହାର ମୂଳ ଅର୍ଥ 'ଗନ୍ଧ'। ବର୍ତ୍ତମାନ ଏହା ହିନ୍ଦୀରେ ଦୁର୍ଗନ୍ଧ ଅର୍ଥରେ ପ୍ରଚଳିତ।

(୭) ଅର୍ଥ ବିଭାଜନ—କୌଣସି ମୂଳ ଭାଷାରେ ଗୋଟିଏ ଶବ୍ଦ ମୂଳଭାଷା ସହିତ ସମ୍ପୃକ୍ତ ବିଭିନ୍ନ ଭାଷାରେ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରିପାରେ। କେଉଁଠି ଅର୍ଥର ସମ୍ପ୍ରସାରଣ, କେଉଁଠି ସଙ୍କୋଚନ, କେଉଁଠି ଆଦେଶ, କେଉଁଠି ଉତ୍କର୍ଷ ଓ କେଉଁଠି ଅପକର୍ଷ ଲକ୍ଷ୍ୟ କରାଯାଏ। କେଉଁଠି କେଉଁଠି ମୂଳ ଅର୍ଥ ପ୍ରାୟ ଅକ୍ଷୁଣ୍ଣ ରହିଥାଏ। ଅର୍ଥର ଏପରି ବିବର୍ତ୍ତୀକରଣକୁ ଅର୍ଥ ବିଭାଜନ କୁହାଯାଏ।

ଉଦାହରଣ ସ୍ୱରୂପ ଲାଟିନ୍ 'baron' ଶବ୍ଦର ମୌଳିକ ଅର୍ଥ 'ବଳଶାଳୀ ବ୍ୟକ୍ତି'। ଲାଟିନ୍ ସହିତ ସମ୍ପୃକ୍ତ ସ୍ପେନୀୟ ଓ ପର୍ତ୍ତୁଗୀଜ ଭାଷାରେ ଏହି ଅର୍ଥ ସଂରକ୍ଷିତ ଅଛି, କିନ୍ତୁ ଇଟାଲୀ ଭାଷାରେ ଏହାର ଅପକର୍ଷ ଘଟି ହୋଇଛି 'ଦୁର୍ବୃତ୍ତ', ଫରାସୀ ଭାଷାରେ ଅର୍ଥର ଉତ୍କର୍ଷ ଘଟି ହୋଇଛି 'ଉଚ୍ଚକୁଳସମ୍ଭୂତ ଉଚ୍ଚସମ୍ମାନ ଯୋଗ୍ୟ ବ୍ୟକ୍ତି'।

ସେହିପରି ପ୍ରାଚୀନ ଇଂରାଜୀ ଶବ୍ଦ 'Sealig'ର ମୌଳିକ ଅର୍ଥ ଭାଗ୍ୟବାନ୍ (blessed)। ପ୍ରାଚୀନ ଇଂରାଜୀ ସହିତ ସମ୍ପୃକ୍ତ ଓଲନ୍ଦାଜ ଭାଷାରେ ଏଥିରୁ ଉଦ୍‌ଭୂତ zalig ଓ ଜର୍ମାନ୍ ଶବ୍ଦ seligରେ ଏହି ଅର୍ଥ ଅକ୍ଷୁଣ୍ଣ ରହିଛି। କିନ୍ତୁ ମୂଳ Sealigରୁ ମୌଳିକ ଅର୍ଥ ପରିହାର କରି 'ମୂର୍ଖ', 'ନିର୍ବୋଧ', 'ବୋକା' ଅର୍ଥ ଗ୍ରହଣ କରିଅଛି।

ଅନେକ ସମୟରେ ଶବ୍ଦର ଅର୍ଥରେ ଯେଉଁ ପ୍ରସାରଣ, ସଙ୍କୋଚନ, ଅବନତି, ଉତ୍କର୍ଷ, ଅପକର୍ଷ ଦେଖାଯାଏ, ତାହା ଏହି ଅର୍ଥ ବିଭାଜନ ଯୋଗୁ ସମ୍ଭବ ହୋଇଥାଏ ।

ଉପସଂହାର—ଅର୍ଥର ଏହି ପରିବର୍ତ୍ତନ ମୂଳରେ ରହିଛି କୌଣସି ମାନସିକ ଓ ସାମାଜିକ ବିବର୍ତ୍ତନର ଇତିହାସ । ପ୍ରତି ପରିବର୍ତ୍ତନର କ୍ରମ ଓ ସ୍ତରର ସୂକ୍ଷ୍ମ ବିଶ୍ଳେଷଣ ଅତୀବ ଚିତ୍ତାକର୍ଷକ । ତେଣୁ ଅର୍ଥ ପରିବର୍ତ୍ତନର ବିଚାର ବେଳେ ଶବ୍ଦର ନୂତନ ଅର୍ଥ କେଉଁ ସ୍ତରରେ, କିପରି କ୍ରମରେ, କେଉଁ ଲେଖାରେ ବା କାହା ମୁଖରେ, କିପରି ପରିସ୍ଥିତିରେ ପ୍ରଚଳିତ ହେଲା ତାହାର ଯଥାର୍ଥ ଓ ପ୍ରାମାଣିକ ତଥ୍ୟ ସଂଗ୍ରହ କରିବା ଆବଶ୍ୟକ । ତା' ନ ହେଲେ ଅନୁମାନ ଉପରେ ଅର୍ଥତତ୍ତ୍ୱ ସମ୍ପର୍କରେ କୌଣସି ଗବେଷଣା କରାଯାଇପାରିବ ନାହିଁ ।

ବୌଦ୍ଧିକ ନିୟମ (Intellectual Laws of Language)—ଅର୍ଥ ବିସ୍ତାର, ଅର୍ଥ ସଙ୍କୋଚନ, ଅର୍ଥାଦେଶ ପ୍ରଭୃତି ମୂଳରେ କେତେକ କାରଣ ନିହିତ ଥିବାର ଉପଲବ୍ଧି କରାଯାଏ । ଏହି କାରଣଗୁଡ଼ିକ ହେଉଛି ବୁଦ୍ଧିଗତ କାରଣ । ଅର୍ଥରେ ଘଟୁଥିବା କେତେକ ପରିବର୍ତ୍ତନ ସ୍ୱାଭାବିକ ଓ କେତେକ ପରିବର୍ତ୍ତନ ମନୁଷ୍ୟର ବୁଦ୍ଧିପ୍ରସୂତ । ଏହି ବୁଦ୍ଧିପ୍ରସୂତ କାରଣଗୁଡ଼ିକର ବିଚାର କରାଯାଇ ଯେଉଁ ନିୟମ ନିର୍ଦ୍ଧାରିତ କରାଯାଇଛି ତାହାକୁ ବୌଦ୍ଧିକ ନିୟମ ଆଖ୍ୟା ଦିଆଯାଇପାରେ ।

(୧) ବିଶେଷୀକରଣ ନିୟମ ( Law of Specialization )—କୌଣସି ଏକ ଭାବ, ରୂପ ବା ସମ୍ବନ୍ଧକୁ ବ୍ୟକ୍ତ କରିବା ପାଇଁ ପୂର୍ବରୁ ପ୍ରଚଳିତ କେତେକ ଶବ୍ଦ ବା ପ୍ରତ୍ୟୟ ଧୀରେ ଧୀରେ ହ୍ରାସ ପାଇ ସ୍ୱଳ୍ପ ହୋଇଯାଏ । ପ୍ରୟୋଗକର୍ତ୍ତା ସେହି ସବୁ ସ୍ଥାନରେ ସ୍ୱଳ୍ପ କେତୋଟିକୁ ବିଶେଷ (Special) ଭାବରେ ବ୍ୟବହାର କରିଥାନ୍ତି । ଉଦାହରଣ ସ୍ୱରୂପ ଇଣ୍ଡୋୟୁରୋପୀୟ ପରିବାରର ପ୍ରାଚୀନ ଭାଷାମାନଙ୍କରେ ଥିବା ତୁଳନାସୂଚକ ( Comparative ) ଓ ସର୍ବାଧିକତାସୂଚକ (Superlative) ପ୍ରତ୍ୟୟଗୁଡ଼ିକୁ ନିଆଯାଇପାରେ । ତୁଳନାସୂଚକ ପ୍ରତ୍ୟୟ ତରପ୍ (=ତର), ଇୟସୁନ୍ (=ଇୟସ୍), ସର୍ବାଧିକତାସୂଚକ ପ୍ରତ୍ୟୟ ତମପ୍ (=ତମ), ଇଷ୍ଠନ୍ (=ଇଷ୍ଠ) ପ୍ରଭୃତି ମଧ୍ୟରୁ କାଳକ୍ରମେ 'ତର', 'ତମ' ପ୍ରତ୍ୟୟ ଦୁଇଟିର ପ୍ରଚଳନ ହ୍ରାସ ପାଇଛି ଓ 'ଇୟସ୍', 'ଇଷ୍ଠ' ଦୁଇଟିର ପ୍ରଚଳନ ବୃଦ୍ଧିପାଇଛି ।

ଦ୍ରାବିଡ଼ ଶବ୍ଦ 'ପିଲ୍ଲୈ' (ପିଲ) ଯେହିପରି ସାଧାରଣ ଭାବରେ ଶାବକ ବା ଛୁଆ ଅର୍ଥରେ ପ୍ରଚଳିତ ଥିଲା । ହିନ୍ଦୀରେ ଏହା ବିଶେଷ ଅର୍ଥ (କୁକୁରଛୁଆ)ରେ ପ୍ରଚଳିତ ।

ଏହି ନିୟମକୁ ଅନେକ ଭୌତିକ ନିୟମ ଭାବରେ ଗ୍ରହଣ କରିବା ପାଇଁ ପ୍ରସ୍ତୁତ୍ ନୁହଁ । ପ୍ରକୃତରେ ଅନେକ ସମୟରେ ଏ ନିୟମର ଅର୍ଥ ପରିବର୍ତ୍ତନ ସହିତ କୌଣସି ସମ୍ପର୍କ ନାହିଁ ଓ ଅନେକ ସମୟରେ ବୁଝି ସହିତ କୌଣସି ସମ୍ପର୍କ ନାହିଁ । ଉପର୍ଯ୍ୟୁକ୍ତ ଉଦାହରଣମାନଙ୍କରେ ଅର୍ଥ ପରିବର୍ତ୍ତନର କାରଣ ହେଉଛି 'ପ୍ରଯତ୍ନ ଲାଘବ' ।

(୨) ଉଦ୍ଯୋତନ ନିୟମ (Law of Irradiation)—ଉଦ୍ଯୋତନ (Irradiation)ର ଅର୍ଥ ହେଉଛି ଚମକ ବା ଝଲକ । ଶବ୍ଦରେ ନୂତନ ଅର୍ଥର ଆଗମନକୁ ଏହି ନିୟମରେ ବିଚାର କରାଯାଏ । ଏଥିରେ ବିଭିନ୍ନ ଅର୍ଥାଗମ ହୋଇପାରେ । କେତେବେଳେ ନୂତନ ଅର୍ଥର ଆଗମ, କେତେବେଳେ ଉତ୍କୃଷ୍ଟ ଅର୍ଥ ସ୍ଥାନରେ ନିକୃଷ୍ଟ ଓ କେତେବେଳେ ନିକୃଷ୍ଟ ଅର୍ଥ ସ୍ଥାନରେ ଉତ୍କୃଷ୍ଟ ଅର୍ଥର ଆଗମ ହୋଇଥାଏ । ଯଥା—(କ) ଜର୍ମାନ ପ୍ରତ୍ୟୟ 'hard'ର ବିକଶିତ ରୂପ 'ard' ଫରାସୀ ଓ ଇଂରାଜୀ ଭାଷାରେ ପ୍ରଥମେ ନିକୃଷ୍ଟ ଅର୍ଥରେ ବ୍ୟବହୃତ ହେଉ ନ ଥିଲା, ଯଥା—Standard, placard ଇତ୍ୟାଦି, କିନ୍ତୁ ପରବର୍ତ୍ତୀ କାଳରେ ଏହା ନିକୃଷ୍ଟ ଅର୍ଥରେ ବ୍ୟବହୃତ ହୋଇଅଛି, ଯଥା—dullard, coward, sluggard, drunkard, bastard ଇତ୍ୟାଦି । (ଖ) ପ୍ରାଚୀନ ଇଂରାଜୀରେ 'ish' ପ୍ରତ୍ୟୟ ନିକୃଷ୍ଟ ଅର୍ଥରେ ବ୍ୟବହୃତ ହେଉ ନ ଥିଲା, ଯଥା—foloish (popular) English, Danish, British, reddish, brownish, whitish ପ୍ରଭୃତି । କିନ୍ତୁ କାଳକ୍ରମେ ଏହି ପ୍ରତ୍ୟୟ ନିକୃଷ୍ଟ ଅର୍ଥରେ ବ୍ୟବହୃତ ହେଲା, ଯଥା—hellish, devilish, knavish, fenddish, foolish, thevish, childish, boyish, girlish ଇତ୍ୟାଦି ।

(୩) ଭ୍ରମ ଅବବୋଧ ନିୟମ (Law of false perception)—ଅନେକ ସମୟରେ ବୁଝିବାରେ ଭ୍ରମ ଘଟିଲେ ଶବ୍ଦର ନୂତନ ଅର୍ଥ ପ୍ରକାଶ ପାଏ ଏବଂ ସେହି ଭିତ୍ତିରେ ନୂତନ ଶବ୍ଦର ସୃଷ୍ଟି ହୁଏ । ଉଦାହରଣ—

(କ) ଋଗ୍‌ବେଦରେ 'ଅସୁର' ଶବ୍ଦ 'ପ୍ରାଣଜ' ଅର୍ଥରେ ବ୍ୟବହୃତ ହୋଇଅଛି । ଇନ୍ଦ୍ର, ବରୁଣ, ଅଗ୍ନି, ସବିତୃ, ରୁଦ୍ର ପ୍ରଭୃତି ଦେବତାମାନେ 'ଅସୁର' ବିଶେଷଣରେ ସମ୍ମାନିତ ହୋଇଛନ୍ତି । କେବେ କେବେ 'ଦେବତାଗଣ' (ବହୁବଚନରେ) ଅର୍ଥରେ ଏହାର ପ୍ରୟୋଗ ହୋଇଅଛି । ତେଣୁ ସଂସ୍କୃତ ଭାଷାରେ ବହୁସ୍ଥଳରେ 'ଦେବତା' ଅର୍ଥରେ 'ଅସୁର' ଶବ୍ଦର ବ୍ୟବହାର ରହିଛି । କିନ୍ତୁ ଭାରତୀୟ ଆର୍ଯ୍ୟ ଓ ପାରସିକ ଜାତିର ସଂଘର୍ଷ ଫଳରେ ଏହାର ଅର୍ଥ ହୋଇଯାଇଛି ରାକ୍ଷସ । 'ଅସୁରୋମେଧାସ୍' ସହିତ ପାରସିକ ଦେବତା 'ଅହୁର ମଜ୍‌ଦା' (Ahure Mazda )ଙ୍କ ସାମଞ୍ଜସ୍ୟ

ରହିଛି । କିନ୍ତୁ ସଂଘର୍ଷଜନିତ ବିଦ୍ୱେଷ ଓ ଘୃଣା ଯୋଗୁ ଭାରତୀୟ ଆର୍ଯ୍ୟଗଣ ପାରସିକ ଆର୍ଯ୍ୟମାନଙ୍କର ଦେବତା 'ଅହୁର'ଙ୍କୁ ଅସ୍ୱୀକାର କଲେ । 'ଅସୁର'ରେ ଥିବା 'ଅ'କୁ ନଞର୍ଥକ ଉପସର୍ଗ ବୋଲି ଭୁଲ୍‌ରେ କଳ୍ପନା କରାଯାଇ 'ସୁର'ର ଅର୍ଥ 'ଦେବତା' ରୂପେ କଳ୍ପନା କରାଗଲା । ଏହିପରି ଭ୍ରମ ଅବବୋଧ ବା ଭ୍ରମାତ୍ମକ ପ୍ରଥାର ଫଳରେ ନିରର୍ଥକ 'ସୁର' ଶବ୍ଦ ଅର୍ଥ-ଅନ୍ୱିତ ହୋଇଅଛି । (ଖ) 'ବିଧବା' ଶବ୍ଦରେ 'ବି' ପ୍ରକୃତରେ ଏକ ଉପସର୍ଗ ନୁହେଁ । ଏହାର ମୂଳ ଏବଂ ଇଂରାଜୀ Widow, ପୁରାତନ ଇଂରାଜୀ Widewe, ଓଲନ୍ଦାଜ୍ Weduwe, ଜର୍ମାନ୍ Wittwe, ଲାଟିନ୍ Viduus, ଗ୍ରୀକ୍ Eitheos ପ୍ରଭୃତି ଶବ୍ଦର ମୂଳ ଅଭିନ୍ନ । କିନ୍ତୁ ବୈୟାକରଣ-ମାନେ ବିଧବା ଶବ୍ଦରେ ନଞର୍ଥକ 'ବି' ଉପସର୍ଗର କଳ୍ପନା କରି 'ଧବ' ଏକ ନୂତନ ଶବ୍ଦର ସୃଷ୍ଟି କଲେ, ଯାହାର ଅର୍ଥ 'ସ୍ୱାମୀ' ରୂପରେ ପ୍ରଚଳିତ ହୋଇଯାଇଛି । (ଗ) 'ଶ୍ରେଷ୍ଠ'ର ମୂଳ ଅର୍ଥ 'ସର୍ବୋତ୍କୃଷ୍ଟ' । ଏଥିରେ 'ଇଷ୍ଠନ୍' ନାମକ ସର୍ବାଧିକତାସୂଚକ (Superlative) ପ୍ରତ୍ୟୟଯୁକ୍ତ ହୋଇ ରହିଅଛି । କିନ୍ତୁ ଅନେକେ ଏହାକୁ ସର୍ବାଧିକତାସୂଚକ ପ୍ରତ୍ୟୟ-ବିହୀନ ମୂଳଶବ୍ଦ ମନେକରି 'ଶ୍ରେଷ୍ଠତର', 'ଶ୍ରେଷ୍ଠତମ' ଶବ୍ଦ ଦୁଇଟିର ସୃଷ୍ଟି କରିଥାଆନ୍ତି । (ଘ) ଭ୍ରମ ଯୋଗୁ ଅନେକ ସମୟରେ ଦ୍ୱିରୁକ୍ତି ବା ପୁନରୁକ୍ତି ପ୍ରମାଦ ମଧ୍ୟ ଘଟିଥାଏ, ଯଥା—ଫେର୍ ପୁଣି, ପୁଣି ମଧ୍ୟ, ଅଦ୍ୟାବଧି ସୁଦ୍ଧା, ତଥାପି ସୁଦ୍ଧା, ବାବୁଲଓ୍ୱାଲା, ଗୁଳ୍ପବଜଳ (ଅବ୍ ଓ ଜଳ ସମାର୍ଥକ), ହିମାଚଳଗିରି, ବିନ୍ଧ୍ୟାଚଳ ପର୍ବତ ପ୍ରଭୃତି ।

ଅର୍ଥ ପରିବର୍ତ୍ତନ ସହିତ ଏ ନିୟମର ପୂର୍ଣ୍ଣତଃ ସମ୍ପର୍କ ରହିଛି । ଏହାକୁ 'ବୌଦ୍ଧିକ ନିୟମ' କହିବାରେ ବି କେତେକ ପରିମାଣରେ ଯଥାର୍ଥ ରହିଛି, ଯଦ୍ୟପି ବୁଦ୍ଧି ଭ୍ରମ ସହିତ ମଧ୍ୟ ଏହା ସଶ୍ଳିଷ୍ଟ ।

(୪) ଭେଦୀକରଣ ନିୟମ ( Law of Differentiation )—ଏକ ପର୍ଯ୍ୟାୟଭୁକ୍ତ ବା ସମାନାର୍ଥୀ ଶବ୍ଦ ଯଦି ନିଜର ଅନ୍ତରିକ ଅଭିନ୍ନତା ବା ଏକାର୍ଥତା ତ୍ୟାଗ କରେ, ତେବେ ସେହି ପ୍ରକ୍ରିୟାକୁ କୁହାଯାଏ ଭେଦୀକରଣ । ଉଦାହରଣ ସ୍ୱରୂପ, 'ଡାକ୍ତର' 'ହାକିମ' 'ବୈଦ୍ୟ' ଗୁଡ଼ିଏ ଏକାର୍ଥବାଚକ । ଇଂରେଜମାନଙ୍କ ପାଖରେ ସବୁ ଚିକିତ୍ସକ ଡାକ୍ତର, ୟୁନାନୀମାନଙ୍କ ନିକଟରେ ସବୁ ଚିକିତ୍ସକ ହକିମ ଓ ସମ୍ପ୍ରଦାୟୀମାନଙ୍କ ନିକଟରେ ସବୁ ଚିକିତ୍ସକ ବୈଦ୍ୟ । କିନ୍ତୁ ଓଡ଼ିଆ ଭାଷାରେ ଏ ତିନୋଟି ଶବ୍ଦ ତିନୋଟି ଭିନ୍ନ ଅର୍ଥରେ ପ୍ରଚଳିତ । 'ଡାକ୍ତର' ଶବ୍ଦ ଏଲୋପ୍ୟାଥିକ୍ ବା ହୋମିଓପ୍ୟାଥିକ୍ ଚିକିତ୍ସକ ଅର୍ଥରେ, 'ହକିମ' ଶବ୍ଦ ୟୁନାନୀ ଚିକିତ୍ସକ ଅର୍ଥରେ ଓ 'ବୈଦ୍ୟ' ଶବ୍ଦ ଆୟୁର୍ବେଦ-ଚିକିତ୍ସକ ଅର୍ଥରେ ପ୍ରଚଳିତ । ଏକ ଭାଷାର ବିଭିନ୍ନ ଶବ୍ଦରେ ମଧ୍ୟ ଏ ପ୍ରବୃତ୍ତି ଦେଖିବାକୁ ମିଳେ, ଯଥା—ଇଂରାଜୀରେ child, tot,

mite, imp, brat, calf, kid, colt, cub, urchin ଆଦି ଶବ୍ଦର ଅର୍ଥ ଶିଶୁ । କିନ୍ତୁ କାଳକ୍ରମେ child, tot, mite, imp, brat ପ୍ରଭୃତି ଶବ୍ଦ ବୟସ ବା ଭଲ-ମନ୍ଦ ଦୃଷ୍ଟିରୁ ଭିନ୍ନାର୍ଥକ ହୋଇଯାଇଛି ଏବଂ child, calf, colt, cub, kid ଆଦି ବିଭିନ୍ନ ଜୀବର ଶିଶୁକୁ ବୁଝାଇବା ପାଇଁ ଭିନ୍ନାର୍ଥକ ହୋଇଯାଇଛି । ଗୋଟିଏ ଶବ୍ଦର ଏକାଧିକ ରୂପ ଦେଖାଦେବା ଦ୍ୱାରା ମଧ୍ୟ ଏହି ପ୍ରବୃତ୍ତି ଦେଖାଯାଏ । ଯଥା—ସାଧୁ ଓ ସାହୁ, ଉଭୟ ଶବ୍ଦର ମୂଳ 'ସାଧୁ' (ସଂସ୍କୃତ) । ଏହି ସଂସ୍କୃତରେ 'ସାଧୁ' ଶବ୍ଦ ସନ୍ଥ, ସଚ୍ଚୋଟ, ଉତ୍ତମ ପ୍ରଭୃତି ଅର୍ଥ ବହନ କଲାବେଳେ, 'ସାହୁ' ଶବ୍ଦ ମହାଜନ, ମାଲିକ, ବଣିଆ, ସଙ୍କୀର୍ଣ୍ଣବିଶେଷ ପ୍ରଭୃତି ଅର୍ଥରେ ପ୍ରଚଳିତ ।

ପ୍ରଫେସର ବ୍ରିଲ୍‌ଙ୍କ ମତରେ ମଣିଷର ମସ୍ତିଷ୍କ ଗୋଟିଏ ବସ୍ତୁକୁ ଗୋଟିଏ ଗୋଟିଏ ରୂପରେ ଦେଖେ ନାହିଁ । ଭିନ୍ନ ଭାବରେ ଦେଖିବା ମୂଳରେ ରହିଛି ମଣିଷର ମନସ୍ତତ୍ତ୍ୱ । ଗୋଟିଏ ପଦାର୍ଥକୁ ଭିନ୍ନ ଭିନ୍ନ ଅର୍ଥରେ ଦେଖିବା ଭାଷାତାତ୍ତ୍ୱିକ ଇତିହାସରେ ଏକ ବିଶିଷ୍ଟ ବିଭବ ।

(୫) ସାଦୃଶ୍ୟ ନିୟମ (Law of Analogy)—ଡକ୍ଟର ଶ୍ୟାମସୁନ୍ଦର ଦାସଙ୍କ ମତରେ, ଏହାକୁ ଉପମାନ ନିୟମ କୁହାଯାଇପାରେ । କିନ୍ତୁ ପ୍ରକୃତରେ ଏହା 'ଉପମାନ ନିୟମ' ନ ହୋଇ 'ସମାନତା ନିୟମ' ବା 'ସାଦୃଶ୍ୟ ନିୟମ' । ବ୍ରିଲ୍ ଏ ନିୟମ ସମ୍ପର୍କରେ କହିଛନ୍ତି, "ମନୁଷ୍ୟ ସ୍ୱଭାବତଃ ଅନୁକରଣ-ପ୍ରିୟ" । ଅଭିବ୍ୟକ୍ତି ପାଇଁ ସେ ପୁରାତନ ଶବ୍ଦର ସାଦୃଶ୍ୟରେ ନବୀନ ଶବ୍ଦ ଗଠନ କରିଥାଏ । ପୁରାତନ ଶବ୍ଦର ରୂପର ଆଧାର ଉପରେ ନବୀନ ଶବ୍ଦର ରୂପ ଗଠନ ହେଉଛି 'ସାଦୃଶ୍ୟ ନିୟମ' । ଉଦାହରଣ ସ୍ୱରୂପ (କ) ହିନ୍ଦୀ ଭାଷାରେ ଧାତୁରେ 'ଆ' ପ୍ରତ୍ୟୟ ଯୋଗ କରାଯାଇ ଅତୀତ କାଳର କୃଦନ୍ତ ଗଠନ କରାଯାଏ, ଯଥା—'ପଢ୍'ରୁ 'ପଢା', 'ଲିଖ୍'ରୁ 'ଲିଖା', 'ରୁକ୍'ରୁ 'ରୁକା' । ଏହି ରୂପ ସାଦୃଶ୍ୟରେ କେତେକ 'କର୍'ରୁ 'କରା' ଶବ୍ଦ ଗଠନ କରନ୍ତି; କିନ୍ତୁ ପ୍ରକୃତରେ 'କର୍' ଧାତୁରେ 'ଆ' ପ୍ରତ୍ୟୟ ଯୋଗରେ ଅତୀତ କାଳର ପାରମ୍ପରିକ କୃଦନ୍ତ ରୂପ ହେଉଛି 'କିୟା' । (ଖ) 'ପାଶ୍ଚାତ୍' ଶବ୍ଦରୁ ସୃଷ୍ଟି 'ପାଶ୍ଚାତ୍ୟ' ଶବ୍ଦରେ ଥିବା 'ଅତ୍ୟ'କୁ ଭୁଲ୍‌ରେ ପ୍ରତ୍ୟୟ ବୋଲି ଗ୍ରହଣ କରି ନିଆଯାଇଛି ଓ ତାହାର ସାଦୃଶ୍ୟରେ 'ଦକ୍ଷିଣାତ୍ୟ' ଶବ୍ଦର ସୃଷ୍ଟି ହୋଇଅଛି । (ଗ) ଇଂରାଜୀରେ ଗ୍ରୀକ୍ ଓ ଲାଟିନ୍‌ରୁ ଆସିଥିବା 'ic' ପ୍ରତ୍ୟୟ ଯୋଡ଼ାଯାଇ Civic Linguistic ଆଦି ଶବ୍ଦର ସୃଷ୍ଟି । ଏପରି କେତେକ ଶବ୍ଦ ଅଛି ଯାହାର ଶେଷରେ ବ୍ୟବହୃତ 'ic' ପୂର୍ବରୁ 't' ଥାଏ, ଯଥା—rustic, cosmetic, acoustic ଇତ୍ୟାଦି । 't' ଓ 'ic'କୁ ମିଶାଇ (tic ସାଦୃଶ୍ୟ ଅନୁଯାୟୀ) କେତେକ ଶବ୍ଦର ସୃଷ୍ଟି ହୋଇଅଛି, ଯଥା—Asiatic, କଲକତ୍ତିୟା (ହିନ୍ଦୀ) ।

ଅର୍ଥ ପ୍ରକାଶ କରୁଥିବା ଧ୍ୱନି ବା ଧ୍ୱନିମାଳା ହେଉଛି ବାକ୍, ଅର୍ଥ ପ୍ରକାଶ କରୁଥିବା ବର୍ଣ୍ଣ ବା ବର୍ଣ୍ଣମାଳା ହେଉଛି ଶବ୍ଦ । ଧ୍ୱନି ମୌଖିକ, ଶବ୍ଦ ଲୈଖିକ । ଉତ୍ପତ୍ତି ଦୃଷ୍ଟି ବା ପ୍ରକାରକୁ ଛାଡ଼ିଦେଲେ ବାକ୍ ଓ ଶବ୍ଦ ମଧ୍ୟରେ ଅର୍ଥଗତ ପାର୍ଥକ୍ୟ ନାହିଁ । ତେଣୁ ବାକ୍ ସହିତ ଅର୍ଥର ସମ୍ପର୍କକୁ ଶବ୍ଦ ସହିତ ଅର୍ଥର ସମ୍ପର୍କ ବୋଲି କୁହାଯାଇପାରେ ।

ବାକ ବା ଶବ୍ଦ ସହିତ ଅର୍ଥର ଏକ ଘନିଷ୍ଠ ସମ୍ପର୍କ ରହିଥିବା ହୃଦୟଙ୍ଗମ କରି ମହାକବି କାଳିଦାସ ଲେଖିଛନ୍ତି—

'ବାଗର୍ଥାବିବ ସମ୍ପୃକ୍ତୌ ବାଗର୍ଥପ୍ରତିପତ୍ତୟେ
ଜଗତଃ ପିତରୌ ବନ୍ଦେ ପାର୍ବତୀ-ପରମେଶ୍ୱରୌ ।'

କିନ୍ତୁ ବ୍ୟବହାରିକ କ୍ଷେତ୍ରରେ ଦେଖାଯାଏ ଶବ୍ଦ ସହିତ ଅର୍ଥର ସମ୍ପର୍କ ସର୍ବଦା ଘନିଷ୍ଠ ବା ନିତ୍ୟ ନୁହେଁ । ଶବ୍ଦ ଅନେକ ସମୟରେ ଏକ ଅର୍ଥର ନିତ୍ୟବନ୍ଧନ ଛିନ୍ନ କରି ଅନେକ ଅର୍ଥରେ ବ୍ୟାପିଯାଏ । ଅର୍ଥର ଏହି ବ୍ୟାପ୍ତି ମୂଳରେ କିଛି ନା କିଛି ନିମିତ୍ତ ବା କାରଣ ରହିଛି । ଏହି ଦୃଷ୍ଟିରୁ ବାକ୍ ଶବ୍ଦ ସହିତ ଅର୍ଥର ସମ୍ପର୍କକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ—ନିତ୍ୟ ( ସ୍ଥିର ), ନୈମିତ୍ତିକ ( ସକାରଣ, ସାପେକ୍ଷ ) ।

(କ) **ନିତ୍ୟ ସମ୍ପର୍କ**—ଶବ୍ଦର ଅଭିଧା ଶକ୍ତିଦ୍ୱାରା ଶବ୍ଦ ଓ ଅର୍ଥ ମଧ୍ୟରେ ନିତ୍ୟ ସମ୍ପର୍କ ସ୍ଥାପିତ ହୋଇଥାଏ । ଏହି ଶକ୍ତି ଶବ୍ଦର ଏକ ନିର୍ଦ୍ଦିଷ୍ଟ ସାଙ୍କେତିକ ଅର୍ଥ-ଦ୍ୟୋତକ ହୋଇଥାଏ । ଅମ୍ବ, କଦଳୀ, ଚେନା, ଗୁଡ଼, ଝୁଂଝୁଡ଼ା, ଗାଈ, କୁକୁର, କୁକୁଡ଼ା, ଘୋଡ଼ା, ପଥର ଆଦି ଶବ୍ଦକୁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଭିଧାନିକ ସଙ୍କେତ ଦ୍ୱାରା ବାନ୍ଧି ଦିଆଯାଇଛି, ଅର୍ଥାତ୍ ଅଭିଧାନିକ ଅର୍ଥ ପ୍ରଦାନ କରାଯାଇଅଛି । ଏହି ଶବ୍ଦଗୁଡ଼ିକର ଏହି ଅର୍ଥ ସହିତ ସମ୍ପର୍କ ନିତ୍ୟ ।

(ଖ) **ନୈମିତ୍ତିକ ଅର୍ଥ**—କୌଣସି ଭାଷାର କୌଣସି ଶବ୍ଦ ଚିରକାଳ ଗୋଟିଏ ଅର୍ଥ ବହନ କରେ ନାହିଁ । ନାନା କାରଣରୁ ଶବ୍ଦର ଅର୍ଥ ପରିବର୍ତ୍ତିତ ହୋଇ ଯାଇଥାଏ । ନୈମିତ୍ତିକ ଅର୍ଥର ସୃଷ୍ଟି ମୂଳରେ ରହିଛି ମନସ୍ତାତ୍ତ୍ୱିକ, ସାମାଜିକ, ସାଂସ୍କୃତିକ ପ୍ରଭୃତି ବିଭିନ୍ନ କାରଣ । ପାରସିକ 'ଅସୁର' (ମୂଳ ଅର୍ଥ ଦେବତା) ଶବ୍ଦର ନୈମିତ୍ତିକ ଅର୍ଥ 'ରାକ୍ଷସ' ସୃଷ୍ଟି ମୂଳରେ ରହିଛି ହିନ୍ଦୁ ମୁସଲମାନ ସଂଘର୍ଷ ଓ ମନୋମାଳିନ୍ୟର ଇତିହାସ । ଜାତିର ସଂସ୍କୃତି, ସଭ୍ୟତା, ଅଭିରୁଚି ଓ ଚିନ୍ତାଧାରା ସହିତ ଭାଷାର ସମ୍ପର୍କ ଅତି ନିବିଡ଼ । ଉଦାହରଣ ସ୍ୱରୂପ—ପ୍ରଥମେ 'ପଙ୍କରୁ ଜାତ' ସକଳ ପଦାର୍ଥ ଅର୍ଥରେ 'ପଙ୍କଜ' ଶବ୍ଦର ସୃଷ୍ଟି । ଏହା ମୂଳତଃ ଏକ ବିଶେଷଣ ପଦ । ପରେ ତାହା ପୁଷ୍ପବିଶେଷର ବିଶେଷଣ ରୂପେ ବ୍ୟବହୃତ ହେଲା । କ୍ରମେ ବିଶେଷ୍ୟ ପଦ ପୁଷ୍ପବିଶେଷ ଉହ୍ୟ ରହିଗଲା ଓ କେବଳ ବିଶେଷଣଟି

ତାହାର କାର୍ଯ୍ୟ ହେଲା ବିଶେଷ୍ୟର କାର୍ଯ୍ୟ ତୁଲାଇ ନେଲା । ଶେଷରେ ଏହା କେବଳ 'ପଦ୍ମ' ପୁଷ୍ପ ଅର୍ଥ ଗ୍ରହଣ କରିଛି । ତାହାର କାରଣ ହେଉଛି ସାଧାରଣ ଜନତା, କବି, ପ୍ରାବନ୍ଧିକ, ନାଟ୍ୟକାର ସମସ୍ତେ ପଙ୍କଜାତ ଶାମୁକା, ଜଳ ଅପେକ୍ଷା ପଦ୍ମର ହିଁ ଅଧିକ ଆଦର ଓ ବ୍ୟବହାର କରିବାକୁ ଲାଗିଲେ ।

'ମେଲାଣି' ଶବ୍ଦର ବର୍ତ୍ତମାନ ଅର୍ଥ 'ବିଦାୟ' । 'ବିଦାୟ' ଲାଗି 'ମେଲାଣି' ଶବ୍ଦର ବ୍ୟବହାର ମୂଳରେ ରହିଛି ଆମ ଜାତିର ସଭ୍ୟତା । ପ୍ରିୟଜନର ବିଚ୍ଛେଦ ଆମମାନଙ୍କ ପାଇଁ ଅସହ୍ୟ । ତେଣୁ ଏହାକୁ ବିଚ୍ଛେଦ ଭାବରେ ନ ଦେଖି ମିଳନ (>ମେଳାଣି) ଭାବରେ ଦେଖିବା ପାଇଁ ଆମେ ଅଗ୍ରହୀ । ବିଦାୟ ନେବା ବେଳେ ବନ୍ଧୁ, ଗୁରୁଜନ, ଆତ୍ମୀୟସ୍ୱଜନ 'ଯାଅ' ବଦଳରେ 'ଆସ' ବୋଲି କହିଥାନ୍ତି । 'ଯାଅ' ଭଳି ଦୁଃଖଦ ଶବ୍ଦ ପ୍ରୟୋଗ କରିବାକୁ ସେ ପ୍ରସ୍ତୁତ ନୁହେଁ । 'ଆସ'ର ଆନନ୍ଦ ଭିତରେ ସେମାନେ ବିଦାୟର ଦୁଃଖ ଭୁଲିଯିବାକୁ ଚାହାନ୍ତି । ଏହାରୁ ସାମାଜିକ ଅଭିରୁଚିର ପରିଚୟ ଦେଇଥାଏ ।

ନିତ୍ୟ ଅର୍ଥ ମୂଳରେ ରହିଛି 'ଅଭିଧା ଶକ୍ତି' ଓ ନୈମିତ୍ତିକ ଅର୍ଥ ମୂଳରେ ରହିଛି ଲକ୍ଷଣାଶକ୍ତି ଓ ବ୍ୟଞ୍ଜନାଶକ୍ତି ।

**ଲକ୍ଷଣାଶକ୍ତି**—ମୁଖ୍ୟ ଅର୍ଥରୁ ଭିନ୍ନ କିନ୍ତୁ ମୁଖ୍ୟାର୍ଥ ସହିତ ସମ୍ବନ୍ଧ ରଖିଥିବା ଅର୍ଥକୁ ଲକ୍ଷ୍ୟାର୍ଥ କୁହାଯାଏ । ଏହି ଲକ୍ଷ୍ୟାର୍ଥ ଶବ୍ଦର ଏକ ନୈମିତ୍ତିକ ଅର୍ଥ । ଯଥା—'ସାରା ଦେଶ ଦୁର୍ଭିକ୍ଷରେ ପ୍ରପୀଡ଼ିତ ।' ଏଠାରେ 'ଦେଶ' ଅର୍ଥ ରାଷ୍ଟ୍ର ନୁହେଁ 'ରାଷ୍ଟ୍ରବାସୀ' ।

**ବ୍ୟଞ୍ଜନାଶକ୍ତି**—ବ୍ୟଞ୍ଜନ ବ୍ୟାପାରକୁ ଧ୍ୱନନ ବ୍ୟାପାର ମଧ୍ୟ କୁହାଯାଇପାରେ । ଏହି ବ୍ୟାପାର ଦ୍ୱାରା ଅବଗତ ଅର୍ଥକୁ ବ୍ୟଙ୍ଗାର୍ଥ ବା ଧ୍ୱନ୍ୟର୍ଥ କୁହାଯାଇପାରେ । ଏଥିରେ ଶବ୍ଦ ତାହାର ଅଭିଧାନିକ ଅର୍ଥକୁ ତ୍ୟାଗ କରି ଅନ୍ୟ ଏକ ଉଦ୍ଦେଶ୍ୟମୂଳକ ଅର୍ଥ ଗ୍ରହଣ କରେ । ଯଥା—'ବୋହୂ, ତୋର ହାତଚୂଡ଼ି ବଜ୍ର ହେଉ ।'—ଏଠାରେ ହାତ, ଚୂଡ଼ି, ବଜ୍ର ହେଉ ଶବ୍ଦଗୁଡ଼ିକ ନିଜ ନିଜର ଅଭିଧାନିକ ଅର୍ଥ ତ୍ୟାଗକରି 'ସ୍ୱାମୀ ଦୀର୍ଘଜୀବୀ ହେଉ' ଅର୍ଥ ଗ୍ରହଣ କରିଛି ।

ଅନେକ ସମୟରେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରସଙ୍ଗରେ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରୁଥିଲେ ହେଁ ପ୍ରସଙ୍ଗ ଭିନ୍ନ ଭିନ୍ନ ହେଲେ ସେହି ନିର୍ଦ୍ଦିଷ୍ଟ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ । ପ୍ରତ୍ୟେକ ପ୍ରସଙ୍ଗରେ ସେହି ନିର୍ଦ୍ଦିଷ୍ଟ ଶବ୍ଦଟିର ଅର୍ଥ ନିତ୍ୟ; କିନ୍ତୁ ବିଭିନ୍ନ ପ୍ରସଙ୍ଗରେ ଏହାର ବହୁ ନୈମିତ୍ତିକ ଅର୍ଥ ସୃଷ୍ଟି ଲାଭ କରିଛି । ଉଦାହରଣ ସ୍ୱରୂପ 'କର' ଶବ୍ଦଟି ବିଭିନ୍ନ ପ୍ରସଙ୍ଗରେ ହାତ, କିରଣ, ଖଜଣା, କାର୍ଯ୍ୟ କରିବା ଲାଗି ଆଦେଶସୂଚକ କ୍ରିୟା (କର୍ ଧାତୁ), ଏକ ଜାତିର ସଙ୍କରବିଶେଷ ପ୍ରଭୃତି ଅର୍ଥ ବହନ

କରୁଅଛି । କୌଣସି ଗୋଟିଏ ବାକ୍ୟରେ 'କର' ଶବ୍ଦକୁ ଯଦି ଭିନ୍ନ ଭିନ୍ନ ଅର୍ଥରେ ପ୍ରକାଶ କରାଯାଇପାରେ ତେବେ 'କର' ଶବ୍ଦର ହେତୁରୁ ଏହା ନୈମିତ୍ତିକ ଅର୍ଥ ଭାବରେ ପରିଗଣିତ ହେବ ।

ଗୋଟିଏ ବାକ୍ୟରେ ଗୋଟିଏ ଶବ୍ଦକୁ ଭାଙ୍ଗି ଅଥବା ନଭାଙ୍ଗି ଭିନ୍ନ ଭିନ୍ନ ଅର୍ଥ ସୃଷ୍ଟି କରାଯାଏ । ଏହାକୁ ଯଥାକ୍ରମେ କୁହାଯାଏ ସଭଙ୍ଗ ଶ୍ଳେଷ ଓ ଅଭଙ୍ଗ ଶ୍ଳେଷ । ଯଥା—

'ବାବୁ ନାକ ଶିଖ ଦାନ ଯୋଗ୍ୟ ଯୋଷାକୁ
କହୁର କାନନ କର ଆଲିଙ୍ଗନକୁ ।

କବି ଉପେନ୍ଦ୍ରଭଞ୍ଜଙ୍କର ବୈଦେହୀଶ ବିଳାସ କାବ୍ୟରେ ପରିଦୃଷ୍ଟ ଏହି ପଦରେ 'ନାକ'ର ଲକ୍ଷ୍ମଣଙ୍କ ପାଇଁ ଉଦ୍ଦିଷ୍ଟ ଅର୍ଥ 'ନାସିକା', ସୂର୍ପଣଖା ପାଇଁ ଉଦ୍ଦିଷ୍ଟ ଅର୍ଥ 'ସ୍ୱର୍ଗ' । 'ନାକ' ଶବ୍ଦକୁ ନ ଭାଙ୍ଗି ଭିନ୍ନ ଭିନ୍ନ ଅର୍ଥ ସୃଷ୍ଟି କରାଯାଇଅଛି । ଏଠାରେ ଅଭଙ୍ଗ ଶ୍ଳେଷରେ ଦୁଇଟି ନୈମିତ୍ତିକ ଅର୍ଥର ସୃଷ୍ଟି କରାଯାଇଅଛି । 'କାନନ' ଅଭଙ୍ଗ ଭାବରେ 'ବିପିନ' ଅର୍ଥ ବହନ କରୁଅଛି ଓ ସୂର୍ପଣଖା ପାଇଁ ଉଦ୍ଦିଷ୍ଟ ହୋଇଅଛି । କିନ୍ତୁ ସଭଙ୍ଗ ଭାବରେ (କାନ,ନ) ଦୁଇଟି ଭିନ୍ନ ଶବ୍ଦର ଅର୍ଥ ବହନ କରିଅଛି, ଯଥା—'କର୍ଣ୍ଣ' ଓ 'ନାହିଁ' । ଅର୍ଥାତ୍ କର୍ଣ୍ଣକୁ ଛେଦନ କର ଓ ଅଲିଙ୍ଗନ କର ନାହିଁ ।

ଅନେକ ସମୟରେ ବାକ୍ୟରେ ଗୋଟିଏ ପଦ (ଶବ୍ଦ)ର ରୂପଗତ ଓ ଧ୍ୱନିଗତ ପରିବର୍ତ୍ତନ ନହେଲେ ମଧ୍ୟ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ । ଯଥା—'ବନ୍ଦଇ ଘନବାନ୍ଧବ ହର, ଯେ ତମ ଚୟ ଖଣ୍ଡନକାରୀ'—ଏଠାରେ 'ଘନ'ର ପ୍ରକୃତ ଅର୍ଥ ବାରିଦ । ବିଷ୍ଣୁଙ୍କ ଲାଗି ଉଦ୍ଦିଷ୍ଟ ବନ୍ଦନାରେ ଏହା ଏହି ଅର୍ଥକୁ ପ୍ରକାଶ କରୁଅଛି । କିନ୍ତୁ ସୂର୍ଯ୍ୟଙ୍କ ଲାଗି ଉଦ୍ଦିଷ୍ଟ ବନ୍ଦନା ଅର୍ଥରେ ଏହା 'ପଦ୍ମ' ଅର୍ଥ ପ୍ରକାଶ କରୁଅଛି । କିନ୍ତୁ ବାସ୍ତବରେ 'ଘନ'ର ଅର୍ଥ ମେଘ । ଏଠାରେ 'ଘନ'ର ଧ୍ୱନିଗତ ପରିବର୍ତ୍ତନ ନ ହେଲେ ମଧ୍ୟ ଅର୍ଥାତ୍ 'ଘନ' ରହିଲେ ମଧ୍ୟ 'ଘନ'ର ଅର୍ଥକୁ ଗ୍ରହଣ କରିଅଛି ।

ଅର୍ଥର ପ୍ରସାର, ସଙ୍କୋଚନ, ଅଦେଶ, ଉତ୍କର୍ଷ, ଅପକର୍ଷ ଘଟିଲେ ଯେଉଁ ନୂତନ ଅର୍ଥର ସୃଷ୍ଟି ହୁଏ, ତାହା ହେଉଛି ନୈମିତ୍ତିକ ଅର୍ଥ ।

ଶବ୍ଦର ବହୁଳ ପ୍ରୟୋଗ, ଅଳଙ୍କାର ପ୍ରୟୋଗ, ପ୍ରୟୋଗରେ ଅସାବଧାନତା ଅଜ୍ଞାନ ଦୋଷ, ଭୌଗୋଳିକ ବାତାବରଣର ପରିବର୍ତ୍ତନ, ଶିଷ୍ଟତା, ଅପ୍ରିୟ ସ୍ଥଳରେ ପ୍ରିୟ ପ୍ରୟୋଗ, ଅଶ୍ଳୀଳ ପରିବର୍ତ୍ତେ ଶ୍ଳୀଳ ପ୍ରୟୋଗ, ଭାବାବେଶ, ଅନ୍ୟ ଭାଷାରୁ ଅହରଣ, ଅଧାର ପରିବର୍ତ୍ତନ, ଶବ୍ଦରେ ବଳାଘାତର ପରିବର୍ତ୍ତନ, ନମ୍ରତା ପ୍ରଦର୍ଶନ, ନବୀନ ବସ୍ତୁର ନିର୍ମାଣ ତଥା ପ୍ରଚଳନ, ପ୍ରସଙ୍ଗ ଲାଘବ ପ୍ରଭୃତି ବହୁ କାରଣରୁ ଅର୍ଥର

ପରିବର୍ତ୍ତନ ହୋଇଥାଏ । ଏସବୁ କାରଣ ପୂର୍ବରୁ ଆଲୋଚିତ ହୋଇଅଛି । ଏହି କାରଣରୁ ପରିବର୍ତ୍ତିତ ଅର୍ଥଗୁଡ଼ିକ ହେଉଛି ନୈମିତ୍ତିକ ଅର୍ଥ ।

ଶବ୍ଦ ଯଦି ସର୍ବଦା ନିତ୍ୟ ଅର୍ଥ ପ୍ରକାଶ କରୁଥାଆନ୍ତା, ଅର୍ଥାତ୍ ଶବ୍ଦ ସହିତ ଯଦି ଅର୍ଥର ସମ୍ପର୍କ ସ୍ଥିର ବା ଅପରିବର୍ତ୍ତିତ ଥାଆନ୍ତା, ତେବେ କୌଣସି ଭାଷାର ଉନ୍ନତି ସାଧିତ ହୋଇପାରନ୍ତା ନାହିଁ । ତେଣୁ ପ୍ରତ୍ୟେକ ଭାଷା ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ଉଦ୍‌ଭାବନ କରିବାରେ ଅଗ୍ରସର । ଜୀବନ୍ତ ଭାଷା ବ୍ୟାକରଣର ବନ୍ଧନରେ ସବୁବେଳେ ବାନ୍ଧିହୋଇ ରହେ ନାହିଁ । ଯେଉଁ ଭାଷା ଅନ୍ଧ ପରି ବ୍ୟାକରଣର ବିଧି ବନ୍ଧନ ମାନିନିଏ, ତାହାର ମୃତ୍ୟୁ ଅବଶ୍ୟମ୍ଭାବୀ । ଅନେକ ଶବ୍ଦ ଅଧୁନା ପ୍ରଚଳିତ ବ୍ୟାକରଣର ନିୟମ ଅନୁସାରେ ଅଚଳ ହୋଇପଡ଼ିଲେ ହେଁ ପରବର୍ତ୍ତୀ କାଳରେ ଅବଶ୍ୟ ଏହାଲାଗି ବ୍ୟାକରଣ ରଚିତ ହେବ ଓ ତାହାକୁ ଶୁଦ୍ଧ ବୋଲି ସ୍ୱୀକୃତି ଦେବ । ଏହି କାରଣରୁ କବି କହନ୍ତି—

"ଲୌକିକାନାଂ ହି ସାଧୂନାମର୍ଥାଂ ବାଗନୁବର୍ତ୍ତତେ
ଋଷୀଣାଂ ପୁନରାଦ୍ୟାନାଂ ବାଚମର୍ଥୋଽନୁଧାବତି ।"

ଏହି ଅର୍ଥରେ ନୂତନ ନୂତନ ଶବ୍ଦ ଓ ଏକ ଶବ୍ଦରେ ନୂତନ ନୂତନ ଅର୍ଥର ଉଦ୍‌ଭାବନ ହିଁ ଭାଷାର ଏକ ବିଶିଷ୍ଟ କୃତିତ୍ୱ । ତେଣୁ ଶବ୍ଦର ଅର୍ଥ ପରିବର୍ତ୍ତନ ବା ନୂତନ ଅର୍ଥର ସୃଷ୍ଟି ଭାଷାର ଏକ ଦୂଷଣ ନୁହେଁ, ଏକ ଭୂଷଣ ।

ମଣିଷ ବୌଦ୍ଧିକ କ୍ଷେତ୍ରରେ ଯେତିକି ଯେତିକି ଅଗ୍ରସର ହେଉଛି ତାର ଭାବପ୍ରକାଶ ସେତିକି ସେତିକି ସୂକ୍ଷ୍ମ, ପରୋକ୍ଷ ଓ ବିଦଗ୍ଧ ହେବାକୁ ଯାଉଛି । ଫଳରେ ଏକ ଶବ୍ଦ କ୍ରମଶଃ ଅଧିକରୁ ଅଧିକ ଅର୍ଥ ବହନ କରିବାକୁ ସମର୍ଥ ହେଉଛି । ଶବ୍ଦର ଅର୍ଥରେ ଯଦି ବୈଚିତ୍ର୍ୟ ସମ୍ପାଦିତ ହେଉନଥାନ୍ତା, ତେବେ ଭାଷା ସୀମିତ ଓ ଦୁର୍ବଳ ହୋଇପଡ଼ନ୍ତା । ଅର୍ଥର ବୈଚିତ୍ର୍ୟ ଯୋଗୁ ହିଁ ଶବ୍ଦ ପ୍ରୟୋଗର କ୍ଷେତ୍ର ଅଧିକରୁ ଅଧିକ ବ୍ୟାପକ ହୁଏ ଓ ତେଣୁ ଭାଷା ବଳିଷ୍ଠରୁ ବଳିଷ୍ଠତର ହୁଏ । ଅର୍ଥର ପରିବର୍ତ୍ତନ ତେଣୁ ବିନାଶର ନୁହେଁ, ବିକାଶର ପରିଚାୟକ । ଏହି ପରିବର୍ତ୍ତନ ଯୋଗୁଁ ଭାଷାର ହୁଏ ଆତ୍ମିକ ବିକାଶ, କାରଣ ଅର୍ଥ ହେଉଛି ଭାଷାର ଆତ୍ମା ।



# ● ଦଶମ ପରିଚ୍ଛେଦ ●

## ବାକ୍ୟ-ବିଜ୍ଞାନ (Syntax)

ବାକ୍ୟବିଜ୍ଞାନରେ ବାକ୍ୟ ଗଠନ ପ୍ରକ୍ରିୟା ସମ୍ପର୍କରେ ବର୍ଣ୍ଣନାତ୍ମକ, ତୁଳନାତ୍ମକ ଓ ଐତିହାସିକ ଦୃଷ୍ଟିକୋଣରୁ ଅଧ୍ୟୟନ କରାଯାଇଥାଏ । ବାକ୍ୟର ସାଧାରଣ ସଂଜ୍ଞା ହେଉଛି, 'ପୂର୍ଣ୍ଣ ରୂପେ ମନର ଭାବପ୍ରକାଶ କରୁଥିବା ସାର୍ଥକ ଶବ୍ଦ ବା ଶବ୍ଦ-ସମୂହର ସମାହାର ହେଉଛି ବାକ୍ୟ' । ଭାରତୀୟ ଭାଷାବିତ୍ ପତଞ୍ଜଳି (ଅନୁମାନିକ ଖ୍ରୀ. ପୂ. ୧୫୦ ) ଏବଂ ୟୁରୋପୀୟ ବିଦ୍ୱାନ୍ ଥାକ୍ସ (ଖ୍ରୀ ପୂ. ପ୍ରଥମ ଶତାବ୍ଦୀ) ପ୍ରଭୃତି ଏପରି ମତର ପ୍ରବକ୍ତା ଥିଲେ । ବାକ୍ୟ ହେଉଛି ଭାଷାର ମୂଳଭିତ୍ତି । ମାନବର ଚିନ୍ତା, ଉପଲବ୍ଧି, ଅଭିବ୍ୟକ୍ତି ସବୁ ଏହି ବାକ୍ୟଦ୍ୱାରା ହିଁ ସମ୍ଭବ ହୋଇଥାଏ । ତେବେ 'ବାକ୍ୟ ଶବ୍ଦମାନଙ୍କର ସମାହାର' କି 'ଶବ୍ଦ ବାକ୍ୟର କୃତ୍ରିମ ଖଣ୍ଡ', ଏ ସମ୍ପର୍କରେ ମତ-ଦ୍ୱୈଧ ରହିଛି । ଅନ୍ୱିତାଭିଧାନବାଦ ଅନୁଯାୟୀ ବାକ୍ୟ ହିଁ ମୂଳତତ୍ତ୍ୱ, ଶବ୍ଦ ଏହାର ଖଣ୍ଡିତ ଅଂଶ, କିନ୍ତୁ ଅଭିହିତାନ୍ୱୟବାଦ ଅନୁଯାୟୀ ପଦ ହିଁ ମୂଳତତ୍ତ୍ୱ ଓ ବାକ୍ୟ ଏହି ପଦମାନଙ୍କର ଯୋଗଦ୍ୱାରା ଗଠିତ ରୂପ । ଭର୍ତ୍ତୃହରି ତାଙ୍କର 'ବାକ୍ୟ-ପଦୀୟ' ଗ୍ରନ୍ଥର ବ୍ରହ୍ମକାଣ୍ଡରେ ଉଲ୍ଲେଖ କରିଛନ୍ତି ଯେ ବାକ୍ୟ ହିଁ ମୂଳତତ୍ତ୍ୱ । ପୃଥିବୀରେ ଏପରି ଅନେକ ଭାଷା ଅଛି, ଯହିଁରେ ବାକ୍ୟର ଶବ୍ଦ ରୂପରେ କୃତ୍ରିମ ବିଭାଜନ ନାହିଁ । ଏପରି ଭାଷାମାନଙ୍କରେ ବାକ୍ୟ ଅଛି, ଶବ୍ଦ ନାହିଁ ।

ସବୁବେଳେ ବାକ୍ୟ ଏକାଧିକ ଶବ୍ଦ-ସମୂହର ସମାହାର ନୁହେଁ, ଏହା ଏକ ଶବ୍ଦବିଶିଷ୍ଟ ମଧ୍ୟ ହୋଇପାରେ । ଛୋଟ ଶିଶୁଟିଏ କ୍ଷୁଧାର୍ତ୍ତ ହୋଇ ଯେତେବେଳେ ମାଆକୁ କହେ, 'ଭାତ', ସେତେବେଳେ ଏକମାତ୍ର 'ଭାତ' ଶବ୍ଦ ତାହାର ପୂର୍ଣ୍ଣ ଭାବ ପ୍ରକାଶ କରିପାରେ । କଥୋପକଥନ କାଳରେ ଏକ ଶବ୍ଦବିଶିଷ୍ଟ ବାକ୍ୟ ମଧ୍ୟ ସୃଷ୍ଟି ହୋଇଥାଏ । ଯଥା—

ବାପା—ହରି, ତୁ କଲେଜକୁ ଯିବୁ ନାହିଁ କି ?
ହରି – ଯିବି ।

ବାପା—ସୀତା ?
ହରି—ଗଲାଣି ।
ବାପା—କଲେଜ ଛୁଟି ହେବା ଖଣି ଫେରିଥିବ ?
ହରି—ହଁ ।

ଏ କଥୋପକଥନରେ ଯିବ, ସୀତା, ଗଲାଣି, ହଁ ଗୋଟିଏ ଗୋଟିଏ ଶବ୍ଦ ହେଲେହେଁ ଗୋଟିଏ ଗୋଟିଏ ବାକ୍ୟ । ଖାଅ, ପିଅ, ନାଚ, କୁଦ, ହସ, ଖେଳ ଇତ୍ୟାଦି ଆଦେଶାତ୍ମକ କ୍ରିୟାପଦ ମଧ୍ୟ ପ୍ରତ୍ୟେକ ଏକ ଏକ ବାକ୍ୟ ।

‘ବାକ୍ୟଦ୍ୱାରା ମନର ଭାବ ପୂର୍ଣ୍ଣରୂପେ ପ୍ରକାଶ ପାଏ’—ଏ ସମ୍ପର୍କରେ ମଧ୍ୟ ମତାନୈକ୍ୟ ଲକ୍ଷ୍ୟ କରାଯାଏ । ମନୁଷ୍ୟ ତା’ର ସମଗ୍ର ଭାବକୁ ଏକାଧିକ ବାକ୍ୟରେ ବ୍ୟକ୍ତ କରେ । କେତେଗୁଡ଼ିଏ ବାକ୍ୟ ଶୃଙ୍ଖଳାକ୍ରମେ ସଜ୍ଜିତ ହେଲେ ଯାଇ ମନର ଭାବ ପୂର୍ଣ୍ଣ ରୂପେ ପ୍ରକାଶ ପାଏ । ପ୍ରକୃତରେ ପ୍ରତ୍ୟେକ ବାକ୍ୟ ଏକ ଭାବର ଖଣ୍ଡିତାଂଶକୁ ପ୍ରକାଶ କରେ । ମନୋବିଜ୍ଞାନବିତ୍‌ମାନଙ୍କ ମତରେ ମନୁଷ୍ୟର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଭାବର ଏକ ଅବିଚ୍ଛିନ୍ନ ଧାରା ପ୍ରବାହିତ ହେଉଥାଏ, ମଧ୍ୟେ ମଧ୍ୟେ ଅସୁଥିବା ଶ୍ରେଣୀବଦ୍ଧ ଭାବ ସେ ଧାରାର କେତୋଟି ଲହରୀ ଓ ଗୋଟିଏ ଗୋଟିଏ କ୍ଷୁଦ୍ରାତିକ୍ଷୁଦ୍ର ଲହରୀ ।

ମୋଟାମୋଟି ଭାବରେ ବାକ୍ୟର ଭାଷାତାତ୍ତ୍ୱିକ ସଂଜ୍ଞା ହେଉଛି—ଏହା ସାର୍ଥକ ଧ୍ୱନିମାନଙ୍କର ସମଷ୍ଟି ଯାହା ସମ୍ପୂର୍ଣ୍ଣ ଭାବପ୍ରକାଶ ଦୃଷ୍ଟିରୁ ଅପୂର୍ଣ୍ଣ ହେଲେ ହେଁ ବ୍ୟାକରଣିକ ଦୃଷ୍ଟିରୁ ସ୍ୱୟଂସମ୍ପୂର୍ଣ୍ଣ ଓ ଯାହିଁରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କ୍ରିୟାଧାରର ଅଭାବ ମିଳେ ।

**ବାକ୍ୟର ଲକ୍ଷଣ**—ଏକ ସାର୍ଥକ ବାକ୍ୟରେ ୫ଟି ଆବଶ୍ୟକତା ରହିଛି । ବାକ୍ୟର ସାର୍ଥକତା ପ୍ରମାଣ ପାଇଁ ଏହା ହେଉଛି ପାଞ୍ଚୋଟି ଲକ୍ଷଣ, ଯଥା—ସାର୍ଥକତା, ଯୋଗ୍ୟତା, ଆକାଙ୍‌କ୍ଷା, ଆସତ୍ତି ବା ସନ୍ନିଧି ଓ ଅନ୍ୱୟ ।

**(୧) ସାର୍ଥକତା**—ବାକ୍ୟରେ ବ୍ୟବହୃତ ଶବ୍ଦଗୁଡ଼ିକର ସମୁଚିତ ଅର୍ଥ ରହିଥିବ ।

**(୨) ଯୋଗ୍ୟତା**—ବାକ୍ୟ ମଧ୍ୟରେ ବ୍ୟବହୃତ ପଦମାନଙ୍କର ପାରସ୍ପରିକ ପ୍ରସଙ୍ଗାନୁକୂଳ ଅର୍ଥଦ୍ୟୋତକ ସଂଗତି ହେଉଛି ଯୋଗ୍ୟତା । ଏହାର ଅଭାବରେ ବାକ୍ୟଟି ଅର୍ଥହୀନ ହୋଇଯିବ । ଯଥା—(କ) ଘରଗୁଡ଼ିକ ଦଉଡ଼ୁଛନ୍ତି, (ଖ) ସେ ନିଆଁ ପିଇ ଶୋଷ ମେଣ୍ଟାଇଲା, (ଗ) ଘୋଡ଼ା ପର୍ବତରେ ଉଡ଼ୁଛି ।

ଘରଗୁଡ଼ିକର ଦଉଡ଼ିବା ଯୋଗ୍ୟତା ନାହିଁ, ମଣିଷର ନିଆଁ ପିଇବା ଯୋଗ୍ୟତା ନାହିଁ, ଘୋଡ଼ାର ପର୍ବତରେ ଉଡ଼ିବା ଯୋଗ୍ୟତା ନାହିଁ । ଏ ସବୁ ସ୍ଥଳରେ

ପଦମାନଙ୍କର ପାରସ୍ପରିକ ଅର୍ଥ-ସଙ୍ଗତି ଅଭାବରୁ ଅର୍ଥାତ୍ ଯୋଗ୍ୟତା ଅଭାବରୁ ବାକ୍ୟର ଲକ୍ଷଣ ଲକ୍ଷ୍ୟ କରାଯାଉନାହିଁ । ତେଣୁ ଏଗୁଡ଼ିକ ବାକ୍ୟ ନୁହେଁ ।

(୩) ଆକାଙ୍‌କ୍ଷା—ଅର୍ଥବୋଧ ନିମିତ୍ତ ଏକ ବା ଏକାଧିକ ପଦ ଅନ୍ୟ ପଦ ବା ପଦମାନଙ୍କର ଅପେକ୍ଷା ରଖେ । ଏହି ଅପେକ୍ଷାକୁ କୁହାଯାଏ ଆକାଙ୍‌କ୍ଷା । ବାକ୍ୟରେ ଏପରି ପଦବିନ୍ୟାସ ହେବା ଆବଶ୍ୟକ ଯଦ୍ୱାରା ଏହି ଆକାଙ୍‌କ୍ଷା ପୂର୍ଣ୍ଣ ହୋଇଥିବ ଏବଂ ଫଳରେ ଅର୍ଥର ଅପୂର୍ଣ୍ଣତା ରହି ନଥିବ । ଉଦାହରଣ- (କ) ଆମ୍ଭେମାନେ ଗୁରୁମାନଙ୍କର······ । (ଖ) ପିଲାମାନେ ବାଟରେ ଯାଉଯାଉ··· ·· । ଏଇ ଦୁଇଟି ଉଦାହରଣରେ ପ୍ରତ୍ୟେକରେ ବ୍ୟବହୃତ ପଦଗୁଡ଼ିକ ଅର୍ଥର ବା ଭାବର ପୂର୍ଣ୍ଣ ଅବବୋଧ ପାଇଁ ଅନ୍ୟ ପଦମାନଙ୍କର (ଯଥାକ୍ରମେ 'ଉପଦେଶ ମାନି ଚାଲିବା ଉଚିତ' ଓ 'ଗୋଟିଏ ସାପ ଦେଖିଲେ') ଅପେକ୍ଷା ରଖୁଛନ୍ତି । ତେଣୁ ଏ ଦୁଇଟି ଉଦାହରଣରେ ବାକ୍ୟର ଲକ୍ଷଣ ଲକ୍ଷ୍ୟ କରାଯାଉନାହିଁ ।

(୪) ଆସତ୍ତି—ବାକ୍ୟରେ ପଦମାନଙ୍କର ସାର୍ଥକ ଶୃଙ୍ଖଳିତ ସନ୍ନୀକରଣକୁ କୁହାଯାଏ ଆସତ୍ତି । ଆସତ୍ତି ଅଭାବରେ ଭାବ ଅଭିବ୍ୟକ୍ତିରେ ବ୍ୟାଘାତ ଘଟେ । ଉଦାହରଣ—ଉଦ୍‌ଭାସିତ ସମସ୍ତ ତା ବିଗତ ହେଲ ରାତିର ମାନସ ପଟରେ ସ୍ମୃତି । ଏଠାରେ ପଦମାନଙ୍କର ଯଥାର୍ଥ ବିନ୍ୟାସ ବା ଶୃଙ୍ଖଳିତ ସନ୍ନୀକରଣ ନ ହୋଇ-ଥିବାରୁ ଭାବଧାରା ଅନବଚ୍ଛିନ୍ନ ରହୁନାହିଁ । ତେଣୁ ଏହା ବାକ୍ୟ ନୁହେଁ । କିନ୍ତୁ ଏହାକୁ ଶୃଙ୍ଖଳିତ ଭାବରେ ସଜ୍ଜିତ କଲେ, ଏହା ଭାବଧାରାର ଅଭିବ୍ୟକ୍ତି କରିପାରିବ ଓ ଗୋଟିଏ ବାକ୍ୟରେ ପରିଣତ ହୋଇପାରିବ । ଯଥା—ବିଗତ ରାତିର ସମସ୍ତ ସ୍ମୃତି ତା' ମାନସ ପଟରେ ଉଦ୍‌ଭାସିତ ହେଲ ।

(୫) ଅନ୍ୱିତ—ଅନ୍ୱୟ ହେଉଛି ବ୍ୟାକରଣ ଦୃଷ୍ଟିରୁ ଏକରୂପତା । ଇଂରାଜୀରେ ଏହାକୁ କହନ୍ତି Concordance । ବଚନ, କାରକ, ଲିଙ୍ଗ, ପୁରୁଷ ଆଦି ଦୃଷ୍ଟିରୁ ବାକ୍ୟରେ ଅନ୍ୱୟ ଆବଶ୍ୟକ । ଉଦାହରଣ ସ୍ୱରୂପ, ସଂସ୍କୃତରେ ଅକାରାନ୍ତ ନପୁଂସକ ଲିଙ୍ଗ 'ଫଳ' ଶବ୍ଦର ଦ୍ୱିତୀୟା ବିଭକ୍ତି ଏକବଚନରେ ରୂପ 'ଫଳଂ' । ଫଳର ବିଶେଷଣ ପଦ 'ସୁନ୍ଦର' ହୁଏ ତେବେ ଏହି ବିଭକ୍ତି ଏକବଚନରେ ହୁଏ 'ସୁନ୍ଦରଂ ଫଳଂ' । ବିଭକ୍ତି ଓ ବଚନର ଅନ୍ୱୟ ରକ୍ଷା କରାଯାଇ ସୁନ୍ଦରାତ୍ ଫଳାତ୍, ସୁନ୍ଦରୟୋଃ ଫଳୟୋଃ, ସୁନ୍ଦରେଷୁ ଫଳେଷୁ ଇତ୍ୟାଦି ହୁଏ । ଲିଙ୍ଗ ବଦଳିଗଲେ ବିଶେଷଣ ତଦନୁଯାୟୀ ବଦଳିଯାଏ, ଯଥା—ସୁନ୍ଦରଃ ନରଃ, ସୁନ୍ଦରୀ ନାରୀ ଇତ୍ୟାଦି । ହିନ୍ଦୀରେ ସେହିପରି ଅନ୍ୱୟ ରକ୍ଷାକରାଯାଇ 'ରାମ ଜା ରହା ହୈ', 'ସୀତା ଜା ରହୀ ହୈ' ହୁଏ । 'ରାମ ଜା ରହୀ ହୈ' ଓ 'ସୀତା ଜା ରହା ହୈ' କହିଲେ ଅନ୍ୱୟ ରହିବ ନାହିଁ ।

**ବାକ୍ୟର ଅଙ୍ଗ**—ଲିଖିତ ଭାଷାରେ ବାକ୍ୟର ଦୁଇଟି ସ୍ୱାଭାବିକ ଅଙ୍ଗ ରହିଛି—ଅଗ୍ର ଓ ପଶ୍ଚ । ସାଧାରଣତଃ ପ୍ରତ୍ୟେକ ବାକ୍ୟରେ ତାର ପୂର୍ବବର୍ତ୍ତୀ ବାକ୍ୟର କିଛି ଅଂଶକୁ ପୁନରାବୃତ୍ତି କରାଯାଇଥାଏ । ପୂର୍ବ ବାକ୍ୟର ପଶ୍ଚ ଅଂଶ ପରବର୍ତ୍ତୀ ବାକ୍ୟର ଅଗ୍ରାଂଶରେ ପରିଣତ ହୋଇଯାଏ । ଉଦାହରଣ ସ୍ୱରୂପ—

‘ଜଣେ ରାଜା ଥିଲେ । ସେହି ରାଜାଙ୍କର ଦୁଇଜଣ ରାଣୀ ଥିଲେ । ଦୁଇ-ଜଣଙ୍କ ଭିତରୁ ରାଜା ସାନ ରାଣୀଙ୍କୁ ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଯୋଗୁ ବେଶୀ ଭଲ-ପାଉଥିଲେ । ଏହି ସୌନ୍ଦର୍ଯ୍ୟ ପଡ଼ୋଶୀ ରାଜ୍ୟମାନଙ୍କରେ ପ୍ରଚାରିତ ହେଲା । ଏକ ପଡ଼ୋଶୀ ରାଜ୍ୟର ରାଜା ଏ ରାଜ୍ୟକୁ ଆକ୍ରମଣ କଲେ । ଏ ରାଜ୍ୟର ରାଜା ପରାଜିତ ହୋଇ ସାନ ରାଣୀଙ୍କୁ ସଙ୍ଗରେ ଧରି ରାଜ୍ୟରୁ ପଳାଇଗଲେ । ପଥରେ ସାନ ରାଣୀଙ୍କ ସହ ରାଜା ଧରାହୋଇ ନିହତ ହେଲେ ।’ ଏ ବାକ୍ୟଗୁଡ଼ିକୁ ଶିକ୍ଷିତ ବ୍ୟକ୍ତି ସଂକ୍ଷେପରେ ପ୍ରକାଶ କରିପାରେ, “ଜଣେ ରାଜା ତାଙ୍କର ଦୁଇଜଣ ରାଣୀଙ୍କ ଭିତରୁ ସାନ ରାଣୀଙ୍କୁ ତାଙ୍କର ଅପୂର୍ବ ସୌନ୍ଦର୍ଯ୍ୟ ଯୋଗୁ ବେଶୀ ଭଲ-ପାଉଥିଲେ । ଏ ସୌନ୍ଦର୍ଯ୍ୟ ପ୍ରଚାରିତ ହେବାରୁ ଜଣେ ପଡ଼ୋଶୀ ରାଜାଦ୍ୱାରା ପରାଜିତ ହୋଇ ରାଜା ରାଜ୍ୟରୁ ପଳାଉଥିବା ଅବସ୍ଥାରେ ସାନ ରାଣୀଙ୍କ ସହ ଧରାହୋଇ ନିହତ ହେଲେ ।” ବାକ୍ୟରେ ପୂର୍ବବର୍ତ୍ତୀ ବାକ୍ୟର କିଛି ଅଂଶର ପୁନରାବୃତ୍ତି ଅନାବଶ୍ୟକ । ଅନାବଶ୍ୟକ ପୁନରାବୃତ୍ତି ହଟିଯିବା ପରେ ବାକ୍ୟର ଦୁଇଟି ଅଙ୍ଗ ରହିଯାଏ । ଯଥା—ଉଦ୍ଦେଶ୍ୟ (Subject) ଓ ବିଧେୟ (Predicate) ।

ଯାହା ପାଇଁ କିଛି କୁହାଯାଏ, ତାହା ହେଉଛି ଉଦ୍ଦେଶ୍ୟ ଓ ଯାହା କୁହାଯାଏ ତାହା ହେଉଛି ବିଧେୟ । ଉଦ୍ଦେଶ୍ୟକୁ କର୍ତ୍ତା ଅଂଶ ଓ ବିଧେୟକୁ କ୍ରିୟା ଅଂଶ ମଧ୍ୟ କୁହାଯାଇପାରେ । ‘ପିଲାଟି ଯାଉଅଛି ।’—ଏହି ବାକ୍ୟରେ ‘ପିଲା’ ଉଦ୍ଦେଶ୍ୟ ଓ ‘ଯାଉଅଛି’ ବିଧେୟ । ବାକ୍ୟରେ କର୍ତ୍ତାପଦ ଓ କ୍ରିୟାପଦ ବ୍ୟତୀତ ଅନେକ ଅନ୍ୟପଦ ମଧ୍ୟ ରହିପାରନ୍ତି । ସେମାନଙ୍କ ମଧ୍ୟରୁ କେତେକ ‘କର୍ତ୍ତା’ର ଓ କେତେକ ‘କ୍ରିୟା’ର ଅନୁଗାମୀ । ‘ଶ୍ରେଷ୍ଠ ପିଲାଟି ପିଣ୍ଡାରେ ଗୁରୁଣ୍ଡି ଗୁରୁଣ୍ଡି ଯାଉଅଛି ।’—ଏହି ବାକ୍ୟରେ ‘ଶ୍ରେଷ୍ଠ’ ପଦଟି କର୍ତ୍ତାକୁ ବିଶେଷିତ କରୁଅଛି ଓ ପିଣ୍ଡାରେ ଗୁରୁଣ୍ଡି ଗୁରୁଣ୍ଡି ପଦଗୁଡ଼ିକ କ୍ରିୟାକୁ ବିଶେଷିତ କରୁଅଛନ୍ତି । ଏଥିରେ ‘ଶ୍ରେଷ୍ଠ ପିଲାଟି’ ଉଦ୍ଦେଶ୍ୟ ଅଙ୍ଗ ଓ ‘ପିଣ୍ଡାରେ ଗୁରୁଣ୍ଡି ଗୁରୁଣ୍ଡି ଯାଉଅଛି’ ବିଧେୟ ଅଙ୍ଗ । ଅବଶ୍ୟ ବାକ୍ୟର ଏପରି ଅଙ୍ଗୀକରଣ କେବଳ ଇଉରୋପୀୟ ପରିବାରର ଭାଷାମାନଙ୍କ ପକ୍ଷରେ ପ୍ରଯୋଜ୍ୟ ।

**ବାକ୍ୟର ପ୍ରକାର ଭେଦ**—ପଦନ୍ୟାସ ଦୃଷ୍ଟିରୁ ବାକ୍ୟକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯଥା—

(୧) ଅଯୋଗାତ୍ମକ (Isolating)—ଅଯୋଗାତ୍ମକ ବାକ୍ୟରେ ଶବ୍ଦ ଅଲଗା ଅଲଗା ରହିଥାନ୍ତି ଓ ଏଗୁଡ଼ିକର ସ୍ଥାନ ନିର୍ଦ୍ଦିଷ୍ଟ ରହିଥାଏ । ସମ୍ବନ୍ଧତତ୍ତ୍ୱ ପାଇଁ ଶବ୍ଦଗୁଡ଼ିକରେ କୌଣସି ପରିବର୍ତ୍ତନ କରଯାଏ ନାହିଁ । ଶବ୍ଦଗୁଡ଼ିକର ସ୍ଥାନରୁ ହିଁ ସମ୍ବନ୍ଧତତ୍ତ୍ୱ ନିର୍ଣ୍ଣୀତ ହୋଇଥାଏ । ଏପରି ବାକ୍ୟ ଚୀନା ଭାଷାର ଏକ ବିଶିଷ୍ଟ ଲକ୍ଷଣ । ଉଦାହରଣ—

ନ୍‌ଗୋ ତ ନି—ମୁଁ ତୋତେ ମାରେ ।
ନି ତ ନ୍‌ଗୋ—ତୁ ମୋତେ ମାରୁ ।
ତା ଲେନ୍—ବଡ଼ ଲୋକ ।
ଲେନ୍ ତା – ଲୋକଟି ବଡ଼ (ଅଟେ) ।

ଏହି ଉଦାହରଣମାନଙ୍କରୁ ଜଣାପଡୁଛି ପ୍ରତ୍ୟୟ ଯୋଗ କରାନଯାଇ ମଧ୍ୟ ସମ୍ବନ୍ଧତତ୍ତ୍ୱ ସ୍ପଷ୍ଟ ହେଉଅଛି ଏବଂ ବ୍ୟବହାର ସ୍ଥାନ ଅନୁଯାୟୀ ପଦ ବିଶେଷ୍ୟ, ବିଶେଷଣ ଓ କ୍ରିୟାଙ୍କର ସୂଚନା ଦେଉଅଛି ।

(୨) ଯୋଗାତ୍ମକ ଭାଷା (Agglutinating)—ଯୋଗାତ୍ମକ ବାକ୍ୟରେ ସମ୍ବନ୍ଧତତ୍ତ୍ୱ ଓ ଅର୍ଥତତ୍ତ୍ୱ ସଂଯୁକ୍ତ ହୋଇ ରହିଥାଏ । ପୃଥିବୀର ଅଧିକାଂଶ ଭାଷାର ବାକ୍ୟ ଯୋଗାତ୍ମକ । ସଂସ୍କୃତରେ ଏକ ବାକ୍ୟ ଦୃଷ୍ଟାନ୍ତ ସ୍ୱରୂପ ନିଆଯାଉ—

"ରାମଃ ପ୍ରଭାତେ ମୃଗାନ୍ ହସ୍ତେନ ତଣ୍ଡୁଲଂ ଅନସ୍ୟ ଭିକ୍ଷୁକାୟ ଦଦାତି' ।— ଏହି ବାକ୍ୟରେ ରାମ (ଅର୍ଥତତ୍ତ୍ୱ) + ଅଃ (ସମ୍ବନ୍ଧତତ୍ତ୍ୱ) = ରାମଃ, ସେହିପରି ପ୍ରଭାତ (ଅର୍ଥତତ୍ତ୍ୱ) + ଏ (ସମ୍ବନ୍ଧତତ୍ତ୍ୱ) = ପ୍ରଭାତେ, ମୃଗ (ଅର୍ଥତତ୍ତ୍ୱ) + ଆନ୍ (ସମ୍ବନ୍ଧତତ୍ତ୍ୱ) = ମୃଗାନ୍, ହସ୍ତ (ଅର୍ଥତତ୍ତ୍ୱ) + ଏନ (ସମ୍ବନ୍ଧତତ୍ତ୍ୱ) = ହସ୍ତେନ ଇତ୍ୟାଦି ।

ବ୍ୟାକରଣିକ ଗଠନ ଦୃଷ୍ଟିରୁ ବାକ୍ୟକୁ ତିନିଭାଗରେ ବିଭକ୍ତ କରାଯାଇ-ପାରେ, ଯଥା—

(୧) ସରଳ ବାକ୍ୟ (Simple Sentence)—ଯେଉଁ ବାକ୍ୟରେ ଗୋଟିଏ ଉଦ୍ଦେଶ୍ୟ ଓ ଗୋଟିଏ ବିଧେୟ ଥାଏ, ତାହାକୁ ସରଳ ବାକ୍ୟ କୁହାଯାଏ । ଯଥା—ସେ କାଲି କଟକ ଯାଇଥିଲେ ।

(୨) ଯୌଗିକ ବାକ୍ୟ (Compound Sentence)—ଦୁଇ ବା ତତୋଽଧିକ ପରସ୍ପର ନିରପେକ୍ଷ ସରଳ ବାକ୍ୟ ସଂଯୋଗରେ ଗଠିତ ବାକ୍ୟକୁ କୁହାଯାଏ ଯୌଗିକ ବାକ୍ୟ । ଯଥା—ସନ୍ଧ୍ୟା ହେଲା, ସୂର୍ଯ୍ୟ ପଶ୍ଚିମ ଗଗନରେ ଅସ୍ତ ହୋଇଗଲେ ଓ ପକ୍ଷୀମାନେ କଳରବ କରି ନିଜ ନିଜ ବସାକୁ ବାହୁଡ଼ିଗଲେ ।

(୩) ଜଟିଳ ବାକ୍ୟ (Complex Sentence)—ଯେଉଁ ବାକ୍ୟରେ ଗୋଟିଏ ପ୍ରଧାନ ଉପବାକ୍ୟ (Principal Clause) ଓ ଅନ୍ୟ ଆଶ୍ରିତ ଉପବାକ୍ୟ (Subordinate Clause)ର ପରସ୍ପର ସାପେକ୍ଷ ମିଳନ ଘଟିଥାଏ, ତାହାକୁ ଜଟିଳ ବାକ୍ୟ କୁହାଯାଏ । ଯଥା—ମୁଁ ଯେତେବେଳେ ପାଠ ପଢ଼ୁଥିଲି, ତୁମେମାନେ ସେତେବେଳେ ଗପ କରୁଥିଲ ।

ଭାବ ବା ଅର୍ଥ ଦୃଷ୍ଟିରୁ ବାକ୍ୟକୁ ନିମ୍ନଲିଖିତ ପ୍ରକାରରେ ବିଭକ୍ତ କରାଯାଇ-ପାରେ—

(୧) ଉକ୍ତି-ସୂଚକ—ଗୋବିନ୍ଦ ପାଠ ପଢ଼ୁଅଛି ।

(୨) ନାସ୍ତି-ସୂଚକ—ଗୋବିନ୍ଦ ପାଠ ପଢ଼ୁନାହିଁ ।

(୩) ପ୍ରଶ୍ନ-ସୂଚକ—ଗୋବିନ୍ଦ ପାଠ ପଢ଼ୁଛି କି ?

(୪) ଆଦେଶ-ସୂଚକ—ମନଦେଇ ପାଠ ପଢ଼ ।

(୫) ବିସ୍ମୟ-ସୂଚକ—ପୂର୍ଣ୍ଣିମା ଚନ୍ଦ୍ରର କିରଣ କି ଆରାମଦାୟକ !

(୬) ସଂଶୟ-ସୂଚକ—ସେ କାଲି ଏଠାକୁ ଆସିପାରେ ।

(୭) ଇଚ୍ଛା-ସୂଚକ—ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।

କ୍ରିୟାର ସ୍ଥିତି ଦୃଷ୍ଟିରୁ ବାକ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ।

(୧) **କ୍ରିୟାଯୁକ୍ତ ବାକ୍ୟ**—ଆମ ବଗିଚାରେ ଅନେକ ଫୁଲ ଫୁଟିଅଛି ।

(୨) **କ୍ରିୟାବିହୀନ ବାକ୍ୟ**—ଆମ ବଗିଚାରେ ଅନେକ ଫୁଲ ।

ରଚନା ଦୃଷ୍ଟିରୁ ବାକ୍ୟ ଦୁଇ ଭାଗରେ ବିଭକ୍ତ । ପୂର୍ଣ୍ଣ ବାକ୍ୟ ଓ ଅପୂର୍ଣ୍ଣ ବାକ୍ୟ । ପୂର୍ଣ୍ଣ ବାକ୍ୟରେ ବାକ୍ୟ ପାଇଁ ଆବଶ୍ୟକ ସବୁ ଉପକରଣ ରହିଥାଏ । ଅପୂର୍ଣ୍ଣ ବାକ୍ୟରେ ଏକ ବା ଏକାଧିକ ବାକ୍ୟୋପକରଣ ବା ପଦାବଳୀର ଲୋପ ହୋଇଥାଏ । ପ୍ରଶ୍ନର ଉତ୍ତରରେ କୁହାଯାଉଥିବା ଏକ ବା ଏକାଧିକ (ସ୍ୱଳ୍ପ ପରିମାଣରେ) ପଦ-ବିଶିଷ୍ଟ ବାକ୍ୟ ହେଉଛି ଅପୂର୍ଣ୍ଣ ବାକ୍ୟ । ଉଦାହରଣ—

ପ୍ରଶାନ୍ତ—କିରେ, ଆଜ ମନ୍ଦିରକୁ ଯିବୁ ନାହିଁ କି ?
ସୁଶାନ୍ତ—ଯିବି ।
ଏଠାରେ ପ୍ରଥମ ବାକ୍ୟ ପୂର୍ଣ୍ଣ ବାକ୍ୟ ଓ ଦ୍ୱିତୀୟ ବାକ୍ୟ ଅପୂର୍ଣ୍ଣ ବାକ୍ୟ ।

**ରୂପାନ୍ତରଣ** (Transformation)—'ରୂପାନ୍ତରଣ' ଅର୍ଥ ହେଉଛି 'ପରିବର୍ତ୍ତନ କରିବା' । ବାକ୍ୟକୁ ବ୍ୟାକରଣର ବିଭିନ୍ନ ନିୟମ ଅନୁଯାୟୀ ପରିବର୍ତ୍ତନ କରାଯାଇପାରେ । ଉଦାହରଣ ସ୍ୱରୂପ—

ଉକ୍ତିବାଚକ—ରାମ ଯାଏ ।
ନାସ୍ତିବାଚକ—ରାମ ଯାଏ ନାହିଁ ।
ପ୍ରଶ୍ନବାଚକ—ରାମ ଯାଏ କି ?

ଏଠାରେ ରୂପାନ୍ତରିତ ବାକ୍ୟରେ ମୂଳ ବାକ୍ୟର ଅର୍ଥ ବଦଳିଯାଉଛି । କିନ୍ତୁ ଅର୍ଥ ନ ବଦଳାଇ ମଧ୍ୟ ଏକ ଉକ୍ତିବାଚକ ବାକ୍ୟକୁ ନାସ୍ତିବାଚକ ବା ପ୍ରଶ୍ନବାଚକ ବାକ୍ୟରେ ପରିଣତ କରାଯାଇପାରେ ।

ଯଥା—ଉକ୍ତିବାଚକ—ସଂସାରରେ ଧର୍ମ ଅଛି ।
ପ୍ରଶ୍ନବାଚକ—ସଂସାରରେ କ'ଣ ଧର୍ମ ନାହିଁ ?
ଉକ୍ତିବାଚକ—ଏ କଥା ସତ ।
ନାସ୍ତିବାଚକ— ଏ କଥା ମିଛ ନୁହେଁ ।
ଉକ୍ତିବାଚକ—ହିମାଳୟ ପୃଥିବୀର ସବୁଠାରୁ ଉଚ୍ଚ ପର୍ବତ ।
ନାସ୍ତିବାଚକ—ପୃଥିବୀରେ ହିମାଳୟଠାରୁ ଅଧିକ ଉଚ୍ଚ ପର୍ବତ ନାହିଁ ।
ପ୍ରଶ୍ନବାଚକ—ପୃଥିବୀରେ ହିମାଳୟଠାରୁ ଅଧିକ ଉଚ୍ଚ ପର୍ବତ ଅଛି କି ?

ଏକ ପ୍ରକାର ବାକ୍ୟକୁ ଅନ୍ୟ ପ୍ରକାର ବାକ୍ୟରେ ରୂପାନ୍ତରିତ କରିବାର ଆଉ କେତୋଟି ଦୃଷ୍ଟାନ୍ତ ଦିଆଉଛି—

(୧) ସରଳ ବାକ୍ୟର ଯୌଗିକ ବାକ୍ୟରେ ରୂପାନ୍ତର—

ସରଳ ବାକ୍ୟ—ରାମଚନ୍ଦ୍ର ରାବଣକୁ ହତ୍ୟାକରି ସୀତାଙ୍କୁ ଉଦ୍ଧାର କରିଥିଲେ ।

ଯୌଗିକ ବାକ୍ୟ – ରାମଚନ୍ଦ୍ର ରାବଣକୁ ହତ୍ୟା କରିଥିଲେ ଓ ସୀତାଙ୍କୁ ଉଦ୍ଧାର କରିଥିଲେ ।

(୨) ସରଳ ବାକ୍ୟର ଜଟିଳ ବାକ୍ୟରେ ରୂପାନ୍ତର—
ସରଳ ବାକ୍ୟ—ଅନ୍ଧ ଲୋକଟି ଭିକ୍ଷା ମାଗୁଅଛି ।
ଜଟିଳ ବାକ୍ୟ—ଯେଉଁ ଲୋକଟି ଅନ୍ଧ, ସେହି ଲୋକଟି ଭିକ୍ଷା ମାଗୁଅଛି ।

(୩) ଏକାଧିକ ସରଳ ବାକ୍ୟର ଏକ ଯୌଗିକ ବାକ୍ୟରେ ରୂପାନ୍ତର—
ଏକାଧିକ ସରଳ ବାକ୍ୟ—ସେ ଧନୀ । ସେ ସୁଖୀ ନୁହନ୍ତି ।
ଯୌଗିକ ବାକ୍ୟ – ସେ ଧନୀ ମାତ୍ର ସେ ସୁଖୀ ନୁହନ୍ତି ।

(୪) ଏକାଧିକ ସରଳ ବାକ୍ୟର ଗୋଟିଏ ସରଳ ବାକ୍ୟରେ ରୂପାନ୍ତର—

ଏକାଧିକ ସରଳ ବାକ୍ୟ—କୁଆଁରପୂନେଇଁ ରାତିରେ ଆକାଶରେ ଚନ୍ଦ୍ର ଉଇଁ ଆସିଲା । ଚନ୍ଦ୍ରଟି ରୂପାଥାଳି ପରି ଦେଖାଯାଉଥାଏ । କୁମାରୀ କନ୍ୟାମାନେ

ସେହି ଚନ୍ଦ୍ରକୁ ଦେଖିଲେ । ସେମାନେ ଆନନ୍ଦରେ ଅତ୍ମହରା ହୋଇଉଠିଲେ । ସେମାନେ ଉଚ୍ଚସ୍ୱରରେ 'ଫୁଲ-ବଉଳ-ବେଣୀ' ଗୀତ ଗାଇବାକୁ ଲାଗିଲେ ।

ଗୋଟିଏ ସରଳ ବାକ୍ୟ—କୁଆଁରପୂନେଇଁ ରାତ୍ରରେ ଆକାଶରେ ରୂପାଥାଳି ପରି ଚନ୍ଦ୍ର ଉଇଁବାର ଦେଖି ଆନନ୍ଦରେ ଅତ୍ମହରା କୁମାରୀ କନ୍ୟାମାନେ ଉଚ୍ଚସ୍ୱରରେ 'ଫୁଲ-ବଉଳ ବେଣୀ' ଗୀତ ଗାଇବାକୁ ଲାଗିଲେ ।

(୫) ଏକାଧିକ ସରଳ ବାକ୍ୟର ଜଟିଳ ବାକ୍ୟରେ ରୂପାନ୍ତର—

ଏକାଧିକ ସରଳ ବାକ୍ୟ—ସେଦିନ ଥାଏ ଶ୍ରାବଣ ଅମାବାସ୍ୟା । ରାତ୍ରରେ ଆକାଶରେ ମେଘ ଘୋଟି ରହିଥାଏ । ମଝିରେ ମଝିରେ ଅସରାଏ ଝିପୁରୁ ଝିପୁରୁ ବର୍ଷା ହେଉଥାଏ । ମଶାଣି ପଦାରୁ ବଲୁଅର ହୁକେ ହୋ ଶବ୍ଦ ଶୁଭୁଥାଏ । ଗୋଟିଏ ନାରୀର କରୁଣ କ୍ରନ୍ଦନ ଶୁଣାଗଲା । ମୁଁ ସାହାଯ୍ୟ କରିବାକୁ ପଦାକୁ ବାହାରି ଆସିଲି ।

ଜଟିଳ ବାକ୍ୟ—ସେଦିନ ଶ୍ରାବଣ ଅମାବାସ୍ୟା ରାତ୍ରରେ ଯେତେବେଳେ ଆକାଶରେ ମେଘ ଘୋଟି ରହିଥାଏ, ମଝିରେ ମଝିରେ ଅସରାଏ ଝିପୁରୁ ଝିପୁରୁ ବର୍ଷା ହେଉଥାଏ ଏବଂ ମଶାଣିପଦାରୁ ବଲୁଅର ହୁକେ ହୋ ରବ ଶୁଭୁଥାଏ, ସେତେବେଳେ ମୁଁ ସାହାଯ୍ୟ କରିବାକୁ ପଦାକୁ ବାହାରି ଆସିଲି, କାରଣ ଗୋଟିଏ ନାରୀର କରୁଣ କ୍ରନ୍ଦନ ଶୁଣାଗଲା ।

(୬) ଯୌଗିକ ବାକ୍ୟର ସରଳ ବାକ୍ୟରେ ରୂପାନ୍ତର—

ଯୌଗିକ ବାକ୍ୟ—ସେ ପରିଶ୍ରମ କଲା ଓ ପରୀକ୍ଷାରେ କୃତକାର୍ଯ୍ୟ ହେଲା ।

ସରଳ ବାକ୍ୟ—ସେ ପରିଶ୍ରମ କରିବାରୁ ପରୀକ୍ଷାରେ କୃତକାର୍ଯ୍ୟ ହେଲା ।

(୭) ଯୌଗିକ ବାକ୍ୟର ଜଟିଳ ରୂପାନ୍ତର—

ଯୌଗିକ ବାକ୍ୟ—ସକାଳ ହେଲା ଓ ଆମେମାନେ ଶେଯରୁ ଉଠି ନିତ୍ୟକର୍ମ ଶେଷ କଲୁ ।

ଜଟିଳ ବାକ୍ୟ—ଯେତେବେଳେ ସକାଳ ହେଲା, ସେତେବେଳେ ଆମେମାନେ ଶେଯରୁ ଉଠି ନିତ୍ୟକର୍ମ ଶେଷ କଲୁ ।

(୮) ଯୌଗିକ ବାକ୍ୟର ଏକାଧିକ ସରଳ ବାକ୍ୟରେ ରୂପାନ୍ତର—

ଯୌଗିକ ବାକ୍ୟ – ତୁମେମାନେ ସମସ୍ତେ ଅଳସୁଆ ; କିନ୍ତୁ ରମେଶ ଅଳସୁଆ ନୁହେଁ ।

ଏକାଧିକ ସରଳ ବାକ୍ୟ—ତୁମେମାନେ ସମସ୍ତେ ଅଳସୁଆ । ରମେଶ ଅଳସୁଆ ନୁହେଁ ।

(୯) ଜଟିଳ ବାକ୍ୟର ସରଳ ବାକ୍ୟରେ ରୂପାନ୍ତର—

ଜଟିଳ—ଯେଉଁ ଛାତ୍ରମାନେ ସମସ୍ତଙ୍କ ସଦ୍‌ବ୍ୟବହାର କରନ୍ତି, ସେମାନେ ଜୀବନରେ ଉନ୍ନତି କରନ୍ତି ।

ସରଳ ବାକ୍ୟ—ସମସ୍ତଙ୍କ ସଦ୍‌ବ୍ୟବହାର କରୁଥିବା ଛାତ୍ରମାନେ ଜୀବନରେ ଉନ୍ନତି କରନ୍ତି ।

(୧୦) ଜଟିଳ ବାକ୍ୟର ଯୌଗିକ ବାକ୍ୟରେ ରୂପାନ୍ତର—

ଜଟିଳ ବାକ୍ୟ – ତୁମେମାନେ ଯଦି ମନଦେଇ ପାଠ ପଢ଼ିବ ତେବେ ପରୀକ୍ଷାରେ ନିଶ୍ଚୟ ଭଲ ଫଳ ପାଇବ ।

ଯୌଗିକ ବାକ୍ୟ—ତୁମେମାନେ ମନଦେଇ ପାଠ ପଢ଼ ଏବଂ ତୁମେମାନେ ନିଶ୍ଚୟ ପରୀକ୍ଷାରେ ଭଲ ଫଳ ପାଇବ ।

(୧୧) ଜଟିଳ ବାକ୍ୟର ଏକାଧିକ ସରଳ ବାକ୍ୟରେ ରୂପାନ୍ତର—

ଜଟିଳ ବାକ୍ୟ—ଯେ ମୋତେ ବିପଦରୁ ଉଦ୍ଧାର କରିଥିଲେ, ସେ ଅସିଛନ୍ତି ।

ଏକାଧିକ ସରଳ ବାକ୍ୟ—ସେ ମୋତେ ବିପଦରୁ ଉଦ୍ଧାର କରିଥିଲେ । ସେ ଅସିଛନ୍ତି ।

## ଖଣ୍ଡବାକ୍ୟ (Clause) ଓ ବାକ୍ୟାଂଶ (Phrase)

କେତେକ ପଦର ସମଷ୍ଟି କର୍ତ୍ତାପଦ ଓ ସମାପିକା କ୍ରିୟା ସହିତ ଆଉ ମଧ୍ୟ ଯଦି ମନର ପୂର୍ଣ୍ଣଭାବ ପ୍ରକାଶ କରିପାରେ ନାହିଁ ଓ ସେହି ପଦସମଷ୍ଟି ଯଦି ଏକ ବୃହତ୍ତର ବାକ୍ୟର ଅଂଶବିଶେଷ ହୋଇଥାଏ, ତେବେ ତାହାକୁ ଏକ ଉପବାକ୍ୟ ବା ଖଣ୍ଡବାକ୍ୟ କୁହାଯାଏ । ଯଥା—"ଯେଉଁମାନେ **ମଠରେ ଖାଇ ଖଟରେ ଶୁଅନ୍ତି** ସେମାନେ ଗୃହଳ ଦର ଜାଣିବେ କାହୁଁ ?" ଏଠାରେ କଳା ହୋଇଥିବା ପଦ-ସମଷ୍ଟି ହେଉଛି ଏହି ଖଣ୍ଡବାକ୍ୟ ।

ବାକ୍ୟରେ ଥିବା ସମାପିକା କ୍ରିୟାବିହୀନ କେତେକ ପଦସମଷ୍ଟି ଏକ ଅର୍ଥ ପ୍ରକାଶ କରୁଥିଲେହେଁ ଯଦି ପୂର୍ଣ୍ଣ ମନୋଭାବ ପ୍ରକାଶ କରିପାରେ ନାହିଁ, ତେବେ ତାହାକୁ ବାକ୍ୟାଂଶ କୁହାଯାଏ । "**ରଥ ଯାତ୍ରାରେ ଜଗନ୍ନାଥଙ୍କର ଦର୍ଶନ ନିମିତ୍ତ** ବହୁ ଜନସମାଗମ ହୋଇଥିଲା ।" ଏଠାରେ କଳା ହୋଇଥିବା ପଦ-ସମଷ୍ଟି ହେଉଛି ଏକ ବାକ୍ୟାଂଶ ।

ପ୍ରତ୍ୟକ୍ଷୋକ୍ତି ( Direct Speech ) ଓ ପରୋକ୍ଷୋକ୍ତି (Indirect Speech )—

ଯେଉଁ ବାକ୍ୟରେ ବକ୍ତାଙ୍କ ଉକ୍ତିକୁ ତାଙ୍କ ନିଜ ଭାଷାରେ ଅବିକଳ ବ୍ୟକ୍ତ କରାଯାଏ, ତାହାକୁ ପ୍ରତ୍ୟକ୍ଷୋକ୍ତି କୁହାଯାଏ । ଯଥା—ମାଧବ କହିଲା, "ମୁଁ ଛୁଟିରେ ଗାଁକୁ ଯିବି ନାହିଁ ।"

ଯେଉଁ ବାକ୍ୟରେ ବକ୍ତାଙ୍କ ଉକ୍ତିକୁ ଅବିକଳ ବ୍ୟକ୍ତ କରା ନ ଯାଇ ତାଙ୍କର ବକ୍ତବ୍ୟ ବିଷୟକୁ ପରୋକ୍ଷ ଭାବରେ ( ବଦଳାଇ କରି ) ପ୍ରକାଶ କରାଯାଏ, ତାହାକୁ ପରୋକ୍ଷୋକ୍ତି କୁହାଯାଏ । ଯଥା—ମାଧବ କହିଲା ଯେ ସେ ଛୁଟିରେ (ଗାଁକୁ ଯିବ ନାହିଁ ) (କିମ୍ବା)—ମାଧବ ଛୁଟିରେ ଗାଁକୁ ଯିବ ନାହିଁ ବୋଲି କହିଲା ।

**ବାକ୍ୟରେ ବିରାମ ଚିହ୍ନ—**

ଅନେକ ଭାଷାରେ ଭାବକୁ ଶୃଙ୍ଖଳିତ ଓ ସୁସ୍ପଷ୍ଟ କରିବା ଲାଗି କେତେକ ବିରାମ ଚିହ୍ନର ବ୍ୟବହାର କରାଯାଇଥାଏ । ତନ୍ମଧ୍ୟରେ କେତୋଟି ଉଲ୍ଲେଖଯୋଗ୍ୟ ବିରାମ ଚିହ୍ନ ହେଉଛି—

(୧) କମା ବା ପ୍ରଥମଚ୍ଛେଦ ,
(୨) ସେମିକୋଲନ୍ ବା ଦ୍ୱିତୀୟଚ୍ଛେଦ ;
(୩) ପୂର୍ଣ୍ଣଚ୍ଛେଦ (ଇଂରାଜୀ ଭାଷା) , (ଭାରତୀୟ ଭାଷା) ।
(୪) ପ୍ରଶ୍ନବାଚକ ଚିହ୍ନ ?
(୫) ଡ୍ୟାସ୍ ବା ବ୍ୟବଚ୍ଛେଦ ଚିହ୍ନ —
(୬) ଉଦ୍ଧୃତ ଚିହ୍ନ "..." ବା '...'
(୭) ସମାନ ଚିହ୍ନ =

## ବାକ୍ୟଗଠନ ପଦ୍ଧତିରେ ପରିବର୍ତ୍ତନର କାରଣ

**(କ) ଅନ୍ୟ ଭାଷାର ପ୍ରଭାବ**—କୌଣସି ଭାଷା ଅନ୍ୟ ଭାଷା ଉପରେ ଅତ୍ୟଧିକ ପ୍ରଭାବ ବିସ୍ତାର କଲେ, ତାହାର ବାକ୍ୟଗଠନ ପଦ୍ଧତିରେ ମଧ୍ୟ ପ୍ରଭାବ ବିସ୍ତାର କରେ । ଓଡ଼ିଆ ଭାଷା ଉପରେ ପାରସିକ ଓ ଇଂରାଜୀ ଭାଷାର ପ୍ରଭାବ କାରଣରୁ ଓଡ଼ିଆ ଭାଷାର ବାକ୍ୟଗଠନରେ କେତେକ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ।

**(ଖ) ଧ୍ୱନି ବିକାଶ ଫଳରେ ବିଭକ୍ତିର କ୍ଷୟ**—ଭାଷାର ବିକାଶ ସଙ୍ଗେ ସଙ୍ଗେ ଯେତେବେଳେ ସମ୍ବନ୍ଧତତ୍ତ୍ୱକୁ ସ୍ପଷ୍ଟ କରୁଥିବା ବିଭକ୍ତିମାନଙ୍କର କ୍ଷୟ ହୋଇଯାଏ, ସେତେବେଳେ ଅର୍ଥକୁ ସ୍ପଷ୍ଟ କରିବା ପାଇଁ ସହାୟକ ଶବ୍ଦ ଯୋଡ଼ିବାକୁ ପଡ଼େ ।

ଏହି କାରଣରୁ ଭାଷା ସଂଯୋଗାତ୍ମକତାରୁ ବିଯୋଗାତ୍ମକତା ଅଭିମୁଖୀ ହୁଏ ଏବଂ ତାହାର ପ୍ରଭାବ ବାକ୍ୟ ରଚନା ଉପରେ ପଡ଼େ । ବେଶୀ ପ୍ରଭାବ ପଡ଼େ ଶବ୍ଦକ୍ରମ ଉପରେ । ସଂଯୋଗାତ୍ମକ ଭାଷାରେ ଶବ୍ଦକ୍ରମ ବା ପଦକ୍ରମ ଅଧିକ ନିର୍ଦ୍ଦିଷ୍ଟ । କେତେକ ବ୍ୟତିକ୍ରମ ଛାଡ଼ିଦେଲେ ଶବ୍ଦ ବାକ୍ୟର ଯେକୌଣସି ସ୍ଥାନରେ ସ୍ଥାପିତ ହୋଇପାରେ; କିନ୍ତୁ ବିଯୋଗାତ୍ମକ ଭାଷାରେ ଶବ୍ଦକ୍ରମ ବହୁଧା ନିର୍ଦ୍ଦିଷ୍ଟ ହୋଇଥାଏ । ଇଉରୋପୀୟ ପରିବାରର ଅଧିକାଂଶ ଆଧୁନିକ ଭାଷା (ଇଂରାଜୀ, ହିନ୍ଦୀ, ଓଡ଼ିଆ ଆଦି)ରେ ଏହି ଲକ୍ଷଣ ଲକ୍ଷ୍ୟ କରାଯାଉଅଛି । ଫଳରେ ଚୀନା ଭାଷା ପରି କ୍ରମଶଃ ସ୍ଥାନ-ପ୍ରଧାନ ବା ପଦକ୍ରମ-ପ୍ରଧାନ ହେବାକୁ ଯାଉଛି ।

**(ଗ) ସ୍ପଷ୍ଟତା ବା ବଳଦାନ ପାଇଁ ସହାୟକ ଶବ୍ଦର ପ୍ରୟୋଗ—** ଉପରେ ଏଭଳି ପ୍ରଭାବ ସମ୍ପର୍କରେ ଆଲୋଚନା କରାଯାଇଛି, କିନ୍ତୁ ଏ କ୍ଷେତ୍ରରେ ବିଭକ୍ତିମାନଙ୍କର କ୍ଷୟ ନ ହୋଇ ମଧ୍ୟ ସହାୟକ ଶବ୍ଦର ବ୍ୟବହାର କରାଯାଏ । ପରିଣାମରେ ବିଭକ୍ତିଗୁଡ଼ିକ ଧୀରେ ଧୀରେ ଲୋପପାଏ ଓ ଶେଷରେ ସେଗୁଡ଼ିକ ପରସର୍ଗ ରୂପରେ ବ୍ୟବହୃତ ହୁଏ ।

**(ଘ) ବକ୍ତାର ମାନସିକ ସ୍ଥିତିରେ ପରିବର୍ତ୍ତନ—**ମାନସିକ ଅବସ୍ଥା ବଦଳିଗଲେ ଅଭିବ୍ୟକ୍ତିର ଶୈଳୀ ବଦଳିଯାଏ । ଉଦାହରଣ ସ୍ୱରୂପ—ବକ୍ତା କଳାପ୍ରିୟ ଥିଲେ ବାକ୍ୟଗଠନରେ ଅଧିକ ଅଳଙ୍କରଣଶୈଳୀ ଲକ୍ଷ୍ୟ କରାଯାଏ । ବାକ୍ୟ ଗଠନ ପଦ୍ଧତି ପ୍ରତ୍ୟକ୍ଷ ନ ହୋଇ ପରୋକ୍ଷ ହୁଏ । କିନ୍ତୁ ମନ ବାସ୍ତବବାଦୀ ହୋଇଉଠିଲେ ବାକ୍ୟଗଠନ ବକ୍ର ବା ପରୋକ୍ଷ ନ ହୋଇ ଅପେକ୍ଷାକୃତ ସରଳ ଓ ପ୍ରତ୍ୟକ୍ଷ ହୋଇଯାଏ । ମନ ଭାବପ୍ରବଣ ହୋଇଉଠିଲେ ବାକ୍ୟରେ ପୁନରାବୃତ୍ତି ପ୍ରବୃତ୍ତି ପରିଲକ୍ଷିତ ହୁଏ ।

**(ଙ) ନବୀନତା—**ନବୀନତା ପାଇଁ ବ୍ୟକ୍ତି, ବିଶେଷତଃ କଳାକାର ତା'ର କଥନ ବା ପ୍ରକାଶ ଶୈଳୀରେ ପରିବର୍ତ୍ତନ ଆଣେ । ଯେପରି, "ଘଣ୍ଟା କାନ୍ଦଣା ଲହରି ରହି ରହି ଶୁଭିଯାଏ" ସ୍ଥଳରେ କଳାକାର କହେ, "ରହି ରହି ଶୁଭିଯାଏ ଘଣ୍ଟା କାନ୍ଦଣା ଲହରି", "We are the plastic-men" ସ୍ଥଳରେ କବି କହେ "The plastic-man we are" ଇତ୍ୟାଦି ।

**(ଚ) ସ୍ୱରାଘାତ—**ସ୍ୱରାଘାତ ଦ୍ୱାରା ମଧ୍ୟ ବାକ୍ୟରେ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ଏହି ପରିବର୍ତ୍ତନ ପ୍ରାୟ ଅର୍ଥ-ପ୍ରଧାନ । ଏ କ୍ଷେତ୍ରରେ ସଙ୍ଗୀତାତ୍ମକ ଓ ବଳାତ୍ମକ ସ୍ୱରାଘାତ ଦୁଇଟିକୁ ବିସ୍ତାରକୁ କଥାଯାଇପାରେ ।

●

## ● ଏକାଦଶ ପରିଚ୍ଛେଦ ●

# ଭାଷାବିଜ୍ଞାନ ଅଧ୍ୟୟନର ଇତିହାସ

ଭାଷାବିଜ୍ଞାନ ଯେତିକି ପ୍ରାଚୀନ, ସେତିକି ଅର୍ବାଚୀନ । ଭାଷା ଅନେକ-କାଳରୁ ରହି ଆସିଛି । ଅତି ପ୍ରାଚୀନ କାଳରୁ ମଣିଷ ସମାଜ ଭାଷାର ସୃଷ୍ଟି କରିଛି । ଭାଷା ଯେତେବେଳେ ପୃଥିବୀର ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ମନୁଷ୍ୟ ଦ୍ୱାରା କଥିତ ହେଲା, ସେତେବେଳେ ନିଶ୍ଚୟ ଏହାର ବିଭିନ୍ନ ନିୟମ ଓ ବ୍ୟାକରଣ ଜ୍ଞାତସାରରେ ଓ ଅଜ୍ଞାତସାରରେ ଅନୁସୃତ ହୋଇଥିବ । ଏହି ନିୟମାନୁସରଣ କାଳକ୍ରମେ ମଣିଷ ପୂର୍ବପୁରୁଷମାନଙ୍କଠାରୁ ଅନୁକରଣ କରୁଥିବ । ତେଣୁ ଭାଷାବିଜ୍ଞାନ ଭାଷାର ସୃଷ୍ଟି ପରେ ପରେ ହିଁ ଦେଖାଦେଇଛି ବୋଲି କହିବାରେ ଅସମୀଚୀନତା ନାହିଁ । ଯେତେବେଳେ କଥିତ ଭାଷା ଲିଖିତ ରୂପ ନେଲା, ସେତେବେଳେ ମନୁଷ୍ୟ ତାହାର ବୈଜ୍ଞାନିକ ଅଧ୍ୟୟନ କରି ତାହାକୁ ଏକ ବୈଜ୍ଞାନିକ ପ୍ରଣାଳୀରେ ଅନୁବଦ୍ଧ କରିବା ପାଇଁ ଚେଷ୍ଟା କଲା । ଏହିପରି ଏକ ପ୍ରୟାସ ଓ ସମିତ ପ୍ରଚେଷ୍ଟାରୁ ଜନ୍ମ ନେଲା ଭାଷାବିଜ୍ଞାନ ।

ଆଧୁନିକ ଯୁଗରେ ପାଶ୍ଚାତ୍ୟ ଭୂଖଣ୍ଡରେ ଭାଷାବିଜ୍ଞାନ ଅଧ୍ୟୟନ ପ୍ରାଧାନ୍ୟ ଲାଭ କରିବାରୁ ଅନେକ ଭାଷାବିଜ୍ଞାନର ଜନ୍ମସ୍ଥଳୀ ରୂପେ ପାଶ୍ଚାତ୍ୟ ଭୂଖଣ୍ଡକୁ ଗ୍ରହଣ କରିଥାନ୍ତି । କିନ୍ତୁ ପ୍ରକୃତରେ ପ୍ରାଚ୍ୟ ଭୂଖଣ୍ଡରେ ହିଁ ସର୍ବପ୍ରଥମେ ହୋଇଥିଲା ଭାଷାବିଜ୍ଞାନର ସୂର୍ଯ୍ୟୋଦୟ । ଭାରତବର୍ଷ ହିଁ ଭାଷାବିଜ୍ଞାନର ଅନ୍ତୁଡ଼ିଶାଳ । ପ୍ରାଚ୍ୟ ଭୂଖଣ୍ଡର ଭାରତବର୍ଷ, ଆରବ, ଚୀନ୍ ଓ ଜାପାନରେ ଏବଂ ପାଶ୍ଚାତ୍ୟ ଭୂଖଣ୍ଡର ୟୁରୋପ ତଥା ଆମେରିକା ମହାଦେଶମାନଙ୍କରେ କିପରି ଭାଷାବିଜ୍ଞାନ ଅଧ୍ୟୟନର ଆରମ୍ଭ ଓ ବିକାଶ ହୋଇଛି, ତାହା ସଂକ୍ଷେପରେ ବର୍ଣ୍ଣନା କରାଯାଉଅଛି ।

## ପ୍ରାଚ୍ୟ ଜଗତରେ ଭାଷାବିଜ୍ଞାନର ଇତିହାସ

### (କ) ଭାରତବର୍ଷ

ଭାରତବର୍ଷ ବିଶ୍ୱର ବିଦ୍ୟାଗୁରୁ । ଜ୍ଞାନ-ବିଜ୍ଞାନର ଯେଉଁସବୁ ଶାଖାର ପ୍ରଥମ ଉଦୟ ଭାରତବର୍ଷରେ ହୋଇଥିଲା, ତନ୍ମଧ୍ୟରୁ ଭାଷାବିଜ୍ଞାନ ଅନ୍ୟତମ । ବୈଦିକ

କାଳରେ ହିଁ ଏହାର ଆରମ୍ଭ ହୋଇସାରିଥିଲା । କିନ୍ତୁ ପରବର୍ତ୍ତୀ କାଳରେ ବିଦେଶୀ-ଶାସନାଧୀନ ହୋଇ ଏହା ନିଜର ଜ୍ଞାନଗରିମା ସମ୍ପର୍କରେ ବିସ୍ମୃତ ହୋଇଗଲା । ଆଧୁନିକ କାଳରେ ପାଶ୍ଚାତ୍ୟ ଦେଶମାନଙ୍କରେ ଭାଷାବିଜ୍ଞାନର ଭୂୟୋବିକାଶ ଦେଖି ଅନେକ ଭାବନ୍ତି ଯେ ଏହା ପଶ୍ଚିମର ଦାନ; କିନ୍ତୁ ବସ୍ତୁତଃ ଆଧୁନିକ ପାଶ୍ଚାତ୍ୟ ଭାଷାବିଜ୍ଞାନର ପ୍ରେରଣାର ଉତ୍ସ ହେଉଛି ଭାରତବର୍ଷର ପ୍ରାଚୀନ ଭାଷାବିଜ୍ଞାନ । ଋଗ୍‌ବେଦଠାରୁ ଆରମ୍ଭ କରି ଭାରତବର୍ଷରେ ଭାଷାବିଜ୍ଞାନ ଅଧ୍ୟୟନର ନିରବଚ୍ଛିନ୍ନ ପ୍ରବାହ ବହିଆସିଛି ।

(୧) ବେଦ—ଋଗ୍‌ବେଦର ରଚନା କାଳ ପ୍ରାୟ ସମସ୍ତ ପ୍ରାଚ୍ୟ ପଣ୍ଡିତ ଓ ଅନେକ ପାଶ୍ଚାତ୍ୟ ପଣ୍ଡିତଙ୍କ ଦ୍ୱାରା ଖ୍ରୀ: ପୂ: ୨୦୦୦ ବର୍ଷରୁ ଆହୁରି ପ୍ରାଚୀନ ବୋଲି ନିର୍ଣ୍ଣୀତ ହୋଇଛି । କିନ୍ତୁ କେତେକ ପାଶ୍ଚାତ୍ୟ ପଣ୍ଡିତ ଏହାର ରଚନା କାଳ ଖ୍ରୀ: ପୂ: ୧୨୦୦ ବର୍ଷରୁ ଅଧିକ ପ୍ରାଚୀନ ନୁହେଁ ବୋଲି ମତ ଦେଇଥାନ୍ତି । ଋଗ୍‌ବେଦର ରଚନା କାଳକୁ ଅନ୍ତତଃ ଖ୍ରୀ: ପୂ: ୧୨୦୦ ବର୍ଷ ବୋଲି ଗ୍ରହଣ କରାଗଲେ ମଧ୍ୟ ଭାରତବର୍ଷର ଭାଷାବିଜ୍ଞାନ ପୃଥିବୀରେ ପ୍ରାଚୀନତମ ବୋଲି ପ୍ରମାଣିତ ହୋଇପାରିବ, କାରଣ ଏହି ଋଗ୍‌ବେଦରେ ଭାଷାବିଜ୍ଞାନର ଆଦ୍ୟ ଉନ୍ମେଷର ସନ୍ଧାନ ମିଳୁଅଛି । ଏହି ଋଗ୍‌ବେଦର କେତେକ ମଣ୍ଡଳରେ ବେଦକୁ ବ୍ରହ୍ମ ରୂପେ ଗ୍ରହଣ କରାଯାଇଅଛି । ପୁଣି ଶବ୍ଦକୁ ସ୍ଫୋଟ ରୂପେ ଗ୍ରହଣ କରାଯାଇ ତାହାର ସମ୍ୟକ୍ ବ୍ୟାଖ୍ୟା କରାଯାଇଅଛି । ବର୍ତ୍ତମାନ ଭାଷାବିଜ୍ଞାନୀମାନେ ଭାଷାର ସୃଷ୍ଟି ସ୍ଫୋଟ (ଧ୍ୱନି)ରୁ ହୋଇଛି ବୋଲି ସ୍ୱୀକାର କରିଥାନ୍ତି । ତେଣୁ ବେଦରେ ହିଁ ଧ୍ୱନିବିଜ୍ଞାନ ((Phonetics)ର ପ୍ରଥମ ଅଙ୍କୁରୋଦ୍‌ଗମ ହୋଇଅଛି ।

(୨) ସଂହିତା—ବେଦର ଉକ୍ତିଗୁଡ଼ିକୁ ଏକତ୍ର କରିବା ପାଇଁ ପ୍ରଚେଷ୍ଟା ହୋଇଥିଲା ସଂହିତାରେ । କୃଷ୍ଣ ଯଜୁର୍ବେଦ ସଂହିତାରେ ଦେବତାମାନେ ଇନ୍ଦ୍ରଙ୍କୁ କହିଥିବାର ଜଣାଯାଏ, "ଆମ୍ଭେମାନେ ଲୋକମାନଙ୍କର ଭାଷାକୁ ଖଣ୍ଡ ଖଣ୍ଡ କରିଦେବା ଉଚିତ ।" ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ, ବାକ୍ୟକୁ ଖଣ୍ଡ ଖଣ୍ଡ କରିବା ଜ୍ଞାନ ସେତେବେଳେ ଅର୍ଜିତ ହୋଇସାରିଲାଣି ଅର୍ଥାତ୍ ପଦବିଜ୍ଞାନ (Morphology) ଏବଂ ବାକ୍ୟବିଜ୍ଞାନ (Syntax)ର ଅଧ୍ୟୟନ ଆରମ୍ଭ ହୋଇସାରିଲାଣି ।

(୩) ବ୍ରାହ୍ମଣ ଓ ଆରଣ୍ୟକ ଗ୍ରନ୍ଥ—ସଂହିତାର ପରବର୍ତ୍ତୀ ରଚନା ହେଉଛି ବ୍ରାହ୍ମଣ ଗ୍ରନ୍ଥ । ଏଥିରେ କୌଣସି କୌଣସି ସ୍ଥଳରେ ଶବ୍ଦର ଅର୍ଥକୁ ବ୍ୟାଖ୍ୟା କରିବାର ପ୍ରୟାସ କରାଯାଇଅଛି । ଏଥିରୁ ଜଣାଯାଉଅଛି ବ୍ରାହ୍ମଣ ଗ୍ରନ୍ଥ ରଚନା ସମୟକୁ ଭାରତବର୍ଷରେ ଅର୍ଥବିଜ୍ଞାନ (Semantics)ର ସୃଷ୍ଟି ହୋଇସାରିଲାଣି । ଅବଶ୍ୟ ଏହି ପ୍ରୟାସ ସ୍ୱଳ୍ପ ଓ ଅନେକ ବ୍ୟାଖ୍ୟା ଅନୁମାନ-ଆଧାରିତ ଏବଂ ଅଶୁଦ୍ଧ । ଶବ୍ଦର ସନ୍ଧି ଓ ସନ୍ଧିବିଚ୍ଛେଦ ମଧ୍ୟ ସେହିପରି ଅଶୁଦ୍ଧ ଥିଲା । ଦୃଷ୍ଟାନ୍ତ ସ୍ୱରୂପ 'ଅପାପ' ଶବ୍ଦକୁ 'ଅ + ପାପ' ଏହିପରି ସନ୍ଧିବିଚ୍ଛେଦ କରାଯାଇ ଏହାର ଅର୍ଥକୁ ଭୁଲରେ 'ପୁଣ୍ୟ' ବୋଲି

ଗ୍ରହଣ କରାଯାଇଥିଲା, କିନ୍ତୁ ପ୍ରକୃତରେ ପଦଚ୍ଛେଦ ହେବ 'ଅପ+ଅପ୍=ଅପାପ' ଏବଂ ଏହାର ଅର୍ଥ ହେବ ଜଳମୟ ।

ଆରଣ୍ୟକ ଗ୍ରନ୍ଥମାନଙ୍କରେ ଅର୍ଥର ବ୍ୟାଖ୍ୟା ଅପେକ୍ଷାକୃତ ଶୁଦ୍ଧ । ଏହା ଧାତ୍ୱର୍ଥ, ଧ୍ୱନି (ସ୍ୱରପାତ) ପ୍ରଭୃତି ଉପରେ ମଧ୍ୟ ଧ୍ୟାନ ଦେଇଥିଲା ।

(୪) ପଦପାଠ—ବ୍ରାହ୍ମଣ ଗ୍ରନ୍ଥର ପରବର୍ତ୍ତୀ ରଚନା ହେଉଛି ପଦପାଠ । ଏଥିରେ ବୈଦିକ ମନ୍ତ୍ରଗୁଡ଼ିକୁ ପଦ (ଶବ୍ଦ)ରେ ବିଭକ୍ତ କରି ଦିଆଯାଇଅଛି । ପଦ ଓ ସମାନ ଭଙ୍ଗିରେ ବାକ୍ୟରେ ସେଗୁଡ଼ିକୁ ଅଲଗା କରାଯାଇଛି । ଏଥିରେ ପଦ, ସ୍ୱରଭେଦ (ଉଦାତ୍ତ, ଅନୁଦାତ୍ତ, ସ୍ୱରିତ), ସମାସ ପ୍ରଭୃତି ନିୟମ ନିର୍ଦ୍ଧାରିତ ହୋଇଅଛି । ଭାଷାର ବିଶ୍ଳେଷଣ ବା ବ୍ୟାକରଣ ଦିଗରେ ପଦପାଠ ହେଉଛି ପ୍ରଥମ ପଦକ୍ଷେପ ।

(୫) ପ୍ରାତିଶାଖ୍ୟ – କ୍ରମେ ବୈଦିକ ଭାଷା ଲୋକମାନଙ୍କ ପାଖରେ ଅବୋଧ ହୋଇପଡ଼ିଲା । ପୁଣି ପରମ୍ପରା ଅନୁଯାୟୀ ବେଦପାଠ କରିବାରେ ସ୍ୱରପାତର ଗୁରୁତ୍ୱ ଉପଲବ୍ଧ ହେଲା । ଧ୍ୱନି ଅଶୁଦ୍ଧ ହେଲେ ପାପ ହେବ ବୋଲି ଏକ ଧାରଣା ଜାତ ହେଲା । ତେଣୁ ଧ୍ୱନି ଦୃଷ୍ଟିରୁ ବେଦର ବିଶ୍ଳେଷଣାତ୍ମକ ଅଧ୍ୟୟନ ହେଲା । ଏହିପରି ଭାବରେ ଧାର୍ମିକ ପ୍ରେରଣାରୁ ପ୍ରାତିଶାଖ୍ୟ ରୂପରେ ବିଶ୍ୱର ପ୍ରାଚୀନତମ ଧ୍ୱନିବିଜ୍ଞାନ ଗ୍ରନ୍ଥର ସୃଷ୍ଟି ହେଲା । ଏହି ପ୍ରାତିଶାଖ୍ୟଗୁଡ଼ିକ ହେଉଛି—ଋଗ୍‌ବେଦ ଉପରେ 'ଋକ୍ ପ୍ରାତିଶାଖ୍ୟ', କୃଷ୍ଣ ଯଜୁର୍ବେଦ ଉପରେ 'ତୈତ୍ତିରୀୟ ପ୍ରାତିଶାଖ୍ୟ', ଶୁକ୍ଳ-ଯଜୁର୍ବେଦ ଉପରେ 'ବାଜସନେୟୀ ପ୍ରାତିଶାଖ୍ୟ' ବା 'କାତ୍ୟାୟନୀୟ ପ୍ରାତିଶାଖ୍ୟ', ସାମବେଦ ଉପରେ 'ଋକ୍-ତନ୍ତ୍ର-ବ୍ୟାକରଣ' ଏବଂ ଅଥର୍ବବେଦ ଉପରେ ଅଥର୍ବ ପ୍ରାତିଶାଖ୍ୟ' । ପ୍ରାତିଶାଖ୍ୟମାନଙ୍କର ଧ୍ୱନିତାତ୍ତ୍ୱିକ ବୈଶିଷ୍ଟ୍ୟ ହେଉଛି—(କ) ଏଥିରେ ସଂହିତାମାନଙ୍କର ପାରମ୍ପରିକ ଉଚ୍ଚାରଣକୁ ସୁରକ୍ଷିତ ରଖାଯାଇଛି । ସ୍ୱରପାତ, ମାତ୍ରା, ଉଚ୍ଚାରଣ ପ୍ରଭୃତିର ନିୟମ ଆଲୋଚିତ ହୋଇଅଛି । (ଖ) ଏଥିରେ ସଂସ୍କୃତ ଧ୍ୱନିମାନଙ୍କର ବର୍ଗୀକରଣ ହୋଇଅଛି । ଏହି ବର୍ଗୀକରଣ ଏତେ ସୁଚିନ୍ତିତ ଯେ ତାହା ଅଦ୍ୟାପର୍ଯ୍ୟନ୍ତ ପ୍ରଚଳିତ ହୋଇଆସୁଛି । (ଗ) ପଦକୁ ନାମ (noun), ଆଖ୍ୟାତ (adjective), ଉପସର୍ଗ ଓ ନିପାତ (ଅବ୍ୟୟ) ଏହିପରି ଚାରିଭାଗରେ ବିଭକ୍ତ କରାଯାଇଅଛି । (ଘ) ଏଗୁଡ଼ିକରେ ଧାତୁ ଅଧ୍ୟୟନର ସୂତ୍ରପାତ ହୋଇଅଛି । (ଙ) ଏଥିରେ ବିଶେଷ କରି ବିଶେଷ୍ୟ ବା ନାମର ସାମାନ୍ୟ ଲକ୍ଷଣ, ବ୍ୟବହାର ଏବଂ ଲିଙ୍ଗ ସମ୍ପର୍କରେ ଆଲୋଚନା କରାଯାଇଅଛି ।

(୬) ଶିକ୍ଷାଗ୍ରନ୍ଥ—ପ୍ରାତିଶାଖ୍ୟ ପରେ ସୃଷ୍ଟିହୋଇଛି ଶିକ୍ଷାଗ୍ରନ୍ଥ । ଶିକ୍ଷା-ଗ୍ରନ୍ଥଗୁଡ଼ିକରେ ଧ୍ୱନିର ବୈଜ୍ଞାନିକ ବିବେଚନ ଦେଖାଯାଏ । ଏଥିରେ ଧ୍ୱନିର ସ୍ୱରୂପ, ବର୍ଗୀକରଣ ସମ୍ପର୍କରେ ଆଲୋଚନା, ହେବା ସଙ୍ଗେ ସଙ୍ଗେ ସ୍ୱର ଏବଂ ଅକ୍ଷର ଉପରେ

ମଧ୍ୟ ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା ହୋଇଅଛି । ଡକ୍ଟର ସିଦ୍ଧେଶ୍ୱର ବର୍ମାଙ୍କ ମତରେ ୫୦ରୁ ଊର୍ଦ୍ଧ୍ୱ ସଂଖ୍ୟାରେ ଶିକ୍ଷାଗ୍ରନ୍ଥ ରଚିତ ହୋଇଥିଲା, ତନ୍ମଧ୍ୟରେ 'ପାଣିନୀୟ ଶିକ୍ଷା', 'ଭରଦ୍ୱାଜ ଶିକ୍ଷା', 'ଯାଜ୍ଞବଲ୍କ୍ୟ ଶିକ୍ଷା', 'ସ୍ୱରବ୍ୟଞ୍ଜନ ଶିକ୍ଷା', ଆପିଶଲି ଶିକ୍ଷା', କୌହଲ ଶିକ୍ଷା', 'ଶୈଶିରୀୟ ଶିକ୍ଷା', 'ସର୍ବସମ୍ମତ ଶିକ୍ଷା', 'ବ୍ୟାସ ଶିକ୍ଷା' ଆଦି ଉଲ୍ଲେଖଯୋଗ୍ୟ ।

(୭) ନିଘଣ୍ଟୁ—ବୈଦିକ ଭାଷା କ୍ରମେ କ୍ରମେ ଜନସାଧାରଣଙ୍କର ଅଗୋଚର ହେବାକୁ ଲାଗିଲା । ତେଣୁ ଏହାର ଅର୍ଥ ବ୍ୟାଖ୍ୟା କରିବା ଆବଶ୍ୟକ ହେଲା । ଏହି ଦୃଷ୍ଟିକୋଣରୁ ବିଦ୍ୱାନ୍‌ମାନେ ବୈଦିକ ଶବ୍ଦମାନଙ୍କର ସଂଗ୍ରହ ଗ୍ରନ୍ଥ ରଚନା କଲେ । ଏହି ସଂଗ୍ରହ ଗ୍ରନ୍ଥର ନାମ ନିଘଣ୍ଟୁ (Catalogue) । ସଂଗୃହୀତ ଶବ୍ଦଗୁଡ଼ିକର ଅର୍ଥ ଏହି ନିଘଣ୍ଟୁରେ ପ୍ରଦତ୍ତ ନ ହୋଇଥିଲେ ମଧ୍ୟ ଏହାକୁ ବୈଦିକ କୋଷଗ୍ରନ୍ଥ କୁହାଯାଇପାରେ । ଏପର୍ଯ୍ୟନ୍ତ କେବଳ ଗୋଟିଏ ନିଘଣ୍ଟୁ ଆବିଷ୍କୃତ ହୋଇଅଛି । ଏହା ପାଞ୍ଚୋଟି ଅଧ୍ୟାୟରେ ବିଭକ୍ତ । ପ୍ରଥମ ତିନି ଅଧ୍ୟାୟରେ ଶବ୍ଦଗୁଡ଼ିକୁ ପର୍ଯ୍ୟାୟ କ୍ରମେ ସଜ୍ଜିତ କରାଯାଇଅଛି । ଏହି କାରଣରୁ ଶବ୍ଦଗୁଡ଼ିକର ଅର୍ଥ ପ୍ରଦତ୍ତ ନ ହୋଇଥିଲେ ମଧ୍ୟ ଅର୍ଥ ପ୍ରାୟ ସ୍ପଷ୍ଟ ହୋଇଯାଉଅଛି । ଚତୁର୍ଥ ଅଧ୍ୟାୟ ତିନି ଖଣ୍ଡରେ ଓ ପଞ୍ଚମ ଅଧ୍ୟାୟ ଛ' ଖଣ୍ଡରେ ବିଭକ୍ତ । ଚତୁର୍ଥ ଅଧ୍ୟାୟରେ ବେଦର କେତେକ ଅତ୍ୟନ୍ତ କ୍ଳିଷ୍ଟ ଶବ୍ଦ ସ୍ଥାନ ପାଇଛି ଓ ପଞ୍ଚମ ଅଧ୍ୟାୟରେ ବୈଦିକ ଦେବତାମାନଙ୍କର ନାମ ସନ୍ନିବେଶିତ ହୋଇଅଛି । ଏହି ନିଘଣ୍ଟୁ ଉପରେ ଯାସ୍କଙ୍କର 'ନିରୁକ୍ତ' ଆଧାରିତ ।

(୮) ଯାସ୍କଙ୍କ ନିରୁକ୍ତ—( ଖ୍ରୀ.ପୂ. ୮ମ ଶତାବ୍ଦୀ )—ଯାସ୍କଙ୍କ 'ନିରୁକ୍ତ' ହେଉଛି 'ନିଘଣ୍ଟୁ'ର ଏକ ବ୍ୟାଖ୍ୟା । ଏହା ହେଉଛି ବିଶ୍ୱର ପ୍ରାଚୀନତମ ଅର୍ଥବିଜ୍ଞାନ ଗ୍ରନ୍ଥ (Semantics) ଓ ବ୍ୟୁତ୍ପତ୍ତିବିଜ୍ଞାନ ଗ୍ରନ୍ଥ (Etymology) । ଏଥିରେ ନିଘଣ୍ଟୁର ପ୍ରତ୍ୟେକ ଶବ୍ଦକୁ ଅଲଗା ଅଲଗା ନିଆଯାଇ ତାହାର ବ୍ୟୁତ୍ପତ୍ତି ତଥା ଅର୍ଥ ନିର୍ଣ୍ଣୟ କରାଯାଇଅଛି । ଏଥିରେ ଯେଉଁ ଶବ୍ଦର ଅର୍ଥ ଅସ୍ପଷ୍ଟ ତାହାକୁ ଅସ୍ପଷ୍ଟ ବୋଲି କୁହାଯାଇଅଛି । ଏ ପର୍ଯ୍ୟନ୍ତ କେବଳ ଯାସ୍କଙ୍କର ନିରୁକ୍ତ ଆବିଷ୍କୃତ ହୋଇଅଛି । ଏହାର ବିଶେଷତ୍ୱ ହେଉଛି - (କ) ଶବ୍ଦର ଅର୍ଥ ଉପଲବ୍ଧି ପାଇଁ ଏଥିରେ ପ୍ରୟାସ ହୋଇଅଛି । (ଖ) ଶବ୍ଦାବଳୀର ପ୍ରୟୋଗ ଓ ଅର୍ଥ ପ୍ରାଞ୍ଜଳତା ପାଇଁ ବୈଦିକ ସଂହିତାମାନଙ୍କର ଶବ୍ଦାବଳୀକୁ ଗ୍ରହଣ କରାଯାଇଅଛି । (ଗ) ଏଥିରେ ପୂର୍ବବର୍ତ୍ତୀ ଓ ସମକାଳୀନ ଅନେକ ବ୍ୟାକରଣ ସମ୍ପ୍ରଦାୟ ଏବଂ ବୈୟାକରଣଙ୍କ ନାମ ସଂଯୁକ୍ତ ହୋଇଅଛି । (ଘ) ଶବ୍ଦର ବ୍ୟୁତ୍ପତ୍ତିଗତ ଇତିହାସ ଅନୁଶୀଳନ କଲେ ସମାଜ ସହିତ ଶବ୍ଦର ସମ୍ପର୍କ ଆଲୋଚିତ ହୋଇଅଛି । (ଙ) ଭାଷାର ଉତ୍ପତ୍ତି, ଗଠନ ଓ ବିକାଶ ସମ୍ପର୍କରେ ବିଶ୍ୱର ପ୍ରଥମ ଅଧ୍ୟୟନ ଏହାର ଭିତରେ ହୋଇଅଛି । (ଚ) ପ୍ରଶ୍ନୋତ୍ତର ଛଳରେ ଅନେକ ଶବ୍ଦର ନାମକରଣ-ସମୀଚୀନତା ବିଚାର କରାଯାଇଅଛି ।

ନିରୁକ୍ତରେ ସମୁଦାୟ ୧୨୯୮ଟି ବ୍ୟୁତ୍ପତ୍ତି ଦିଆଯାଇଛି, ସେଥିରୁ ୮୪୯ଟି ହେଉଛି ଶତାନୁଗତିକ, ୨୨୪ଟି ବୈଜ୍ଞାନିକ ଏବଂ ୨୨୫ଟି ହେଉଛି ଅସ୍ପଷ୍ଟ । ତଥାପି ଏହା ଯେ ପୃଥିବୀର ସର୍ବପ୍ରଥମ ଅର୍ଥବିଜ୍ଞାନ ଗ୍ରନ୍ଥ ଓ ବ୍ୟୁତ୍ପତ୍ତିବିଜ୍ଞାନ ଗ୍ରନ୍ଥ ଏଥିରେ ସନ୍ଦେହ ନାହିଁ ।

(୯) ପାଣିନିଙ୍କ ପୂର୍ବବର୍ତ୍ତୀ ବୈୟାକରଣ—ପାଣିନିଙ୍କ ପୂର୍ବରୁ ଭାଷାବିଜ୍ଞାନ ଅଧ୍ୟୟନର ଏକ ପ୍ରତିଷ୍ଠିତ ପରମ୍ପରା ନଥିଲେ ଯାସ୍କଙ୍କ ପରେ ସିଧାସଳଖ ପାଣିନି ଏତେ ଉଚ୍ଚକୋଟୀର ବ୍ୟାକରଣ ଗ୍ରନ୍ଥ 'ଅଷ୍ଟାଧ୍ୟାୟୀ' ରଚନା କରିପାରି ନଥାନ୍ତେ । ଯାସ୍କ ଓ ପାଣିନିଙ୍କ ମଧ୍ୟବର୍ତ୍ତୀ କାଳରେ ଦେଖା ଦେଇଥିବା ପ୍ରସିଦ୍ଧ ବୈୟାକରଣମାନଙ୍କ ମଧ୍ୟରେ ଆପିଶଳି, କାଶକୃତ୍ସ୍ନ ଏବଂ ଇନ୍ଦ୍ର ଋଷିଙ୍କ ନାମ ଉଲ୍ଲେଖଯୋଗ୍ୟ । ପାଣିନି ପ୍ରତ୍ୟୟ, ଅବ୍ୟୟୀଭାବ ସମାସ, ତତ୍ପୁରୁଷ ସମାସ, ପ୍ରଥମା, ଦ୍ୱିତୀୟା, ଷଷ୍ଠୀବିଭକ୍ତି ପ୍ରଭୃତି ପାରିଭାଷିକ ଶବ୍ଦଗୁଡ଼ିକର ଅର୍ଥ ନ ବୁଝାଇ ପ୍ରୟୋଗ କରିଯାଇଛନ୍ତି, କିନ୍ତୁ ଆପିଶଳି ଓ କାଶକୃତ୍ସ୍ନ ଏଗୁଡ଼ିକର ଅର୍ଥ ବୁଝାଇ ଏଗୁଡ଼ିକର ସମ୍ପର୍କରେ ତନ୍ନତନ୍ନ ଆଲୋଚନା କରିଛନ୍ତି । ପାଣିନିଙ୍କ ପୂର୍ବରୁ ପାଣିନିଙ୍କ ଗ୍ରନ୍ଥରେ ବ୍ୟବହୃତ ଶବ୍ଦଗୁଡ଼ିକର ଅର୍ଥ ଆପିଶଳି ଓ କାଶକୃତ୍ସ୍ନ ଦେଇପାରିଥିବାରୁ ଅଧିକ ଗୌରବାର୍ହ ।

ଐନ୍ଦ୍ର ବ୍ୟାକରଣ ସମ୍ପ୍ରଦାୟର ପ୍ରବର୍ତ୍ତକ ଇନ୍ଦ୍ର ଋଷି ପ୍ରଥମ ବୈୟାକରଣ ବୋଲି ତୈତ୍ତିରୀୟ ଗ୍ରନ୍ଥରେ ଉଲ୍ଲେଖ ରହିଛି । ଐନ୍ଦ୍ର ସମ୍ପ୍ରଦାୟର ପ୍ରଚାର ଏବଂ ପ୍ରଭାବ ଦକ୍ଷିଣ ଭାରତରେ ଅଧିକ ଥିଲା । ଡକ୍ଟର ବର୍ଣ୍ଣେଲ୍‌ଙ୍କ ମତରେ ତାମିଲର ପ୍ରାଚୀନତମ ବ୍ୟାକରଣ 'ତୋଲ୍‌କପ୍‌ପିୟମ' ଐନ୍ଦ୍ର ବ୍ୟାକରଣ ସମ୍ପ୍ରଦାୟ ପ୍ରଭାବର ଏକ ସଫଳ ଫଳଶ୍ରୁତି ।

(୧୦) ପାଣିନିଙ୍କ ଅଷ୍ଟାଧ୍ୟାୟୀ (ଆନୁମାନିକ ଖ୍ରୀ:ପୂ: ୫ମ ଶତାବ୍ଦୀ)—'ଅଷ୍ଟାଧ୍ୟାୟୀ'ର ରଚୟିତା ପାଣିନି ପୃଥିବୀର ଶ୍ରେଷ୍ଠ ବୈୟାକରଣ ଭାବରେ ବିଖ୍ୟାତ । 'ଅଷ୍ଟାଧ୍ୟାୟୀ'ରେ ଆଠୋଟି ଅଧ୍ୟାୟ ରହିଛି । ପ୍ରତି ଅଧ୍ୟାୟରେ ଚାରୋଟି ପାଦ ଓ ପ୍ରତ୍ୟେକ ପାଦରେ ଅନେକ ସୂତ୍ର ରହିଛି । ସବୁ ମିଶାଇ ଦେଲେ ସୂତ୍ରଗୁଡ଼ିକର ସଂଖ୍ୟା ପ୍ରାୟ ଚାରିହଜାର ହେବ । କିନ୍ତୁ ସମଗ୍ର ଗ୍ରନ୍ଥ ମୁଖ୍ୟତଃ ୧୪ଟି ସୂତ୍ର (ଅଇଉଣ୍, ଋଳୃକ୍, ଏଓଙ୍, ଐଔଚ୍, ହୟବରଟ୍, ଲଣ୍, ଞମଙଣନମ୍, ଝଭଞ୍, ଧଢ଼ଭଷ୍, ଜବଗଡ଼ଦଶ୍, ଖଫଛଠଥଚଟତଵ୍, କପୟ୍, ଶଷସର୍, ହଲ୍) ଉପରେ ଆଧାରିତ । ଏହାର ନାମ 'ମାହେଶ୍ୱର' ସୂତ୍ର । ସଂକ୍ଷେପରେ କହିବା ପାଇଁ ଏଥିରେ ପ୍ରତ୍ୟାହାର, ଗଣ ଆଦିର ସାହାଯ୍ୟ ନିଆଯାଇଅଛି । ଅଷ୍ଟାଧ୍ୟାୟୀର ବୈଶେଷତ୍ୱ ହେଉଛି—(କ) ମାତ୍ର ଚଉଦଟି ସୂତ୍ରର ଭିତ୍ତିଭୂମି ଉପରେ ସଂସ୍କୃତ ଭଳି ଏତେ

ଜଟିଳ ଓ ବ୍ୟାପକ ଭାଷାକୁ ପାଣିନି ଅଳ୍ପ କେତେକ ପୃଷ୍ଠା ମଧ୍ୟରେ ଯେପରି ଠିଆ କରାଇଛନ୍ତି, ତାହା ବାସ୍ତବିକ ଭାଷାବିଜ୍ଞାନର ବିସ୍ମୟ । ଏହା ମଧ୍ୟରେ ପ୍ରାୟ ଅଢ଼େଇ ହଜାର ବର୍ଷ ବିତିଯାଇଛି, କେତେ କେତେ ବୈୟାକରଣ ଦେଖା ଦେଇଛନ୍ତି, ତଥାପି 'ଅଷ୍ଟାଧ୍ୟାୟୀ'ର ପ୍ରତିଷ୍ଠା ନିଷ୍ପ୍ରଭ ହୋଇନାହିଁ, ସମସ୍ତେ ଏହି ୧୪ଟି ସୂତ୍ରକୁ ଅବଲମ୍ବନ କରିଛନ୍ତି । (ଖ) ଏଥିରେ ସମସ୍ତ ଶବ୍ଦକୁ କେତୋଟି ଧାତୁ ଉପରେ ଆଧାରିତ କରାଯାଇଛି । ଏଗୁଡ଼ିକ କେତେକ କ୍ରିୟାର ଭାବ ପ୍ରକାଶ କରନ୍ତି । ଏଥିରେ ଉପସର୍ଗ ଓ ପରସର୍ଗ ଯୋଗ କରାଯାଇ ଅସଂଖ୍ୟ ଶବ୍ଦ ଗଠନ କରାଯାଇଅଛି । (ଗ) ଅଷ୍ଟାଧ୍ୟାୟୀରେ ବାକ୍ୟର ସୁନ୍ଦର ବିଶ୍ଳେଷଣ ଦେଖିବାକୁ ମିଳେ । ବାକ୍ୟରୁ ଯେ ଭାଷାର ଉତ୍ପତ୍ତି, ଏ ତଥ୍ୟର ପ୍ରଥମ ଉଲ୍ଲେଖ ହୋଇଛି ଅଷ୍ଟାଧ୍ୟାୟୀରେ । (ଘ) ଯାସ୍କ ଶବ୍ଦକୁ ଯେପରି ନାମ, ଆଖ୍ୟାତ, ଉପସର୍ଗ ଓ ନିପାତ, ଚାରିଭାଗରେ ବିଭକ୍ତ କରିଛନ୍ତି ପାଣିନି ସେପରି ନ କରି ଶବ୍ଦ ସୁବନ୍ତ ଓ ତିଙନ୍ତ ଏହିପରି ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଆଜି ପର୍ଯ୍ୟନ୍ତ ପୃଥିବୀରେ ଶବ୍ଦର ଯେତେ ପ୍ରକାର ବିଭାଜନ ହୋଇଅଛି, ତନ୍ମଧ୍ୟରେ ଏହା ସର୍ବାଧିକ ବୈଜ୍ଞାନିକ । ପାଶ୍ଚାତ୍ୟ ବ୍ୟାକରଣରେ ଶବ୍ଦର ଆଠ ଭେଦ (Eight Parts of Speech) ମଧ୍ୟ ଏତେ ବୈଜ୍ଞାନିକ ନୁହେଁ । (ଙ) ଏଥିରେ ଧ୍ୱନିମାନଙ୍କର ଉତ୍ପତ୍ତି ସ୍ଥାନ ଓ ପ୍ରଯତ୍ନ ପଦ୍ଧତି ଭିତ୍ତିରେ ବର୍ଗୀକରଣ ହୋଇଅଛି । ଧ୍ୱନିବିଜ୍ଞାନ ଦୃଷ୍ଟିରୁ ଏପରି ବର୍ଗୀକରଣ ଅତୀବ ମହତ୍ତ୍ୱପୂର୍ଣ୍ଣ । (ଚ) ଏଥିରେ ଲୌକିକ ଏବଂ ବୈଦିକ ସଂସ୍କୃତର ତୁଳନାତ୍ମକ ଅଧ୍ୟୟନ ହୋଇଅଛି ।

(୨୨) କାତ୍ୟାୟନଙ୍କ ବାର୍ତ୍ତିକ (ଅନୁମାନିକ ଖ୍ରୀ.ପୂ. ୨ୟ ଶତାବ୍ଦୀ)— ପାଣିନିଙ୍କର ତିନିଶହ ବର୍ଷ ପରେ ସଂସ୍କୃତ ଭାଷାରେ ବହୁ ପରିବର୍ତ୍ତନ ହୋଇଯାଇଥିଲା ଏବଂ ଅଷ୍ଟାଧ୍ୟାୟୀର ଅନେକ ସୂତ୍ର ତତ୍କାଳୀନ ଭାଷାର ଅନୁକୂଳ ନ ଥିଲା । ତେଣୁ ସୂତ୍ରଗୁଡ଼ିକୁ ସଜାଡ଼ି ନେବା ପାଇଁ କାତ୍ୟାୟନ ତାଙ୍କର 'ବାର୍ତ୍ତିକ' ରଚନା କଲେ । ବାର୍ତ୍ତିକର ସୂତ୍ରଗୁଡ଼ିକ ମଧ୍ୟ ଅଷ୍ଟାଧ୍ୟାୟୀ ସୂତ୍ର ପରି ବିଶ୍ୱବିଶ୍ରୁତ । ବାର୍ତ୍ତିକରେ ଅଷ୍ଟାଧ୍ୟାୟୀର ୧୫୦୦ ସୂତ୍ରକୁ ନିଆଯାଇଛି ଓ ଏହାର ଦୋଷ ଦେଖାଇବା ସଙ୍ଗେ ସଙ୍ଗେ ସୂତ୍ରରେ ସଂଶୋଧନ କରାଯାଇଛି । ଉଦାହରଣ ସ୍ୱରୂପ ପାଣିନିଙ୍କର 'ଅଦର୍ଶନଂ ଲୋପଃ' ସୂତ୍ରକୁ ସଂଶୋଧନ କରି କାତ୍ୟାୟନ ଲେଖିଛନ୍ତି ବର୍ଣ୍ଣସ୍ୟାଦର୍ଶନଂ ଲୋପଃ । କାତ୍ୟାୟନ କେତେକ ସ୍ଥଳରେ ପାଣିନିଙ୍କ ସୂତ୍ରକୁ ବୁଝିବାରେ ଭ୍ରମ କରିଛନ୍ତି । ପାଣିନିଙ୍କର କେତେକ ପାରିଭାଷିକ ଶବ୍ଦକୁ କାତ୍ୟାୟନ ପରିବର୍ତ୍ତନ କରିଛନ୍ତି ।

ବାର୍ତ୍ତିକର ମହତ୍ତ୍ୱ ହେଉଛି—(କ) ପୂର୍ବକାଳର ଭାଷା ସହିତ ପରକାଳର ଭାଷାର ତୁଳନାତ୍ମକ ଅଧ୍ୟୟନ କରିବା ଦ୍ୱାରା କାତ୍ୟାୟନ ତୁଳନାତ୍ମକ ଭାଷାବିଜ୍ଞାନ (Comparative Philology)ର ଭିତ୍ତି ସ୍ଥାପନ କରିଛନ୍ତି ।

(ଖ) ବାର୍ତ୍ତିକରେ ଅଷ୍ଟାଧ୍ୟାୟୀର ଅନେକ ଅସ୍ପଷ୍ଟ ଓ ଅଶୁଦ୍ଧ ସୂତ୍ରକୁ ସ୍ପଷ୍ଟ ଓ ଶୁଦ୍ଧ କରାଯାଇଅଛି ।

**(୧୨) ପତଞ୍ଜଳିଙ୍କ ମହାଭାଷ୍ୟ** (ଅନୁମାନିକ ଖ୍ରୀ: ପୂ: ୧୫୦)—ପାଣିନିଙ୍କ ପରେ ପତଞ୍ଜଳି ହିଁ ହେଉଛନ୍ତି ଶ୍ରେଷ୍ଠ ବୈୟାକରଣ । ପାଣିନିଙ୍କର ଅଷ୍ଟାଧ୍ୟାୟୀ ଉପରେ ସେ ଯେଉଁ ଭାଷ୍ୟ ଲେଖିଛନ୍ତି ତାହା 'ମହାଭାଷ୍ୟ' ନାମରେ ଅଭିହିତ ଓ ଏହି ମହାଭାଷ୍ୟ ପାଇଁ ପତଞ୍ଜଳି ବିଶ୍ୱବିଖ୍ୟାତ । ପତଞ୍ଜଳି କାତ୍ୟାୟନଙ୍କର ବାର୍ତ୍ତିକର କେତେକ ଅଂଶର ଖଣ୍ଡନ କରିଥିଲେ ଓ ଅଷ୍ଟାଧ୍ୟାୟୀର ଦୁରୂହତାକୁ ଭେଦ କରି ନ ପାରି ତାଙ୍କୁ ଆକ୍ଷେପ କରିଥିଲେ । ସେ ପାଣିନିଙ୍କ ସୂତ୍ରରେ ଥିବା ଏହି ଆପାତ ଦୁରୂହତାକୁ ସାବଲୀଳ ଶୈଳୀରେ ବ୍ୟାଖ୍ୟା କରି ବୋଧଗମ୍ୟ କରାଇଥିଲେ । ମହାଭାଷ୍ୟର ଅନ୍ୟାନ୍ୟ ବିଶେଷତ୍ୱ ହେଉଛି (କ) ଧ୍ୱନି ଓ ଅର୍ଥର ସମ୍ବନ୍ଧ, ବାକ୍ୟର ବିଭିନ୍ନ ବିଭାଗ, ଶବ୍ଦ ତଥା ଧ୍ୱନିର ପରିଭାଷା ପ୍ରଭୃତି ସମ୍ପର୍କରେ ବୈଜ୍ଞାନିକ ବିବେଚନ ।

(ଖ) ପତଞ୍ଜଳିଙ୍କର ଭାଷା ସମ୍ପର୍କରେ ବିବେଚନ ବ୍ୟାକରଣତଃ ଯେତିକି ବୌଦ୍ଧିକ, ଚିନ୍ତାଧାରା ଦୃଷ୍ଟିରୁ ସେତିକି ଦାର୍ଶନିକ ।

**ମୁନିତ୍ରୟ**—ପାଣିନି, କାତ୍ୟାୟନ ଏବଂ ପତଞ୍ଜଳିଙ୍କୁ ସଂସ୍କୃତ 'ବ୍ୟାକରଣର ମୁନିତ୍ରୟ' ଭାବରେ ଅଭିହିତ କରାଯାଇଛି । ପ୍ରକୃତରେ ସଂସ୍କୃତ ବ୍ୟାକରଣରେ ଉତ୍କ୍ରାନ୍ତ ଶିଖରରେ ପହଞ୍ଚିବାରେ ଏହି 'ବ୍ୟାକରଣର ମୁନିତ୍ରୟ' ଅସାମାନ୍ୟ ସାଫଲ୍ୟ ଅର୍ଜନ କରିଛନ୍ତି । ପାଣିନିଙ୍କ ପୂର୍ବରୁ ମଧ୍ୟ ତିନି ଜଣ ବିଶିଷ୍ଟ ବୈୟାକରଣ ଥିଲେ ଓ ସେମାନେ 'ତ୍ରିମୁନି-ବ୍ୟାକରଣ' ଭାବରେ ଅଭିହିତ ଥିଲେ ବୋଲି ଜଣାଯାଏ, କିନ୍ତୁ ଏମାନେ ପାଣିନି, କାତ୍ୟାୟନ ଓ ପତଞ୍ଜଳିଙ୍କ ପରି ପ୍ରସିଦ୍ଧି ଲାଭ କରିପାରିନାହାନ୍ତି ।

**(୧୩) ଟୀକାଗ୍ରନ୍ଥ**—କ୍ରମଶଃ ସଂସ୍କୃତ ଭାଷାରେ ଦୁର୍ବୋଧତା ଦେଖା ଦେବାରୁ ଅନେକ ଟୀକାକାର ଆବିର୍ଭୂତ ହୋଇ ବହୁ ଟୀକାଗ୍ରନ୍ଥ ରଚନା କରିଛନ୍ତି । ତନ୍ମଧ୍ୟରେ ଜୟାଦିତ୍ୟ ଓ ବାମନ (୭ମ ଶତାବ୍ଦୀର ପ୍ରଥମାର୍ଦ୍ଧ)ଙ୍କର 'କାଶିକା', ଜିନେନ୍ଦ୍ରବୁଦ୍ଧି (୮ମ ଶତାବ୍ଦୀର ପୂର୍ବାର୍ଦ୍ଧ)ଙ୍କର 'କାଶିକା-ନ୍ୟାସ' ବା 'କାଶିକା-ବିବରଣ-ପଞ୍ଜିକା', ଭର୍ତ୍ତୃହରି (୫ମ ଶତାବ୍ଦୀ)ଙ୍କର 'ବାକ୍ୟପଦୀୟମ୍', କୈୟଟ (୧୧ଶ ଶତାବ୍ଦୀ)ଙ୍କର 'ମହାଭାଷ୍ୟ-ପ୍ରଦୀପ୍', ହରଦତ୍ତ (୧୨ଶ ଶତାବ୍ଦୀ)ଙ୍କର 'ପଦମଞ୍ଜରୀ' ଉଲ୍ଲେଖଯୋଗ୍ୟ ।

**(୧୪) କୌମୁଦୀ ଗ୍ରନ୍ଥ**—ଭାରତରେ ମୁସଲମାନ ରାଜତ୍ୱ ଫଳରେ ସଂସ୍କୃତଭାଷା ପାରସିକ, ଆରବିକ, ତୁର୍କୀ ପ୍ରଭୃତି ଇସ୍‌ଲାମ ଭାଷାଦ୍ୱାରା ପ୍ରଭାବିତ ଓ ପରିବର୍ତ୍ତିତ ହେବାକୁ ଲାଗିଲା । ତେଣୁ କ୍ରମେ ଅଷ୍ଟାଧ୍ୟାୟୀ ଦୁର୍ବୋଧ ଓ ଅପ୍ରିୟ

ହୋଇପଡ଼ିଲା । ବ୍ୟାକରଣ ଦୃଷ୍ଟିରୁ ଏହାର ବ୍ୟାଖ୍ୟା ଅବଶ୍ୟ ହେଲା । କୌମୁଦୀ ଦ୍ୱାରା ଯେପରି ଅଧିକାର ଦୂରୀଭୂତ ହୁଏ, ବ୍ୟାକରଣ ନିୟମ ଦ୍ୱାରା ଅଷ୍ଟାଧ୍ୟାୟୀର ଦୁର୍ବୋଧତା କ୍ରମଶଃ ଅପସାରିତ ହେଲା । କୌମୁଦୀଗ୍ରନ୍ଥମାନଙ୍କ ମଧ୍ୟରେ ବିମଳ ସରସ୍ୱତୀ ( ୧୪ଶ ଶତାବ୍ଦୀ )ଙ୍କର 'ରୂପମାଳା', ରାମଚନ୍ଦ୍ର ( ୧୫ଶ ଶତାବ୍ଦୀ)ଙ୍କର 'ପ୍ରକ୍ରିୟା କୌମୁଦୀ', ଭଟ୍ଟୋଜି ଦୀକ୍ଷିତ ( ୧୭ଶ ଶତାବ୍ଦୀର ପ୍ରଥମ ପାଦ)ଙ୍କର 'ସିଦ୍ଧାନ୍ତ କୌମୁଦୀ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

(୧୫) **ପାଣିନି-ପରବର୍ତ୍ତୀ ବ୍ୟାକରଣ ଶାଖା**—ପାଣିନିଙ୍କ ପରେ ଅଭ୍ର କେତେଜଣ ବୈୟାକରଣ ବ୍ୟାକରଣର ନୂତନ ନୂତନ ଶାଖା ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ଏହି ଶାଖାଗୁଡ଼ିକ ମଧ୍ୟରେ ଚାନ୍ଦ୍ର ଶାଖା, ଜୈନେନ୍ଦ୍ର ଶାଖା, ଶକଟାୟନ ଶାଖା, ହେମଚନ୍ଦ୍ର ଶାଖା, କାତନ୍ତ୍ର ଶାଖା, ସାରସ୍ୱତ ଶାଖା, ବୋପଦେବ ଶାଖା, କୌମର ଶାଖା, ସୌପଦ୍ମ ଶାଖା ପ୍ରଭୃତି ପ୍ରଧାନ ।

ଏହିପରି ଭାବରେ ଭାରତବର୍ଷରେ ଗଢ଼ି ଉଠିଥିଲା ଭାଷାବିଜ୍ଞାନର ଏକ ସମୃଦ୍ଧ ଓ ସୁଦୀର୍ଘ ଅତୀତ । ଏହି ପରମ୍ପରାର ପ୍ରବାହକୁ ଅପ୍ରତିହତ ରଖିଛନ୍ତି ଭାରତ-ବର୍ଷର ଭାଷାବିଦ୍ୱାନ୍‌ମାନେ । ସଂସ୍କୃତ ଭାଷା ପରେ ଯେଉଁ ପାଲି ଓ ପ୍ରାକୃତ ଭାଷାର ସୃଷ୍ଟି ହୋଇଥିଲା, ତାହାର ଉପରେ କେବଳ ପାଲି ଓ ପ୍ରାକୃତ ଭାଷାର ବିଦ୍ୱାନ୍‌ମାନେ ନୁହନ୍ତି, ସଂସ୍କୃତ ଭାଷାର ପଣ୍ଡିତମାନେ ମଧ୍ୟ ଅଧ୍ୟୟନ କରିବା ପାଇଁ ଆଗେଇ ଆସିଥିଲେ ।

(୧୬) **ପାଲିଭାଷାର ଅଧ୍ୟୟନ**—ପାଲି ଭାଷାର ବ୍ୟାକରଣ ଭାରତବର୍ଷ, ବ୍ରହ୍ମଦେଶ ଓ ଲଙ୍କା (ସିଂହଳ) ଏହି ତିନୋଟି ସ୍ଥାନରେ ରଚିତ ହୋଇଥିଲା । ଏହି ବ୍ୟାକରଣକୁ ତିନୋଟି ଶାଖାରେ ବିଭକ୍ତ କରାଯାଇପାରେ :

(କ) **କଚ୍ଚାୟନ**—କଚ୍ଚାୟନ ସଂସ୍କୃତ ବୈୟାକରଣ କାତ୍ୟାୟନଙ୍କଠାରୁ ଭିନ୍ନ । ଏହାଙ୍କର ସମୟ ଅନୁମାନିକ ଅଷ୍ଟମ-ନବମ ଶତାବ୍ଦୀ । ଏହାଙ୍କର ପ୍ରଧାନ କୃତି ହେଉଛି 'କଚ୍ଚାୟନ ବ୍ୟାକରଣ' । ଏଥିରେ ପାଲି ଓ ସଂସ୍କୃତ ଭାଷାର ଐତିହାସିକ ସମ୍ବନ୍ଧ ସୂଚିତ ହୋଇଅଛି ।

(ଖ) **ମୋଗ୍‌ଗଲ୍ଲାୟନ**—(୧୨ଶ ଶତାବ୍ଦୀ)—ଏହାଙ୍କର ପ୍ରଧାନ ଗ୍ରନ୍ଥର ନାମ 'ମୋଗ୍‌ଗଲ୍ଲାୟନ ବ୍ୟାକରଣ' । ଏହା କେତେକ ଦୃଷ୍ଟିରୁ ଅପୂର୍ଣ୍ଣ ହେଲେ ହେଁ 'କଚ୍ଚାୟନ ବ୍ୟାକରଣ'ଠାରୁ ଉତ୍କୃଷ୍ଟତର ।

(ଗ) **ଅଗ୍‌ଗବଂଶ**—(୧୨ଶ ଶତାବ୍ଦୀ)—ଏହାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ସଦ୍ଦନୀତି' । ଏହା 'କଚ୍ଚାୟନ ବ୍ୟାକରଣ' ଉପରେ ଆଧାରିତ ।

(୧୭) ପ୍ରାକୃତ ଭାଷାର ଅଧ୍ୟୟନ—ସଂସ୍କୃତ ନାଟକରେ ପ୍ରାକୃତ ଭାଷାର ବ୍ୟବହାର ହୋଇଥିଲା । ଏହାକୁ ବ୍ୟାକରଣ ଢାଞ୍ଚାରେ ପକାଇବାର ପ୍ରଚେଷ୍ଟା ଦେଖା ଦେଇଥିଲା । ତ୍ରିବିକ୍ରମଙ୍କର 'ପ୍ରାକୃତ ବ୍ୟାକରଣ' (୧୩ଶ ଶତାବ୍ଦୀ), ଲକ୍ଷ୍ମୀଧରଙ୍କର 'ଷଡ଼ଭାଷା ଚନ୍ଦ୍ରିକା' (୧୬ଶ ଶତାବ୍ଦୀ), ହେମଚନ୍ଦ୍ରଙ୍କର 'ସିଦ୍ଧ ହେମଚନ୍ଦ୍ର ଶବ୍ଦାନୁଶାସନ' (୧୨ଶ ଶତାବ୍ଦୀ) ବା 'ସିଦ୍ଧ ହେମଚନ୍ଦ୍ରାଭିଧସ୍ୱୋପଜ୍ଞ ଶବ୍ଦାନୁଶାସନ', ବରରୁଚିଙ୍କର 'ପ୍ରାକୃତ ପ୍ରକାଶ' (୫ମ ଶତାବ୍ଦୀ), ଲଙ୍କେଶ୍ୱରଙ୍କ 'ପ୍ରାକୃତ କାମଧେନୁ', ବସନ୍ତରାଜଙ୍କର 'ପ୍ରାକୃତ ସଞ୍ଜୀବନୀ', ମାର୍କଣ୍ଡେୟଙ୍କର 'ପ୍ରାକୃତ-ସର୍ବସ୍ୱ' (୧୭ଶ ଶତାବ୍ଦୀ) ଇତ୍ୟାଦି ଏହାର ଦୃଷ୍ଟାନ୍ତ ।

ଅନେକ ନୈୟାୟିକ, ସାହିତ୍ୟିକ ଓ ମୀମାଂସକ ମଧ୍ୟ ପାଲି, ପ୍ରାକୃତ ଏବଂ ଅପଭ୍ରଂଶ ଭାଷା ଉପରେ ଭାଷାତାତ୍ତ୍ୱିକ ଅଧ୍ୟୟନ କରିଛନ୍ତି ।

(୧୮) ଆଧୁନିକ ଅଧ୍ୟୟନ—ଆଧୁନିକ ଯୁଗରେ ମଧ୍ୟ ଭାରତବର୍ଷରେ ଭାଷାବିଜ୍ଞାନ ସମ୍ପର୍କରେ ଅଧ୍ୟୟନ ଓ ଗବେଷଣା କାର୍ଯ୍ୟ ନିରବଚ୍ଛିନ୍ନ ଭାବରେ ଗତି କରି ଆସିଛି । ଏ ଦିଗରେ ବହୁ ବୈଦେଶିକ ବିଦ୍ୱାନ୍‌ମାନଙ୍କର ଅବଦାନ ଅବିସ୍ମରଣୀୟ ।

ବିଶପ୍ କାଲଡ଼ୱେଲ୍‌ଙ୍କର 'Comparative Grammar of Dravidian Languages', ଜନ ବୀମସଙ୍କର 'Outlines of Indian Philology Comparative Grammar or Indo-Aryan Languages,' ଟ୍ରମ୍ପଙ୍କର 'Grammar of the Sindhi Language compared with the Sanskrit, Prakrit and the Cognate Indian Vernacular', ଡଃ ଏରୁଡ଼ଲଫ୍‌ଙ୍କର 'Grammar of Eastern Hindi comparad with other Gaudian Languages', ଜର୍ଜ୍, ଏ. ଗ୍ରିୟର୍ସନଙ୍କର 'Linguistic Survey of India' ପ୍ରଭୃତି ଭାଷାବିଜ୍ଞାନ ଅଧ୍ୟୟନର ଏକ ଉଲ୍ଲେଖଯୋଗ୍ୟ ନିଦର୍ଶନ ।

ଏହାଛଡ଼ା ବହୁ ଭାରତୀୟ ଓ ବୈଦେଶିକ ବିଭିନ୍ନ ଭାରତୀୟ ଭାଷା ଉପରେ ଓ ମୂଳ ଇଉରୋପୀୟ ଭାଷା ଉପରେ ବୈଜ୍ଞାନିକ ଅଧ୍ୟୟନ କରିଛନ୍ତି । ସେମାନଙ୍କ ମଧ୍ୟରୁ କେତେକଙ୍କର ନାମ ଏଠାରେ ସ୍ମରଣ କରାଯାଇପାରେ ।

(କ) ମୂଳ ଇଉରୋପୀୟ ଭାଷା—ଡଃ. ସୁନୀତି କୁମାର ଚାଟାର୍ଜୀ, ଡଃ. ସତ୍ୟ ସ୍ୱରୂପ ମିଶ୍ର, ଡଃ. ହରପ୍ରିୟା ମିଶ୍ର ଇତ୍ୟାଦି ।

(ଖ) ସଂସ୍କୃତ—ଡଃ. ଲକ୍ଷଣ ସ୍ୱରୂପ, ବି. କେ. ରାଜୱାଡ଼େ, ଡଃ. ସିଦ୍ଧେଶ୍ୱର ବର୍ମା, ଆର୍. ଏନ୍. ଦାଣ୍ଡେକର, ଡଃ. କୁଲକାର୍ଣ୍ଣି, ଡ. ସୁକୁମାର ସେନ୍,

ଡଃ. କପିଳଦେବ ଦ୍ୱିବେଦୀ, ଡଃ. ସୂର୍ଯ୍ୟକାନ୍ତ ଶାସ୍ତ୍ରୀ, ବଟକୃଷ୍ଣ ଘୋଷ, ଡଃ. କୃଷ୍ଣବିହାରୀ ତ୍ରିପାଠୀ, ସିଦ୍ଧେଶ୍ୱର ବର୍ମା ଇତ୍ୟାଦି ।

(ଗ) ପାଲି, ପ୍ରାକୃତ ଅପଭ୍ରଂଶ—ମନମୋହନ ଘୋଷ, ବିଧୁଶେଖର ଭଟ୍ଟାଚାର୍ଯ୍ୟ, ଗୁଣେ, ପି. ଏଲ୍. ବୈଦ୍ୟ, କେଶବ ଶାସ୍ତ୍ରୀ, ହରଗୋବିନ୍ଦ ଭାଷାଣୀ, ସୁକୁମାର ସେନ୍, ଭିକ୍ଷୁ ଜଗଦୀଶ, ହୀରାଲାଲ ଜୈନ, ଶହୀଦୁଲ୍ଲା, ପ୍ରବୋଧ ଚନ୍ଦ୍ର ବାଗ୍‌ଚୀ, ସି. ବ. ପଣ୍ଡିତ, ବନାରସୀ ଦାସ, ଡଃ. କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ପ୍ରହ୍ଲାଦ ପ୍ରଧାନ, ଏ.ସି. ବାନାର୍ଜୀ ଶାସ୍ତ୍ରୀ ପ୍ରଭୃତି ।

(ଘ) ଆବେସ୍ତା—ଭାର୍ଥୋଲୋମେ, ପୁନାଓ୍ୱାଲା, କପାଡ଼ିଆ, ସୁକୁମାର ସେନ୍ ଇତ୍ୟାଦି ।

(ଙ) ବଙ୍ଗଳା—ଡଃ. ସୁନୀତି କୁମାର ଚାଟାର୍ଜୀ, ଚ. ସି. ମଜୁମଦାର, ଡଃ. ସୁକୁମାର ସେନ୍, ହେମନ୍ତ କୁମାର ସରକାର, ବିଜନ ବିହାରୀ ଭଟ୍ଟାଚାର୍ଯ୍ୟ, ଜ୍ଞାନେନ୍ଦ୍ର ମୋହନ ଦାସ, ଗୋପାଲ୍ ହାଲଦାର, କୃଷ୍ଣପଦ ଗୋସ୍ୱାମୀ, ପ୍ରଫୁଲ୍ଲ ଭଟ୍ଟାଚାର୍ଯ୍ୟ, ଅଧ୍ୟାପକ ପ୍ରବେଶ ସିନ୍ହାରାୟ ପ୍ରଭୃତି ।

(ଚ) ଓଡ଼ିଆ—ଡକ୍ଟର ସୁନୀତି କୁମାର ଚାଟାର୍ଜୀ, ଡଃ. କୃଷ୍ଣବିହାରୀ ତ୍ରିପାଠୀ, ଡଃ. ଦେବୀ ପ୍ରସନ୍ନ ପଟ୍ଟନାୟକ, ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା, ପଣ୍ଡିତ ବିନାୟକ ମିଶ୍ର, ଗୋପାଳଚନ୍ଦ୍ର ପ୍ରହରାଜ, ଗିରିଜା ଶଙ୍କର ରାୟ, ଗୋଲୋକବିହାରୀ ଧଳ, ଡଃ. ବଂଶୀଧର ମହାନ୍ତି, ଡଃ. ଖଗେଶ୍ୱର ମହାପାତ୍ର, ଡଃ. ଦେବେନ୍ଦ୍ର ନାଥ ମହାନ୍ତି, ଡଃ ବେଣୀମାଧବ ପାଢ଼ୀ, ଡଃ ସତ୍ୟ ସ୍ୱରୂପ ମିଶ୍ର, ଡଃ ହରପ୍ରିୟା ମିଶ୍ର, ଡଃ ଗଗନେନ୍ଦ୍ର ନାଥ ଦାସ, ଡଃ ବାସୁଦେବ ସାହୁ, ଡଃ. ଧନେଶ୍ୱର ମହାପାତ୍ର ପ୍ରଭୃତି ।

(ଛ) ହିନ୍ଦୀ—ଡଃ ଭୋଲାନାଥ ତିଓ୍ୱାରୀ, ଡଃ ଉଦୟନାରାୟଣ ତିଓ୍ୱାରୀ, ଡଃ ବାବୁରାମ ସାକ୍‌ସେନା, ଡଃ ସୁନୀତିକୁମାର ଚାଟାର୍ଜୀ, ମଙ୍ଗଳ ଦେବ ଶାସ୍ତ୍ରୀ, ଚନ୍ଦ୍ରଧର ଶର୍ମା ଗୁଲେରୀ, ଧୀରେନ୍ଦ୍ର ବର୍ମା, ଦେବେନ୍ଦ୍ର ବର୍ମା, କାମତାପ୍ରସାଦ ଗୁରୁ, ପଦ୍ମସିଂହ ଶର୍ମା, ବିଶ୍ୱନାଥ ପ୍ରସାଦ, ଚନ୍ଦ୍ରାବଳୀ ପାଣ୍ଡେୟ, ଜିହାଗୀର ଦାର, ରାମଚନ୍ଦ୍ର ବର୍ମା, କୈଳାସଚନ୍ଦ୍ର ଭାଟିଆ, କିଶୋରୀ ଦାସ ବାଜପେୟୀ, ହରଦେବ ବାହରୀ, ରମେଶଚନ୍ଦ୍ର ମେହରୋତ୍ରା, ଦୟାନନ୍ଦ ଶ୍ରୀବାସ୍ତବ, ରାମଜ୍ଞାଦ୍ୱିବେଦୀ, ରବୀନ୍ଦ୍ରନାଥ ଶ୍ରୀବାସ୍ତବ ।

(ଜ) ଆସାମୀ—ବାଣୀକାନ୍ତ କାକାତି, ବରୁଆ, ବ୍ରାଉନ୍‌ସନ୍ ।

(ଝ) ନେପାଳୀ—ଟର୍ନର ।

(ଞ) ସିନ୍ଧୀ—ଟର୍ନର, ଟ୍ରମ୍ପ, ଶାହାନି, ଜେରୁଆଲ, ମହରଚନ୍ଦ ଇତ୍ୟାଦି ।

(ଝ) ପଞ୍ଜାବୀ—ବନାରସୀ ଦାସ, ଟି. ଗ୍ରାହେମ ବେ୍ଲି, ଡଃ ଜେନୁଗସ୍ୱା, ପ୍ୟାର ସିଂହ, ପ୍ରଫେସର ପ୍ରେମ ପ୍ରକାଶ, ମୋହନ ସିଂହ ।

(ଠ) କାଶ୍ମୀର—ଗ୍ରିୟର୍ସନ ।

(ଡ) ଦରଦ—ସିଦ୍ଧେଶ୍ୱର ବର୍ମା ।

(ଢ) ମରାଠୀ—ବ୍ଲୁଲ୍ବ୍ଲାକ୍, ଡଃ ସୁମିତ୍ର ମଙ୍ଗେଶ କତ୍ରେ, କେ. ପି. କୁଲ୍‌କର୍ଣ୍ଣି ।

(ଣ) ଗୁଜୁରାଟୀ— ଟର୍ନର, ଟେସୀଟରୀ, ଗ୍ରୀୟର୍ସନ, ନରସିଂହ ରାଓ, ଭୋଲାନାଥ ଡିଓ୍ୱାଟିଆ, କେଶବରାମ କାଶୀରାମ ଶାସ୍ତ୍ରୀ, ଡଃ ଭୋଗୀଲାଲ, ହାଣ୍ଡେରବ, ହରବଲ୍ଲଭ ଭାୟାଣୀ, ଜବରାମ ଦୋଶୀ, ଡଃ ପି. ବି ପଣ୍ଡିତ ତ୍ରିବେଦୀ ।

(ତ) ଦ୍ରାବିଡ଼—କାଲ୍‌ଡ୍ୱେଲ, ନରସିଂହ ରାଓ, ରାମକୃଷ୍ଣ, ଅମୃତ ରାଓ, ନୀଳକଣ୍ଠ ଶାସ୍ତ୍ରୀ, ରାମସ୍ୱାମୀ ଅୟାର, ଚନ୍ଦ୍ରଶେଖର, ପାଦ୍ରୀ ହେରାସ ଓ କୃଷ୍ଣମୂର୍ତ୍ତି ଆଦି ।

ଆଧୁନିକ ଯୁଗର ଭାଷାବିଜ୍ଞାନ ଅଧ୍ୟୟନରେ ଭାରତବର୍ଷ ଭାରତୀୟ ପରମ୍ପରା ଓ ଶାସ୍ତ୍ରୀୟଧାରା ବ୍ୟତୀତ ଇଂରାଜ, ଫରାସୀ, ରୁଷୀୟ ଏବଂ ଆମେରିକାନ୍ ଭାଷାତତ୍ତ୍ୱର ଧାରାକୁ ପ୍ରେରଣା ରୂପେ ଗ୍ରହଣ କରିଛି ।

ଏହିପରି ଭାବରେ ଭାରତବର୍ଷରେ ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଭାଷା ବିଜ୍ଞାନର ଅଧ୍ୟୟନ ଅଖଣ୍ଡ ସ୍ରୋତସ୍ୱତୀର ସ୍ରୋତପରି ବହିଚାଲିଛି । ଏହି ଭାରତ ବର୍ଷରେ ରହିଛି ଭାଷାବିଜ୍ଞାନ ଗଙ୍ଗୋତ୍ରୀର ହିମାଳୟ, ଏଇଠି ରହିଛି ସେଇ ଗଙ୍ଗୋତ୍ରୀର ଆର୍ଯ୍ୟାବର୍ତ୍ତ ଓ ଏଇଠି ରହିଛି ସେହି ଭାଷାବିଜ୍ଞାନର ବଙ୍ଗୋପସାଗର-ବିସ୍ତାରିତ ଉପକୂଳ ।

## ( ଖ ) ଆରବ

ଇସ୍‌ଲାମ ଧର୍ମର ଗ୍ରନ୍ଥ 'କୋରାନ୍'ର ବ୍ୟାଖ୍ୟାରୁ ହିଁ ଆରବରେ ଭାଷାବିଜ୍ଞାନର ସୃଷ୍ଟି । ଏହି ବ୍ୟାଖ୍ୟାରେ ଭାଷା ସମ୍ବନ୍ଧୀୟ ସୁନ୍ଦର ଓ ପ୍ରାଞ୍ଜଳ ବିଚାର ହୋଇଅଛି । ଆରବୀୟ ବିଦ୍ୱାନ୍‌ମାନେ ଚତୁର୍ଥ ଖଲିଫା ହଜରତ ଅଲ୍ଲିଙ୍କୁ ଭାଷାବିଜ୍ଞାନର ଜନକ ଆଖ୍ୟା ଦେଇଥାନ୍ତି ।

ଦଶମ ଶତାବ୍ଦୀରେ ଆରବୀୟ ବିଦ୍ୱାନ୍‌ମାନେ ଜ୍ଞାନକୁ ଦୁଇଭାଗରେ ବିଭକ୍ତ କରିଥିଲେ । ଯଥା—ଆରବଜ୍ଞାନ (Arab Sciences) ଓ ଅରବେତରଜ୍ଞାନ (Non-Arab Sciences) । ଆରବଜ୍ଞାନ ମଧ୍ୟରେ ଭାଷାର ଅଧ୍ୟୟନ, ନୀତିଶାସ୍ତ୍ର ସାହିତ୍ୟ ଓ ଇତିହାସ ଥିଲା ଅନ୍ତର୍ଭୁକ୍ତ ଏବଂ ଆରବେତରଜ୍ଞାନ ମଧ୍ୟରେ ଅନ୍ତର୍ଗତ ଥିଲା ଦର୍ଶନ ଓ ଚିକିତ୍ସାଶାସ୍ତ୍ର । ଏହି ବିଭାଗୀକରଣରୁ ଜଣାଯାଏ ଯେ ଭାଷାବିଜ୍ଞାନ ଆରବୀୟମାନଙ୍କର ନିଜସ୍ୱ ଜ୍ଞାନ ବୋଲି ସେମାନଙ୍କର ଏକ ଦୃଢ଼ ଧାରଣା ରହିଥିଲା, ତଥାପି ଏଥିରେ ଗ୍ରୀସ୍ ଓ ଭାରତର ଦାନ ମଧ୍ୟ ସ୍ମରଣ କରାଯାଇପାରେ ।

ସଂସ୍କୃତ ବ୍ୟାକରଣରେ ଅଗ୍ରଣୀ ପାଣିନିଙ୍କ ପରି ଆରବିକ ବ୍ୟାକରଣରେ ସିବୱେହ୍ (Sibawaih) ଖ୍ୟାତି ଅର୍ଜନ କରିଥିଲେ । ପରବର୍ତ୍ତୀ କାଳରେ ବସ୍ରା ଏବଂ କୁଫାରେ ଦୁଇଟି ମୁଖ୍ୟ ବ୍ୟାକରଣ ସମ୍ପ୍ରଦାୟ ପ୍ରତିଷ୍ଠା ଲାଭ କରିଥିଲେ । ବସ୍ରାର ଭାଷାବିଦ୍‌ଗଣ ଭାଷାରେ 'ସାଦୃଶ୍ୟ'ର ପ୍ରାଧାନ୍ୟ ସ୍ୱୀକାର କରୁଥିଲେ; କିନ୍ତୁ କୁଫାର ଭାଷାବିଜ୍ଞାନୀମାନେ ଏହା ସ୍ୱୀକାର କରୁନଥିଲେ । ବଗଦାଦ (ବସରାରେ ଗଢ଼ି ଉଠିଥିବା) ଭାଷାବିଜ୍ଞାନ ଉପରେ ତର୍କଶାସ୍ତ୍ରର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । ଆରିଷ୍ଟଟ୍‌ଲଙ୍କ ତର୍କଶାସ୍ତ୍ରର ପ୍ରଭାବ ଉଲ୍ଲେଖଯୋଗ୍ୟ । 'ଭାଷା ସ୍ୱାଭାବିକ ବା କୃତ୍ରିମ'—ଏହାରି ଉପରେ ଆରବରେ ବହୁଦିନ ଧରି ଗବେଷଣା ଚାଲିଥିଲା । ଆଧୁନିକ ଯୁଗରେ ଆରବ ଓ ମିଶରରେ ଆରବିକ ଭାଷା ଉପରେ ଗବେଷଣା କାର୍ଯ୍ୟ ଚାଲିଛି ।

ଯଦ୍ୟପି ଆରବରେ ଭାରତ ପରି ଭାଷାବିଜ୍ଞାନର ବିସ୍ମୟକର କୃତିତ୍ୱ ଦେଖିବାକୁ ମିଳେନାହିଁ, ତଥାପି ୟୁରୋପର ବହୁ ପୂର୍ବରୁ ଆରବ ଭାଷାବିଜ୍ଞାନରେ କୃତିତ୍ୱ ଅର୍ଜନ କରିଥିଲା, ଏହା ନିଃସନ୍ଦେହ ।

## ( ଗ ) ଚୀନ

ଚୀନ ଭାଷା ଏକ ପ୍ରାଚୀନ ଭାଷା । ଖ୍ରୀ. ପୂ. ଅନ୍ୟୂନ ୧୫୦୦ ବର୍ଷ ପୂର୍ବରୁ ଏହା ଏକ ଉନ୍ନତ ଭାଷାରେ ପରିଣତ ହୋଇସାରିଥିଲା । କନ୍‌ଫ୍ୟୁସିଅସ୍ ଏହି ଭାଷାରେ ଖ୍ରୀ. ପୂ. ୫୦୦ରୁ ଖ୍ରୀ. ପୂ. ୧୮୦୦ ମସିହା ପର୍ଯ୍ୟନ୍ତ ସେ ସମୟର ଅନେକ ଚୀନା ଗୀତ ସଂଗ୍ରହ କରିଥିଲେ । କାହାଣୀ ଓ ଇତିହାସ ଲେଖିବା ପରମ୍ପରା ଚୀନରେ ଅତି ପ୍ରାଚୀନ । ତେଣୁ ଚୀନରେ ଭାଷାବିଜ୍ଞାନର ସୃଷ୍ଟି ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ହୋଇଥିଲା ବୋଲି ଅନୁମାନ କରାଯାଇପାରେ । ଖ୍ରୀ. ପୂ. ୨୧୩ରେ ଚୀନରେ ରାଜତ୍ୱ କରୁଥିବା ଚୁନସ୍ୱାଙ୍ଗ କୌଣସି ରାଜନୈତିକ କାରଣରୁ ଚୀନ ଭାଷାରେ ରଚିତ ଗ୍ରନ୍ଥଗୁଡ଼ିକୁ ଜାଳି ଦେଇଥିଲେ ବୋଲି ଜଣାଯାଏ । ତାଙ୍କ ମୃତ୍ୟୁପରେ ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର ପାଇଁ ଯେତେବେଳେ ପ୍ରଚେଷ୍ଟା ହୋଇଛି, ଭାଷାର ବୈଜ୍ଞାନିକ ଅଧ୍ୟୟନ ଆବଶ୍ୟକ ହୋଇଛି ଏବଂ ଆନୁମାନିକ ଖ୍ରୀ.ପୂ. ୨୦୦ ବର୍ଷ ତଳେ ଭାଷାର ଅଧ୍ୟୟନ ହୋଇଥିଲା ବୋଲି ଭାଷାବିଜ୍ଞାନୀମାନେ ନିର୍ଦ୍ଧାରଣ କରିଛନ୍ତି ।

ଭାରତରେ ଭାଷାର ଅଧ୍ୟୟନ ଓ ଗବେଷଣା ପରମ୍ପରା ଅତି ପ୍ରାଚୀନ । ଭାରତୀୟ ବୌଦ୍ଧମାନେ ଯେତେବେଳେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଚୀନକୁ ଆସିଲେ ସେତେବେଳେ ଚୀନବାସୀ ଏମାନଙ୍କ ସାହାଯ୍ୟରେ ଧ୍ୱନି ସମ୍ପର୍କରେ ଅଧ୍ୟୟନ କାର୍ଯ୍ୟ ଆରମ୍ଭ କରିଥିଲେ । ଚୀନ ଭାଷାକୋଷର ଶବ୍ଦଗୁଡ଼ିକୁ ଧ୍ୱନି କ୍ରମରେ ସଜାଇବା ପ୍ରୟାସ ଦେଖାଦେଲା । କୋଷ ରଚନାରେ ହିଁ ଚୀନ ଭାଷାର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ହୋଇଅଛି । କୋଷକୁ

ଦୁଇ ପ୍ରକାରରେ ସଜାଯାଇଛି, ଧ୍ୱନିକ୍ରମରେ ଓ ରେଖାକ୍ରମରେ । ଚୀନଭାଷାରେ ଧ୍ୱନିର ଉଚ୍ଚାରଣ ନିର୍ଦ୍ଦିଷ୍ଟ ନଥିବାରୁ ଧ୍ୱନିକ୍ରମରେ ପ୍ରସ୍ତୁତ କୋଷ ବିଶେଷ ଉପଯୋଗୀ ନୁହେଁ । ରେଖାର ସଂଖ୍ୟା ଉପରେ ରେଖାକ୍ରମ କୋଷ ଆଧାରିତ । ଯେଉଁ ଚିହ୍ନରେ ଗୋଟିଏ ରେଖା ଥାଏ ତାହାକୁ ପ୍ରଥମେ, ଯେଉଁଥିରେ ଦୁଇଟି ରେଖା ଥାଏ ତାକୁ ତାହାପରେ, ସେହିପରି ୩, ୪, ୫...ରେଖାଥିବା ଚିହ୍ନ ତା'ପରେ, ତା'ପରେ ସଜାଯାଇଛି । ଚୀନର ପ୍ରାଚୀନତମ କୋଷ ହେଉଛି 'ଏର୍ହ୍ୟ' ଏବଂ ଏହାର ସଂକଳନ କାଳ ଖ୍ରୀ.ପୂ. ୧୧ଶ ଶତାବ୍ଦୀ ବୋଲି ଗ୍ରହଣ କରାଯାଏ । ଚୀନର ପ୍ରଥମ ସୁବିଦିତ କୋଷକାର ହେଉଛନ୍ତି ହୁ-ଚେନ ଏବଂ ତାଙ୍କର କୋଷର ନାମ 'ଶୁଓ-ୱେନ୍-ଜ୍ଞ-ସ୍ତ୍ରୀ' (ଅନୁମାନିକ ୧୦୦ ଖ୍ରୀଷ୍ଟାବ୍ଦ) । ଏଥିରେ ତତ୍କାଳୀନ ଶବ୍ଦାବଳୀର ସୁନ୍ଦର ବ୍ୟାଖ୍ୟା ହୋଇଅଛି । ସପ୍ତମ ଶତାବ୍ଦୀରେ ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ ଚୀନ କୋଷ ପ୍ରସ୍ତୁତ ହୋଇଥିଲା, ଏହାର ନାମ 'ତ୍‌ଜ-ଇନ' । ଦ୍ୱାଦଶ ଶତାବ୍ଦୀରେ ସ୍ମୀମାକ୍ୱାଣ୍ ଏ ଦିଗରେ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି । ଚୀନର ପ୍ରସିଦ୍ଧ ରାଜା ଖା-ସୀ (୧୬୬୨-୧୭୨୩) ବହୁ ବିଦ୍ୱାନଙ୍କ ସହାୟତାରେ ଏକ ଉଚ୍ଚକୋଟୀର ବୃହତ୍ କୋଷ ପ୍ରସ୍ତୁତ କରାଇଥିଲେ, ଏହାର ନାମ 'ଖା-ସୀ ତ୍‌ଜକଟେସ୍' ।

ଆଧୁନିକ ଯୁଗରେ ବହୁ ଚୀନା ଓ ବୈଦେଶିକ ବିଦ୍ୱାନ୍ ଚୀନ ଭାଷାରେ ଗବେଷଣା ଚଳାଇଛନ୍ତି । ଏଲ୍. ସି. ହପ୍‌କିନ୍‌ସଙ୍କର 'ଚୀନା ଲେଖନର ବିକାଶ' ଓ 'ଚୀନା ଲିପି ଚିହ୍ନର ଛଅ ବିଭାଗ' ଭାଷାବିଜ୍ଞାନ ଗ୍ରନ୍ଥ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ଗାଇଲ୍ସ, ଜାଉବୁର, କାର୍ଲଗ୍ରେନ, ଲେ ଚେନ୍-ହୁ, ୱାଙ୍ଗ-କୁଓଂୱି, ଓ୍ୱାଲି, ଛନ୍-ଓ୍ୱାଂ-ତାଓ, ତ୍‌ଜୁନ-ସୀ, ଲ୍ୱୀ ସୁ-ଶାଂ ପ୍ରଭୃତିଙ୍କ ନାମ ଏ କ୍ଷେତ୍ରରେ ସ୍ମରଣୀୟ ।

## (ଘ) ଜାପାନ

ଜାପାନରେ ଭାଷା ସମ୍ବନ୍ଧୀୟ କାର୍ଯ୍ୟ ଆଧୁନିକ କାଳରେ ହିଁ ଆରମ୍ଭ ହୋଇଅଛି । ପ୍ରାଚୀନ କାଳରେ ଜାପାନମାନେ ଚୀନା ଭାଷାରେ କଥାବାର୍ତ୍ତା କରୁଥିଲେ । ନବମ ଶତାବ୍ଦୀରେ ବୌଦ୍ଧ ଉପାସକ କୁକେ 'ସିଦ୍ଧ-ମାତ୍ରିକା' ନାମକ ସଂସ୍କୃତ ଗ୍ରନ୍ଥ ଜାପାନକୁ ଆଣି ଜାପାନରେ ସଂସ୍କୃତ ଭାଷାର ପ୍ରବେଶ ଓ ପ୍ରଚାର ଘଟାଇଥିଲେ । ସେ ସଂସ୍କୃତ ବର୍ଣ୍ଣମାଳା (ଅ, ଆ, ଇ, ଉ, ଏ, ଓ କ୍ରମରେ) ଜାପାନୀ ବର୍ଣ୍ଣମାଳା ସୃଷ୍ଟି କଲେ । ଅଷ୍ଟାଦଶ ଶତାବ୍ଦୀ ମଧ୍ୟରେ ସଂସ୍କୃତ ଭାଷା ଅଧ୍ୟୟନ ପାଇଁ ଜାପାନ ଭାଷା ଓ ଲିପିରେ ସଂସ୍କୃତ ବ୍ୟାକରଣ ଲେଖା ସରିଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଜାପାନର ପୁରୁଷମାନେ ଚୀନା ଭାଷାରେ ଲେଖନ କାର୍ଯ୍ୟ କରୁଥିଲେ ହେଁ ମହିଳାମାନେ ଜାପାନୀ ଭାଷାରେ ଲେଖନ କାର୍ଯ୍ୟ ଆରମ୍ଭ କରି ଜାପାନୀ ଭାଷାରେ ଜାପାନୀ ସାହିତ୍ୟ ରଚନାର ମୂଳଭିତ୍ତି ସ୍ଥାପନ କରିଥିଲେ ।

ଜାପାନରେ କଥିତ ଭାଷା ଓ ଲିଖିତ ଭାଷା ସ୍ୱତନ୍ତ୍ର । ଏଠାର ଲିଖିତ ଭାଷାର ନାମ 'ବେଙ୍ଗୋ' ଓ କଥିତ ଭାଷାର ନାମ 'କୋଗୋ' । ୧୮୯୦ ଖ୍ରୀଷ୍ଟାବ୍ଦରେ ସର୍ବପ୍ରଥମେ ୟମାଦ ମିମିସୋ ଓ ଫୁତାବଟେଇ ଶିମେ ନାମକ ଦୁଇଜଣ ଔପନ୍ୟାସିକ ମିଳିତ ଭାବରେ କଥିତ ଭାଷାରେ 'ଉକିଗୁମୋ' ନାମକ ଉପନ୍ୟାସ ରଚନା କରି କଥିତ ଜାପାନୀ ଭାଷା ଓ ଲିଖିତ ଜାପାନୀ ଭାଷାକୁ ଏକ କରିବା ପ୍ରଚେଷ୍ଟା ଆରମ୍ଭ କରିଥିଲେ ।

କ୍ରମେ ଜାପାନରେ ଭାଷା-ଅଧ୍ୟୟନ ଲାଗି ଅନୁଷ୍ଠାନମାନ ଗଢ଼ାଯାଇଛି ଓ ଏଗୁଡ଼ିକରେ ବହୁ ଗୁରୁତ୍ୱପୂର୍ଣ୍ଣ ଗବେଷଣା କାର୍ଯ୍ୟ ଚାଲିଛି । ଜାପାନୀ ଭାଷାରେ ୟମାଦା ତକାଓ ଏକ ପ୍ରାମାଣିକ ବ୍ୟାକରଣ ଓ ଜି. ବି. ସାନସମ ଏକ ଐତିହାସିକ ବ୍ୟାକରଣ ରଚନା କରିଛନ୍ତି । ଓସ୍ତୁକା ଫୁମିହିକୋଙ୍କ ସମ୍ପାଦନାରେ ପ୍ରସ୍ତୁତ ଗେନକାଇ, କନାଜାୱା ସୋଜାବୋଙ୍କର କୋଜିରିନ ପ୍ରଭୃତି କୋଷ ଜାପାନୀ ଭାଷା-ଅଧ୍ୟୟନ ପଥରେ ବିଶେଷ ସହାୟତା କରିଥାଏ । ହସ୍ମୋରିଶିଞ୍ଜି, କୋଜିହରୋଶିଂଗେ, ପ୍ରଫେସର ଛୀୱା, ପ୍ରଫେସର କାଜୟାମା ପ୍ରଭୃତି ଜାପାନୀ ଭାଷାବିଦ୍ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ଧ୍ୱନି ବିଜ୍ଞାନ କ୍ଷେତ୍ରରେ 'Phonetic Society of Japan'ର ଅବଦାନ ଉଲ୍ଲେଖଯୋଗ୍ୟ ।

## ପାଶ୍ଚାତ୍ୟ ଜଗତରେ ଭାଷାବିଜ୍ଞାନ ଅଧ୍ୟୟନର ଇତିହାସ
## ୟୁରୋପ ଓ ଆମେରିକା

ଭାଷାବିଜ୍ଞାନ କ୍ଷେତ୍ରରେ ଦେଖା ଦେଇଥିବା ଆଗ୍ରହ ଓ ଅଭୀପ୍ସା ୟୁରୋପରେ ବହୁ ପରବର୍ତ୍ତୀ ହେଲେହେଁ ଏ କ୍ଷେତ୍ରରେ ୟୁରୋପ ବର୍ତ୍ତମାନ ଯେତେ ଅଗ୍ରସର ହୋଇଅଛି; ଭାରତବର୍ଷ ସେତେ ଅଗ୍ରସର ହୋଇପାରି ନାହିଁ । ପ୍ରାଚୀନ କାଳରେ ଭାରତବର୍ଷ ପରି ୟୁରୋପ ଭାଷା-ଅଧ୍ୟୟନ କ୍ଷେତ୍ରରେ ବିଦ୍ୱତ୍ତା ଅର୍ଜନ କରିନଥିଲେ ହେଁ ଭାଷା ସମ୍ବନ୍ଧୀୟ ଜ୍ଞାନ ଯେ ୟୁରୋପରେ ଆଦୌ ନଥିଲା ତା କୁହାଯାଇ ପାରିବ ନାହିଁ । ସୂକ୍ଷ୍ମ ଦୃଷ୍ଟିରୁ ଦେଖିଲେ ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀର ୟୁରୋପରେ ଭାଷା ସମ୍ପର୍କରେ ଜାଣିବା ପାଇଁ ଅଭୀପ୍ସା ଜାଗ୍ରତ ହେଲାଣି । ଏ ସ୍ତରରେ କେତେଜଣ ବିଦ୍ୱାନ୍‌ଙ୍କ ଜିଜ୍ଞାସା ଓ ସାଧନା ଏଠାରେ ଉଲ୍ଲେଖ କରାଯାଇପାରେ ।

(୧) ସକ୍ରେଟିସ (ଖ୍ରୀ: ପୂ: ୪୬୯ରୁ ଖ୍ରୀ. ପୂ. ୩୯୯)—ମହାଜ୍ଞାନୀ ସକ୍ରେଟିସ୍ କେବଳ ଦର୍ଶନରେ ପ୍ରଥମ ପ୍ରବର୍ତ୍ତକ ଥିଲେ ନଥିଲେ, ସେ ପାଶ୍ଚାତ୍ୟ ଜଗତରେ ଭାଷାବିଜ୍ଞାନର ପ୍ରଥମ ଜିଜ୍ଞାସାଳୋକ ମଧ୍ୟ ଜାଳି ଦେଇଥିଲେ । ତାଙ୍କର ପ୍ରଥମ ଜିଜ୍ଞାସା ଥିଲା—"ଶବ୍ଦ ଓ ଅର୍ଥ ମଧ୍ୟରେ କ'ଣ ଏକ ନିତ୍ୟ ସ୍ୱାଭାବିକ ସମ୍ବନ୍ଧ ରହିଛି ?" କିନ

ପ୍ରଶ୍ନର ଉତ୍ତରେ ସେ ଉତ୍ତର ଦେଇଥିଲେ 'ନା (No)'। ସେ କହୁଥିଲେ, କୌଣସି ବସ୍ତୁର ଯେଉଁ ନାମ ଅଛି, ତାହା ସ୍ଥାନରେ ଅନ୍ୟ ଯେକୌଣସି ନାମକୁ ଗ୍ରହଣ କରି ଶବ୍ଦ ଓ ଅର୍ଥ ମଧ୍ୟରେ ସମ୍ବନ୍ଧ ଅଣାଯାଇପାରେ। ତେଣୁ ଶବ୍ଦ ଓ ଅର୍ଥ ମଧ୍ୟରେ ଥିବା ସମ୍ପର୍କ ସ୍ୱାଭାବିକ ଓ ନିତ୍ୟ ନୁହେଁ, ଏହା କୃତ୍ରିମ। ଯଦି ଏ ସମ୍ପର୍କ ନିତ୍ୟ, ସ୍ୱାଭାବିକ ଓ ନିର୍ଦ୍ଦିଷ୍ଟ ହୋଇଥାନ୍ତା, ତା ହେଲେ ସମଗ୍ର ପୃଥିବୀରେ ଗୋଟିଏ ଭାଷା ପ୍ରଚଳିତ ଥାଆନ୍ତା। ପାଶ୍ଚାତ୍ୟ ଜଗତରେ ସକ୍ରେଟିସ୍ ଭାଷାର ଅର୍ଥ (Semantics) ଉପରେ ପ୍ରଥମେ ଧ୍ୟାନ ଦେଇଥିଲେ।

(୨) ପ୍ଲେଟୋ (ଖ୍ରୀ. ପୂ. ୪୨୯ରୁ ଖ୍ରୀ. ପୂ. ୩୪୦)—ପ୍ଲେଟୋ ଥିଲେ ସକ୍ରେଟିସ୍‌ଙ୍କର ଶିଷ୍ୟ। ସେ ଗ୍ରୀକ୍ ଧ୍ୱନିମାଳାକୁ ସଘୋଷ ଓ ଅଘୋଷ ଏହିପରି ଦୁଇ ଭାଗରେ ବିଭକ୍ତ କରିଥିଲେ। ବାକ୍ୟ ବିଶ୍ଳେଷଣ, ଶବ୍ଦର ପରିବର୍ତ୍ତନ, ଶବ୍ଦର ଭେଦ, ଶବ୍ଦର ବ୍ୟୁତ୍ପତ୍ତି, ବାକ୍ୟର ଉଦ୍ଦେଶ୍ୟ ଭାଗ ଓ ବିଧେୟ ଭାଗ ଉପରେ ପ୍ରଥମ ଦିଗ୍‌ଦର୍ଶକ ହେଉଛନ୍ତି ପ୍ଲେଟୋ।

(୩) ଆରିଷ୍ଟଟ୍‌ଲ (ଖ୍ରୀ. ପୂ. ୩୮୪ରୁ ଖ୍ରୀ. ପୂ. ୩୨୨)—ଆରିଷ୍ଟଟ୍‌ଲଙ୍କର 'ପୋଏଟିକ୍‌ସ' ଗ୍ରନ୍ଥ ସମଗ୍ର ୟୁରୋପରେ କାବ୍ୟଶାସ୍ତ୍ରର ଆଦିଗ୍ରନ୍ଥ। ଆରିଷ୍ଟଟ୍‌ଲ ଏଥିରେ କାବ୍ୟର ଲକ୍ଷଣ ଓ ଔଚିତ୍ୟ ଉପରେ ଆଲୋକପାତ କରୁ କରୁ ଭାଷା ସମ୍ପର୍କରେ ଅନେକ ନୂତନ ତଥ୍ୟ ପରିବେଷଣ କରିବନ୍ତି। ଆରିଷ୍ଟଟ୍‌ଲଙ୍କର ଭାଷାବୈଜ୍ଞାନିକ ଅଧ୍ୟୟନ ହେଉଛି—(କ) ବର୍ଣ୍ଣ ଏକ ଅବିଭାଜ୍ୟ ଧ୍ୱନି। ଧ୍ୱନି ହେଉଛି ତ୍ରିବିଧ—ସ୍ୱର, ଅନ୍ତଃସ୍ଥ ଓ ସ୍ପର୍ଶ। ହ୍ରସ୍ୱ, ଦୀର୍ଘ ଓ ଅଳ୍ପପ୍ରାଣ ଧ୍ୱନି ମଧ୍ୟ ଭାଷାରେ ପରିଲକ୍ଷିତ ହୁଏ ବୋଲି ଆରିଷ୍ଟଟ୍‌ଲ ମତ ଦେଇଥିଲେ। ସ୍ୱରଧ୍ୱନି ସମ୍ପର୍କରେ ତାଙ୍କର ପ୍ରଦତ୍ତ ସଂଜ୍ଞା ବେଶ୍ ସୁଚିନ୍ତିତ। "ଯେଉଁ ଧ୍ୱନିର ଉଚ୍ଚାରଣ ବେଳେ ଜିହ୍ୱା, ଓଷ୍ଠ ଆଦି ଅବୟବମାନଙ୍କର ସ୍ପର୍ଶ ହୁଏ ନାହିଁ ତାହାହିଁ ସ୍ୱରଧ୍ୱନି।" (ଖ) ତାଙ୍କ ମତରେ ସ୍ୱର ଦ୍ୱିବିଧ—ସାଧାରଣ ଓ ସାର୍ଥକ। ଯେଉଁ ଶବ୍ଦର ଅର୍ଥ ନାହିଁ ତାହା ନିରର୍ଥକ ବା ସାଧାରଣ ଓ ଯାହାର ଅର୍ଥ ଅଛି ତାହା ସାର୍ଥକ। ଆରିଷ୍ଟଟ୍‌ଲଙ୍କର ଏହି ସଂଜ୍ଞା ଭ୍ରମାତ୍ମକ। ବର୍ଣ୍ଣ ବା ବର୍ଣ୍ଣମାଳାର ଅର୍ଥ ନ ରହିଲେ ତାହା ଶବ୍ଦ ହୋଇପାରିବ ନାହିଁ। (ଗ) ସେ ଶବ୍ଦର ଲକ୍ଷ୍ୟାର୍ଥ ଓ ବ୍ୟଙ୍ଗାର୍ଥ ମଧ୍ୟ ଅବତାରଣା କରିଥିଲେ। (ଘ) ଶବ୍ଦଗୁଡ଼ିକର ପୁଂଲିଙ୍ଗ, ସ୍ତ୍ରୀଲିଙ୍ଗ ଓ କ୍ଳୀବଲିଙ୍ଗ ଆଦି ଭେଦ ପାଶ୍ଚାତ୍ୟରେ ପ୍ରଥମେ ଆରିଷ୍ଟଟ୍‌ଲ ନିର୍ଣ୍ଣୟ କରିଥିଲେ। (ଙ) 'କାରକ' ସମ୍ବନ୍ଧରେ ଆରିଷ୍ଟଟ୍‌ଲ ହିଁ ହେଉଛନ୍ତି ପ୍ରଥମ ଆଲୋଚକ। (ଚ) ଆରିଷ୍ଟଟ୍‌ଲ ହିଁ ହେଉଛନ୍ତି ୟୁରୋପର ସର୍ବପ୍ରଥମ ବୈୟାକରଣ। ତାଙ୍କର ବ୍ୟାକରଣ ଭିତ୍ତିରେ ପ୍ରାଚୀନ ଗ୍ରୀକ୍ ବ୍ୟାକରଣ ଗଢ଼ି ଉଠିଥିଲା। ଏହାର ଆଧାର ଉପରେ ବ୍ୟଞ୍ଜନକୁ ତନୁ (Tenues), ମଧ୍ୟ (Media) ଓ ମହାପ୍ରାଣ (Aspirate) ଏହିପରି ତିନିଭାଗରେ ବିଭକ୍ତ

କରିଗଲା । ଆଲେକ୍‌ଜାଣ୍ଡ୍ରାର ସମ୍ପ୍ରଦାୟ ( Alexandrian Schoorl )ର ଭାଷାବିଦ୍‌ଗଣ ଆରିଷ୍ଟଟ୍‌ଲଙ୍କ ଭାଷାବିଜ୍ଞାନ ଦ୍ୱାରା ପ୍ରଭାବିତ ।

(୪) ଡାୟୋନୀସ ଅସ୍ ଥ୍ରାକସ୍ (ଖ୍ରୀ. ପୂ. ୨ୟ ଶତାବ୍ଦୀ)—ଗ୍ରୀକ୍ ଭାଷାର ପ୍ରଥମ ବ୍ୟାକରଣକାର ହେଉଛନ୍ତି ଥ୍ରାକସ୍ । ସେ ପୁରୁଷ, କ୍ରିୟାର କାଳ, ଲିଙ୍ଗ, ବଚନ, କାରକ ସମ୍ବନ୍ଧରେ ପର୍ଯ୍ୟାପ୍ତ ଆଲୋଚନା କରିଥିଲେ । ସେ ଦେଖାଇଥିଲେ ଯେ ସ୍ୱର ସ୍ୱୟଂ ଉଚ୍ଚାରିତ ହୁଏ ଏବଂ ବ୍ୟଞ୍ଜନସ୍ୱରର ସହାୟତାରେ ଉଚ୍ଚାରିତ ହୁଏ । ତାଙ୍କର ବାକ୍ୟବିଜ୍ଞାନ ଅଧ୍ୟୟନ ଗ୍ରୀକ୍, ଲାଟିନ୍ ଓ ହିବ୍ରୁ ଭାଷାର ବ୍ୟାକରଣକୁ ପ୍ରଭାବିତ କରିଥିଲା । ସେତେବେଳେ ଗ୍ରୀସ୍ ସହିତ ରୋମର ଘନିଷ୍ଠ ସମ୍ପର୍କ ଥିଲା ଏବଂ ସମଗ୍ର ୟୁରୋପରେ ରୋମର ପ୍ରାଧାନ୍ୟ ଥିଲା । ଫଳରେ ଥ୍ରାକସ୍‌ଙ୍କର ଭାଷା-ବିଜ୍ଞାନ ରୋମ୍ ମାଧ୍ୟମରେ ସମଗ୍ର ୟୁରୋପରେ ବିସ୍ତାର ଲାଭକରିଥିଲା । ଗ୍ରୀସ୍, ରୋମ୍ ଓ ୟୁରୋପର ଅନ୍ୟାନ୍ୟ ଦେଶର ଭାଷାବିଦ୍‌ଗଣ ବ୍ୟୁତ୍ପତ୍ତି ଶାସ୍ତ୍ର (Etymology ) ପ୍ରସ୍ତୁତ କରିବା ପାଇଁ ଥ୍ରାକସଙ୍କ ନିକଟରୁ ପ୍ରେରଣା ପାଇଥିଲେ । ଥ୍ରାକସଙ୍କ ପର୍ଯ୍ୟନ୍ତ ପ୍ରାଚୀନ ପାଶ୍ଚାତ୍ୟ ଭାଷାବିଜ୍ଞାନ ଏକ ଗଡ୍‌ଡ଼ାଲିକା ସ୍ରୋତରେ ଗଡ଼ି ଆସିଥିଲା । କିନ୍ତୁ ତାଙ୍କର ସମୟରେ ହିଁ ଦେଖାଦେଲା ଭାଷାବିଜ୍ଞାନର ନବଜାଗରଣ ବା ରେନସା । ଏହି ସମୟରେ ମୁଦ୍ରାଯନ୍ତ୍ରର ଉଦ୍ଭାବନ ହେଲା । ପ୍ରାଚୀନ ଜ୍ଞାନର ଅଭ୍ୟୁତ୍ଥାନ ପାଇଁ ଶାସକ ଓ ପ୍ରଜାମାନଙ୍କ ଭିତରେ ନୂତନ ଜାଗୃତି ଦେଖାଦେଲା । ଏହି ନୂତନ ଜାଗୃତିର ବାର୍ତ୍ତାବହ ଭାବରେ ପ୍ରଥମେ ଦେଖା ଦେଇଥିଲେ ଥ୍ରାକସ ।

## ଆଧୁନିକ ଅଧ୍ୟୟନ

ଭାରତରେ ଯେପରି ଭାଷା ସମ୍ପର୍କୀୟ ଆଧୁନିକ ଅଧ୍ୟୟନ ୟୁରୋପୀୟ ବିଦ୍ୱାନ୍‌ମାନଙ୍କ ସମ୍ପର୍କରେ ଆରମ୍ଭ ହୋଇଥିଲା, ୟୁରୋପରେ ସେହିପରି ଭାଷା ସମ୍ପର୍କୀୟ ଆଧୁନିକ ଅଧ୍ୟୟନ ଭାରତୀୟ ବିଦ୍ୱାନ୍‌ମାନଙ୍କ ସମ୍ପର୍କରେ ଆରମ୍ଭ ହୋଇଥିଲା । ୟୁରୋପୀୟ ବିଦ୍ୱାନ୍‌ଗଣ ଭାରତବର୍ଷରେ ସଂସ୍କୃତ ଭାଷା ଓ ସାହିତ୍ୟ ଅଧ୍ୟୟନ କରି ଭାଷାର ବୈଜ୍ଞାନିକ ଓ ତୁଳନାତ୍ମକ ଅଧ୍ୟୟନରେ ଅପୂର୍ବ ସଫଳତା ଅର୍ଜନ କରିଥିଲେ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଆଧୁନିକ ଅଧ୍ୟୟନର ଏକମାତ୍ର କାରଣ ହେଉଛି ସଂସ୍କୃତ ଶିକ୍ଷା । ତେବେ ସେ ପର୍ଯ୍ୟନ୍ତ ଯେଉଁ ଢଙ୍ଗରେ ଭାଷାର ବିଶ୍ଳେଷଣ ଚାଲିଥିଲା, ସଂସ୍କୃତ ଶିକ୍ଷା ଦ୍ୱାରା ତା'ର ପରିବର୍ତ୍ତନ ହେଲା । ଆଧୁନିକ ଯୁଗରେ ଯେଉଁ ଭାଷା-ବିଜ୍ଞାନୀଗଣ ଉଲ୍ଲେଖନୀୟ କୃତିତ୍ୱ ଅର୍ଜନ କରିଛନ୍ତି, ସେମାନଙ୍କ ଅଧ୍ୟୟନର ମୁଖ୍ୟ ବିଭାଗ ଏଠାରେ ସଂକ୍ଷେପରେ ଆଲୋଚିତ ହେଉଅଛି ।

(୧) ସାର୍ ଉଇଲିୟମ୍ ଜୋନ୍‌ସ ( ୧୭୪୬-୧୭୯୬ )—ଉଇଲିୟମ୍ ଜୋନ୍‌ସ କଲିକତା ଉଚ୍ଚ ବିଚାରାଳୟର ପ୍ରଧାନ ବିଚାରପତି ଥିଲେ । ସେ ସଂସ୍କୃତ

ସାହିତ୍ୟର ଜଣେ ପ୍ରିୟ ଗବେଷକ ଥିଲେ । ସେଣେ କଲିକତା ଓ ଇଂଲଣ୍ଡରେ 'Royal Asiatic Society' ଗଠନ କରି ପ୍ରାଚ୍ୟ-ପାଶ୍ଚାତ୍ୟ ଦେଶ ମଧ୍ୟରେ ସମ୍ପର୍କ ସ୍ଥାପନର ଉଦ୍ୟମ ଆରମ୍ଭ କରିଥିଲେ । ଏଥିରେ ସଂସ୍କୃତ ପାରସିକ ପ୍ରଭୃତି ପ୍ରାଚ୍ୟ ଭାଷାର ଅଭିଧାନ ପ୍ରଣୟନ, ଭାରତୀୟ ଭାଷାମାନଙ୍କର ତୁଳନାତ୍ମକ ଅଧ୍ୟୟନ, ଭାରତୀୟ ଭାଷା ସହିତ ପାରସ୍ୟ, ଗ୍ରୀକ୍ ଓ ଲାଟିନ୍ ଆଦି ଭାଷାର ତୁଳନାତ୍ମକ ଅଧ୍ୟୟନ ପ୍ରଭୃତି ଥିଲା ଗୋଟିଏ ଗୋଟିଏ ଅଭିମୁଖ୍ୟ । ୱିଲିୟମ୍ ଜୋନ୍‌ସ ଅନେକ ସଂସ୍କୃତ ଶବ୍ଦ ସହିତ ଗ୍ରୀକ୍ ଓ ଲାଟିନ୍ ଶବ୍ଦର ରୂପକୁ ତୁଳନାତ୍ମକ ଭାବରେ ବିଚାର କରି ପ୍ରମାଣ କରିଥିଲେ ଯେ-ଗ୍ରୀକ୍, ଲାଟିନ୍ ଏବଂ ସଂସ୍କୃତ ଭାଷା ମଧ୍ୟରେ ଏକ ସାମ୍ୟ-ସୂତ୍ର ରହିଛି ଏବଂ ଗ୍ରୀକ୍, ଲାଟିନ୍ ଆଦି ଭାଷାର ଅଧ୍ୟୟନ ପାଇଁ ସଂସ୍କୃତ ଶିକ୍ଷା ଅପରିହାର୍ଯ୍ୟ । ସେ ପ୍ରମାଣ କରିଥିଲେ ଯେ ସଂସ୍କୃତ ଭାଷା ଗ୍ରୀକ୍ ଓ ଲାଟିନ୍‌ଠାରୁ ପ୍ରାଚୀନତର ।

(୨) ଡି. ଜେନସ୍ (ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ)—୧୭୮୬ ଖ୍ରୀଷ୍ଟାବ୍ଦରେ ଭାଷା ସମ୍ବନ୍ଧୀୟ ନିବନ୍ଧ ପାଇଁ ବର୍ଲିନ୍‌ରେ ଡି. ଜେନସ୍‌ଙ୍କୁ ଏକ ଉଲ୍ଲେଖଯୋଗ୍ୟ ପୁରସ୍କାର ମିଳିଥିଲା । ଜେନସ୍ ଏହି ନିବନ୍ଧରେ ଦେଖାଇଥିଲେ ଯେ ଗୋଟିଏ ଆଦର୍ଶ-ଭାଷା ଗଠନ ପାଇଁ ଭାଷାର ସମୃଦ୍ଧି, ଶକ୍ତି, ସ୍ପଷ୍ଟତା, ମାଧୁର୍ଯ୍ୟ ଇତ୍ୟାଦି ଅତ୍ୟାବଶ୍ୟକ । ଭାଷାର 'ସମୃଦ୍ଧି' କହିଲେ ଜେନସ୍ ବୁଝିଥିଲେ ଶବ୍ଦ ଭଣ୍ଡାର (Vocabulary)ର ବିପୁଳତା ଅର୍ଥାତ୍‌ରେ ଏହି ସମୃଦ୍ଧି ସାଧିତ ହୁଏ । 'ଶକ୍ତି' କହିଲେ ସେ ବୁଝିଥିଲେ ନୂତନ ନୂତନ ଶବ୍ଦର ଉଦ୍‌ଭାବନ ଓ ତାହାର ଭିତରେ ନିହିତ ଅର୍ଥର ଗୁରୁତ୍ୱ ଅନ୍ୱେଷଣ । 'ସ୍ପଷ୍ଟତା' କହିଲେ ସେ ବୁଝିଥିଲେ ଭାବର ସ୍ପଷ୍ଟୀକରଣ ଓ ଆଦର୍ଶ ବ୍ୟାକରଣ । 'ମାଧୁର୍ଯ୍ୟ' କହିଲେ ସେ ବୁଝିଥିଲେ ଶ୍ରୁତିମଧୁର ଶବ୍ଦଗୁମ୍ଫନ । ଏହା ଲେଖିବା ମୂଳରେ ତାଙ୍କର ଉଦ୍ଦେଶ୍ୟ ଥିଲା ସାର୍ଥକ ସାହିତ୍ୟ ରଚିତ ହେଉ ଓ ଭାଷାରୁ କର୍କଶତା ଦୂର ହେଉ ।

(୩) ହେନରୀ ଥମ୍‌ସ କୋଲବ୍ରୁକ (୧୭୬୫-୧୮୩୭)—କୋଲବ୍ରୁକ୍ ସଂସ୍କୃତ, ପାଲି, ପ୍ରାକୃତ, ଆରବିକ ଓ ପାରସିକ ଭାଷାରେ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ ଓ ସଂସ୍କୃତ ସମ୍ବନ୍ଧରେ ବହୁସଂଖ୍ୟାରେ ନିବନ୍ଧ ରଚନା କରିଥିଲେ ।

(୪) ଫ୍ରେଡ଼ରିକ୍ ଭନ୍ ସ୍ଲେଗଲ (୧୭୭୨-୧୮୨୯)—ସ୍ଲେଗଲ ସଂସ୍କୃତ ଭାଷାରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିଲେ ଓ କାବ୍ୟ ଅଧ୍ୟୟନ ବେଳେ ଦର୍ଶନକୁ ଅଧିକ ଗୁରୁତ୍ୱ ଦେଉଥିଲେ । ୧୮୦୮ ଖ୍ରୀରେ ତାଙ୍କର 'On the Language and the wisdom of the Indians' ଗ୍ରନ୍ଥ ପ୍ରକାଶ ପାଇଥିଲା । ଏହି ଗ୍ରନ୍ଥରେ ନିମ୍ନଲିଖିତ ଭାଷାବୈଜ୍ଞାନିକ ତତ୍ତ୍ୱ ଦେଖିବାକୁ ମିଳେ—
(କ) ସଂସ୍କୃତ ଭାଷା ସହିତ ୟୁରୋପୀୟ ଭାଷାମାନଙ୍କର ଅନେକ ସାମଞ୍ଜସ୍ୟ ଅଛି ।

ଏ ସାମଞ୍ଜସ୍ୟ ରୂପଗତ, ଧ୍ୱନିଗତ ଓ ଅର୍ଥଗତ । (ଖ) ପୃଥିବୀର ଭାଷା ଦୁଇଟି ବର୍ଗରେ ବିଭକ୍ତ । ଯଥା—ସଂସ୍କୃତ ତଥା ସଗୋଷ୍ଠୀ ଓ ଅନ୍ୟାନ୍ୟ ଭାଷା । ପ୍ରଥମ ବର୍ଗରେ ୟୁରୋପ ଓ ଏସିଆର ବହୁ ଭାଷା ଅନ୍ତର୍ଗତ । ଦ୍ୱିତୀୟ ବର୍ଗରେ ଚୀନ୍ ଭାଷା ଅନ୍ତର୍ଗତ ।

(୫) ଅଡ଼େଲଫ ଡବ୍ଲ୍ୟୁ ସ୍ଲେଗେଲ (୧୭୬୭-୧୮୪୫)—ଏ ହେଉଛନ୍ତି ଫ୍ରେଡ଼୍ରିକ ଭନ୍ ସ୍ଲେଗେଲଙ୍କର ବଡ଼ଭାଇ । ଏହାଙ୍କର ମଧ୍ୟ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ମତ ଥିଲା, ସଂସ୍କୃତ ଆଦି ଶିଷ୍ଟ ଭାଷାଗୁଡ଼ିକ ହେଉଛି ଉଚ୍ଚକୋଟୀର ଭାଷା । ସେ ସଂସ୍କୃତ ତଥା ତାହାର ସଗୋଷ୍ଠୀୟ ଭାଷାମାନଙ୍କୁ ସଂଯୋଗାତ୍ମକ ଓ ବିଯୋଗାତ୍ମକ ଏହିପରି ଦୁଇ ଶ୍ରେଣୀରେ ବିଭକ୍ତ କରି ଦୁଇଟି ମଧ୍ୟରେ ପ୍ରଭେଦ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇଥିଲେ ।

(୬) ଓ୍ୱିଲହେଲ୍ମ୍ ଭନ୍ ହମ୍ବୋଲ୍ଟ (୧୭୬୭-୧୮୩୫)—ହମ୍‌ବୋଲ୍ଟ ଭାଷାବିଜ୍ଞାନ କ୍ଷେତ୍ରରେ ଐତିହାସିକ ଓ ତୁଳନାତ୍ମକ ଅଧ୍ୟୟନ ପାଇଁ ପ୍ରସିଦ୍ଧ । ତାଙ୍କର ତୁଳନାତ୍ମକ ଦୃଷ୍ଟିକୋଣ ଏତେ ବ୍ୟାପକ ଯେ ତାଙ୍କୁ 'ତୁଳନାତ୍ମକ ଭାଷାବିଜ୍ଞାନର ପିତା' ବୋଲି କୁହାଯାଏ । କାଭିର ଭାଷା ସମ୍ପର୍କରେ ସେ ଏକ ଉପାଦେୟ ଗ୍ରନ୍ଥ ରଚନା କରିଥିଲେ । ଭାଷାବିଜ୍ଞାନ କ୍ଷେତ୍ରରେ ତାଙ୍କର କେତୋଟି ମତ ପ୍ରଣିଧାନଯୋଗ୍ୟ ।—(କ) ଭାଷା ଏକ ପ୍ରବହମାନ ବ୍ୟାପାର । (ଖ) ଭାଷାକୁ କୌଣସି ପରିଭାଷା ମଧ୍ୟରେ ବାନ୍ଧି ରଖିବା ଉଚିତ ନୁହେଁ । (ଗ) ଭାଷାର ତୁଳନାତ୍ମକ ଓ ଐତିହାସିକ ଅଧ୍ୟୟନ ଏକ ଅପରିହାର୍ଯ୍ୟ କାର୍ଯ୍ୟ । (ଘ) ଭାଷା ପାଇଁ କୌଣସି ବ୍ୟାକରଣ ପ୍ରସ୍ତୁତ କରିବାର ଆବଶ୍ୟକତା ନାହିଁ । (ଙ) ପ୍ରତ୍ୟେକ ଭାଷା ନିଜ ନିଜ ବିଶେଷତ୍ୱରେ ସମୃଦ୍ଧ । (ଚ) କୌଣସି ଭାଷାର ତୁଚ୍ଛାତିତୁଚ୍ଛ ଉପଭାଷାକୁ ମଧ୍ୟ ଅବହେଳା ନ କରି ତାହା ଉପରେ ଆଲୋଚନା କରାଯିବା ଉଚିତ । (ଛ) ଭାଷା ଦ୍ୱିବିଧ—ଶ୍ଲିଷ୍ଟ ଓ ଅଶ୍ଲିଷ୍ଟ । ଭାଷାର ଉତ୍ପତ୍ତି ସମ୍ପର୍କରେ ମଧ୍ୟ ହମ୍‌ବୋଲ୍ଟ କ୍ରମାଗତ ଗବେଷଣା ଚଳାଇଥିଲେ । ପରବର୍ତ୍ତୀ କାଳରେ ତାଙ୍କର ମତ ସମସ୍ତଙ୍କ ଦ୍ୱାରା ଗୃହୀତ ହୋଇପାରି ନଥିଲା ।

(୭) ରାସ୍ମସ୍ ରାସ୍କ (୧୭୮୭-୧୮୩୨)—ଆଇସ୍‌ଲାଣ୍ଡିକ୍ ତଥା ପ୍ରାଚୀନ ନର୍ସ ଭାଷା ଉପରେ ରାସ୍କ ଦୁଇଟି ଗ୍ରନ୍ଥ ରଚନା କରିଥିଲେ । ଏହି ଦୁଇ ପୁସ୍ତକରେ ସେ ଭାଷାବିଜ୍ଞାନ ଅଧ୍ୟୟନର କେତୋଟି ନୂତନ ପଦ୍ଧତି ପ୍ରଣୟନ କରିଛନ୍ତି । ଏହି କାରଣରୁ ତାଙ୍କୁ କୁହାଯାଏ 'ଆଧୁନିକ ଭାଷାବିଜ୍ଞାନର ଜନକ' । ପୃଥିବୀର ବହୁ ଭାଷାର ସେ ତୁଳନାତ୍ମକ ଅଧ୍ୟୟନ କରିଛନ୍ତି । ଏହି ଅଧ୍ୟୟନ ବେଳେ ସେ ଏହି ନିଷ୍କର୍ଷରେ ଉପନୀତ ହୋଇଥିଲେ ଯେ ମୂଳ ଇଣ୍ଡୋୟୁରୋପୀୟ ଭାଷା ସହିତ ଜର୍ମାନିକ ଭାଷାର କେତେକ ସମ୍ପର୍କ ରହିଛି । ଗ୍ରୀମ୍ ଇଣ୍ଡୋୟୁରୋପୀୟ ଭାଷାର

କେତେକ ଧ୍ୱନି କିପରି ଜର୍ମାନିକ୍ ଭାଷାରେ ପରିବର୍ତ୍ତିତ ହୋଇଯାଉଛି ଏକ ସୂତ୍ର ଦ୍ୱାରା ଦେଖାଇ ଦେବାଦ୍ୱାରା ଇଣ୍ଡୋୟୁରୋପୀୟ ଭାଷା ସହିତ ଜର୍ମାନିକ୍ ଭାଷାର ସମ୍ପର୍କ ପରୋକ୍ଷରେ ସ୍ୱୀକାର କରିଛନ୍ତି । ଗ୍ରୀମ୍‌ଙ୍କର ଏହି ସୂତ୍ର 'ଗ୍ରୀମ୍‌ଙ୍କର ଭାଷାସୂତ୍ର' ବା 'ଗ୍ରୀମ୍‌ଙ୍କର ଭାଷା ନିୟମ' ନାମରେ ଅଭିହିତ । ଗ୍ରୀମ୍‌ଙ୍କ ପୂର୍ବରୁ ରାସ୍କ ହିଁ ହେଉଛନ୍ତି ଏହି ସୂତ୍ର ବା ନିୟମର ଆବିଷ୍କର୍ତ୍ତା; କିନ୍ତୁ ମୂଳ ଇଣ୍ଡୋୟୁରୋପୀୟ ଭାଷା ସହିତ ଜର୍ମାନିକ୍ ଭାଷାର ସମ୍ପର୍କ ପାଇଁ ସେ ନିର୍ଦ୍ଦିଷ୍ଟ ନିୟମ ପ୍ରଣୟନ କରିପାରି ନଥିଲେ । ଆଇସ୍‌ଲାଣ୍ଡର ଭାଷା ନାର୍ସଭାଷା, ସଂସ୍କୃତ ଓ ତାହାର ସଗୋତ୍ରୀୟ ଭାଷା ତଥା ଦ୍ରାବିଡ଼ ଭାଷା ସମ୍ପର୍କରେ ତାଙ୍କର ଗବେଷଣା ବାସ୍ତବରେ ପ୍ରଶଂସନୀୟ ।

(୮) ଜାକୋବ୍ ଗ୍ରୀମ୍ (୧୭୮୫-୧୮୬୩)—ଜାକୋବ୍ ଗ୍ରୀମ୍ ଭାଷାବିଜ୍ଞାନ ଅଧ୍ୟୟନ ପାଇଁ ତାଙ୍କର ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ । ଏଥିପାଇଁ ସେ ପ୍ରଥମେ ପ୍ରେରଣା ପାଇଥିଲେ ତାଙ୍କର ବଡ଼ଭାଇ ଓ୍ୱିଲହେଲମ୍‌ଙ୍କଠାରୁ । ସେ ବର୍ଲିନ୍ ଏକାଡେମୀରେ ଭାଷାବିଜ୍ଞାନ ପ୍ରଫେସର ଭାବରେ ଅଧିଷ୍ଠିତ ହୋଇଥିଲେ । ସେ ପ୍ରଥମେ ପ୍ରାଚୀନ ଜର୍ମାନ୍ ଭାଷାର ଅଧ୍ୟୟନ କରିଥିଲେ । ରାସ୍କ ଏବଂ ସ୍ଲେଗେଲଙ୍କ ଭାଷାତାତ୍ତ୍ୱିକ ଆଲୋଚନାରେ ଉଦ୍‌ବୁଦ୍ଧ ହୋଇ ସେ ଜର୍ମାନ୍ ଭାଷା ଓ ତାହାର ସଗୋତ୍ରୀୟ ଭାଷାମାନଙ୍କର ତୁଳନାତ୍ମକ ଅଧ୍ୟୟନ କରିଥିଲେ । ରାସ୍କଙ୍କର 'ଆଇସ୍‌ଲାଣ୍ଡିକ୍ ବ୍ୟାକରଣ'ର ପରିଚୟ ଦେବାକୁ ଯାଇ ସେ ବହୁ ଉପଭାଷା ଓ ଅପଭ୍ରଂଶ ଜାତର ଭାଷା ସମ୍ପର୍କରେ ନିଜର ମତ ଉପସ୍ଥାପନ କରିଥିଲେ । ବ୍ୟୁତ୍ପତ୍ତି ବିଜ୍ଞାନରେ ମଧ୍ୟ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ତାଙ୍କର ମହତ୍ତ୍ୱପୂର୍ଣ୍ଣ ଭାଷାତାତ୍ତ୍ୱିକ କୃତି ହେଉଛି 'Deutsche Grammatik' (ଦେବଭାଷା ବ୍ୟାକରଣ) । ଏହା ୧୮୧୯ ଖ୍ରୀ.ରେ ପ୍ରକାଶ ପାଇଥିଲା । ତାଙ୍କର ତୁଳନାତ୍ମକ ଓ ଐତିହାସିକ ଦୃଷ୍ଟିକୋଣ ଏଥିରେ ଦୃଷ୍ଟିଗୋଚର ହୁଏ । ଏହି ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣରେ ସେ ବର୍ଣ୍ଣ ପରିବର୍ତ୍ତନ (Lautverschiebung) ସମ୍ପର୍କରେ ଆଲୋଚନା କରିଛନ୍ତି । ଏହାକୁ 'ଗ୍ରୀମ୍‌ଙ୍କର ଭାଷା ନିୟମ' ବୋଲି କୁହାଯାଏ । ଗ୍ରୀମ୍‌ଙ୍କ ଦ୍ୱାରା ଗଠିତ ବହୁ ପାରିଭାଷିକ ଶବ୍ଦ (umlaut, ablaut ପ୍ରଭୃତି) ଆଜି ପର୍ଯ୍ୟନ୍ତ ଭାଷାବିଜ୍ଞାନରେ ପ୍ରଚଳିତ ହୋଇଆସୁଅଛି ।

(୯) ଫ୍ରାନ୍ସିସ ବାପ୍—(ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ଊନବିଂଶ ଶତାବ୍ଦୀର ଆଦ୍ୟଭାଗ)—ବାପ୍ ହେଉଛନ୍ତି ରାସ୍କ ଓ ଗ୍ରୀମ୍‌ଙ୍କର ସମସାମୟିକ । ସେ ତୁଳନାତ୍ମକ ଭାଷାବିଜ୍ଞାନରେ ଜଣେ କର୍ମଠ ବିଦ୍ୱାନ୍ । ଗ୍ରୀକ୍, ଲାଟିନ୍ ଅବେସ୍ତା, ଜର୍ମାନ୍ ଓ ସଂସ୍କୃତ ଭାଷାର ସେ ତୁଳନାତ୍ମକ ଅଧ୍ୟୟନ କରିଛନ୍ତି । ତୁଳନାତ୍ମକ ଭାଷାବିଜ୍ଞାନରେ ତାଙ୍କ ସାଧନାର ସାଫଲ୍ୟ ଯୋଗୁ ସେ 'ତୁଳନାତ୍ମକ ଭାଷାବିଜ୍ଞାନର ପିତା' ଭାବରେ ଅଭିହିତ । ତୁଳନାତ୍ମକ ଭାଷାବିଜ୍ଞାନ ସମ୍ବନ୍ଧୀୟ

ତାଙ୍କର ଗ୍ରନ୍ଥ 'ଧାରୁ ପର୍ନିସ୍ଥା' ୧୮୧୬ ଖ୍ରୀ. ରେ ପ୍ରକାଶିତ ହୋଇଥିଲା । ୧୮୨୨ରେ ସେ ବର୍ଲିନ ଏକାଡେମୀରେ ଅଧ୍ୟାପକ ଭାବରେ ନିଯୁକ୍ତ ହୋଇଥିଲେ । ୧୮୩୩ ଖ୍ରୀ: ରେ ସେ ଶିଷ୍ୟମାନଙ୍କୁ ନେଇ ତୁଳନାତ୍ମକ ବ୍ୟାକରଣ ଉପରେ କାର୍ଯ୍ୟ ଆରମ୍ଭ କରିଥିଲେ ଓ ୧୮୫୨ ଖ୍ରୀ. ରେ ସମାପ୍ତ କରିଥିଲେ । ସେ ଏହି କାର୍ଯ୍ୟରେ ସଂସ୍କୃତ, ଗ୍ରୀକ୍, ଲାଟିନ୍, ଅବେସ୍ତା, ଆର୍ମିନିୟନ, ଲିଥୁଆନିୟନ, ପ୍ରାଚୀନ ସ୍ଲାବିୟନ, ଗଥିକ୍ ତଥା ଜର୍ମାନ ଭାଷାର ତୁଳନାତ୍ମକ ବ୍ୟାକରଣ ପ୍ରଦାନ କରିଛନ୍ତି ।

ବାପ୍ ପ୍ରତ୍ୟାଘାତ ଉପରେ କାର୍ଯ୍ୟ ଆରମ୍ଭ କରିଥିଲେ । ସେ ପ୍ରଥମେ ଭାବିଥିଲେ ଯେ ସଂସ୍କୃତ 'ଅ' ୟୁରୋପୀୟ 'a' ଏବଂ 'o' ମଧ୍ୟରେ କୌଣସି ପ୍ରଭେଦ ନାହିଁ । କିନ୍ତୁ ପରେ ଗ୍ରୀମ୍‌ଙ୍କ ପ୍ରଭାବରେ ତାଙ୍କର ଏହି ମତ ପରିବର୍ତ୍ତିତ ହୋଇଥିଲା । ସେ ସଂସ୍କୃତ 'ଅ'କୁ ମୂଳ ଭାଷାର ମୌଳିକ ସ୍ୱରର ଏକ ପ୍ରତିନିଧି ରୂପେ ଗ୍ରହଣ କରିଥିଲେ । ସେ ପ୍ରଥମେ ଦେଖାଇ ଦେଇଥିଲେ ଯେ ବିନା ବ୍ୟାକରଣରେ ମଧ୍ୟ ଭାଷା ତିଷ୍ଠିପାରେ, ଯଥା—ଚୀନା ଭାଷା । ତାଙ୍କ ମତରେ ଏକ ଷଟ୍‌ସ୍ୱ ଧାତୁକୁ ନେଇ ମଧ୍ୟ ଭାଷାର ସୃଷ୍ଟି ହୋଇପାରେ । ସେ କେତୋଟି ୟୁରୋପୀୟ ଭାଷାକୁ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣ କରିଥିଲେ । ଗ୍ରୀମ୍ ଅପଶ୍ରୁତି (ablaut) ଉପରେ ଯେଉଁ ଆଲୋଚନା କରିଥିଲେ, ବାପ୍ ତା'ର ବିରୋଧ କରିଥିଲେ । ମନୋବିଜ୍ଞାନ ଭିତ୍ତିରେ ଭାଷାବିଜ୍ଞାନ ଅଧ୍ୟୟନ ଦିଗରେ ବାପ୍ ହେଉଛନ୍ତି ଭାଷାବିଜ୍ଞାନର ବାପ ।

(୧୦) ଅଗଷ୍ଟ ସ୍ଲାଇଖର (୧୮୨୧-୧୮୬୮)—ସ୍ଲାଇଖର ସ୍ଲାଭୋନିକ୍ ଲିଥୁଆନିୟନ ଭାଷାରେ ଜଣେ ବିଶିଷ୍ଟ ବିଶେଷଜ୍ଞ ଥିଲେ । ତାଙ୍କର ଭାଷାବିଜ୍ଞାନ ଉପରେ ଡାରଉଇନ୍‌ଙ୍କର ବିବର୍ତ୍ତନବାଦ ଓ ହେଗେଲଙ୍କର ଗୂଢ଼ ଦର୍ଶନତତ୍ତ୍ୱ ଯଥେଷ୍ଟ ପ୍ରଭାବ ପକାଇଛି । ସେ ଭାଷାକୁ ତିନୋଟି ବର୍ଗରେ ବିଭକ୍ତ କରିଥିଲେ, ଯଥା—ଅଯୋଗାତ୍ମକ, ଅଶ୍ଳିଷ୍ଟଯୋଗାତ୍ମକ ଓ ଶ୍ଳିଷ୍ଟଯୋଗାତ୍ମକ । ଏହି ତିନି ବର୍ଗକୁ ବୁଝାଇବା ପାଇଁ ସେ ବୀଜଗଣିତ ପରି ସୂତ୍ରର ସାହାଯ୍ୟ ନେଇଛନ୍ତି । ଧାତୁ (Root) ସ୍ଥାନରେ 'R', ଉପସର୍ଗ (Prefix) ସ୍ଥାନରେ 'P', ପ୍ରତ୍ୟୟ (Suffix) ସ୍ଥାନରେ 'S' ତଥା ଅନ୍ତଃସ୍ଥ ପରିବର୍ତ୍ତନ ସ୍ଥାନରେ 'X' ପ୍ରଭୃତି ବିଭିନ୍ନ ସଙ୍କେତ ପ୍ରୟୋଗ କରି ସେ ଭାଷାବିଜ୍ଞାନକୁ ଅଙ୍କ କଷିଲା ପରି କଷିଛନ୍ତି । ସ୍ଲାଇଖରଙ୍କ ସବୁଠାରୁ ବଡ଼ ମୌଳିକ ଦାନ ହେଉଛି ମୂଳ ଇଣ୍ଡୋୟୁରୋପୀୟ ଭାଷାର ପୁନର୍ଗଠନ ସମ୍ପର୍କରେ ଗବେଷଣା । ସେ ମୂଳ ଇଣ୍ଡୋ-ୟୁରୋପୀୟ ଭାଷାର ସ୍ୱର, ବ୍ୟଞ୍ଜନ, ଧାତୁ ଓ ରୂପ ରଚନା ଉପରେ ବିସ୍ତୃତ ଆଲୋଚନା କରିଛନ୍ତି । ମୂଳ ଭାଷାର ସମ୍ଭାବିତ ରୂପ ପ୍ରଦାନ କରି ତହିଁରୁ ବାହାରିଥିବା

ସଂସ୍କୃତ, ଗ୍ରୀକ୍, ଲାଟିନ୍ ଏବଂ ଗ୍ରଥିକ୍ ଆଦି ରୂପର ପରିଚୟ ଦେଇଛନ୍ତି । ଏତଦ୍‌ବ୍ୟତୀତ ବାପ୍ ଯେଉଁ କାର୍ଯ୍ୟ ଆରମ୍ଭ କରିଥିଲେ, ସ୍ଲାଇଖର ତାହାର ଚରମ ସୀମାରେ ଉପନୀତ ହୋଇଥିଲେ ।

(୨୨) ଫ୍ରେଡ୍‌ରିକ ମାକ୍‌ସ୍‌ମୁଲର (୧୮୨୩-୧୯୦୦)—ମାକ୍ସ-ମୁଲରଙ୍କର ଜ୍ଞାନପ୍ରାପ୍ତି ର ଅଭିଳାଷ ଥିଲା ଅନନ୍ତ । ସେ କେବଳ ଜଣେ ଭାଷାବିତ୍ ନଥିଲେ, ଅଧିକନ୍ତୁ ଥିଲେ ଜଣେ ପ୍ରବୀଣ ବୈଜ୍ଞାନିକ ଓ ଦାର୍ଶନିକ, ଜଣେ ପ୍ରବକ୍ତା ଓ ଚିନ୍ତକ । ଭାଷା ଉପରେ ଥିଲା ତାଙ୍କର ଅନନ୍ୟସାଧାରଣ ଅଧିକାର । ନୀରସ ବିଷୟକୁ ମୌଳିକ ଅଭିବ୍ୟକ୍ତି ମାଧ୍ୟମରେ ସରସ, ସୁନ୍ଦର ଓ ସୁବୋଧ୍ୟ କରି ଉପସ୍ଥାପିତ କରିବା ଥିଲା ତାଙ୍କର ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ।

ଭାଷାର ଉଦ୍‌ଗମ, ପ୍ରକୃତି, ବିକାଶ, ବର୍ଗୀକରଣ ପ୍ରଭୃତି ବିଷୟରେ ସେ ଅନେକ ମୂଲ୍ୟବାନ୍ ସିଦ୍ଧାନ୍ତ ପ୍ରଦାନ କରିଛନ୍ତି । ତାଙ୍କର ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ହେଉଛି ଅର୍ଥବିଜ୍ଞାନ । ଅର୍ଥବିଜ୍ଞାନ ଦିଗରେ ସେ ଲେଖାରେ ଓ ରୂପରେ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ଭାଷାବିଜ୍ଞାନ କ୍ଷେତ୍ରରେ ତାଙ୍କର ତୃତୀୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଉଛି ପ୍ରାଗୈତିହାସିକ ଅନୁସନ୍ଧାନ । ତେବେଯାଏ ଏ ଦିଗରେ ନିର୍ଦ୍ଦିଷ୍ଟ ଅନୁସନ୍ଧାନ ହୋଇ ନ ଥିଲା । ଏହି ଅନୁସନ୍ଧାନ ଦ୍ୱାରା ସେ ମାନବ ଜାତିର ଇତିହାସ ସମ୍ପର୍କରେ ଜ୍ଞାନ ଅର୍ଜନ କରିପାରିଲେ । ଏହା ଫଳରେ ସେ କହିବାକୁ ସମର୍ଥ ହେଲେ ଯେ ଆର୍ଯ୍ୟମାନଙ୍କର ମୂଳ ନିବାସ ହେଉଛି ମଧ୍ୟ-ଏସିଆ । ଏହି ସ୍ଥାନରୁ ଗୋଟିଏ ଶାଖା ୟୁରୋପ ଆଡ଼କୁ ଓ ଆଉ ଗୋଟିଏ ଶାଖା ଏସିଆର ଦକ୍ଷିଣକୁ ବିଚ୍ଛୁରିତ ହୋଇଗଲା । ଏସିଆର ଦକ୍ଷିଣକୁ ବିଚ୍ଛୁରିତ ଶାଖା ଦୁଇ ଭାଗରେ ବିଭକ୍ତ ହୋଇଥିଲା, ଯଥା—ଇରାନୀ ଉପଶାଖା ଓ ଭାରତ ଉପଶାଖା । ମାକ୍‌ସମୂଲରଙ୍କର ଏହି ଅଭିମତକୁ ବହୁ ଭାଷାବିତ୍ ଗ୍ରହଣ କରିଛନ୍ତି । ତାଙ୍କର ଚତୁର୍ଥ ବିଶେଷତ୍ୱ ହେଉଛି ଭାରତୀୟ ଭାଷା ଓ ସାହିତ୍ୟ ପ୍ରତି ଅଶେଷ ପ୍ରୀତି । ଭାରତର ଭାଷା, ସାହିତ୍ୟ ଓ ଦର୍ଶନ ଅଧ୍ୟୟନ କରି ସେ ପ୍ରାଚୀନ ଭାରତର ପବିତ୍ର ଧର୍ମମୂଳକ ଗ୍ରନ୍ଥଗୁଡ଼ିକୁ ଇଂରାଜୀରେ ଅନୁବାଦିତ କରିଥିଲେ । ଦେବନାଗରୀ ଲିପି ଉପରେ ତାଙ୍କର ମୌଳିକ ଗବେଷଣା ମଧ୍ୟ ପ୍ରଶଂସନୀୟ ।

(୨୬) ଉଇଲିୟମ ଡାଇଟ୍‌ହ୍ୱିଟନୀ (୧୮୨୪-୧୮୯୬)—ହ୍ୱିଟ୍‌ନି ହେଉଛନ୍ତି ମାକ୍‌ସମୂଲରଙ୍କ ସମକାଳୀନ ଭାଷାବିତ୍ । ସେ ଥିଲେ ଆମେରିକାନ୍ ହ୍ୱୋନ୍ । ସେ ନିଉ-ହେଭେନର ୟେଲ କଲେଜର ସଂସ୍କୃତ ତଥା ତୁଳନାତ୍ମକ ଭାଷାବିଜ୍ଞାନର ଅଧ୍ୟାପକ ଥିଲେ । ତାଙ୍କର 'ଭାଷା ଏବଂ ଭାଷାର ଅଧ୍ୟୟନ' ଗ୍ରନ୍ଥ ୧୮୬୭ ଖ୍ରୀ.ରେ ଓ 'ଭାଷାର ଜୀବନ ଏବଂ ବିକାଶ' ୧୮୭୫ ଖ୍ରୀ.ରେ ପ୍ରକାଶ

ପାଇଥିଲା । ତାଙ୍କର ସଂସ୍କୃତ ଭାଷାର ପ୍ରସିଦ୍ଧ ବ୍ୟାକରଣ ୧୮୭୯ ଖ୍ରୀ·ରେ ପ୍ରକାଶିତ ହୋଇଥିଲା । ଏଥିରେ ତାଙ୍କର ନିଜସ୍ୱ ଶୈଳୀ ଓ ଅଂବେଷାର ଅତୀବ ଉପାଦେୟ । ବିଦ୍ୱତ୍ତା ଦୃଷ୍ଟିରୁ ହ୍ୱିଟ୍‌ନୀ ଥିଲେ ମାକ୍ସମୁଲରଙ୍କଠାରୁ ଅଧିକ ଯୋଗ୍ୟ । କିନ୍ତୁ ଇଂରେଜ ଶାସନ କାଳରେ ପ୍ରୋତ୍ସାହନର ଅଭାବରୁ ଭାରତରେ ଏହାଙ୍କର ଯଥୋଚିତ ଆଦର ଓ ପ୍ରଚାର ହୋଇପାରି ନଥିଲା । ମାକ୍ସମୁଲରଙ୍କ ସଙ୍ଗରେ ତାଙ୍କର ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଦେଖା ଦେଇଥିଲା । ମାକ୍ସମୁଲରଙ୍କର ଅନେକ ସିଦ୍ଧାନ୍ତରେ ସେ ତୀବ୍ର ପ୍ରତିବାଦ କରିଥିଲେ । ମାକ୍ସମୁଲର ତାର ପ୍ରତ୍ୟୁତ୍ତର ଦେଉଥିଲେ । ମାକ୍ସମୁଲର ନିଜର 'Chips from a German Workshop' ଗ୍ରନ୍ଥରେ ତାଙ୍କ ପ୍ରତି ଉଦ୍ଦିଷ୍ଟ ସମାଲୋଚନାର ଶେଷ ଉତ୍ତର ଦେଇଥିଲେ । ହ୍ୱିଟ୍‌ନୀ ଶେଷରେ 'ମାକ୍ସମୁଲର ଓ ଭାଷାବିଜ୍ଞାନ' ନାମକ ଗ୍ରନ୍ଥରେ ଶେଷ ସମାଲୋଚନା କରିଥିଲେ । ଭାଷାର ପରିଭାଷା ସମ୍ପର୍କରେ ଏହି ଦୁଇ ବିଦ୍ୱାନଙ୍କର ମତଭେଦ ରହିଥିଲା । ଏହା ସତ୍ତ୍ୱେ ଦୁହେଁ ଅନେକ ବିଷୟରେ ଏକମତ ଥିଲେ, ଉଭୟଙ୍କ ବାଦ-ପ୍ରତିବାଦ ଫଳରେ ଭାଷାବିଜ୍ଞାନର ଅନେକ ରହସ୍ୟାଚ୍ଛନ୍ନ ତଥ୍ୟ ସ୍ପଷ୍ଟ ହୋଇଯାଇଥିଲା ।

## ଆଧୁନିକ ଭାଷାବିଜ୍ଞାନର କେତୋଟି ମୁଖ୍ୟ କେନ୍ଦ୍ର (ସ୍କୁଲ)

ଆଧୁନିକ କାଳରେ ଅନେକ ଦେଶ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଭାଷାବିଜ୍ଞାନର ବ୍ୟାପକ ଅଧ୍ୟୟନ ହୋଇଛି ଓ ହୋଇଆସୁଛି । କିନ୍ତୁ ମୌଳିକ ଉଦ୍ଭାବନ ଦୃଷ୍ଟିରୁ ପୃଥିବୀର କେତୋଟି କେନ୍ଦ୍ର ପ୍ରଶଂସନୀୟ କାର୍ଯ୍ୟ କରିଅଛି । ସେଗୁଡ଼ିକର ସଂକ୍ଷିପ୍ତ ପରିଚୟ ପ୍ରଦାନ କରାଯାଇପାରେ ।

(୧) ରୁଷିଆ କେନ୍ଦ୍ର—ରୁଷିଆରେ କଜାନ, ଲେନିନ୍‌ଗ୍ରେଡ଼ ଓ ମସ୍କୋରେ ତିନୋଟି ମୁଖ୍ୟ ଭାଷାକେନ୍ଦ୍ର ରହିଛି । ପୋଲାଣ୍ଡର ବିଖ୍ୟାତ ଭାଷାବିତ୍ କୁର୍ତେନେ (୧୮୪୫-୧୯୨୯) କଜାନ କେନ୍ଦ୍ରର ପ୍ରଥମ ପ୍ରତିଷ୍ଠିତ ଭାଷାବିତ୍ । ତାଙ୍କର ଶିଷ୍ୟ କ୍ରୁଜେଉସ୍କି (୧୮୫୧-୧୮୯୭) ତାଙ୍କର ପ୍ରଧାନ ସହାୟକ ଥିଲେ । ଆଧୁନିକ ଭାଷାବିଜ୍ଞାନର ଅନ୍ୟତମ ଜନ୍ମଦାତା ସସ୍ୟୁର ଏହି କେନ୍ଦ୍ରଦ୍ୱାରା ପ୍ରଭାବିତ ହୋଇଥିଲେ । ଭାଷା ସହିତ ସମାଜର ଓ ବ୍ୟକ୍ତିବିଶେଷର ନିବିଡ଼ ସମ୍ପର୍କ ସମ୍ବନ୍ଧରେ ସେ ଗଭୀର ଗବେଷଣା କରିଥିଲେ । ଏହି କେନ୍ଦ୍ରର ଚିନ୍ତାଧାରାରୁ ପ୍ରାଗ୍‌କେନ୍ଦ୍ର ମୂଳ ପ୍ରେରଣା ଲାଭ କରିଥିଲା । ୧୯୧୮ ମସିହାରେ ଏହି କେନ୍ଦ୍ର ଛାଡ଼ି କୁର୍ତେନେ ଅନ୍ୟତ୍ର ଚାଲିଯିବାରୁ କେନ୍ଦ୍ରଟି କ୍ରମଶଃ ଭାଙ୍ଗିଗଲା । ଲେନିନଗ୍ରେଡ୍ କେନ୍ଦ୍ରର ପ୍ରତିଷ୍ଠାତା ହେଉଛନ୍ତି କୁର୍ତେନେଙ୍କର ଅନ୍ୟତମ ଶିଷ୍ୟ ସୀରଓ୍ୱା (୧୮୮୦-୧୯୪୪) । ଏହି କେନ୍ଦ୍ର ମୁଖ୍ୟତଃ ଧ୍ୱନିବିଜ୍ଞାନ ଓ ଧ୍ୱନିଗ୍ରାମବିଜ୍ଞାନ ଉପରେ ଗବେଷଣା ପାଇଁ ପ୍ରସିଦ୍ଧ । ଏହି କେନ୍ଦ୍ରର ଆଉ ଦୁଇଜଣ ସ୍ମରଣୀୟ ଭାଷାବିତ୍ ହେଉଛନ୍ତି ଜିନ୍ଦର ଏବଂ ଗୋଜ୍‌ଦଫ ।

ମସ୍କୋ କେନ୍ଦ୍ରର ପ୍ରତିଷ୍ଠାତା ହେଉଛନ୍ତି ଫର୍ତୁନାତେ । ସମକାଳୀନ ଭାଷାତତ୍ତ୍ୱ ପ୍ରଫେସର ଫର୍ତୁନାତଭ୍ (୧୮୪୮-୧୯୧୪) ଭାଷାର ସମକାଳୀନ ଓ ବହୁକାଳୀନ ତୁଳନାତ୍ମକ ଅଧ୍ୟୟନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ମାର୍ (୧୮୬୪-୧୯୩୦) ହେଉଛନ୍ତି ଏହି କେନ୍ଦ୍ରର ଅନ୍ୟଜଣେ ବିଶିଷ୍ଟ ଭାଷାତତ୍ତ୍ୱ । ତାଙ୍କର ମତ ଥିଲା, ଗୋଟିଏ ଭାଷାରୁ ହିଁ ପୃଥିବୀର ସବୁ ଭାଷାର ସୃଷ୍ଟି ହୋଇଅଛି । ତାଙ୍କ ଦୃଷ୍ଟିରେ ଭାଷା ଥିଲା ସାମାଜିକ ଓ ଅର୍ଥନୈତିକ ଅଧିସଂରଚନା ( Social and Economic Superstructure ) । ଏହି କେନ୍ଦ୍ରର ଅନ୍ୟ ଜଣେ ବିଶିଷ୍ଟ ଭାଷାବିଜ୍ଞାନୀ ହେଉଛନ୍ତି ରିଫରମାଟ୍ସ୍କି । ଏହି କେନ୍ଦ୍ରର ମୁଖ୍ୟ ବିଶେଷତ୍ୱ ହେଉଛି ରୂପବିଜ୍ଞାନ, ବାକ୍ୟବିଜ୍ଞାନ ଏବଂ ରୂପଧ୍ୱନିଗ୍ରାମବିଜ୍ଞାନର ଗବେଷଣା ।

(୨) ଜେନେଭା କେନ୍ଦ୍ର—ଏହି କେନ୍ଦ୍ରକୁ ସଂରଚନାତ୍ମକ ଭାଷାବିଜ୍ଞାନ ( Structural Linguistics )ର ମୂଳ ଉତ୍ସ ବୋଲି ଗ୍ରହଣ କରାଯାଇପାରେ । ସଂରଚନାତ୍ମକ ଭାଷାବିଜ୍ଞାନର ଜନକ ସସ୍ୟୁର (୧୮୫୭-୧୯୧୩) ଜେନେଭାରେ ଭାଷାବିଜ୍ଞାନର ଅଧ୍ୟାପକ ଥିଲେ । ସେ ଏହି କେନ୍ଦ୍ର ସହିତ ସଂଯୁକ୍ତ ହେବା ଫଳରେ କ୍ଲାସିକାଲ ସଂରଚନାତ୍ମକ ଅଧ୍ୟୟନ (Classical Structuralism)ର ଅଭ୍ୟୁଦୟ ଘଟିଲା । ଏହାଙ୍କ ଉପରେ ପାଣିନି, ବ୍ଲୁମ୍‌ଫିଲ୍‌ଡ୍, ହ୍ୱାଇଟନି, ଓସ୍ଥଫ, ଶ୍ଲାଇଚର, ଗିଲେରୋ, ହ୍ୱିଟନି ପ୍ରଭୃତି ଭାଷାବିଜ୍ଞାନୀମାନଙ୍କର ଅଧ୍ୟୟନର ପ୍ରଭାବ ପଡ଼ିଥିଲା । ପ୍ରଥମେ ସେ ଇଣ୍ଡୋୟୁରୋପୀୟ ଭାଷାବଳୀ ସଂସ୍କୃତ, ଗ୍ରୀକ୍, ଲାଟିନ, ଲିଥୁଆନିୟନ ପ୍ରାଚୀନ ଜର୍ମାନର ଅଧ୍ୟାପକ ଥିଲେ । ପରେ ସାମାନ୍ୟ ଭାଷାବିଜ୍ଞାନରେ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ସାମାନ୍ୟ ଭାଷାବିଜ୍ଞାନ ଉପରେ ତାଙ୍କର ପୁସ୍ତକ 'Course de Linguistique Generale' ତାଙ୍କର ମୃତ୍ୟୁ ପରେ ପ୍ରକାଶ ପାଇଥିଲା । ପ୍ରକୃତରେ ଏହା ତାଙ୍କ ଦ୍ୱାରା ଲେଖା ଯାଇନଥିଲା । ତାଙ୍କର ଅଧ୍ୟାପନା ବେଳେ ତାଙ୍କର ଛାତ୍ରମାନେ ଯେଉଁ ନୋଟ୍ କରିଥିଲେ, ତାହାର ଆଧାର ଉପରେ ଏହା ଲିଖିତ । ସସ୍ୟୁର ଭାଷାର ଉତ୍ପତ୍ତି ସମ୍ପର୍କରେ ପ୍ରତୀକ ସିଦ୍ଧାନ୍ତକୁ ସମର୍ଥନ କରିଥିଲେ । ସସ୍ୟୁରଙ୍କର ଦୁଇଜଣ ଶିଷ୍ୟ ଥିଲେ, ଚାର୍ଲସ ବେଲୀ ଓ ଅଲବର୍ଟ ସେଚେହେୟେ । ବେଲୀ ଶୈଳୀବିଜ୍ଞାନର ଜଣେ ବିଶେଷଜ୍ଞ । ସେଚେହେୟେ ବାକ୍ୟବିଜ୍ଞାନ, ଭାଷାବିଜ୍ଞାନ ଓ ମନୋବିଜ୍ଞାନର ସମ୍ପର୍କ ପ୍ରଭୃତି ଉପରେ କାର୍ଯ୍ୟ କରିଥିଲେ । ବାକ୍ୟବିଜ୍ଞାନ କ୍ଷେତ୍ରରେ ଫ୍ରେଇ (Frie)ଙ୍କର ମଧ୍ୟ ଯଥେଷ୍ଟ ସୁନାମ ଥିଲା । ବର୍ତ୍ତମାନ ଏହି କେନ୍ଦ୍ର ଶୈଳୀବିଜ୍ଞାନ ଉପରେ ଅଧିକ ଅଗ୍ରଗତି କରିଅଛି ।

(୩) ଫ୍ରାନ୍‌ସ କେନ୍ଦ୍ର—ଫ୍ରାନ୍‌ସର ଭାଷା-ଅଧ୍ୟୟନ କେନ୍ଦ୍ର ପ୍ୟାରିସ୍‌ରେ ଅବସ୍ଥିତ । ଊନବିଂଶ ଶତାବ୍ଦୀରେ ଏହାର କାର୍ଯ୍ୟ ଆରମ୍ଭ ହୋଇଥିଲେ ହେଁ ଏହି କେନ୍ଦ୍ର ଦୃଷ୍ଟିଆକର୍ଷଣକାରୀ ପ୍ରଗତି କରିପାରିଛି । ପ୍ରଥମେ ଏହି କେନ୍ଦ୍ର ଧ୍ୱନିବିଜ୍ଞାନ

ଉପରେ କାର୍ଯ୍ୟ ଆରମ୍ଭ କରିଥିଲା; କିନ୍ତୁ କ୍ରମେ ଏହା ଶବ୍ଦ, ଅର୍ଥ, ଭାଷାଭୂଗୋଳ ତଥା ଦ୍ୱିଭାଷିତା ଉପରେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଅଛି । ମନୋବୈଜ୍ଞାନିକ, ସାମାଜିକ ଏବଂ ଶରୀର-ବୈଜ୍ଞାନିକ ଦୃଷ୍ଟିରୁ ଭାଷାର ଅଧ୍ୟୟନ କରିବା କ୍ଷେତ୍ରରେ ଏହି କେନ୍ଦ୍ର ପ୍ରଶଂସା ଅର୍ଜନ କରିପାରିଅଛି । ପୃଥିବୀ ବିଖ୍ୟାତ ଧ୍ୱନିବିତ୍ ରୁସେଲେ (Rousseot) ଏହି କେନ୍ଦ୍ରରେ କାଇମୋଗ୍ରାଫ୍ ଏବଂ ପ୍ୟାଲଟୋଗ୍ରାମ ସାହାଯ୍ୟରେ ଧ୍ୱନିମାନଙ୍କର ଅଧ୍ୟୟନ କରିଥିଲେ । ପ୍ରସିଦ୍ଧ ଭାଷାବିତ୍ ସସ୍ୟୁର ପ୍ୟାରିସରେ ୧୮୮୧ରୁ ୧୮୯୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାଧ୍ୟାପକ ଥିଲାବେଳେ ତାଙ୍କ ପ୍ରେରଣାରେ ଏହି କେନ୍ଦ୍ରର କାର୍ଯ୍ୟ ଅଧିକ ବିସ୍ତାର ଲାଭ କରିଥିଲା । ସସ୍ୟୁରଙ୍କର ଦୁଇ ଶିଷ୍ୟ ଗ୍ରାମୋ (Gramont) ଏବଂ ମେୟେ (Meillet) ଏହି କେନ୍ଦ୍ରରେ ମନୋବିଜ୍ଞାନ ଓ ଶରୀରବିଜ୍ଞାନ ପରିପ୍ରେକ୍ଷୀରେ ଭାଷାର ବିକାଶ ସମ୍ପର୍କରେ ଅଧ୍ୟୟନ କରିଥିଲେ । ମେୟେ ସାମାଜିକ ଦୃଷ୍ଟିକୋଣରୁ ମଧ୍ୟ ଭାଷାର ଅଧ୍ୟୟନ କରିଥିଲେ । ଭେନ୍ଦ୍ରିୟେ (Vendryes) ମନୋବୈଜ୍ଞାନିକ ଦୃଷ୍ଟିରୁ ଭାଷାର ଅଧ୍ୟୟନ ଉପରେ ଜୋର୍ ଦେଉଥିଲେ । ବ୍ରିଲ୍ ଏହି କେନ୍ଦ୍ରରେ ଅର୍ଥବିଜ୍ଞାନ ଉପରେ, ଜ୍ୟୁଲ୍ ବ୍ଲକ୍ ଏବଂ ମେୟେ ଐତିହାସିକ ତଥା ତୁଳନାତ୍ମକ ଭାଷା-ବିଜ୍ଞାନ ଉପରେ କାର୍ଯ୍ୟ କରିଥିଲେ । ମେୟେ ଇଣ୍ଡୋୟୁରୋପୀୟ ଭାଷାମାନଙ୍କର ତୁଳନାତ୍ମକ ଅଧ୍ୟୟନ କରିଥିଲେ ଏବଂ ବ୍ଲକ୍ 'ଭାରତୀୟ ଆର୍ଯ୍ୟଭାଷା' ଏବଂ 'ମରାଠୀ ଭାଷା' ଉପରେ କାମ କରିଥିଲେ ।

(୪) ବ୍ରିଟିଶ କେନ୍ଦ୍ର—ଇଂଲଣ୍ଡ ସ୍କୁଲ, ଲଣ୍ଡନ ସ୍କୁଲ, ସିଷ୍ଟେମିକ୍ ଗ୍ରାମାର ସ୍କୁଲ ପ୍ରଭୃତି ହେଉଛି ବ୍ରିଟିଶ୍ ଭାଷାବିଜ୍ଞାନର ପ୍ରଧାନ ସ୍କୁଲ ବା କେନ୍ଦ୍ର । ସ୍ୱୀଟ୍‌ଙ୍କ ଦ୍ୱାରା ଇଂଲଣ୍ଡ୍ ସ୍କୁଲର ଆରମ୍ଭ ହୋଇଥିଲା । ଏହି କେନ୍ଦ୍ର ମୁଖ୍ୟତଃ ଧ୍ୱନିବିଜ୍ଞାନ ଉପରେ କାର୍ଯ୍ୟ କରୁଅଛି । ଜୋନ୍ସ ଏବଂ ଫର୍ଥ ଏହି କେନ୍ଦ୍ରର ଦୁଇଜଣ ବିଶିଷ୍ଟ ଭାଷାବିତ୍ । ଲଣ୍ଡନ୍ ସ୍କୁଲର ପ୍ରସିଦ୍ଧ ଭାଷାବିତ୍ ହେଉଛନ୍ତି ଫର୍ଥ । ସେ ଅର୍ଥବିଜ୍ଞାନ ଓ ରାଗାତ୍ମକ ତତ୍ତ୍ୱ (Prosedic feature) ଉପରେ ପ୍ରଶଂସନୀୟ କାର୍ଯ୍ୟ କରିଛନ୍ତି । ସିଷ୍ଟେମିକ୍ ଗ୍ରାମାର ସ୍କୁଲରେ ହ୍ୟାଲିଡ଼େ କାର୍ଯ୍ୟ କରିଥିଲେ । ମୋଟାମୋଟି ଭାବରେ ବ୍ରିଟିଶ୍ ସ୍କୁଲ ଧ୍ୱନିବିଜ୍ଞାନ ଉପରେ ବିଶେଷ କାର୍ଯ୍ୟ କରିଥିବାରୁ ଏହାକୁ ଧ୍ୱନିବିଜ୍ଞାନୀୟ କେନ୍ଦ୍ର (Phonetic School) ମଧ୍ୟ କୁହାଯାଏ । ଏହି ସ୍କୁଲରେ ଆଫ୍ରିକା ତଥା ଏସିଆର ଅନେକ ଭାଷାର ଧ୍ୱନି ଉପରେ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରାଯାଇଛି ।

(୫) ପ୍ରାଗ୍ (Prague) କେନ୍ଦ୍ର—ପ୍ରାଗ୍ ହେଉଛି ଚେକୋସ୍ଲୋଭାକିଆର ରାଜଧାନୀ । ସସ୍ୟୁର, କୁର୍ତେନେ ଏବଂ ଫର୍ଟୁନାତୋଭ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇ କେତେକ ବିଦ୍ୱାନ୍ ଏଠାରେ ଏକ ଭାଷାକେନ୍ଦ୍ର (Cercle Linguistique de Prague) ସ୍ଥାପନ କରିଥିଲେ । ରୋମାନ୍ ଯାକୋବ୍‌ସନ, ଟ୍ରୁବେଜ୍‌କୋୟ,

କସେର୍ଭସ୍କି ପ୍ରଭୃତି ଭାଷାବିଦ୍‌ଗଣ ଥିଲେ ଏହାର ପ୍ରମୁଖ ସ୍ୱରୂପ । ଏହି କେନ୍ଦ୍ରର ଗବେଷଣା ଅନୁଯାୟୀ ଭାଷା ହେଉଛି ଭାବ ଏବଂ ବିଚାରଧାରାର ଅଭିବ୍ୟକ୍ତିର ଏକ ମାଧ୍ୟମ ଯାହା ପ୍ରୟୋଗର ବାତାବରଣ ଦ୍ୱାରା ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରେ । ଧ୍ୱନିର ପ୍ରଭେଦକ ଲକ୍ଷଣ ( Distinctive features ) ଏବଂ ବିତରଣ ( Distribution ) ଉପରେ ଏଠାରେ ଅଧିକ ଗୁରୁତ୍ୱ ଆରୋପ କରାଯାଏ । ପ୍ରଭେଦକ ଲକ୍ଷଣ ଉପରେ ବିଶେଷଜ୍ଞ ଗବେଷକ ହେଉଛନ୍ତି ଯାକୋବ୍‌ସନ । ତାଙ୍କ ମତରେ ଧ୍ୱନିଗ୍ରାମ ହେଉଛି ପ୍ରଭେଦକ ଲକ୍ଷଣର ସମଷ୍ଟି । ଧ୍ୱନିମାନଙ୍କର ପ୍ରଭେଦ ବିରୋଧ ( Distinctive Opposition )ର ଆଧାର ହେଉଛି ତାଙ୍କର ଦ୍ୱିଗଠକବାଦ (Binarism), ଅର୍ଥାତ୍ ଭାଷାର ମୂଳରେ ରହିଛି ଦ୍ୱିଗଠକ ବିରୋଧ । ଗୋଟିକର କୌଣସି ଲକ୍ଷଣ ଅଛି ତ, ଅନ୍ୟଟିରେ ନାହିଁ । ଉଦାହରଣ ସ୍ୱରୂପ 'ବ'ରେ ଘୋଷତ୍ୱ ଥିବା ସ୍ଥଳେ 'ପ'ରେ ଘୋଷତ୍ୱ ନାହିଁ । ଧ୍ୱନି କ୍ଷେତ୍ରରେ ଏହି କେନ୍ଦ୍ରର ଯଥେଷ୍ଟ ଅବଦାନ ରହିଛି । ବର୍ତ୍ତମାନ ଶୈଳୀ ଓ ବାକ୍ୟରଚନା ବିଧିରେ ମଧ୍ୟ ଏହି କେନ୍ଦ୍ରରେ କାର୍ଯ୍ୟ କରାଯାଉଅଛି ।

(ଚ) କୋପେନ-ହାଗେନ୍ କେନ୍ଦ୍ର—କୋପେନ-ହାଗେନ୍ ହେଉଛି ଡେନମାର୍କର ରାଜଧାନୀ । ଡେନିଶ୍ ଭାଷାବିତ୍ ବ୍ରନ୍ଦଲ୍ ଓ ହେଲମ୍‌ସଲେଭ ଏହି କେନ୍ଦ୍ରକୁ ସଂରଚନାତ୍ମକ ଭାଷାବିଜ୍ଞାନର ଏକ ମୁଖ୍ୟ ଭାଷାନୁଷ୍ଠାନ ଭାବରେ ଗଢ଼ିଥିଲେ । ଏହି କେନ୍ଦ୍ରରେ ଭାଷାବିଜ୍ଞାନରେ ତର୍କଶାସ୍ତ୍ର ଓ ଗଣିତର ପ୍ରୟୋଗ କରାଯାଇଥାଏ । ଧ୍ୱନିଗ୍ରାମବିଜ୍ଞାନ ଓ ଗ୍ଲସିମ୍‌ବିଜ୍ଞାନ ( Glossematics ) ବା ଜିହ୍ୱା-ବିଜ୍ଞାନ ଅଧ୍ୟୟନ ପାଇଁ ମଧ୍ୟ ଏହି କେନ୍ଦ୍ର ପ୍ରସିଦ୍ଧ । ଭାଷାବିତ୍ ସସ୍ୟୁରଙ୍କ ଅଧ୍ୟୟନରୁ ଏହି କେନ୍ଦ୍ର ଯଥେଷ୍ଟ ପ୍ରେରଣା ଲାଭ କରିଛି । ଏହି କେନ୍ଦ୍ରର ବିଖ୍ୟାତ ଭାଷାବିତ୍ ହେଲମ୍‌ସଲେଭ ସର୍ବପ୍ରଥମେ ଭାଷାର ବିଷୟବସ୍ତୁ (Content) ଏବଂ ଅଭିବ୍ୟକ୍ତି (Expression) ମଧ୍ୟରେ ଥିବା ପାର୍ଥକ୍ୟ ଉପରେ ବୈଜ୍ଞାନିକ ଅଧ୍ୟୟନ କରିଥିଲେ । ଏହି କେନ୍ଦ୍ରର ଅନ୍ୟତମ ବିଖ୍ୟାତ ଭାଷାବିଜ୍ଞାନୀ ହେଉଛନ୍ତି ଉଲ୍ ଡଲ୍ ।

(ଛ) ଆମେରିକାନ୍ କେନ୍ଦ୍ର—ଆମେରିକାନ୍ ଭାଷାକେନ୍ଦ୍ର ମଧ୍ୟରେ ନିମ୍ନଲିଖିତ କେନ୍ଦ୍ରଗୁଡ଼ିକ ପ୍ରସିଦ୍ଧ, ଯଥା :

(କ) ସପୀର କେନ୍ଦ୍ର—ଏହି କେନ୍ଦ୍ର ମୂଳତଃ ଭାଷାବିତ୍ ବୋଆସ (୧୮୫୮-୧୯୪୨)ଙ୍କ ଦ୍ୱାରା ଗଢ଼ିଉଠିଥିଲା; କିନ୍ତୁ ଏହାକୁ ବିକଶିତ କେନ୍ଦ୍ରରେ ପରିଣତ କରିଥିଲେ ପ୍ରଖ୍ୟାତ ଭାଷାବିତ୍ ସପୀର । ସପୀରଙ୍କର ଶିଷ୍ୟ ହ୍ୱାର୍ଫଙ୍କ ଦାନ ମଧ୍ୟ ଅନବଦ୍ୟ । ସମାଜ ବିଜ୍ଞାନ ଏବଂ ମାନବ ବିଜ୍ଞାନ ପରିପ୍ରେକ୍ଷୀରେ ଭାଷାର ଅଧ୍ୟୟନ କରିବା ଦିଗରେ ଏହି କେନ୍ଦ୍ର ଯଥେଷ୍ଟ ଅଗ୍ରଗତି କରିଅଛି ।

(ଖ) ଏନ ଆର୍ବର କେନ୍ଦ୍ର—ଏହା ସପୀର କେନ୍ଦ୍ରର ଏକ ଉପକେନ୍ଦ୍ର । ଏନ୍ ଆର୍ବର ବିଶ୍ୱବିଦ୍ୟାଳୟ ହିଁ ହେଉଛି ଏହାର ଅଧ୍ୟୟନର କ୍ଷେତ୍ର । ଭାଷା

ବିଶ୍ଳେଷଣର ନୂତନ ପଦ୍ଧତି (Tagmemics)ର ଆବିଷ୍କାରକ ପାଇକ୍ ଏବଂ ଭାଷାତତ୍ତ୍ୱ ନାଇଡ଼ା ଏହି କେନ୍ଦ୍ରର ଦୁଇଜଣ ପ୍ରସିଦ୍ଧ ଭାଷାବିତ୍ । ଧ୍ୱନିଗ୍ରାମବିଜ୍ଞାନ, ରୂପଗ୍ରାମ-ବିଜ୍ଞାନ, ପ୍ରାୟୋଗିକ ଭାଷାବିଜ୍ଞାନ (Applied linguistics)ର ଅଧ୍ୟୟନ ଏହି କେନ୍ଦ୍ରର ବିଶେଷତ୍ୱ ।

(ଗ) ବ୍ଲୁମ୍‌ଫିଲଡ୍ କେନ୍ଦ୍ର—ମୁଖ୍ୟତଃ ଏହି କେନ୍ଦ୍ର ଭାଷାର ଅର୍ଥ ଉପରେ ପ୍ରାଧାନ୍ୟ ନ ଦେଇ ଭାଷାର ବିଶ୍ଳେଷଣରେ ତାହାର ସଂରଚନାର ମହତ୍ତ୍ୱ ଉପରେ ପ୍ରାଧାନ୍ୟ ଆରୋପ କରେ । ବ୍ଲୁମ୍‌ଫିଲ୍ଡ ଏହାର ଜଣେ ମୁଖ୍ୟ କର୍ଣ୍ଣଧାର ଥିବାରୁ ଏହାର ନାମ ବ୍ଲୁମ୍‌ଫିଲ୍ଡ କେନ୍ଦ୍ର । ହ୍ୟାରିସ୍, ଜୁସ୍, ବର୍ଣ୍ଣଡ୍, ବ୍ଲକ୍, ଟ୍ରେଗର୍, ହକେଟ୍ ପ୍ରଭୃତି ଏହି କେନ୍ଦ୍ରର ପ୍ରଧାନ ଗବେଷକ । ସମକାଳୀନ ଭଷାବିଜ୍ଞାନର ବର୍ଣ୍ଣନାତ୍ମକ ଏବଂ ସଂରଚନା ପଦ୍ଧତି ଉପରେ ଏହି କେନ୍ଦ୍ରରେ ସନ୍ତୋଷଜନକ କାର୍ଯ୍ୟ ହୋଇଅଛି । ଆମେରିକାରେ ସଂରଚନାତ୍ମକ ଭାଷାବିଜ୍ଞାନ ( Structural linguistics ) ଏହି କେନ୍ଦ୍ରର ଅବଦାନ ବୋଲି ସ୍ୱୀକାର କରାଯାଇଥାଏ । ବିତରଣ ଉପରେ ଅଧିକ ଗୁରୁତ୍ୱ ଆରୋପ କରିବା ଦୃଷ୍ଟିରୁ ଏହାକୁ ବିତରଣବାଦୀ କେନ୍ଦ୍ର ( Distributionalist School ) ମଧ୍ୟ କୁହାଯାଏ । ବିତରଣ ଉପରେ ଅଧିକ ଗୁରୁତ୍ୱ ଆରୋପ କରିବା ହେତୁ ଏହି କେନ୍ଦ୍ର ଧ୍ୱନି ଅଧ୍ୟୟନ ଅପେକ୍ଷା ରୂପ ଓ ବାକ୍ୟର ଅଧ୍ୟୟନ କ୍ଷେତ୍ରରେ ଅଧିକ ସଫଳତା ଅର୍ଜନ କରିଅଛି ।

(ଘ) ହାର୍ଭାର୍ଡ୍ କେନ୍ଦ୍ର—ପ୍ରାଗ୍‌କେନ୍ଦ୍ରର ବିଶିଷ୍ଟ ଭାଷାବିତ୍ ଯାକୋବସନ୍ ଦ୍ୱିତୀୟ ପୃଥିବୀ ମହାଯୁଦ୍ଧ ବେଳେ ଆମେରିକାର ହାର୍ଭାର୍ଡ୍ ବିଶ୍ୱବିଦ୍ୟାଳୟକୁ ଚାଲି ଆସିବା ଫଳରେ ହାର୍ଭାର୍ଡ୍ ବିଶ୍ୱବିଦ୍ୟାଳୟ ଭାଷା ଅଧ୍ୟୟନର ଏକ ପ୍ରଧାନ କେନ୍ଦ୍ର ହୋଇଉଠିଲା । ଏହି କେନ୍ଦ୍ରକୁ ପ୍ରାଗ୍ କେନ୍ଦ୍ରର ଏକ ବିକଶିତ ରୂପ ବୋଲି କୁହାଯାଇପାରେ । ଏହି କେନ୍ଦ୍ର ବିତରଣ ଉପରେ ଗୁରୁତ୍ୱ ନ ଦେଇ ପ୍ରଭେଦକ ଲକ୍ଷଣ (Distinctive features) ଉପରେ ଅଧିକ ଗୁରୁତ୍ୱ ଦିଏ । ଏହି କେନ୍ଦ୍ର ଧ୍ୱନିବିଜ୍ଞାନ ଉପରେ ପ୍ରାଧାନ୍ୟ ଦେଇଥାଏ ।

(ଙ) ରୂପାନ୍ତରଣ କେନ୍ଦ୍ର—ଚମସ୍କି ପ୍ରଥମେ ବ୍ଲୁମ୍‌ଫିଲଡ୍ କେନ୍ଦ୍ରରେ ଥିଲେ । ସେ ଏହି କେନ୍ଦ୍ରର ଅନ୍ୟତମ ପ୍ରତିଷ୍ଠାତା । ହାର୍ଭାର୍ଡ୍ କେନ୍ଦ୍ରର କେତୋଟି ସିଦ୍ଧାନ୍ତ ଦ୍ୱାରା ଏହି କେନ୍ଦ୍ର ପ୍ରଭାବିତ । ଭାଷାର ବିଶ୍ଳେଷଣ ଏବଂ ଭାଷାର ବ୍ୟାକରଣ ନିର୍ମାଣର ଏକ ନୂଆ ପଦ୍ଧତି ଏହି କେନ୍ଦ୍ର ନିରୂପଣ କରିଥିଲା । ଏହି ବ୍ୟାକରଣକୁ ରୂପାନ୍ତରଣ ବ୍ୟାକରଣ (Transformational Grammar) ବା ଉତ୍ପାଦକ ବ୍ୟାକରଣ (Generative Grammar) କୁହାଯାଏ ।

## ଆଧୁନିକ ଭାଷାବିଜ୍ଞାନର ମୁଖ୍ୟ ପ୍ରବୃତ୍ତି

ଭାଷାବିଜ୍ଞାନର ବହୁ ବିଭାବ ଓ ବିଭାଗ ରହିଛି ଏବଂ ତାହାର ଉପରେ ବହୁ କାଳରୁ ଅଧ୍ୟୟନ ଓ ଗବେଷଣା ହୋଇଆସୁଅଛି । କିନ୍ତୁ ବର୍ତ୍ତମାନ ସମୟରେ ବର୍ଣ୍ଣନାତ୍ମକ

ଭାଷାବିଜ୍ଞାନ ( Descriptive Linguistics ) ଏବଂ ସଂରଚନାତ୍ମକ ଭାଷାବିଜ୍ଞାନ ( Structural Linguistics ) ଉପରେ ଭାଷାବିଦ୍‌ଗଣ ଅଧିକ ଧ୍ୟାନ ଦେଇଛନ୍ତି । ଏହାର ଆଧାର ଉପରେ ଜୀବିତ ଓ ମୃତ ଉଭୟ ପ୍ରକାର ଭାଷା ଉପରେ ଗବେଷଣା ଚାଲିଛି । ଆଧୁନିକ ଭାଷାବିଜ୍ଞାନରେ ଉଚ୍ଚାରଣ ଓ ଲହର ପ୍ରଭୃତି ସାହାଯ୍ୟରେ ଧ୍ୱନିମାନଙ୍କର ଅଧ୍ୟୟନ କରାଯାଉଅଛି ଓ ଏଥିଲାଗି ଏକ୍ସ-ରେ, ଷ୍ଟେଥୋଗ୍ରାଫ୍, ଅସିଲୋଗ୍ରାଫ୍, କାଇମୋଗ୍ରାଫ୍, ପିଚ୍‌ମିଟର, ଇଙ୍କ୍‌ରାଇଟର, ସ୍ୟାଟର୍ଣ୍ଣ-ପ୍ଲେବ୍ୟାକ୍, ସ୍ପିଚ୍‌ଷ୍ଟ୍ରେଚର, ଫାର୍ମେଣ୍ଟ ଗ୍ରାଫିକ୍ସମେସିନ, ଲାରିଂଗୋସ୍କୋପ୍, ଇଣ୍ଡୋସ୍କୋପ୍, କୃତ୍ରିମ ତାଳୁ, ଅଟୋଫୋନୋସ୍କୋପ ପ୍ରଭୃତି ଯନ୍ତ୍ରର ସାହାଯ୍ୟ ନିଆଯାଉଛି । ଉଭୟ ସ୍ୱର ଓ ବ୍ୟଞ୍ଜନଧ୍ୱନି ଉପରେ ଗମ୍ଭୀର ଗବେଷଣା କରାଯାଉଅଛି । ଧ୍ୱନିଗ୍ରାମବିଜ୍ଞାନରେ ଧ୍ୱନିଗ୍ରାମ ଓ ସଂଧ୍ୱନିର ଅଧ୍ୟୟନ ହେଉଅଛି । କମ୍ପ୍ୟୁଟର ଯନ୍ତ୍ରର ଉଦ୍ଭାବନ ଯୋଗୁ ଧ୍ୱନିମାନଙ୍କର ବିତରଣ ଉପରେ ଅଧ୍ୟୟନ ସହଜ ହୋଇପାରିଛି । ରୂପଗ୍ରାମବିଜ୍ଞାନ ଓ ରୂପଧ୍ୱନିଗ୍ରାମବିଜ୍ଞାନ ଉପରେ ମଧ୍ୟ ଅଧିକ ଗୁରୁତ୍ୱ ଆରୋପ କରାଯାଉଅଛି । ପ୍ରକାର (Typelogy) ଓ ବ୍ୟାକରଣିକ ଶ୍ରେଣୀ (Grammatical Categories) ଦୃଷ୍ଟିରୁ ଭାଷାର ଅଧ୍ୟୟନ ମଧ୍ୟ ଆଧୁନିକ ଭାଷାବିଜ୍ଞାନର ଅନ୍ୟ ଏକ ପ୍ରବୃତ୍ତି । ଆଗରୁ ପଦକ୍ରମ, ଲୋପ, ଉଦ୍ଦେଶ୍ୟ ବିଧେୟ ପ୍ରଭୃତି ଦୃଷ୍ଟିରୁ ବାକ୍ୟବିଜ୍ଞାନ ଉପରେ କାମ ଚାଲିଥିଲା, କିନ୍ତୁ ଆଧୁନିକ ଯୁଗରେ ଅନ୍ତଃକେନ୍ଦ୍ରିକ ଓ ବହିଃକେନ୍ଦ୍ରିକ ସଂରଚନା, ରୂପାନ୍ତରଣ (Transformation), କାରକୀୟ ବ୍ୟାକରଣ (Case Grammar), ଶୃଙ୍ଖଳିତ ବ୍ୟାକରଣ (Systematic Grammar) ପ୍ରଭୃତି ଆଧାର ଉପରେ ବାକ୍ୟର ଅଧ୍ୟୟନ ହେଉଅଛି । ଏହାଛଡ଼ା ଭାଷାଭୂଗୋଳ, ଉପଭାଷା, କୋଷବିଜ୍ଞାନ, ଭାଷାକାଳକ୍ରମବିଜ୍ଞାନ, ବ୍ୟକ୍ତିଭାଷା, ନାମ-ବିଜ୍ଞାନ, ଭୂ-ଭାଷାବିଜ୍ଞାନ (Geolinguistics), ପ୍ରାୟୋଗିକ ଭାଷାବିଜ୍ଞାନ (Applied Linguistics) ଶୈଳୀବିଜ୍ଞାନ, ମନୋଭାଷାବିଜ୍ଞାନ, ସମାଜ ଭାଷାବିଜ୍ଞାନ ପ୍ରଭୃତି ଉପରେ ପ୍ରଶଂସନୀୟ ଅଧ୍ୟୟନ ହୋଇଅଛି ।

ଉପସଂହାର—ଭାଷା ମନୁଷ୍ୟର ବିଚାରବିନିମୟର ପ୍ରଧାନ ମାଧ୍ୟମ ହୋଇଥିବାରୁ ଏହା ସାର୍ବଜନୀନ ଉପଯୋଗୀ ଏକ ଉପାଦାନ ଓ ଭାଷାବିଜ୍ଞାନ ଭାଷା ସମ୍ପର୍କୀୟ ଜିଜ୍ଞାସାମାନଙ୍କର ସମାଧାନ କରୁଥିବାରୁ ସାର୍ବଜନୀନ ଏକ ଜ୍ଞାତବ୍ୟ ବିଷୟ । କିନ୍ତୁ ଏ ପର୍ଯ୍ୟନ୍ତ ଭାଷାବିଜ୍ଞାନ ମୁଷ୍ଟିମେୟ ବିଦ୍ୱାନ୍‌ବିଶେଷଙ୍କ ମଧ୍ୟରେ ସୀମିତ ହୋଇଯାଇଛି ଓ ଏହା ବିଶେଷଜ୍ଞଙ୍କର ଶାସ୍ତ୍ର ବୋଲି ପରିଗଣିତ ହୋଇ ସର୍ବସାଧାରଣଙ୍କର ଉପେକ୍ଷଣୀୟ ହୋଇଯାଇଛି । ଭାଷାବିଜ୍ଞାନକୁ ସର୍ବସାଧାରଣଙ୍କର ଉପଭୋଗ୍ୟ, ଉପଲଭ୍ୟ ଓ ରୁଚିକର କରିବା ଆବଶ୍ୟକ, ଯାହାଫଳରେ ଏହା ସର୍ବସାଧାରଣଙ୍କର ଆଦରଣୀୟ ହୋଇପାରିବ । ଭାଷାବିଜ୍ଞାନ ଅଧ୍ୟୟନ ଦ୍ୱାରା ଭାଷା ସମ୍ବନ୍ଧରେ ଦୃଷ୍ଟିକୋଣ ବିଶାଳ ଓ ବ୍ୟାପକ ହୁଏ । ଭାରତବର୍ଷରେ ହିନ୍ଦୀ-ଭାଷୀ ଓ ଅହିନ୍ଦୀଭାଷୀ ରାଜ୍ୟମାନଙ୍କ ଭିତରେ ବିଦ୍ୱେଷ ସୃଷ୍ଟି ମୂଳରେ ରହିଛି ଭାଷାବିଜ୍ଞାନ ଅଧ୍ୟୟନର ଅଭାବ ।

ପୃଥିବୀର ଭାଷାଗୁଡ଼ିକ ସମ୍ପର୍କରେ ଯେତେବେଳେ ମନୁଷ୍ୟର ନ୍ୟୁନାଧିକ ଜ୍ଞାନ ଲାଭ ହୋଇପାରିବ, ସେତେବେଳେ ଚିନ୍ତାଧାରାରେ ସଙ୍କୀର୍ଣ୍ଣତା ଦୂର ହୋଇଯିବ, ଉଦାରତା ଦେଖାଦେବ ଓ ଫଳରେ ମନୁଷ୍ୟ ହୃଦୟରେ ବିଶ୍ୱମୈତ୍ରୀ ଏବଂ ବିଶ୍ୱପ୍ରେମର ଉଦୟ ଘଟିବ ।

ଭାଷାବିଜ୍ଞାନ ବିଭିନ୍ନ ବିଜ୍ଞାନ ଓ ଶାସ୍ତ୍ର ଅଧ୍ୟୟନ ଦିଗରେ ମଧ୍ୟ ସହାୟକ ହୋଇଥାଏ ; ବ୍ୟାକରଣ, ସାହିତ୍ୟ ଓ ମନୋବିଜ୍ଞାନ ଉପରେ ଭାଷାବିଜ୍ଞାନର ଅପ୍ରତିହତ ପ୍ରଭାବ ରହିଛି । ଇତିହାସ ସଙ୍କଳନ ଓ ପ୍ରାଗୈତିହାସିକ ଅନୁସନ୍ଧାନରେ ଭାଷା ହେଉଛି ଏକ ବଳିଷ୍ଠ ଅବଲମ୍ବନ । ଦୃଷ୍ଟାନ୍ତ ସ୍ୱରୂପ ପ୍ରାଚୀନ ମିଶର ଓ ଅସିରିଆ ସଭ୍ୟତାର ଉଦ୍‌ଘାଟନ ଭାଷାବିଜ୍ଞାନ ଦ୍ୱାରା ହିଁ ସମ୍ଭବ ହୋଇଥିଲା । ସେହିପରି ଇଣ୍ଡୋୟୁରୋପୀୟ ଭାଷାଗୋଷ୍ଠୀର ଭାଷାମାନଙ୍କର ତୁଳନାତ୍ମକ ଅଧ୍ୟୟନ ଦ୍ୱାରା ହିଁ ମୂଳ ଆର୍ଯ୍ୟ ଜାତିର ରୀତି-ନୀତି, ବସବାସ ଓ ଅନ୍ୟ ବିଷୟର ସନ୍ଧାନ ମିଳିଥିଲା ।

ମନୁଷ୍ୟ କ୍ରମଶଃ ଅଧମ ଅସଭ୍ୟ ଅବସ୍ଥାରୁ ଅଜର ସୁସଭ୍ୟ ଅବସ୍ଥାକୁ ଅଗ୍ରସର ହୋଇପାରିଛି ଭାଷାବିଜ୍ଞାନ ଦ୍ୱାରା । ଭାଷାବିଜ୍ଞାନ ଦ୍ୱାରା ହିଁ ପୃଥିବୀର ଭାଷାମାନଙ୍କର ସ୍ୱରୂପର ଏକ ରୂପରେଖ ଜାଣିହୁଏ ଏବଂ ଅନ୍ୟ ଭାଷା ଶିକ୍ଷା କରିବା ସୁବିଧାଜନକ ହୁଏ । ଏହାଦ୍ୱାରା ଅନ୍ୟ ଭାଷା-ଭାଷୀମାନଙ୍କ ସଙ୍ଗରେ ସମ୍ପର୍କ ସ୍ଥାପିତ ହୁଏ ଓ ଅନ୍ୟ ଦେଶ, ଅନ୍ୟ ସାହିତ୍ୟ, ଅନ୍ୟ ସଂସ୍କୃତି ତଥା ଅନ୍ୟ ସଭ୍ୟତା ସମ୍ପର୍କରେ ଜ୍ଞାନାର୍ଜନ ହୁଏ । ମାନବ ମସ୍ତିଷ୍କର ସ୍ୱାଭାବିକ କୌତୂହଳର ଉପଶମ ଭାଷାବିଜ୍ଞାନ ଦ୍ୱାରା ହିଁ ସମ୍ଭବ ହୋଇଥାଏ ।

ଭାଷାବିଜ୍ଞାନ ଦୁଇଟି ବିଶିଷ୍ଟ ବିଜ୍ଞାନ ସୃଷ୍ଟିରେ ସହାୟକ ହୋଇଥାଏ, ଗୋଟିଏ ମତ-ବିଜ୍ଞାନ (ବିଶ୍ୱର ବିଭିନ୍ନ ମତ ଓ ଧର୍ମମାନଙ୍କର ତୁଳନାବିଜ୍ଞାନ) ଓ ଅନ୍ୟଟି ଲୋକ-କଥାବିଜ୍ଞାନ (The Sceince of Folk Tales) ।

ଇତର ପ୍ରାଣୀମାନେ ଭାଷାର ଅଧିକାରୀ ନୁହଁନ୍ତି କିନ୍ତୁ ମଣିଷ ଏହାର ଅଧିକାରୀ । ତେଣୁ ମନୁଷ୍ୟ ଶ୍ରେଷ୍ଠ ଜୀବ । ଏହି ଭାଷା ଶକ୍ତିର ନିରବଚ୍ଛିନ୍ନ ବିକାଶ ମୂଳରେ ରହିଛି ଭାଷାବିଜ୍ଞାନ । ତେଣୁ ଭାଷାବିଜ୍ଞାନ ସମ୍ପର୍କରେ ଉତ୍ତରୋତ୍ତର ଗବେଷଣା ସର୍ବଥା ବାଞ୍ଛନୀୟ । ଆଧୁନିକ ଯୁଗରେ ଏ ଗବେଷଣା-ପ୍ରବାହ ତୀବ୍ର ଓ ଚଞ୍ଚଳ ହୋଇଥିବାର ଲକ୍ଷ୍ୟ କରଯାଏ । ତେବେ ଭାଷାବିଜ୍ଞାନ ମୁଷ୍ଟିମେୟ ବିଦଗ୍ଧ ଗୋଷ୍ଠୀ ମଧ୍ୟରେ ସୀମାବଦ୍ଧ ନରହି ସର୍ବଜନର ଆକାଙ୍‌କ୍ଷିତ ଜ୍ଞାତବ୍ୟ ବିଷୟ ହେବା ଉଚିତ ।

●